ବାବାଜି ଶ୍ରୀ ଯଦୁମଣି ଦାସଙ୍କ [illegible] ।

# ଭକ୍ତିକଥା ।

ବାବାଜି ଶ୍ରୀ ଷଡ଼ୁଚରଣ ଦାସଙ୍କ ରଚିତ ।

# ଭକ୍ତିକଥା ।

ଶ୍ରୀ ମଧୁସୂଦନ ଦାସଙ୍କ ଦ୍ୱାରା

ପ୍ରକାଶିତ ।

ପ୍ରଥମ ସଂସ୍କରଣ



Printed. by H. M. Dutta.
at the Dutta Press,
CUTTACK.
1923.

ମୂଲ୍ୟ ଠ ୧୫ (  ଦେଢ଼ଟଙ୍କା ମା

ଢୋକଲା ଅଲକ୍ଷ୍ୟେ ଅପି ମଦ ମୋର ଚକ୍ଷେ ।
ନ ରଖି ଗୋବିନ୍ଦ ଭୃତ କାହାର ବଡ଼ାଇ,
ଶ୍ରୀରାଧାଙ୍କ ପ୍ରେମରେ ଦେଲୁ ଯେ ପକାଇ,
ଆନ ଜନ କେଉଁଛାର, ମୁଁ ବା କାହିଁ ଲେଖା ।
ହେତୁଣୁ ବର୍ତ୍ତମାନ ପଡ଼ି ଗର୍ଭର ଖାତରେ,
ହୋଇ ଯାଉଅଛି ମୋର ହାତ ଗୋଡ଼ ଚୂନା ।
ଉଠିବାର ନାହିଁ ଶକ୍ତି ଅଙ୍ଗଯାକ ପୀଡ଼ା,
ଖାଇଯାଉଛନ୍ତି ପୁଣି ଗୃହଅନ୍ଦୁ କୀଡ଼ା ।
ଜଳଅଛି ପୁଣି ଛାତି ଧକ ଧକ କରି,
ଦିଶଇ ଅନ୍ଧାର ମୋତେ ଚଉଦିଗ ପୁରି,

ନ ଦିଶଇ ଜଳମାନ ଅଶାର ବିଜୁଳୀ
ହା ହୁତାଶେ ଦିବା ନିଶି ହେଉଛି ମୁଁ କଳା ।
କାହୁଁ ଶିଖିଲୁ ଗୋବିନ୍ଦ ଏ କଠୋର ପଣ,
କେମନେ କଲୁ ପାଷାଣ ତୋ କୋମଳ ଛାତି ।
ବଂଶୀ ସିନା ଚିରକାଳ ଥାଏ ତୋର କଣ୍ଠ,
କାହୁଁ ବଞ୍ଚି ପକାଇବା ଶିଖିଲୁ ସୁନ୍ଦର ?
ନ ମାର ଖେଳାଇ ଅଛୁ ଏ ଛାର ମୀନକୁ,
ମାରି ଦେଲେ ଏକାବେଳେ ହୁଅନ୍ତା ସେ ଭଲ;
ନ ହୁଅନ୍ତା ଏ ପାମର ଅଧିକ ବଳବଳ ।
ଜୀଅନ୍ତା କଉମାଛକୁ ଛୁଡ଼ୁ ଚୁଲି କପାଇଁ
ଛଟକ୍ କରେଇ ପରେ ତଳେ ଜାଳ ଜାଳି,
ଦେଖି ତାର ଛଟପଟ ଲଗୁଛି କି ସୁଖ ?
ଏତେ ନିଷ୍ଠୁର କେମନେ ହେଲୁ ପଦ୍ମମୁଖ ?
ଆଗେ ବିଶ୍ୱାସ ଜନ୍ମାଇ ଏବେ ଦେଉ ବିଷ,
ବିଶ୍ୱାସଘାତକ ବୋଲି ନ ହେବ କି ଦୋଷ ?
ନାକରେ ଡୋର ଲଗାଇ ଭାଲୁପରି କରି

।

ଲୋକ ଅଗେ ନଗ୍ନ ଭନ୍ତୁ କେଉଁ ଶାଢ଼ୀ ପାଇ ?
ଅଛେ ଶଠଙ୍କ-ଅଗ୍ରଣି ଧୃଷ୍ଟଙ୍କର ଗୁରୁ,
ଥିଲୁ ନାହିଁ ଧାର୍ମ୍ମ୍ୟପଣ ତିଳମାତ୍ର ତୁମ୍ଭ
ରନ୍ଧ ଚିରକାଳ ସରଳାଙ୍କଶିରୋମଣି
ବୃଷଭାନୁଜେମା ରାମା ଚୂଡ଼ାମଣି ସଙ୍ଗେ ।
ପଦେ ପଦେ ଅପରାଧୀ ମୁଁ ସ୍ୱାନ ପାମର
କିନ୍ତୁ ତୁ ପରା ଗୋବନ୍ଦ କ୍ଷମାର ସାଗର ?
ପାଇବୁ ନାହିଁ କି ନିନ୍ଦା ଜନ ସମାଜରେ,
ଆଣୁ ନାହିଁ ତଳେମନେ ଏହି ଭାବ ହିଅରୁ ?
କରତେ କାଟିଲପର କାଟୁଛୁ ଟିଁ । ସ୍ଥତ
କହ ଦେଖି ଏ ପାନର ନୋହୁଛି କଗତ ?
ଅଶ୍ୱାସେ ଦୂରରୁ ଡାକି ନାବରେ ଚଢ଼ାଇ
ଏବେ ଅଗାଧ ଜଳରେ ଦେଉଛୁ ପକାଇ ।
ତୋ ବାକ୍ୟ ଅକାଟ୍ୟ ବୋଲି ମୁନିଏ ଘୋଷନ୍ତି,
ହେବ କି ମୋଠାରେ ମିଥ୍ୟା ସେ ଅକାଟ୍ୟ ବାଣୀ,
ପାଇବ ନାହିଁ ଶ୍ରୀପଦ ଜନ୍ମ ଜନ୍ମାନ୍ତରେ
ଚରଦାନ ପାଇଁ ଦନେ କନୁକ ଅନ୍ତର ?
ଦେଖି ମୋଠାରେ ଏ ଭଳି ତୋର ବ୍ୟବହାର
ମାଡ଼ିବେ କି ବଞ୍ଚଜନେ ଗୋବନ୍ଦ ତୋ କଥ ?
କହୁ ଯଦ "ନଜେ ଦୋଷୀ, ସେ ଦୋଷ ନ ଦେଖି
ମିଛେ ଦୋଷୁଅଛୁ ମୋତେ ଯାହାତାହା କହି" ।
ହିଁ ମାନଲି ତାହା ସତ୍ୟ, ବଡ଼ ଅପରାଧୀ
ପାପ ପାପବୀଜମାନ ଅଛଇ ଅପାର,
କିନ୍ତୁ ତୁ ପରା ସଦ୍‌ବୈଦ୍ୟ ଚିକିତ୍ସାରେ ପଟୁ
ପାରୁ ନାହିଁ କି ମୋ ବ୍ୟାଧି ନିର୍ମଳ କରାଇ ?
ହେଲା କି ଅସାଧ୍ୟ ତୋତେ ମୋ ଏ ମହା ବ୍ୟାଧି ?

ସେଉ ସେଉଅଛି ଯାହା ତୋଲେତ ଦୁଃଖ କରି
ଅବାଧେ କର ତୁ ନାହା ଏ ଧନକୁ ହେଳ ।
ତୋର ସୁଖେ ସୁଖୀ ଦାସ, ତୋ ଦୁଃଖରେ ଦୁଃଖୀ
ଏହାଭିନ୍ନ ନିଜସ୍ୱ ନାହିଁ କିଛି ତାର,
ଦେଇଅଛି ଏ ଜୀବନ ତୋ ଚରଣେ ବିକ ।
ହେଲେହେଁ ବାହ୍ୟେ ନିଷ୍ଠୁର ଅଛି ଦୟାନ୍ତରେ
ଏହି ମନେ କରି ଆଜି ଅର୍ପୁଛି ଏ ଗ୍ରନ୍ଥ,
ତୋ ପଦକମଳେ ଘେନ ଘେନ ହେ ଗୋବିନ୍ଦ
ଧଅନା ଭକ୍ତିରହିତ ଘୃଣାରେ ପକାଇ ।
କଣ୍ଟା ବଣରେ ପଡ଼ିଲେ ତୁଳସୀ ପତର
ନୁହଇ କି ପଦ ଯୋଗ୍ୟ ତୋର ପ୍ରାଣମଣି ?
ଗୋରଚନା ଅଣି ଦେଲେ ଅସ୍ପୃଶ୍ୟ ଗୃହୀକ
ତାକୁ ନେଇ ଝିଲେ ତୁମ୍ଭ ନ ଯେନୁ କି ଚିତ୍ତା ?

ସେବକାନୁସେବକ,

ଶ୍ରୀପଦ୍ମଚରଣ ଦାସ ।



ଶ୍ରୀ ଗୁରବେ ନମଃ ।

# ଭକ୍ତିକଥା ।



## ପ୍ରଥମ ପରିଚ୍ଛେଦ ।

### ଭକ୍ତିର ଶ୍ରେଷ୍ଠତ୍ୱ :—

ଜୟ ଜୟ ଶିଖିପୁଚ୍ଛ ସଦା ଜୟ ତୋର
ଯା ସଙ୍ଗେ ତୁ ଶୋଭାପାଉ ଶ୍ରୀ ଗୋବିନ୍ଦ ଶିର ।
ଦୂରରୁ ତୋତେ ବିଲୋକି ରାଧା ବିନୋଦିନୀ
ମାଧବେ ଅନୁସରନ୍ତି ସଖିଗଣ ଘେନି ।
ସେ ପୁଣି ମାନିନୀ ହେଲେ ରସିକଶେଖର
ଲୁଟନ୍ତି ତା ପଦେ ଯେବେ ହୋଇଣ କାତର,
ଝରୁ ଅଗେ ତୁ ପରଶ ସେ ପଦ କମଳ;
ଧନ୍ୟରେ ଧନ୍ୟରେ ଧନ୍ୟ ତୋର ପ୍ରେମବଳ ।
ତେଣୁ ପ୍ରଥମରେ ନତ-ଶିରେ ବନ୍ଦି ତୋତେ
ଆରମ୍ଭିଲି ଭକ୍ତି-କଥା ଶକ୍ତି ଦିଅ ମୋତେ ।

ଶ୍ରୀଭଗବାନଙ୍କଠାରେ ପରା ଅନୁରକ୍ତିର ନାମ ଭକ୍ତି । ଏହି ଭକ୍ତି ନିତ୍ୟସିଦ୍ଧ । ଏହା ସାଧନ ଦ୍ୱାରା ବ୍ୟକ୍ତ ହୁଏ । ପୁଷ୍କରିଣୀରେ ଜଳ ଅଛି,

କିନ୍ତୁ ତାହା ଦଳରେ ଏମନ୍ତ ଅବୃତ୍ତ ହୋଇ ରହିଅଛି ଯେ ପ୍ରଥମରେ ଜଳାଶୟ ଥିବାର ଅନୁମାନ ମଧ୍ୟା ହୋଇ ନାହିଁ । କିନ୍ତୁ ଦାଳକୁ ହାଣି ପରିଷ୍କାର କରିଦେଲେ ଜଳାଶୟର ନିର୍ମଳଜଳ ଲୋକମାନଙ୍କର ନୟନ ଗୋଚର ହୁଏ । ସେହିପରି ସାଧନା ଦ୍ୱାରା ମନର ଆବର୍ଜନା ଦୂରୀଭୂତ ହୋଇଗଲେ ମାନସ ନିହିତ ବସ୍ତୁଭକ୍ତି ପ୍ରକାଶ ପାଏ । ଜଳାଶୟ ଜଳର କ୍ଷୟ ବ୍ୟୟ ଅଛି । କିନ୍ତୁ ହୃଦୟ ନିହିତ ବସ୍ତୁଭକ୍ତି ଅକ୍ଷୟ ଓ ଅବ୍ୟୟ । ଏହା ସୂର୍ଯ୍ୟତାପରେ ଶୁଷ୍କ ହୁଏ ନାହିଁ କିମ୍ବା ବହୁଳ ପରିମାଣରେ ବ୍ୟବହୃତ ହେଲେ ମଧ୍ୟ କମିଯାଏ ନାହିଁ । ଏ ବିଷୟରେ ମହାପ୍ରଭୁ ଶ୍ରୀ ଶ୍ରୀ କୃଷ୍ଣ ଚୈତନ୍ୟଙ୍କର ଶ୍ରୀମୁଖ ଉକ୍ତି ଏହି ।—

ଆଦି ମଧ୍ୟ ଅନ୍ତ୍ୟ ଭାଗବତେ ଏଇ କୟ
ବସ୍ତୁଭକ୍ତି ନିତ୍ୟସିଦ୍ଧ ଅକ୍ଷୟ ଅବ୍ୟୟ ।
( ଚୈଃ ଭଃ ଅନ୍ତ୍ୟ ୩ୟ ଅ )

ଶ୍ରୀମନ୍ ଦେବାନନ୍ଦ ପଣ୍ଡିତ ଜଣେ ପ୍ରସିଦ୍ଧପଣ୍ଡିତ । ପ୍ରଥମେ ଭକ୍ତି-ପଥରେ ପଥିକ ନ ଥିବାରୁ ଶ୍ରୀବାସ ପଣ୍ଡିତଙ୍କଠାରେ ତାହାଙ୍କର ଅପରାଧ ଜାତହୁଏ, କିନ୍ତୁ କୃଷ୍ଣପ୍ରେମୋନ୍ମତ୍ତ ପଣ୍ଡିତ ବକ୍ରେଶ୍ୱରଙ୍କ କୃପାରୁ ତାଙ୍କର ସେ ବୈଷ୍ଣବାପରାଧ ଖଣ୍ଡନ ହେଲା । ପଣ୍ଡିତ ଦେବାନନ୍ଦ ଭକ୍ତିପଥରେ ପଥିକ ହୋଇ ଶ୍ରୀମନ୍ ମହାପ୍ରଭୁଙ୍କ ଆଶ୍ରୟ ନେଲେ ଏବଂ ପ୍ରଣିପାତପୂର୍ବକ ମହାପ୍ରଭୁଙ୍କୁ ପଚାରିଲେ, "ପ୍ରଭୋ ! ମୁଁ ଅଜ୍ଞ ହୋଇ ସର୍ବଜ୍ଞ ସ୍ୱରୂପ ଶ୍ରୀମଦ୍ ଭାଗବତଗ୍ରନ୍ଥ ଛାତ୍ରମାନଙ୍କୁ ପଢ଼ାଉଅଛି, କିନ୍ତୁ ଶ୍ରୀମଦ୍ ଭାଗବତର ଗୂଢ଼ାର୍ଥ ମୋତେ କିଛିମାତ୍ର ଜଣା ନାହିଁ । ମୁଁ କିରୂପେ ତାହା ପଢ଼ାଇବି ଆପଣ କୃପାକରି ମୋତେ ତାହାର ଉପଦେଶ କରନ୍ତୁ ।" ଶ୍ରୀ ବକ୍ରେଶ୍ୱରଙ୍କ କୃପାପାତ୍ର ଦେବାନନ୍ଦଙ୍କ ପ୍ରତି ମହାପ୍ରଭୁ ସନ୍ତୁଷ୍ଟ ହୋଇ ଉପରୋକ୍ତ ଉକ୍ତ ବଚନ ପ୍ରୟୋଗ କରି କହିଥିଲେ; ଶ୍ରୀମଦ୍‌ଭାଗବତ ଭକ୍ତିର ସ୍ୱରୂପ । ଅତଏବ ତାହାର ଆଦ୍ୟ, ମଧ୍ୟ ଓ ଅନ୍ତ୍ୟ ସର୍ବତ୍ର ତୁମ୍ଭେ ଭକ୍ତିର ବ୍ୟାଖ୍ୟା କରିବ ଭକ୍ତିର ନିତ୍ୟସିଦ୍ଧ । ଏହା ମହାପ୍ରଳୟରେ ମଧ୍ୟ ବିନଷ୍ଟ ହୁଏ ନାହିଁ । ଏହି ।

ଯେ ନିତ୍ୟସିଦ୍ଧ ଭକ୍ତି, ତାହା ଭଜନୋନ୍ମୁଖ ବ୍ୟକ୍ତିର ଶ୍ରେଷ୍ଠତମ ଆଶ୍ରୟ । ଭକ୍ତିଦ୍ୱାରା ଶ୍ରୀଭଗବାନ ସହଜରେ ବଶୀଭୂତ ହୁଅନ୍ତି । କର୍ମ, ଯୋଗ ଓ ଜ୍ଞାନ ଇତ୍ୟାଦି ଉପାୟ ଦ୍ୱାରା ଭଗବାନ କଦାପି ବଶ ହୁଅନ୍ତି ନାହିଁ । ଶ୍ରୀ ଭଗବାନଙ୍କୁ ବଶ କରିବାର ଭକ୍ତିହିଁ ଏକମାତ୍ର ଉପାୟ । ଏହା ଶ୍ରୀ ଚୈତନ୍ୟଚରିତାମୃତ, ଶ୍ରୀ ଚୈତନ୍ୟଭାଗବତ ଓ ଶ୍ରୀ ଚୈତନ୍ୟମଙ୍ଗଳ ପ୍ରଭୃତି ଗ୍ରନ୍ଥରେ ନାନାସ୍ଥାନରେ ବର୍ଣ୍ଣିତ ହୋଇଅଛି । ଶ୍ରୀ ଶ୍ରୀ କାଶୀଧାମରେ ଶ୍ରୀମନ୍ ମହାପ୍ରଭୁ ନିଜେ ଶ୍ରୀ ସନାତନ ଗୋସ୍ୱାମୀଙ୍କୁ ବୈଷ୍ଣବ ଶାସ୍ତ୍ର ପ୍ରଣୟନ ନିମନ୍ତେ ଆଦେଶ କରି କେତେକ ଶିକ୍ଷା ପ୍ରଧାନ କରିଥିଲେ । ତହିଁରେ ସେ ଶ୍ରୀ ସନାତନ ଗୋସ୍ୱାମୀଙ୍କୁ କହୁଅଛନ୍ତି ।—

ଐଛି ଶାସ୍ତ୍ର କହେ କର୍ମଜ୍ଞାନ ଯୋଗତ୍ୟଜି
ଭକ୍ତ୍ୟେ କୃଷ୍ଣ ବଶ ହୟ ଭକ୍ତ୍ୟେ ତାଁରେ ଭଜି ।
( ଚୈ: ଚ: ମଧ୍ୟ: ବିଂଶ ଅଧ୍ୟାୟ )

ଶ୍ରୀ ମନ୍ ମୁରାରି ଗୁପ୍ତ ଭଗବଦ୍ଦାସାଗ୍ରଗଣ୍ୟ ଶ୍ରୀମନ୍ ହନୁମାନଙ୍କର ଅବତାର ଓ ମହାପ୍ରଭୁଙ୍କର ପ୍ରିୟଦାସ । ମହାପ୍ରଭୁ ଖେଳାବିଳାସରେ ବାଳକ ରୂପେ ପ୍ରଚ୍ଛନ୍ନ ହୋଇ ରହିଅଛନ୍ତି । ମୁରାରି ସେତେବେଳେ ଜାଣି ପାରି ନାହାନ୍ତି ଯେ ନଦୀୟାର ଉଦ୍ଧତ ଚୂଡ଼ାମଣିଟି ତାଙ୍କର ଜନ୍ମ ଜନ୍ମାନ୍ତର ପ୍ରଭୁ । ତେଣୁ ସେ ନିମାଇଙ୍କର ବାଳଚାପଲ୍ୟରେ ବିରକ୍ତ ହୋଇ ତାଙ୍କୁ ଭର୍ତ୍ସନା କଲେ । ଚଞ୍ଚଳ ଚୂଡ଼ାମଣି ସେ ଭର୍ତ୍ସନାରେ ଅନ୍ତରେ ପ୍ରୀତ ଲଭିକରି ବାହ୍ୟକରେ କୋପ ପ୍ରଦର୍ଶନ ପୂର୍ବକ ମୁଖଭଙ୍ଗୀ କରି କହିଲେ, " ଆଚ୍ଛା ହେଉ, ଆଜି ଭୋଜନକାଳରେ ଏହା ଶିକ୍ଷା ହେବ " । ଏହା ପରେ ମୁରାରି-ଗୁପ୍ତ ନିଜ କାର୍ଯ୍ୟରେ ଚାଲିଗଲେ । ବାଳକ ନିମାଇର କଥା ପ୍ରତି ତାଙ୍କର ବିଶେଷ ଲକ୍ଷ୍ୟ ନଥିଲା, କିନ୍ତୁ ଉଦ୍ଧତ ଚୂଡ଼ାମଣି ନିମାଇତ ନିଜଦାସକୁ ଭୁଲିବାର ପାତ୍ର ନୁହନ୍ତି । ସେ ଠିକ ମୁରାରିଙ୍କ ଭୋଜନ କାଳରେ ତାଙ୍କ ଘରେ ପ୍ରବେଶ କରିଲ ଏବଂ ତାଙ୍କ ଭୋଜନ ଥାଳୀରେ ପ୍ରସାବ କଲେ । ମୁରାରି ଦେଖି ଅବାକ୍ । ଚଞ୍ଚଳ ଚୂଡ଼ାମଣିଙ୍କ କାର୍ଯ୍ୟ ସେ କିଛି ବୁଝି ପାରିଲେ ନାହିଁ । ସେତେବେଳେ ମହାପ୍ରଭୁ ନିଜଦାସକୁ କୃପାକରି କହିଲେ "ମୁରାରି !

ତୁମ୍ଭେ ଯୋଗ ମାର୍ଗ ଅବଲମ୍ବନ କରୁଅଛ । ଏ ବୁଦ୍ଧି ଛାଡ଼, ଜ୍ଞାନ କର୍ମ ଛାଡ଼ି ଭକ୍ତିପଥ ଅବଲମ୍ବନ କର । ନିର୍ମଳ ଭକ୍ତି ଦ୍ୱାରା ରସିକଶେଖର ଶ୍ରୀକୃଷ୍ଣଙ୍କୁ ଭଜନ କର । ସବଗ୍ଯଚୂଡ଼ାମଣି ଶ୍ରୀକୃଷ୍ଣ ପରମ ଦୟାଳୁ ଓ ସର୍ବଶକ୍ତିମାନ । ସେ ତୁମ୍ଭଙ୍କୁ କୃପା କରିବେ ।" ଯଥା ।—

ଜ୍ଞାନ କର୍ମ ଉପେକ୍ଷିୟା କୃଷ୍ଣ ଭଜ ମନଦିୟା ।
ରସିକ ସବଜ୍ଞ ସଦାନନ୍ଦ । ( ଚୈ ମଃ )

ଏହାପର କେତେକ ଉପଦେଶ ଦେଇ ଅନ୍ତର୍ହିତ ହେଲେ । ମୁରାରି ତେତେବେଳେ ବୁଝି ପାରିଲେ, ଏ ବାଳକ ସାଧାରଣ ବାଳକ ନୁହେଁ । ଏ ହାଙ୍କର ନିଜପ୍ରଭୁ, ଗୁପ୍ତରେ ନିଦ୍ଆରେ ବାଳକରୂପେ ବିହାର କରୁଅଛନ୍ତି । ଯଥା ।—

ମନେ ମନେ ଅନୁମାନ ଏଇ ପଣ୍ଡିତ ନହେ ଆନ
ସତ୍ୟକୃଷ୍ଣ ଶଚୀର ତନୟ । ( ଚୈଃ ମଃ ଅନ୍ତ୍ୟ )

ପୁଣି ମହାପ୍ରଭୁ ଆତ୍ମ ପ୍ରକାଶ ପରେ ସେହି ପ୍ରିୟଦାସ ମୁରାରି ଗୁପ୍ତଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ତାଙ୍କୁ କହୁଅଛନ୍ତି ।—

ଶୁନ ଶୁନ ଅହେ ବୈଦ୍ୟ ଆମାର ବଚନ
ଏଇ ଗୀତା ଅଧ୍ୟାତ୍ମ ଛାଡ଼ହ ତୋର ମନ ।
ଜୀବାରେ ବାସନା ଯଦି ଥାକୟେ ତୋମାର
କୃଷ୍ଣ ପ୍ରେମାନନ୍ଦେ ଯଦି ସାଧ ଥାକେ ଆର ।
ଅଧ୍ୟାତ୍ମ ଚରଚ୍ଚା ତବେ କର ପରିତ୍ୟାଗ
ଗୁଣ ସଂକୀର୍ତ୍ତନ କର କୃଷ୍ଣେ ଅନୁରାଗ ।
ନଟବରଶେଖର ସୁନ୍ଦର ଶ୍ୟାମତନୁ
ଇନ୍ଦ୍ରନୀଳମଣି କାନ୍ତି କରେ ବର ବେଣୁ ।
ପୀତାମ୍ବରଧରବନମାଳା ଯାର ଗଲେ
ସେଇ ପ୍ରଭୁକେ ନାହି ଭଜ ଗୋପୀଗଣ ମେଲେ ।

( ଚୈଃ ମଃ ମଧ୍ୟ )

ଏକଦିନରେ ଉଦାର ସ୍ୱଭାବ ଶ୍ରୀବାସ ପଣ୍ଡିତ କରି ଭଙ୍ଗିକରି ମହାପ୍ରଭୁଙ୍କୁ ପଚାରିଲେ, "ପ୍ରଭୋ ! ଏହି ଶ୍ରୀ ଅଦ୍ୱୈତାଚାର୍ଯ୍ୟ କି ଆପଣଙ୍କର ଭକ୍ତ ?" ମହାପ୍ରଭୁ ପ୍ରଣୟ କୋପ ପ୍ରକାଶ ପୂର୍ବକ ଅଦ୍ୱୈତ ମହିମା ବର୍ଣ୍ଣନ କଲେ । ସେହି ସମୟରେ ସେ କହିଥିଲେ ।—

ତବେ ସେଇ ଗୌରହରି ବଲେ ପୁନର୍ବାର
ଅଧ୍ୟାତ୍ମ ଚରଚା ତୋର ନା କରିବେ ଆର ।
ଯଦିବା ଅଧ୍ୟାତ୍ମବାଦୀ ଦେଖି ଶୁନ ତୋମା
ତବେ ପୁନ ତୋ ସଙ୍ଗେ ନାହିଁ ହବ ପ୍ରେମା ।
ଜ୍ଞାନ କର୍ମ ଉପେକ୍ଷିଲେ କୃଷ୍ଣ ପ୍ରେମୋଦୟ
ଇହା ଜାନି ଜ୍ଞାନ କର୍ମ ନାକରି ଆଶ୍ରୟ ।
( ଚୈଃ ମଃ ମଧ୍ୟ )

ଶ୍ରୀଧାମ ପ୍ରୟାଗଠାରେ ମହାପ୍ରଭୁ ଶ୍ରୀରୂପ ଗୋସ୍ୱାମୀଙ୍କୁ ଶିକ୍ଷା ଦେବାକାଳରେ ବିଶୁଦ୍ଧ ଭକ୍ତିର ସ୍ୱରୂପ ବର୍ଣ୍ଣନ ପୂର୍ବକ କହିଥିଲେ ।—

ଅନ୍ୟ ବାଞ୍ଛା ଅନ୍ୟ ପୂଜା ଛାଡ଼ି ଜ୍ଞାନ କର୍ମ
ଆନୁକୂଲ୍ୟେ ସର୍ବେନ୍ଦ୍ରିୟ କୃଷ୍ଣାନୁଶୀଳନ ।
ଏଇ ଶୁଦ୍ଧ ଭକ୍ତି, ଇହା ହୈତେ ପ୍ରେମ ହୟ
ପଞ୍ଚରାତ୍ରେ ଭାଗବତେ ଏଇ ଲକ୍ଷଣ କୟ ।
( ଚୈଃ ଚଃ ମଧ୍ୟଃ ୧୯ ପରି )

ଏହା ବୁଝାଇବାକୁ ଗଲେ ଖଣ୍ଡିଏ ସ୍ୱତନ୍ତ୍ର ପୁସ୍ତକ ହେବ । ଏ ଗୂଢ଼ ତତ୍ତ୍ୱ ବୁଝାଇବାର ଅବା ମୋର ଶକ୍ତି କାହିଁ ? ଆଉ ସମସ୍ତ ପରିତ୍ୟାଗ ପୂର୍ବକ ସବୁ ଇନ୍ଦ୍ରିୟକୁ ଐକାନ୍ତିକ ଭାବରେ ଶ୍ରୀକୃଷ୍ଣଙ୍କ ସେବା କାର୍ଯ୍ୟରେ ଲଗାଇବା ହିଁ ଶୁଦ୍ଧା ଭକ୍ତି । ଭକ୍ତିପ୍ରବର୍ତ୍ତକ ମହାପ୍ରଭୁ ଯବଧାମରେ ଅବତୀର୍ଣ୍ଣ ହୋଇ ଭକ୍ତିମହିମା ବର୍ଣ୍ଣନ କରି ଓ ଆଚରଣ କରି ଶିକ୍ଷା ଦେଇ ଅଛନ୍ତି । ଶ୍ରୀଳବୃନ୍ଦାବନ ଦାସ ଭକ୍ତି ମାହାତ୍ମ୍ୟ ବର୍ଣ୍ଣନ କରି କହି ଅଛନ୍ତି ।—

କୋଟିଜନ୍ମ ଯଦି ଯାଗ ଯଜ୍ଞ ତପ କରେ
ଭକ୍ତି ବିନା କୋନ କର୍ମେ ଫଲ ନାହିଁ ଧରେ ।
( ଚୈଃ ଭାଃ ମଧ୍ୟଃ ୨୩ଶ ଅଧ୍ୟାୟ )

ମହାପ୍ରଭୁ ଶ୍ରୀ ନବଦ୍ୱୀପରେ ଅପ୍ରଚ୍ଛନ୍ନରୂପ ହୋଇ ମହା ଐଶ୍ୱର୍ଯ୍ୟ ପ୍ରକଟନ କରୁଅଛନ୍ତି । ଭାଗ୍ୟବାନ ଶ୍ରୀବାସଙ୍କ ଭବନ ମହାପ୍ରଭୁଙ୍କ ଦିବ୍ୟ ଜ୍ୟୋତିରେ ପୂର୍ଣ୍ଣ । ସାତ ପ୍ରହର କାଳ ମହାପ୍ରଭୁ ଏହି ଐଶ୍ୱର୍ଯ୍ୟଭାବ ପ୍ରକଟନ କରି ନିଜ ଅଭିଷେକାନନ୍ତର ପ୍ରିୟ ଭକ୍ତଗଣଙ୍କୁ ଏକେ ଏକେ ନିକଟକୁ ଡ଼ାକି ତାଙ୍କୁ ପୂର୍ବ ଚରିତ୍ର ପ୍ରଦାନପୂର୍ବକ ମହାକୃପା ବିତରଣ କରୁଅଛନ୍ତି । କିନ୍ତୁ ପ୍ରିୟାତିପ୍ରିୟ ମୁକୁନ୍ଦ ଏହି ମହାଦୈଶ୍ୱର୍ଯ୍ୟ ଦର୍ଶନରୁ ବଞ୍ଚିତ, ମହାପ୍ରଭୁଙ୍କ ଆଜ୍ଞା ନାହିଁ, ସେ ନିକଟକୁ ଯାଇ ପାରୁନାହାନ୍ତି। ମୁକୁନ୍ଦର ଏହି ଅସହ୍ୟ ଯାତନା ଶ୍ରୀବାସ ପଣ୍ଡିତଙ୍କୁ ସହ୍ୟ ହେଲା ନାହିଁ, ସେ ସାହସ ପୂର୍ବକ ମହାପ୍ରଭୁଙ୍କୁ ନିବେଦନ କଲେ "ପ୍ରଭୋ ! ମୁକୁନ୍ଦ ଆପଣଙ୍କର ଅତିପ୍ରିୟପାତ୍ର । ତାହାଙ୍କ ମଧୁକଣ୍ଠ ନିସୃତ ଗୀତରେ କିଏ ଦ୍ରବୀଭୂତ ନ ହୁଏ । ଆପଣତ ତାହାଙ୍କ ଗୀତ ଶୁଣି ବିହ୍ୱଳ ହୁଅନ୍ତି । ଆଜି ତାଙ୍କ ପ୍ରତି ଆପଣଙ୍କର ଏ ବିଗ୍ରହ କାହିଁକି ?" କରୁଣାସାଗର ମହାପ୍ରଭୁ କହିଲେ "ନା, ନା, ତାକୁ ଏଠାକୁ ଡ଼ାକ ନାହିଁ; ସେ ଏକସମୟରେ ଦନ୍ତରେ ତୃଣଧାରଣ ପୂର୍ବକ ଚରଣ ତଳେ ନିପତିତ ହୁଏ ଏବଂ ପରମୁହୂର୍ତ୍ତରେ ଯଷ୍ଟି ଧରି ମୋ ଅଙ୍ଗରେ ପ୍ରହାର କରେ"। ମହାବକ୍ତା ପଣ୍ଡିତ ଶ୍ରୀବାସ ତେତେବେଳେ ପଚାରିଲେ "ପ୍ରଭୋ ! ଆମ୍ଭେମାନେତ ଆପଣଙ୍କ କଥା କିଛି ବୁଝି ପାରିଲୁଁ ନାହିଁ । ଅନୁଗ୍ରହପୂର୍ବକ ତାହା ବୁଝାଇ ଦିଅନ୍ତୁ "ମହାପ୍ରଭୁ କହିଲେ, ଶ୍ରୀବାସ ! ମୁକୁନ୍ଦର ଭକ୍ତିରେ ନିଷ୍ଠା ନାହିଁ; ସେ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ସଭାରେ ପ୍ରେମ ବିହ୍ୱଳ ହୋଇ ଭକ୍ତି ବ୍ୟାଖ୍ୟା କରେ, କିନ୍ତୁ ଅନ୍ୟ ସମ୍ପ୍ରଦାୟକୁ ଗଲେ ଭକ୍ତି ସ୍ୱୀକାର ନକରି ଜ୍ଞାନ ଅଥବା ଯୋଗର ମହିମା କୀର୍ତ୍ତନ କରେ । ଅତଏବ ଭକ୍ତି ଦେବୀଙ୍କୁ ଅବହେଳା ଦ୍ୱାରା ମୋ ଅଙ୍ଗରେ ଯଷ୍ଟି ପ୍ରହାର କରିଅଛି ।"

ଯଥା—ଭକ୍ତି ହଇତେ ବଡ଼ ଅଛେ ଯେଇହା ବାଖାନେ
ନିରନ୍ତର ଜାଠି ମୋରେ ମାରେ ସେଇ ଜନେ ।

(ଚୈଃ ଭାଃ ମଧ୍ୟଃ ୧୦ମ ଅଧ୍ୟାୟ )

ଏହିରୂପ ମୁକୁନ୍ଦଙ୍କ ଦଣ୍ଡଛଳରେ ଜୀବ ଶିକ୍ଷା ଦେଇ ମହାପ୍ରଭୁ ନିଜ ପ୍ରିୟ ମୁକୁନ୍ଦଙ୍କୁ ନିଜପାଖକୁ ଡ଼କାଇ ଥିଲେ । ଅତଏବ କର୍ମ, ଯୋଗ, ଜ୍ଞାନ, ସମସ୍ତଙ୍କ ଠାରୁ ଭକ୍ତି ଯେ ଉତ୍କୃଷ୍ଟମାର୍ଗ ଉପରୋକ୍ତ ଉଦ୍ଧୃତ ପଦଗୁଡ଼ ତାହାର ଉତ୍ତମ ପ୍ରମାଣ । ମହାପ୍ରଭୁ ଯେ କେବଳ ଏହା ଉପଦେଶ ଦେଇ ଅଛନ୍ତି ଏମନ୍ତ ନୁହେଁ । ନିଜେ ଆଚରଣ କରି ମଧ୍ୟ ଶିକ୍ଷା ଦେଇ-ଅଛନ୍ତି ।

ଭକ୍ତରୂପୀ ଭଗବାନ ଶ୍ରୀ ଗୌରଚନ୍ଦ୍ର ଦେବ ଦେବୀ ଗୁରୁ ବୈଷ୍ଣବ ସମସ୍ତଙ୍କ ପଦରେ ପ୍ରଣତ ହୋଇ ଭକ୍ତି ପ୍ରାର୍ଥନା କରିଅଛନ୍ତି । ଯଥା—

ବିରଜାକେ ନମସ୍କାରି କହିଲ ବଚନେ
ଦେହ ପ୍ରେମଭକ୍ତି ମୋରେ କୃଷ୍ଣେର ଚରଣେ ।

( ଚୈଃ ମଃ ମଧ୍ୟ )

ଶିକ୍ଷାର କି ବିଚିତ୍ର କୌଶଳ । ମହାପ୍ରଭୁ ସନ୍ୟାସଗ୍ରହଣ କରି ଶ୍ରୀପୁରୁ-ଷୋତ୍ତମ ଯାଉଅଛନ୍ତି । ପଥମଧ୍ୟରେ ବିରଜା ମଣ୍ଡଳ । ମହାଶକ୍ତି ବିରଜାଙ୍କ ଆରାଧନା ଦ୍ୱାରା ଓ ତାହାଙ୍କ କୃପାଦ୍ୱାରା ଲୋକେ ଶ୍ରୀକୃଷ୍ଣଙ୍କୁ ପାଇପାରିବେ । କେତେକ ବ୍ରଜ ଗୋପୀମାନେ ମହାମାୟା କାତ୍ୟାୟନୀଙ୍କର ଆରାଧନା କରି କୃଷ୍ଣଙ୍କୁ ପତିରୂପେ ପ୍ରାପ୍ତ ହୋଇଥିଲେ । ଲୋକେ ସେହି ପଥ ପ୍ରଶସ୍ତ ଜାଣି ଅନୁସରଣ କରନ୍ତୁ ଏହି ଶିକ୍ଷା ଦେବାପାଇଁ କୋଟି ବ୍ରହ୍ମାଣ୍ଡର ଈଶ୍ୱର ଆଜି ସନ୍ୟାସୀବେଶରେ ବିରଜା ଦେବୀଙ୍କଠାରେ କୃଷ୍ଣ ପ୍ରେମଭି-କ୍ଷାରୀ; ଜୀବଶିକ୍ଷା ଉଦ୍ଦେଶ୍ୟ ନଥିଲେ ମହାପ୍ରଭୁ ମନେ ମନେ ଦେବୀଙ୍କୁ ସେ ପ୍ରାର୍ଥନା କରି ପାରିଥାଆନ୍ତେ । କିନ୍ତୁ ଜୀବଶିକ୍ଷା ହେତୁ ମହାପ୍ରଭୁ ବଚନରେ ପ୍ରକାଶ କରି ଏ ମହଦ୍‌ଭିକ୍ଷା କଲେ ।

ଏହି ଯେ ଉତ୍କୃଷ୍ଟ କୃଷ୍ଣଭକ୍ତି ଏହା ଆଚରଣ କଲେ ସଙ୍କ୍ୟାଦି ସୁଖ-ଲେଶର ଭକ୍ତଠାରେ ଅତି ତୁଚ୍ଛବତ୍ ପ୍ରତୀୟମାନ ହୁଏ, ଏପରିକି ମୋକ୍ଷକାମନା ପର୍ଯ୍ୟନ୍ତ ଭକ୍ତ ମନରୁ ଅନ୍ତର୍ହିତ ହୁଏ । ଶ୍ରୀଲରୂପ ଓ ଶ୍ରୀ ସନାତନ ଗୌଡ଼ ବାଦସାହଙ୍କର ମନ୍ତ୍ରୀ ଓ ମହାବୈଭବଶାଳୀ । ମହା-ପ୍ରଭୁଙ୍କ କୃପାରୁ ସେ ଦୁଇଭାଇ ସମସ୍ତ ଐଶ୍ୱର୍ଯ୍ୟ ତ୍ୟାଗକରି ଶ୍ରୀବୃନ୍ଦାବନରେ

ବୃକ୍ଷତଳବାସୀ ଭିଖାରୀ ସାଜିଲେ । ସପ୍ତଗ୍ରାମର ଜମିଦାର ଶ୍ରୀ ଗୋବର୍ଦ୍ଧନଙ୍କର ପୁତ୍ର ଶ୍ରୀମାନ୍ ରଘୁନାଥ ଦାସ ତଦାଜୀନ୍ତନ ବିଂଶଲକ୍ଷ ମୁଦ୍ରା ଆୟୁକ୍ତ ଜମିଦାରୀ ଓ ସ୍ୱର୍ଗସୁନ୍ଦରୀ ଭାର୍ଯ୍ୟାର କୋମଳ କୋଳ ପରିତ୍ୟାଗ ପୂର୍ବକ ଭିକ୍ଷାବୃତ୍ତି ଅବଲମ୍ବନ କଲେ । ଭୋଗ ବିଳାସ ଯେ ଭକ୍ତି ସମ୍ପତ୍ତି ଠାରେ ଅତି ତୁଚ୍ଛ ଏମାନେହିଁ ତାହା ଜ୍ୱଳନ୍ତରୂପେ ଦେଖାଇ ଯାଇଅଛନ୍ତି । ଯେଥିପାଇଁ ମହାନୁଭବ ଶ୍ରୀମନ୍ ବୃନ୍ଦାବନ ଦାସ ଲେଖିଅଛନ୍ତି—

ତାବତ୍ ରାଜ୍ୟାଦି ପଥ ସୁଖ କରିମାନେ
ଭକ୍ତି ସୁଖ ମହିମା ଯାବତ୍ ନାହିଁ ଜାନେ ।
ରାଜ୍ୟାଦି ସୁଖେର କଥା ସେ ଥାକୁ କଦୂରେ,
ମୋକ୍ଷସୁଖ ଅଲ୍ପମାନେ କୃଷ୍ଣ ଅନୁଚରେ ।
( ଚୈଃ ଭାଃ ଅନ୍ତ ୧୧ଶ ଅଧ୍ୟାୟ )

ଏତ ଗଲା ଧନୀମାନଙ୍କର କଥା । ଅତି ଦରିଦ୍ର ମୋଚାବିକା ଶ୍ରୀଧର ପୁଣି କିଣ କହି ଅଛନ୍ତି ଦେଖାଯାଉ । ମହା ପ୍ରକାଶ ସମୟରେ ମହାପ୍ରଭୁ ଶ୍ରୀଧରଙ୍କୁ ଡକାଇଲେ । ମହାପ୍ରଭୁ ଡକାଉଅଛନ୍ତି ଏହାଶୁଣି ଶ୍ରୀଧର ପ୍ରେମରେ ବିହ୍ୱଳ ; ଶ୍ରୀଧର ଯାଇ ମହାପ୍ରଭୁଙ୍କ ପାଦପଦ୍ମରେ ପ୍ରଣତ ହେଲେ ଓ ସ୍ତବ ପାଠ କଲେ । ମହାପ୍ରଭୁ ନିଜ ପ୍ରିୟ ଦାସ ଶ୍ରୀଧରଙ୍କ ଉପରେ ପରମ ସନ୍ତୁଷ୍ଟ ହୋଇ କହିଲେ“ ଶ୍ରୀଧର, କି ବର ମାଗୁଅଛ ମାଗ । ମୁଁ ତୁମ୍ଭଙ୍କୁ ଅଷ୍ଟସିଦ୍ଧି ଦେବାକୁ ପ୍ରସ୍ତୁତ ଅଛି” । ଶ୍ରୀଧର କହିଲେ“ ପ୍ରଭୋ ! ମୋତେ ଆଉ ଠକାଇ ପାରିବେ ନାହିଁ, ଅଷ୍ଟ ସିଦ୍ଧି ମୋର କି ହେବ” । ମହାପ୍ରଭୁ କହିଲେ” ଶ୍ରୀଧର ମୋର ଦର୍ଶନ ଲାଭ କି ବୃଥା ହେବ ? ମୁଁ ଯାଚୁଅଛି ତୁମ୍ଭଙ୍କୁ କିଛି ବର ନେବାକୁ ହେବ” । ତେତେବେଳେ ଶ୍ରୀଧର କହିଲେ, “ପ୍ରଭୋ ! ଯଦି ନିତାନ୍ତ ବର ଦେବେ ତେବେ ଯେଉଁ ବ୍ରାହ୍ମଣ ଯୁବକ ମୋ ସଙ୍ଗେ ପ୍ରେମ କଳହ ପୂର୍ବକ ମୋର ମୋଚା, କଦଳୀ ଓ କଦଳୀପତ୍ର ଛଡ଼ାଇ ନେଉଥିଲେ ସେ ମୋର ଜନ୍ମ ଜନ୍ମରେ ପ୍ରଭୁ ହେଉନ୍ତୁ ଓ ମୁଁ ଜନ୍ମ ଜନ୍ମରେ ତାଙ୍କର ଦାସ ହୁଏଁ । ଏହି ମହାତ୍ମା ଶ୍ରୀଧରଙ୍କ ଗୁଣ ବର୍ଣ୍ଣନ କାଳରେ ଶ୍ରୀଲ ବୃନ୍ଦାବନ ଦାସ କହି ଅଛନ୍ତି :—

ଖୋଲା ବେଚ଼ ଶ୍ରୀଧର ତାହାର ଏଇ ସାକ୍ଷୀ
ଭକ୍ତମାନ ନଲ ଅଷ୍ଟ ସିଦ୍ଧି କେ ଉପେକ୍ଷି ।
ଯତ ଦେଖ ବୈଷ୍ଣବେର ବ୍ୟବହାର ଦୁଃଖ
ନିଶ୍ଚୟ ଜାନିହ ସେଇ ପରାନନ୍ଦ ସୁଖ ।
[ ଚୈ; ଭ; ମଧ୍ୟ; ୯ ମ ଅଧ୍ୟାୟ ]

ଅତଏବ କୃଷ୍ଣଭକ୍ତିହିଁ ସାର । ସମ୍ବନ୍ଧ ଅଭିଧେୟ ପ୍ରୟୋଜନ ତତ୍ତ୍ୱ ବିଚାର କାଳରେ ମହାପ୍ରଭୁ ଶ୍ରୀ ସନାତନ ଗୋସ୍ୱାମୀଙ୍କୁ କହିଅଛନ୍ତି; "ସନାତନ ! ସର୍ବଶାସ୍ତ୍ରରେ ଏହି ସିଦ୍ଧାନ୍ତ ହୋଇଅଛି ଯେ ଭକ୍ତି ଦ୍ୱାରାହିଁ କୃଷ୍ଣପ୍ରାପ୍ତି ହୁଏ । ଯଥାଃ—

କୃଷ୍ଣଭକ୍ତି ଅଭିଧେୟ ସର୍ବଶାସ୍ତ୍ରେ କୟ
ଅତଏବ ମୁନିଗଣ କରିଅଛେ ନିଶ୍ଚୟ ।
[ ଚୈଃ ଚଃ ମଃ ୨୨ଶ ଅ ]"

ଜୀବ ନିତ୍ୟତ ସୁଖ ବାଞ୍ଛା କରେ । ସାମାନ୍ୟ କୀଟ ପତଙ୍ଗ ଠାରୁ ପଶୁ ପକ୍ଷୀ ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତେ ସୁଖ ପାଇଁ ଲାଳାୟିତ କିନ୍ତୁ ଅନ୍ୟଜୀବ ଜ୍ଞାନ ବିହୀନ ଅତଏବ ପ୍ରକୃତ ସୁଖ ଧାରଣାକରିବାରେ ଅଶକ୍ତ । ମନୁଷ୍ୟହିଁ କେବଳ ପ୍ରକୃତ ସୁଖ ଅବଧାରଣ କରିବାରେ ସକ୍ଷମ । ଏ ସଂସାରରେ ଯେତେ ପ୍ରକାର ସୁଖ ଅଛି ତାହା କ୍ଷଣିକ । ଅତଏବ ଆପାତତଃ ସୁଖ ସ୍ୱରୂପ ବୋଧହେଲେହେଁ ପ୍ରକୃତ ସୁଖ ନୁହେଁ । ଯେଉଁ ସୁଖ ଚିରକାଳ ସ୍ଥାୟୀ ସେହି ସୁଖହିଁ ପ୍ରକୃତ ସୁଖ ପଦବାଚ୍ୟ । ଲୋକ ବୁଦ୍ଧିମାନ୍ ହେଲେ ସେ ନିତ୍ୟସୁଖର ଅନୁଧାବନ କରେ, ଅତଏବ ସଂସାରରେ ସମସ୍ତ ଜୀବନରେ ସମସ୍ତ କାର୍ଯ୍ୟରେ ସେ ବୁଦ୍ଧିମାନ୍ବ୍ୟକ୍ତି ସେହି ଚିର ସୁଖ ଅନ୍ୱେଷଣରେ ବ୍ରତୀ ହୋଇ ଅଗ୍ରସରହୁଏ । ମନୁଷ୍ୟ ଜନ୍ମହୋଇ ପାଞ୍ଚବର୍ଷ ବୟସରେ ପଦାର୍ପଣ କଲେ ପିତା ମାତା ସନ୍ତାନଙ୍କୁ ବିଦ୍ୟାର୍ଜନରେ ନିଯୁକ୍ତ କରନ୍ତି । କିନ୍ତୁ କୃଷ୍ଣଭକ୍ତି ସେହି ବିଦ୍ୟାର୍ଜନର ମୂଳ ଉଦ୍ଦେଶ୍ୟ ରହିବା ବିଧେୟ । ବର୍ତ୍ତମାନ ସେ ପ୍ରଧାନତମ ଉଦ୍ଦେଶ୍ୟ କାର୍ଯ୍ୟତଃ ଅତି ଅଳ୍ପ ସ୍ଥାନରେ ସମ୍ମୁଖରେ ରଖା ଯିବାର ଦେଖା ଗଲେହେଁ ଯାହା ବିଧେୟ ମୁଁ ତାହା କହୁଅଛି, ଏହା ମୋର କପୋଳକଳ୍ପିତ କଥା

ନୁହେଁ । ଶ୍ରୀ ବୃନ୍ଦାବନ ଦାସ ଓ ଶ୍ରୀଳ କୃଷ୍ଣ ଦାସ ପ୍ରଭୃତ ମହାତ୍ମାଗଣ ଏ ବିଷୟରେ କଣ କହିଯାଇ ଅଛନ୍ତି ଆଲୋଚନା କରାଯାଉ ।

ଶ୍ରୀମନ୍ ମହାପ୍ରଭୁ ପୂର୍ବାଶ୍ରମରେ ବିଦ୍ୟାଗର୍ବରେ ମତ୍ତ ହୋଇ ନବ-ଦ୍ୱୀପରେ ବିଚରଣ କରୁଅଛନ୍ତି । ଭକ୍ତପ୍ରାଣ ଶ୍ରୀବାସ ମହାପ୍ରଭୁଙ୍କ କମନୀୟ ବପୁ ଦର୍ଶନ କରି ଓ ଅସୀମ ବୁଦ୍ଧିର ପରିଚୟ ପାଇ ସତତ ଚିନ୍ତା କରୁଅଛନ୍ତି, ଏ ସର୍ବାଙ୍ଗ ସୁନ୍ଦର ଯୁବକଟିର କିପରି କୃଷ୍ଣଭକ୍ତି ଉଦୟ ହେଉ । ଦିନେ ମହା-ପ୍ରଭୁ ଛାତ୍ରମାନଙ୍କ ସଙ୍ଗେ ନବଦ୍ୱୀପ ରାଜପଥରେ ଆସୁଅଛନ୍ତି, ପଥରେ ଶ୍ରୀ ବାସ ପଣ୍ଡିତଙ୍କ ସଙ୍ଗ ଦେଖା ହେଲା । ମହାପ୍ରଭୁ ବୟୋବୃଦ୍ଧ ଶ୍ରୀବାସ ପଣ୍ଡିତଙ୍କୁ ସତତ ମାନ୍ୟ କରୁଥିଲେ । ପଥରେ ଦେଖି ଈଷତ୍ ହାସ୍ୟ କରି ପ୍ରଣାମ କଲେ । ଶ୍ରୀବାସ ତାଙ୍କୁ କଲ୍ୟାଣ କରି ନିଜ ହୃଦୟର ଭାବ ଗୋପନ କରି ନ ପାରି କହିଲେ "ହେ ଉଦ୍ଧତଚୂଡ଼ାମଣି ! ତୁମ୍ଭେ ଦିବା ନିଶି ବିଦ୍ୟାଚର୍ଚ୍ଚାରେ ମଗ୍ନ ଅଛ, କିନ୍ତୁ ବଡ଼ ଦୁଃଖର ବିଷୟ ପ୍ରକୃତ ବିଦ୍ୟାର ଲେଶ ମାତ୍ର ଅନୁସ-ରଣ କରୁନାହଁ । ଏ ବୃଥା ବିଦ୍ୟା ଚର୍ଚ୍ଚାରେ କି ଲାଭ ହେବ ? ଏରୂପ ପଢ଼ିବା ଓ ପଢ଼ାଇବାଦ୍ୱାରା ତୁମ୍ଭର କାଳ ବୃଥାରେ ଅତିବାହିତ ହେଉଅଛି । ପଢ଼ିବାର ପ୍ରକୃତ ଉଦ୍ଦେଶ୍ୟ କୃଷ୍ଣ ଭକ୍ତି ଜାଣିବା । ସେ ଯଦି ନ ହେଲା ଏପରି ପଢ଼ିବାର କି ଫଳ ।

ଯଥା ।—

ହାସିୟା ଶ୍ରୀବାସ ବଲେ କହେ ଦେଖି ଶୁନି
କତି ଚଲିଅଛ ଉଦ୍ଧତେର ଚୂଡ଼ାମଣି ।
କୃଷ୍ଣ ନାହିଭଜିୟା କାଳକି କାର୍ଯ୍ୟେ ଗୋଙାଓ
ରାତ୍ରିଦିନ ନିରବଧି କେନେବା ପଢ଼ାଓ ।
ପଢ଼େ ଲୋକ କେନେ କୃଷ୍ଣଭକ୍ତି ଜାନିବାରେ
ସେ ଯଦି ନହିଲ ତବେ ବିଦ୍ୟାୟ କି କରେ ।

( ଚୈଃ ଭାଃ ଆଦି ୧୦ମ )

ଶ୍ରୀମନ୍ ମହାପ୍ରଭୁ ଦିଗ୍‌ବିଜୟୀପଣ୍ଡିତଙ୍କର ଗର୍ବ ଚୂର୍ଣ୍ଣ କରି ପୂର୍ଣ୍ଣକୃପା କରନ୍ତେ, ସେ ଦିଗ୍‌ବିଜୟୀ ପ୍ରଣତ ହୋଇ ମହାପ୍ରଭୁଙ୍କ ଶରଣାପନ୍ନ ହେଲେ ଓ ସଦୁପଦେଶ ଦେବାକୁ ପ୍ରାର୍ଥନା କଲେ । ମହାପ୍ରଭୁ ତାଙ୍କୁ ସଦୁପଦେଶ

ପ୍ରଦାନ କାଳରେ କହିଥିଲେ । "ମହାଶୟ, ଦିଗ୍‌ବିଜୟ କରିବା ପ୍ରକୃତ ବିଦ୍ୟାର କାର୍ଯ୍ୟ ନୁହେ । ବିଦ୍ୟା ହରିଭଜନ କରିବାର ଉପଦେଶ ପ୍ରଦାନ କରେ । ଏ ଦେହ ତ୍ୟାଗ କଲେ ଧନ ବା ପୌରୁଷ ସଙ୍ଗେ ଯାଏ କି ? ଯଥା-

ଦିଗ୍ ବିଜୟ କରିବ ବିଦ୍ୟାର କାର୍ଯ୍ୟ ନହେ
ଈଶ୍ୱର ଭଜିତେ ସେଇ ବିଦ୍ୟା ସତ୍ୟ କହେ ।
ମନଦ୍ୱିଅ ବୁଝ ଦେହ ଛାଡ଼ିଯା ଚଲିଲେ
ଧନ ବା ପୌରୁଷ ସଙ୍ଗେ କିଛୁ ନାହିଁ ଚଲେ ।

( ଚୈଃ ଭାଃ ଅଦି ୨୨ )

ଯଶ ବା ପୌରୁଷ ବିଦ୍ୟାର ଉତ୍କୃଷ୍ଟ ଫଳ ନୁହେ । ଯଦି ବିଦ୍ୟାଦ୍ୱାରା ଶ୍ରୀକୃଷ୍ଣ ଚରଣାରବିନ୍ଦରେ ଜୀବର ରତି ଉତ୍କୃଷ୍ଟ ହୁଏ ତେବେ ତାହାହିଁ ପ୍ରକୃତ ବିଦ୍ୟାର ଫଳ

ଯଥା ।— ସେଇ ସେ ବିଦ୍ୟାର ଫଳ ଜାନିହ ନିଶ୍ଚୟ
କୃଷ୍ଣ ପାଦପଦ୍ମେ ଯଦି ଚିତ୍ତବୃତ୍ତି ହୟ ।

[ ଚୈଃ ଭାଃ ଅଦି ୨୨ଶ ]

ଯେ ଶାସ୍ତ୍ର କୃଷ୍ଣଭକ୍ତି ପ୍ରଦାନ କରେ ତାହାହିଁ ପ୍ରକୃତ ଶାସ୍ତ୍ର ପଦବାଚ୍ୟ, ଅନ୍ୟ ଶାସ୍ତ୍ର ସାଂସାରିକ ବ୍ୟବହାରୋପଯୋଗୀ ହେଲେହେଁ ପରକାଳର ଉନ୍ନତି କଳ୍ପେ ବିବେଚିତ ହେଲେ ତାହା ଶାସ୍ତ୍ର ପଦବାଚ୍ୟ ନୁହେ । ମହାପ୍ରଭୁ ଗୟାଧାମରୁ ପ୍ରତ୍ୟାଗମନ ପରେ କୃଷ୍ଣପ୍ରେମରେ ବିହ୍ୱଳ ହେଲେ । କୌଣସି ସାଂସାରିକ କାର୍ଯ୍ୟ ତାଙ୍କୁ ଭଲ ଲାଗିଲା ନାହିଁ । ନବଦ୍ୱୀପ ସେ ସମୟରେ ବିଦ୍ୟା ଚର୍ଚ୍ଚାର ପ୍ରଧାନ ସ୍ଥାନ ଓ ସେଥି ମଧ୍ୟରେ ନିମାଇ ପଣ୍ଡିତ ବଡ଼ ଖ୍ୟାତ ନାମା ପଣ୍ଡିତ । ତାଙ୍କର ଛାତ୍ରମାନଙ୍କର ଅନ୍ୟ ପଣ୍ଡିତଙ୍କଠାରେ ମନ ତୃପ୍ତ ହେବ କେଉଁଠାରୁ ? ପ୍ରେମ ବିହ୍ୱଳ ନିମାଇଁ ପଣ୍ଡିତଙ୍କର ଆଉ ପାଠ ପଢ଼ାଇବାର ରୁଚି ନଥିଲେହେଁ ସହସ୍ର ସହସ୍ର ଛାତ୍ର ପାଠାଭ୍ୟାସ ନିମନ୍ତେ ତାଙ୍କଠାରେ ଆସି ଉପଗତ ହେଲେ । କିନ୍ତୁ ମହାପ୍ରଭୁ ସେମାନଙ୍କୁ ଶାସ୍ତ୍ରମର୍ମ ବୁଝାଇବାରେ ଅଶକ୍ତ ହୋଇ କେବଳ କୃଷ୍ଣ ନାମର ମାହାତ୍ମ୍ୟ ବ୍ୟାଖ୍ୟା କରିବାକୁ ଲାଗିଲେ । ପ୍ରତି ଧାତୁରେ, ପ୍ରତି ଅକ୍ଷରରେ ଶ୍ରୀକୃଷ୍ଣଙ୍କ ଗୁଣ ବର୍ଣ୍ଣନ

କହିବାକୁ ଲାଗିଲେ । ସେତେବେଳେ ପୃଥିବୀ ଆକାଶ ସମସ୍ତ ତାଙ୍କୁ କୃଷ୍ଣମୟ । ସେ ସେତେବେଳେ ଶିଷ୍ୟମାନଙ୍କୁ ବୁଝାଇ କହିଥିଲେ ଯେଉଁ ଶାସ୍ତ୍ର କୃଷ୍ଣଭକ୍ତି ଶିକ୍ଷା ପ୍ରଦାନ କରେ ତାହାହିଁ ଶାସ୍ତ୍ର ।

ଯଥା ।— ସେଇ ଶାସ୍ତ୍ର ସତ୍ୟ କୃଷ୍ଣଭକ୍ତି କହେ ଯାଯ୍ଁ
ଅନ୍ୟଥା ହଇଲେ ଶାସ୍ତ୍ର ପାଷଣ୍ଡ କହଯ୍ଁ ।

( ଚୈଃ ଭାଃ ମଧ୍ୟ ୧ମ )

ଶ୍ରୀଲ ଲୋଚନ ଦାସ ମଧ୍ୟ ମହାପ୍ରଭୁଙ୍କର ତଦ୍ରୂପ ଉକ୍ତି ଶ୍ରୀ ଚୈତନ୍ୟ ମଙ୍ଗଳରେ ଉଲ୍ଲେଖ କରିଅଛନ୍ତି ଯଥା ।

ଦଢ଼ ଏକ ସତ୍ୟ ବସ୍ତୁ କୃଷ୍ଣେର ଚରଣ
ସେଇ ବିଦ୍ୟା ଯାତେ ହୟ ଭକ୍ତିର ଲକ୍ଷଣ ।
ତାହା ବିନୁ ଅବିଦ୍ୟା ସକଳ ଶାସ୍ତ୍ରେ କହେ
ବୃଥା କୃଷ୍ଣ ଭକ୍ତି ବିନା କେହ ସଙ୍ଗୀ ନହେ ।

( ଚୈଃ ମଃ ମଧ୍ୟ )

କୃଷ୍ଣ ଭକ୍ତି ଯେପରି ପରାବିଦ୍ୟା, ସେହିପରି ପରମଧର୍ମ । କୃଷ୍ଣ ଭକ୍ତିଠାରୁ ଅନ୍ୟ କିଛି ଧର୍ମ ନାହିଁ । ବାଲ୍ୟକାଳରେ ନିମାଇ ବର୍ଜିତ ହାଣ୍ଡି ଉପରେ ବସିବାରୁ ତାଙ୍କ ଜନନୀ ଶୁଚିମତୀ ଶଚୀଦେବୀଙ୍କ ମନରେ ବଡ଼ କଷ୍ଟ ହେଲା । ସେ ନିମାଇଙ୍କୁ ସ୍ନେହ ଭର୍ତ୍ସନା କରି ସେପରି ଅନୀତ କାର୍ଯ୍ୟ କରିବାକୁ ବାରଣ କଲେ । ନିମାଇ ବାଳ ଚାପଲ୍ୟ ପ୍ରକାଶ କରି ଛଳରେ ମାତାଙ୍କଠାରେ ତତ୍ତ୍ୱଜ୍ଞାନ ପ୍ରକାଶ କରିଥିଲେ । ସେହି କାଳରେ ସେ କହିଥିଲେ "ଶ୍ରୀକୃଷ୍ଣଚରଣ ବିନା ଅନ୍ୟ କିଛି ଧର୍ମ ସଂସାରରେ ନାହିଁ । ଯଥା ଃ—

ଶ୍ରୀକୃଷ୍ଣ ଚରଣ ବିନା ନାହିଁ ଅନ୍ୟ ଧର୍ମ
ତା ବିନୁ ସକଳ ମିଛା କହିଲି ଏ ମର୍ମ ।

( ଚୈ ଃ ମ ଃ ଆଦି )

ଶାସ୍ତ୍ରରେ ଧର୍ମାଚରଣ ସମ୍ବନ୍ଧେ ନାନା ବିଧି ଓ ନିଷେଧ ଲିଖିତ ହୋଇଅଛି । କିନ୍ତୁ ସେ ସକଳ ବିଧି ଓ ନିଷେଧ ଭକ୍ତିର ଦାସ । ଭକ୍ତି ପ୍ରବଳ ହେଲେ ସେ ବିଧି ନିଷେଧ ମାନଙ୍କୁ ଅବାଧରେ ଅତିକ୍ରମ କରି ଆପେ ଅଗ୍ର-

ପ୍ରଥମ ପରିଚ୍ଛେଦ ।

ସର୍ବ ସ୍ୱଅନ୍ତ । ଶ୍ରୀମାନ୍ ମହାପ୍ରଭୁ ସ୍ନେହର ବଶ ହୋଇ ସୁକୃତଶୁକ୍ଳାମ୍ବରଙ୍କରେ ଖୁଦକଣା ଚର୍ବଣ କରିବାକୁ ଲାଗିଲେ । ମହାପ୍ରଭୁଙ୍କର ଏହି ସ୍ନେହବଶ୍ୟତାକୁ ଲକ୍ଷ୍ୟ କରି ଶ୍ରୀମନ୍ ବୃନ୍ଦାବନ ଦାସ କହିଅଛନ୍ତି ।

ଯତ ବଧି ନିଷେଧ ସକଳ ଭକ୍ତିଦାସ
ଇହାତେ ଯାହାର ଦୁଃଖ ସେଇ ଯାଯ୍ ନାଶ ।

( ଚୈ: ଭା: ମଧ୍ୟ ୧୬ ଶ )

ଏହି ସମସ୍ତରୁ ଉତ୍ତମରୂପେ ଦେଖାଯାଏ ଯେ କୃଷ୍ଣ ଭକ୍ତିହିଁ ସର୍ବଶ୍ରେଷ୍ଠ । ମନୁଷ୍ୟର ଯଦି କୃଷ୍ଣଭକ୍ତି ପ୍ରକାଶ ପାଏ ତେବେ ତାହାର ସମସ୍ତ ମଙ୍ଗଳ । ଯଦି କୃଷ୍ଣଭକ୍ତି ପ୍ରକାଶ ନ ପାଏ ତେବେ ଧନ ଐଶ୍ୱର୍ଯ୍ୟ ଦାର ପୁତ୍ର ସମସ୍ତଥାଇ ମଧ୍ୟ ତାହାର ସମସ୍ତ ଅମଙ୍ଗଳ । ମହାପ୍ରଭୁ ଏହା ଉତ୍ତମରୂପେ ଜୀବକୁ ବୁଝାଇ ଦେଇ ଯାଇ ଅଛନ୍ତି । ତାହାର ଗୋଟିଏ ଉଦାହରଣ ନିମ୍ନରେ ପ୍ରକାଶିତ ହେଲା ।

ମହାପ୍ରଭୁ ଦାମୋଦର ପଣ୍ଡିତଙ୍କୁ ମାତାଙ୍କ ନିକଟ ରହିବା ନିମନ୍ତେ ନବଦ୍ୱୀପକୁ ପଠାଇଥିଲେ । ଦାମୋଦର ପଣ୍ଡିତ ଶ୍ରୀପୁରୁଷୋତ୍ତମକୁ ଆସନ୍ତେ ମହାପ୍ରଭୁ ତାଙ୍କୁ ପଚାରିଲେ । " ଦାମୋଦର, ମାତାଙ୍କର କୃଷ୍ଣଭକ୍ତି ଅଛି ତ ? ପରମତପସ୍ୱୀ ନିରପେକ୍ଷ ଦାମୋଦର ସେଥିରେ ଉତ୍ତର କଲେ " ପ୍ରଭୋ, ମୋତେ ଏହା ପୁଣି ପଚାରୁ ଅଛନ୍ତି ? ଆପଣଙ୍କର ଯେ କୃଷ୍ଣଭକ୍ତି ସେ କାହା ଯୋଗୁଁ ? ଏକା ମାତାଙ୍କ ପ୍ରସାଦରୁହିଁ ଆପଣଙ୍କର ଏ ଅଦ୍ଭୁତ କୃଷ୍ଣଭକ୍ତି । ମାତା ମୂର୍ତ୍ତିମତୀ ଭକ୍ତି, ତାଙ୍କ କଥା କଣ ମୋତେ ପଚାରୁଛନ୍ତି ? " ମହାପ୍ରଭୁ ଯେଉଁ ନିମିତ୍ତ ପ୍ରଶ୍ନ କରିଥିଲେ ତାହାର ଉଚିତ ଉତ୍ତର ପାଇଲେ । ଲୋକେ ନିଜ ଜନର କୁଶଳ ବାର୍ତ୍ତା ପ୍ରଶ୍ନ କରନ୍ତି । କିନ୍ତୁ ପ୍ରକୃତ କୁଶଳ ଶବ୍ଦର ଅର୍ଥ କୃଷ୍ଣଭକ୍ତି ଏହା ବୁଝାଇବା ପାଇଁ ମହାପ୍ରଭୁ "ସମସ୍ତ କୁଶଳତ" ଏହା ନ ପଚାରି " କୃଷ୍ଣଭକ୍ତି ଅଛି ନା " ଏହା ପଚାରିଲେ ।

ଯଥା—କୁଶଳ ଶବ୍ଦେର ଅର୍ଥ ବ୍ୟକ୍ତ କରିବାରେ
ଭକ୍ତିଅଛେ କରିବାର୍ତ୍ତା ଲଯ୍ଯେନ ସବାରେ ।

ଭକ୍ତିଯୋଗ ଥାକେ ତବେ ସକଲ କୁଶଲ
ଭକ୍ତିବିନା ରାଜା ହଇଲେଓ ଅମଙ୍ଗଲ ।
ଧନ ଯଶୈଶ୍ୱର୍ଯ୍ୟ ଯାର ଅଛୟେ ସକଲ
ଭକ୍ତି ଯାର ନାଇ ତାର ସବ ଅମଙ୍ଗଲ ।
ଅଦ୍ୟ ଖାଦ୍ୟ ନାହିଁ ଯାର ଦାରିଦ୍ର୍ୟେର ଅନ୍ତ
ବିଷ୍ଣୁଭକ୍ତି ଥାକଲେ ସେଇ ଧନବନ୍ତ ।

ଅତଏବ ଏହା ନିଶ୍ଚିତ ଯେ କୃଷ୍ଣଭକ୍ତିହିଁ ସକଳର ସାର । କୃଷ୍ଣଭକ୍ତି ସାଧନରେ କୃଷ୍ଣଲଭ ହୁଏ । ଭକ୍ତି ସାଧନା ଦ୍ୱାରା ଜୀବ ଏ ନଶ୍ୱର ଦେହ ତ୍ୟାଗ କରି ଚିଦାନନ୍ଦ ନିତ୍ୟ ଦେହରେ କୃଷ୍ଣପାର୍ଷଦ ହୋଇ ନିତ୍ୟ ଧାମରେ ବାସ କରେ ଓ ସେବା ସୁଖ ଅନୁଭବ କରେ । ଅତଏବ କୃଷ୍ଣ ତାହାର ନିଜର ହୁଅନ୍ତି ଓ ସେ କୃଷ୍ଣଙ୍କର ନିଜ ଜନ ହୁଏ । ଯଥା—

କୃଷ୍ଣବଲି କାନ୍ଦିଲେ ଯେ କୃଷ୍ଣ ନାଥ ମିଲେ
ଧନେ କୁଲେ କିଛୁ ନହେ କୃଷ୍ଣ ନା ଭଜିଲେ ।
( ଚୈଃ ଭାଃ ମଧ୍ୟ ୨୪ଶ )

ଭଗବାନଙ୍କର ନାମ ଭଗବାନଙ୍କଠାରୁ ଭିନ୍ନ ନୁହେ । ତାଙ୍କଠାରେ ନାମ ନାମୀ ଅଭିନ୍ନ । ଅତଏବ କୃଷ୍ଣ ବୋଲି କାନ୍ଦିଲେ କୃଷ୍ଣ ଆସି ମିଳନ୍ତି ।

ଶ୍ରୀମନ୍ଧ୍ରୁବ ବିଲ୍ୱମଙ୍ଗଳ ଏମାନେ କୃଷ୍ଣ ବୋଲି କ୍ରନ୍ଦନ କରିବାରୁ କୃଷ୍ଣ ଆସି ଏମାନଙ୍କୁ ଦର୍ଶନ ଦେଇଥିଲେ । ଭକ୍ତିଛଡ଼ା । ଅନ୍ୟ ସାଧନରେ କୃଷ୍ଣ କଦାପି ମିଳନ୍ତି ନାହିଁ । ଯଥା—

କୃଷ୍ଣ ଭକ୍ତି ହୟ ଅଭିଧେୟ ପ୍ରଧାନ;
ଭକ୍ତି ମୁଖ ନିରୀକ୍ଷକ କର୍ମ ଯୋଗଜ୍ଞାନ ।
ଏଇ ସବ ସାଧନେର ଅତି ତୁଚ୍ଛ ଫଲ
କୃଷ୍ଣ ଭକ୍ତି ବିନା କୃଷ୍ଣ ଦିତେ ନାହିଁ ବଲ । (ଚୈଃ ଚଃ ମଧ୍ୟ ୨୨ଶ)
ଧନେ କୁଲେ ପାଣ୍ଡିତ୍ୟେ ଚୈତନ୍ୟ ନାହିଁ ପାଇ
କେବଲ ଭକ୍ତିର ବଶ ଚୈତନ୍ୟ ଗୋସାଇଁ (ଚୈଃଭାଃମଧ୍ୟ୧୦ମ)
ଧନେ କୁଲେ ପ୍ରତିଷ୍ଠାୟ କୃଷ୍ଣ ନାହିଁ ପାଇ
କେବଲ ଭକ୍ତିର ବଶ ଚୈତନ୍ୟ ଗୋସାଇଁ (ଚୈଃଭାଃମଧ୍ୟ୧୦ମ

ଧନେ ଜନେ ପାଣ୍ଡିତ୍ୟେ ଚୈତନ୍ୟ ନାହିଁ ପାଇ
ଭକ୍ତିର ସେ ବଶ କୃଷ୍ଣ ସବ ଶାସ୍ତ୍ରେ ଗାଇ (ଚୈଃ ଭାଃ ମଧ୍ୟ ୨୫ଶ)
ଅଲ୍ପଭାଗ୍ୟେ ଶ୍ରୀଚୈତନ୍ୟ ଗୋଷ୍ଠୀ ନାହିଁ ପାଇ
କେବଳ ଭକ୍ତିର ବଶ ଚୈତନ୍ୟ ଗୋସାଇଁ (ଚୈଃଭାଃଅନ୍ତ୍ୟ୯ମ)

ଏହିରୂପ ନାନା ସ୍ଥାନରେ ଶ୍ରୀଲ ବୃନ୍ଦାବନ ଦାସ ଦେଖାଇ ଅଛନ୍ତି ଯେ ଶ୍ରୀକୃଷ୍ଣ ବା ଶ୍ରୀକୃଷ୍ଣଚୈତନ୍ୟ କେବଳ ଭକ୍ତିର ବଶ। ଶ୍ରୀକୃଷ୍ଣଙ୍କୁ ପାଇବାର ଏକମାତ୍ର ଉପାୟ ଭକ୍ତି । ସେ ଭକ୍ତିରେ ବଶ ହୋଇ ଆପଣାକୁ ଭକ୍ତଠାରେ ଅର୍ପଣ କରନ୍ତି । ପରମ ସ୍ୱତନ୍ତ୍ର ହେଲେ ମଧ୍ୟ ସେ ଭକ୍ତାଧୀନ । ଭକ୍ତ ଭକ୍ତି-ବଳରେ ତାଙ୍କୁ ନଚାଇ ପାରେ । ଜୀବର ଏହାଠାରୁ ଅଧିକ ଉଚ୍ଚ ପ୍ରାପ୍ତବ୍ୟ କି ଅଛି ? ଯାହାଙ୍କର ଅଂଶ ଦ୍ୱାରା କୋଟି ଜଗତ ସୃଷ୍ଟି ସ୍ଥିତି ପାଳନ କାର୍ଯ୍ୟ ସମ୍ପାଦିତ ହେଉଅଛି, ଯାହାଙ୍କର ଅଂଶ ମୁହୂର୍ତ୍ତରେ କୋଟୀ ବ୍ରହ୍ମାଣ୍ଡ ସୃଷ୍ଟି କରିଅଛନ୍ତି ଓ ବିନାଶ କରୁଅଛନ୍ତି, ସେହି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ନିଜଭକ୍ତ ବାତ୍ସଲ୍ୟ ଗୁଣରେ ନିଜ ସ୍ୱାତନ୍ତ୍ର୍ୟ ପରିତ୍ୟାଗ ପୂର୍ବକ ଭକ୍ତର ଅଧୀନ ହେଲେ ଓ ଭକ୍ତ ଇଚ୍ଛାନୁସରଣ କରି କାର୍ଯ୍ୟ କଲେ । ଅହୋ ! ଭକ୍ତିର କି ଅପାର ମହିମା । ଜୀବରେ ଏ ଶକ୍ତି ଅନ୍ତର୍ନିହିତ ଥାଇଁ ଥାଉଁ, ଆମ୍ଭେମାନେ ତାହା ଅନ୍ୱେଷଣ ନ କରି, ସେ ଅସୀମ ଶକ୍ତିକୁ ଜାଗରିତ ନ କରି, ଚିର ନିଦ୍ରାରେ ଅଭିଭୂତ ହୋଇ ରହିଅଛୁ , ଏହାଠାରୁ ଅଧିକ ଶୋଚନୀୟ ବିଷୟ ଅଉ କି ହୋଇପାରେ !



# ଭକ୍ତ ।

## ଦ୍ୱିତୀୟ ପରିଚ୍ଛେଦ ।

ଶ୍ରୀକୃଷ୍ଣ ଚରଣାରବିନ୍ଦରେ କାହାର ଭକ୍ତି ଉଦୟ ହେଲେ ବିଷୟ ବାସନା ତାଙ୍କ ମନରୁ ତିରୋହିତ ହୋଇଯାଏ । ଅନେକ ପ୍ରବେଶରେ ଅନ୍ଧକାର ଆଉ ରହି ପାରେ ନାହିଁ । ଏହି ଅଳ୍ପଦିନ ତଳେ ପ୍ରସିଦ୍ଧ ଲାଲବାବୁଙ୍କ କଥା ବିଶେଷ ଉଲ୍ଲେଖର ଯୋଗ୍ୟ । ଶ୍ରୀବୃନ୍ଦାବନରେ ଶ୍ରୀକୃଷ୍ଣଚନ୍ଦ୍ର ବିଗ୍ରହଙ୍କ ରାଜ ସେବା ଯେଉଁ ମହାତ୍ମାଙ୍କର କାର୍ଯ୍ୟ, ସେ ପଥର ଭିଖାରୀ ହୋଇ ବୃକ୍ଷତଳରେ ବାସ କରି ଶ୍ରୀ ବୃନ୍ଦାବନରେ ମାଧୁକରୀ ବୃତ୍ତି ଅବଲମ୍ବନ କରିଥିଲେ ମୋର ଏହି ପାପ ଚକ୍ଷୁରେ ଏକ ମହାପୁରୁଷଙ୍କ ଦର୍ଶନ ଲାଭ ଘଟିଥିଲା । ସେ ପ୍ରସିଦ୍ଧ ନାମ ଭାରତରେ ବିଖ୍ୟାତ । ପ୍ରାୟ ଅନେକେ ସେହି ରାଜର୍ଷିରାୟ ବନମାଳୀ ରାୟ ବାହାଦୁରଙ୍କ ନାମ ଶୁଣିଥିବେ । ସେ ମହାସମ୍ପତ୍ତିଶାଳୀ ହୋଇ ମଧ୍ୟ କିରୂପ ନିର୍ଜନରେ ଜୀବନ ଯାତ୍ରା ନିର୍ବାହ କରୁଥିଲେ, ଯେଉଁମାନେ ତାଙ୍କ ଅଠରେ ମାତ୍ର ଦର୍ଶନ କରିଅଛନ୍ତି, ସେମାନେ ବୁଝିଅଛନ୍ତି । ଶ୍ରୀ ରାଧାବିନୋଦଙ୍କର ସେବାହିଁ ତାଙ୍କର ଜୀବନର ସମସ୍ତ ସୁଖ; ତଦ୍ ବ୍ୟତୀତ ସାଂସାରିକ ସୁଖାଭିଳାଷ ତାଙ୍କୁ ସ୍ପର୍ଶ କରି ନ ଥିଲା । ଉତ୍କଳରେ କେନ୍ଦ୍ରାପଡ଼ାର ଭକ୍ତ ପ୍ରବର ଶ୍ରୀରାଧାଶ୍ୟାମ ନରେନ୍ଦ୍ର ଓ ତାଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀଜଗନ୍ନାଥ ନରେନ୍ଦ୍ର ଏମାନେ ତାଙ୍କର ସମଗ୍ର ଐଶ୍ୱର୍ଯ୍ୟ ଶ୍ରୀ ରାଧାଗୋବିନ୍ଦ ସେବାରେ ଏବଂ ବୈଷ୍ଣବ ସେବାରେ ବ୍ୟୟ କରି ଅତି ଦୀନ ଭାବରେ ଦିନ ଯାପନ କରୁଥିଲେ । କୃଷ୍ଣଭକ୍ତି ଉଦୟ ହେଲେ, ମନୁଷ୍ୟର ସେହି ଅବସ୍ଥା ଘଟିଥାଏ । ପ୍ରସିଦ୍ଧ ଶ୍ରୀମନ୍ ରଘୁନାଥ ଦାସଙ୍କ ବିଷୟ ବାସନା ପରିତ୍ୟାଗ ସମ୍ବନ୍ଧରେ ଲେଖିବାକୁ ଯାଇ ଶ୍ରୀଳ କବିରାଜ ଗୋସ୍ୱାମୀ ଲେଖିଅଛନ୍ତି ।

> କୃଷ୍ଣପାଦ ପଦ୍ମଗନ୍ଧ ଯେଇ ଜନ ପାୟ
> ବ୍ରହ୍ମଲୋକ ଆଦି ସୁଖ ତାରେ ନାହିଁ ଭାୟ
>
> [ ଚୈଃ ଚଃ ଅନ୍ତ୍ୟ ୬ଷ୍ଠ ]

ପୂର୍ବ ପରିଚ୍ଛେଦରେ ଏହି ଗୋସ୍ୱାମୀଙ୍କର କିଛି ପରିଚୟ ଦେଇଥିବାରୁ ପୁନର୍ବାର ଏଠାରେ ଅଉ ବିଶେଷ ଉଲ୍ଲେଖ କଲି ନାହିଁ । ଭକ୍ତ ସତତ କୃଷ୍ଣପ୍ରେମରେ ବିହ୍ୱଳ, ଭକ୍ତ ଚରିତ ବୁଝିବା ସହଜ ନୁହେ । ସାଧାରଣ ଚକ୍ଷୁରେ ଭକ୍ତ ଏକ ପ୍ରକାର ପାଗଳ ମଧ୍ୟରେ ଗଣ୍ୟ । ତାହାଙ୍କର କ୍ରିୟା, ଭାବ ଓ ମୁଦ୍ରା, ବିଜ୍ଞ ମଧ୍ୟ ବୁଝି ପାରନ୍ତି ନାହିଁ । ତେଣୁ ଶ୍ରୀଲ କୃଷ୍ଣ ଦାସ କବିରାଜ କହି ଅଛନ୍ତି, ସ୍ୱୟଂ ଭଗବାନ୍ ଭକ୍ତଙ୍କର ସମ୍ୟକ୍ ଉପଲବ୍ଧି କରି ନ ପାରି ଭକ୍ତଭାବରେ ଅବତୀର୍ଣ୍ଣ ହୋଇଥିଲେ । ଯଥା:—

ଭକ୍ତେର ପ୍ରେମବିକାର ଦେଖି କୃଷ୍ଣେର ଚମତ୍କାର<br>
କୃଷ୍ଣ ଯାର ନା ପାୟ ଅନ୍ତ, କେବା ଛାର ଆର ।

ଭକ୍ତ ପ୍ରେମେର ଯତ ଦଶା ଯେ ଗତି ପ୍ରକାର<br>
ଯତ ଦୁଃଖ ଯତ ସୁଖ ଯତେକ ବିକାର ।

କୃଷ୍ଣ ତାହା ସମ୍ୟକ୍ ନା ପାରେ ଜାନିତେ<br>
ଭକ୍ତଭାବ ଅଙ୍ଗୀକରେ ତାହା ଆସ୍ୱାଦିତେ ।

(ଚୈଃ ଚଃ ଅନ୍ତ୍ୟ ୧୮ଶ)

ଉକ୍ତରୂପ ସ୍ୱଭାବାପନ୍ନ ଯେ ଭକ୍ତ, ସେମାନେ ଯେ କେବଳ ଉଚ୍ଚକୁଳରେ ଜନ୍ମଗ୍ରହଣ କରି ଥାଆନ୍ତି ଏମନ୍ତ ନୁହେ । କି ଉଚ୍ଚକୁଳ, କି ନୀଚକୁଳ, କି ଧନୀ କି ନିର୍ଦ୍ଧନ ସର୍ବତ୍ର ଭକ୍ତଦୃଷ୍ଟିଗୋଚର ହୁଅନ୍ତି । ଶ୍ରୀଲ ସନାତନ ଗୋସ୍ୱାମୀ ବ୍ରାହ୍ମଣ କୁଳରେ ଜାତ ହୋଇ ସୁଦ୍ଧା ଆପଣାକୁ ସତତ ଘୃଣ୍ୟ ଓ ଅସ୍ପୃଶ୍ୟ ମନେ କରୁଥିଲେ ଏବଂ ସେହି ଦୀନତାର ବଶବର୍ତ୍ତୀ ହୋଇ ଏକ ସମୟରେ ସେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆସି ଶ୍ରୀ ଜଗନ୍ନାଥଙ୍କ ରଥଚକ୍ର ତଳେ ପ୍ରାଣ ବିସର୍ଜ୍ଜନ କରିବାର ସଂକଳ୍ପ କରିଥିଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ତାଙ୍କର ସେ ଅଭିପ୍ରାୟ ବୁଝିପାରି ତାଙ୍କୁ ଉକ୍ତ ଉଦର୍ଯ୍ୟ ବାସନା ପରିତ୍ୟାଗ କରିବାକୁ ଉପଦେଶ ଦେଇ କହିଥିଲେ, "ସନାତନ, ନୀଚଜାତି କୃଷ୍ଣଭଜନର ଅଯୋଗ୍ୟ ନୁହେ ଏବଂ ସତ୍‌କୁଳ ବିପ୍ର କେବଳ ସତ୍‌କୁଳରେ ଜନ୍ମ ହେତୁ ଯେ ଭଜନାଧିକାରୀ ହୁଅନ୍ତି ଏରୂପ ମନେ କର ନାହିଁ । ଯେ କୃଷ୍ଣ ଭଜନକରେ ସେ ପ୍ରକୃତ ବଡ଼ ଓ ଯେ ଭଜନ ନ କରେ ସେ ଧନୀ ଓ ଜାତିଶ୍ରେଷ୍ଠ ହେଲେ ମଧ୍ୟ ହୀନ" । ଯଥାଃ—

ନୀଚ ଜାତି ନହେଁ କୃଷ୍ଣ ଭଜନେ ଅଯୋଗ୍ୟ
ସତ୍‌କୁଳ ବିପ୍ର ନହେ ଭଜନରେ ଯୋଗ୍ୟ ।
ଯେଇ ଭଜେ ସେଇ ବଡ, ଅଭକ୍ତ ହୀନ ଛାର
କୃଷ୍ଣ ଭଜନେ ନାହିଁ ଜାତି କୁଳାଦି ବିଚାର ।
ଦୀନେରେ ଅଧିକ ଦୟା, କରେ ଭଗବାନ
କୁଳୀନ ପଣ୍ଡିତ ଧନୀର ବଡ଼ ଅଭିମାନ ।
( ଚୈଃ ଚଃ ଅନ୍ତ୍ୟ ୪ର୍ଥ )

ଏହି ଯେ ଭକ୍ତ ଏମାନେ ପ୍ରଧାନତଃ କନିଷ୍ଠ, ମଧ୍ୟମ ଓ ଉତ୍ତମ ତିନି ଶ୍ରେଣୀରେ ବିଭକ୍ତ । ଭକ୍ତିପ୍ରବର୍ତ୍ତକ ମହାପ୍ରଭୁ ସ୍ୱୟଂ ଏହି ବିଭାଗ କଥା ଶ୍ରୀ ସନାତନଙ୍କୁ କାଶୀଧାମରେ ଭକ୍ତିର ସାଧନତତ୍ତ୍ୱ ଶିକ୍ଷା ଦେବା କାଳରେ କହି-ଥିଲେ । ଯଥାଃ—

ଶ୍ରଦ୍ଧାବାନ୍ ଜନ ହୟ ଭକ୍ତି ଅଧିକାରୀ
ଉତ୍ତମ, ମଧ୍ୟମ, କନିଷ୍ଠ ଶ୍ରଦ୍ଧା ଅନୁସାରି ।
( ଚୈଃ ଚଃ ମଧ୍ୟ ୨୨ଶ ଅ । )

ସେଥିମଧ୍ୟରେ ଭକ୍ତି ବିଷୟରେ ଯାହାର କୋମଳ ଶ୍ରଦ୍ଧା ଜାତ ହୋଇଅଛି ସେ କନିଷ୍ଠ । ଯଥାଃ—

ଯାହାର କୋମଳ ଶ୍ରଦ୍ଧା ସେ କନିଷ୍ଠ ଜନ ।
( ଚୈଃ ଚଃ ମଧ୍ୟ ୨୨ଶ ଅ )

ଭକ୍ତି ଉଦୟ ହେଲେ ଲୋକର କୃଷ୍ଣ କଥା ଶୁଣିବାର ରୁଚି ଜାତ ହୁଏ । ଯାହାର ଏମନ୍ତ ରୁଚି ଜନ୍ମେ ସେ ନିଶ୍ଚୟ ଭାଗ୍ୟବାନ୍ । ଅଳ୍ପ ଭାଗ୍ୟରେ [redacted] କଥା ଶ୍ରବଣରେ ରୁଚି ଜନ୍ମେ ନାହିଁ । ଯଥାଃ—

ଯାର କୃଷ୍ଣ କଥାୟ ରୁଚି ସେଇ ଭାଗ୍ୟବାନ୍ ।
( ଚୈଃ ଚଃ ଅନ୍ତ୍ୟ ୫ମ ଅ )

ଏ ଉକ୍ତି ସ୍ୱୟଂ ମହାପ୍ରଭୁ ବ୍ୟବହାର କରି ଅଛନ୍ତି । ଏହି ପ୍ରକାର ରୁଚି ଜାତ ମାତ୍ର ମନୁଷ୍ୟ କନିଷ୍ଠ ଭକ୍ତ ମଧ୍ୟରେ ପରିଗଣିତ ହୁଏ । ଯେଉଁ ଭକ୍ତମାନେ ଶାସ୍ତ୍ର ଯୁକ୍ତିରେ ନିପୁଣ ନୁହନ୍ତି ଅଥଚ କୃଷ୍ଣ ଓ ବୈଷ୍ଣବରେ ଦୃଢ଼ ବିଶ୍ୱାସ କରନ୍ତି ସେମାନେ ମଧ୍ୟମ ଶ୍ରେଣୀର ଭକ୍ତ ବୋଲି ପରିଗଣିତ ।

ଯଥାଃ— ଶାସ୍ତ୍ରଯୁକ୍ତି ନାହିଁ ଜାନେ ଦୃଢ଼ ଶ୍ରଦ୍ଧାବାନ୍
ମଧ୍ୟମ ଅଧିକାରୀ ସେହି ମହା ଭାଗ୍ୟବାନ୍ ।
( ଚୈଃ ଚଃ ମଧ୍ୟ ୨୨ଶ ଅ )

ମହାପ୍ରଭୁ ଏହି ମଧ୍ୟମ ଶ୍ରେଣୀ ଭକ୍ତଙ୍କୁ ମହାଭାଗ୍ୟବାନ୍ କହୁଅଛନ୍ତି । ପ୍ରକୃତରେ ଏମାନେ ମହାଭାଗ୍ୟବାନ୍ ଯେହେତୁ ଏମାନଙ୍କର ଦୃଢ଼ ଶ୍ରଦ୍ଧା ଜାତ ହୋଇଅଛି । ଏ ସୌଭାଗ୍ୟ ଅତି ଅଳ୍ପ ଲୋକଙ୍କର ଘଟିଥାଏ । ଯେଉଁ ଭକ୍ତଗଣ ଶାସ୍ତ୍ରଜ୍ଞ, ଏବଂ କୃଷ୍ଣ ବୈଷ୍ଣବଙ୍କଠାରେ ଯେଉଁମାନଙ୍କର ସୁଦୃଢ଼ ବିଶ୍ୱାସ ସେମାନେ ଉତ୍ତମ ଭକ୍ତ ମଧ୍ୟରେ ପରିଗଣିତ । ଯଥାଃ—

ଶାସ୍ତ୍ରଯୁକ୍ତି ସୁନିପୁଣ ଦୃଢ଼ଶ୍ରଦ୍ଧା ଯାଁର
ଉତ୍ତମ ଅଧିକାରୀ ତହିଁ ତାରୟେ ସଂସାର ।
( ଚୈଃ ଚଃ ମଧ୍ୟ ୨୨ଶଅ )

ଅଧିକନ୍ତୁ ଏମାନେତ କୃଷ୍ଣପ୍ରେମ ଲଭ କରି ନିତ୍ୟଧାମକୁ ଯାଆନ୍ତି । ଏମାନେ ପୁଣ ସଂସାର ଉଦ୍ଧାର କରନ୍ତି । କୁଲୀନ ଗ୍ରାମବାସୀ ଶ୍ରୀଲ ସତ୍ୟ-ରାଜଖାନ୍ ଶ୍ରୀ ପୁରୁଷୋତ୍ତମରେ ମହାପ୍ରଭୁଙ୍କୁ ପଚାରିଲେ, "ପ୍ରଭୋ ! ଆପଣତ ବୈଷ୍ଣବ ସେବାର ଉପଦେଶ ଦେଉ ଅଛନ୍ତି । ଆମ୍ଭେମାନେ ଅଧମ-ଜନ, ବୈଷ୍ଣବ ଚିହ୍ନୁଁ କପରି । କୃପାକରି ବୈଷ୍ଣବର ସାମାନ୍ୟ ଲକ୍ଷଣ ଆମ୍ଭମାନଙ୍କୁ ଶ୍ରୀମୁଖରେ ଆଜ୍ଞା କରନ୍ତୁ" । ମହାପ୍ରଭୁ ଜାଣନ୍ତି ସତ୍ୟରାଜ ଓ ରାମାନନ୍ଦ ଏମାନେ ଉତ୍ତମ ଅଧିକାରୀ ଓ ବୈଷ୍ଣବର ଲକ୍ଷଣ ଏମାନଙ୍କୁ ଉତ୍ତମରୂପେ ଜଣା । ଜାଣି ସୁଦ୍ଧା ଯଦି ମୋ ମୁଖରୁ ଶୁଣିବା ପାଇଁ ଏମାନେ ପଚାରୁଅଛନ୍ତି ତେବେ ଏମାନଙ୍କୁ କହେ । ଏହା ଭାବି ମହାପ୍ରଭୁ ଈଷତ୍ ହାସ୍ୟ ପୂର୍ବକ ସଂକ୍ଷେପରେ କହିଲେ "ଯେଉଁଜନ ଥରେ ମାତ୍ର କୃଷ୍ଣନାମ କୀର୍ତ୍ତନ କରନ୍ତି ସେ ବୈଷ୍ଣବ । ତାହାଙ୍କର ପଦସେବା କରିବା ଉଚିତ ।

ଯଥାଃ— ପ୍ରଭୁ କହେ ଯାର ମୁଖେ ଶୁନି ଏକବାର
କୃଷ୍ଣନାମ ସେଇ ପୂଜ୍ୟ ଶ୍ରେଷ୍ଠ ସବାକାର ।
ଏକ କୃଷ୍ଣ ନାମେ କରେ ସର୍ବ ପାପକ୍ଷୟ
ନବବିଧ ଭକ୍ତିପୂର୍ଣ୍ଣ ନାମ ହୈତେ ହୟ ।

ଦୀକ୍ଷା ପୁରଶ୍ଚର୍ଯ୍ୟା ବିଧି ଅପେକ୍ଷା ନା କରେ
ଜିହ୍ୱାସ୍ପର୍ଶେ ଆଚଣ୍ଡାଳେ ସବାରେ ଉଦ୍ଧାରେ ।
ଅନୁଷଙ୍ଗ ଫଳକରେ ସଂସାରେର କ୍ଷୟ
ଚିତ୍ତ ଆକର୍ଷିୟା କରେ କୃଷ୍ଣ ପ୍ରେମୋଦୟ ।
ଅତଏବ ଯାର ମୁଖେ ଏକ କୃଷ୍ଣନାମ
ସେଇତ ବୈଷ୍ଣବ ତାର କରିହ ସମ୍ମାନ ।

( ଚୈ: ଚ: ମଧ୍ୟ ୧୫ ଶ ଅ )

ଏ ମହାପ୍ରଭୁଙ୍କର ' ଶ୍ରୀମୁଖର ଉକ୍ତି । ଏଥିରେ ମର୍ମ ଗ୍ରହଣରେ ଅସମର୍ଥ ହୋଇ ନାନାରୂପ ତର୍କ ଉଠାଇବା ଆମ୍ଭମାନଙ୍କର ଅନୁଚିତ ! ବିଶ୍ୱାସ ପୂର୍ବକ ଶ୍ରୀମନ୍ ମହାପ୍ରଭୁଙ୍କର ଚରଣ ଚିନ୍ତା କଲେ, ଏହାର ପ୍ରକୃତ ମର୍ମ ହୃଦୟରେ ଅବଶ୍ୟ ସ୍ଫୁର୍ତ୍ତି ପାଇବ ।

କୁଲୀନ ଗ୍ରାମବାସୀ ସତ୍ୟରାଜ ଖାନ ତତ୍ପରବର୍ଷ ମହାପ୍ରଭୁଙ୍କଠାରୁ, ଶ୍ରୀ ପୁରୁଷୋତ୍ତମରୁ ବିଦାୟକାଳରେ ପୁନର୍ବାର ମହାପ୍ରଭୁଙ୍କୁ ପଚାରିଥିଲେ, "ପ୍ରଭୋ ! ମୋର କି କର୍ତ୍ତବ୍ୟ, ଶ୍ରୀମୁଖରେ ଆଜ୍ଞା କରନ୍ତୁ ।" ମହାପ୍ରଭୁ କହିଲେ, "ତୁମ୍ଭେ ବୈଷ୍ଣବର ସେବା କର ଏବଂ ହରିନାମ ସଂକୀର୍ତ୍ତନ କର । ଶ୍ରୀକୃଷ୍ଣ ଚରଣାରବିନ୍ଦ ଅଚିରେ ଲାଭ ହେବ" । ସେଥିରେ ସେ ପଚାରିଲେ, "ମୁଁ ବୈଷ୍ଣବ ଚିହ୍ନିବି କିପରି ?" ତେତେବେଳେ ମହାପ୍ରଭୁ ଈଷତ୍ ହାସ୍ୟ ପୂର୍ବକ କହିଲେ, "ଯେଉଁ ବ୍ୟକ୍ତି ନିରନ୍ତର କୃଷ୍ଣ ନାମ ମୁଖରେ କୀର୍ତ୍ତନ କରେ ସେ ବୈଷ୍ଣବ । ତାହାଙ୍କର ଚରଣସେବା କର ।" ଏ ଦ୍ୱିତୀୟ ବର୍ଷର ଉତ୍ତର ।

ଯଥା—କୃଷ୍ଣ ନାମ ନିରନ୍ତର ଯାହାର ବଦନେ,
ସେ ବୈଷ୍ଣବଶ୍ରେଷ୍ଠ ଭଜ ତାହାର ଚରଣେ ।

[ ଚୈ: ଚ: ମଧ୍ୟ ୧୬ ପର ]

ଏଥିରୁ ବୋଧ ହୋଉଅଛି ପ୍ରଥମବର୍ଷ ମହାପ୍ରଭୁ କନିଷ୍ଠ ଅଧିକାରୀ ବୈଷ୍ଣବଙ୍କର ଲକ୍ଷଣ ବ୍ୟକ୍ତ କରିଥିଲେ । ଏଥର ମଧ୍ୟମ ଅଧିକାରୀଙ୍କୁ ଲକ୍ଷ୍ୟ କରି ବୁଝାଇଲେ । ତତ୍ପରବର୍ଷ ସତ୍ୟରାଜଖାନ୍ ପୁନର୍ବାର ସେହିରୂପ

ପ୍ରଶ୍ନ କରନ୍ତେ, ମହାପ୍ରଭୁ ଉତ୍ତମଅଧିକାରୀ ବୈଷ୍ଣବଙ୍କୁ ଲକ୍ଷ୍ୟକରି କହିଲେ, "ଯାହାଙ୍କୁ ଦର୍ଶନ କଲେ ଅପରମୁଖରେ କୃଷ୍ଣନାମ ଆସେ ତାହାଙ୍କୁ ଉତ୍ତମ ଅଧିକାରୀ ଜାଣିବ" । ଯଥାଃ—

ଯାହାର ଦର୍ଶନେ ମୁଖେ ଆଇସେ କୃଷ୍ଣନାମ
ତାହାରେ ଜାନିହ ତୁମି ବୈଷ୍ଣବ ପ୍ରଧାନ ।
( ଚୈଃ ଚଃ ମଧ୍ୟ ୧୬ ପରି )

ଏହାକହି ମହାପ୍ରଭୁ ତାଙ୍କୁ କନିଷ୍ଠ, ମଧ୍ୟମ ଓ ଉତ୍ତମ ବୈଷ୍ଣବମାନଙ୍କର ଲକ୍ଷଣ ଉତ୍ତମରୂପେ ବୁଝାଇ ଦେଲେ ।

ଉତ୍ତମଭକ୍ତଙ୍କର ଲକ୍ଷଣ ଶ୍ରୀଚୈତନ୍ୟ ଚରିତାମୃତାଦିରେ ଅନେକସ୍ଥଳରେ ବର୍ଣ୍ଣିତ ହୋଇଅଛି । ସେଥିମଧ୍ୟରୁ କେତେକ ନିମ୍ନରେ ଉଦ୍ଧୃତ କଲି, ଉତ୍ତମ ଭକ୍ତଗଣ ଅଭିମାନ ଶୂନ୍ୟ । ସେମାନେ ଭକ୍ତିବଳରେ ଜଗତ ଶୋଧନ କରିବାର ଶକ୍ତି ଧାରଣ କଲେହେଁ ଆପଣାକୁ ସର୍ବଦା ଅତି ତୁଚ୍ଛ ଜ୍ଞାନ କରନ୍ତି । ଶ୍ରୀକୃଷ୍ଣଙ୍କ ଅପାରଶକ୍ତି ଅନୁଭବକରି ନିଜଶକ୍ତି ସେମାନଙ୍କୁ ଯତ୍ସାମାନ୍ୟ ବୋଧହୁଏ । ଯଥାଃ—

ସର୍ବୋତ୍ତମ ଆପନାକେ ହୀନ କରି ମାନେ ।
[ ଚୈଃ ଚଃ ମଧ୍ୟ ୨୩ଶ ଅ ]

ଏବଂ କୃପାସାଗର କୃଷ୍ଣ ଯେ ନିଶ୍ଚୟ କୃପା କରିବେ ଏରୂପ ଦୃଢ଼ ପ୍ରତ୍ୟୟ ତାଙ୍କ ମନରେ ଆଶା ଉଦିତ ହୁଏ । ଯଥା—

କୃଷ୍ଣ କୃପା କରିବେନ୍ ଦୃଢ଼ କରି ମାନେ ।
[ ଚୈଃ ଚ ମଧ୍ୟ ୨୩ଶ ଅ ]

ମହାପ୍ରଭୁ ଶ୍ରୀମନ୍ ସ୍ୱରୂପ ଓ ଶ୍ରୀ ରାୟ ରାମାନନ୍ଦଙ୍କୁ ସମ୍ବୋଧନ ପୂର୍ବକ ସନାତନଙ୍କରେ ଉତ୍ତମ ଭକ୍ତର ଲକ୍ଷଣ କେପରି ସୁନ୍ଦର ଭାବରେ ବୁଝାଇ ଅଛନ୍ତି, ତାହା ଶ୍ରୀ କବିରାଜଙ୍କ ସରଳ ହୃଦୟସ୍ପର୍ଶୀ କବିତାରେ ଦେଖାଯାଉ ।

ଉତ୍ତମ ହଞା ଆପନାକେ ମାନେ ତୃଣାଧମ
ଦୁଇପ୍ରକାର ସହିଷ୍ଣୁତା କରେ ବୃକ୍ଷ ସମ ।

ବୃକ୍ଷ ଯେମନ କାଟିଲେ ଓ କିଛୁ ନା ବୋଲୟ
ଶୁକାଇୟା ମେଲେ କାରେ ପାଣି ନା ମାଗୟ ।
ଯେଇ ଯେ ମାଗୟ ତାରେ ଦେୟ ଆପନ ଧନ
ଘର୍ମ ବୃଷ୍ଟି ସହି ଆନେର କରଯେ ରକ୍ଷଣ ।
ଉତ୍ତମ ହଞା ବୈଷ୍ଣବ ହବେ ନିରଭିମାନ
ଜୀବେ ସମ୍ମାନ ଦିବେ ଜାନି 'କୃଷ୍ଣ ଅଧିଷ୍ଠାନ ।
ଏଇମତ ହଞା ଯେଇ କୃଷ୍ଣନାମ ଲୟ
ଶ୍ରୀକୃଷ୍ଣ ଚରଣେ ତାର ପ୍ରେମ ଉପଜୟ ।

[ ଚୈଃ ଚଃ ଅନ୍ତ୍ୟ ୨୦ଶ ]

କୃଷ୍ଣଭକ୍ତ ସେବାସୁଖରେ ସତତ ନିମଗ୍ନ । ସେହି ସେବାରୁ ସେ ପୂର୍ଣ୍ଣାନନ୍ଦ ଲାଭ କରନ୍ତି । କେତେବେଳେ ବିଗ୍ରହ ସେବା କରୁଅଛନ୍ତି, କେତେବେଳେ ମାନସିକରେ ଶ୍ରୀବୃନ୍ଦାବନରେ ଥାଇ ଶ୍ରୀ ରାଧାଗୋବିନ୍ଦଙ୍କର ସେବା କରୁଅଛନ୍ତି । ସେବାସୁଖରେ ନିଜକୁ ଭୁଲି ଯାଇଅଛନ୍ତି । ଅତଏବ ସାଂସାରିକ ସୁଖ ଦୁଃଖ ତାଙ୍କର ଆଉ କେଉଁଆଡ଼ୁ ଆସିବ । ସୁଖ ଦୁଃଖତ ମନର କଥା । ସଂସାରର ଶତ ଶତ ଦୁଃଖ ଆସିଲେହେଁ ସେଥିରେ ତାଙ୍କର ଭ୍ରୂକ୍ଷେପ ନାହିଁ । ଠାକୁର ଶ୍ରୀ ହରିଦାସଙ୍କୁ ଯବନଗଣ ବାଇଶ ବଜାରରେ ବୁଲାଇ ନିର୍ଘାତ ପ୍ରହାର କରୁଅଛନ୍ତି । କିନ୍ତୁ ସେ ପ୍ରେମାନନ୍ଦରେ ବିହ୍ୱଳ ହୋଇ ହସୁଛନ୍ତି । ଦୁଃଖ ତାଙ୍କୁ ସ୍ପର୍ଶ କରିବ କାହିଁକି ?

ଭକ୍ତ କୃଷ୍ଣଙ୍କ ପାଦପଦ୍ମରେ ଆପଣାକୁ ବିକିଦେଇ କରିଅଛନ୍ତି ଅତଏବ ସେବାଛଡ଼ା ତାଙ୍କର ଅନ୍ୟକିଛି ବାସନା ନାହିଁ । କିପ୍ରକାରେ ସେହିଁ ଦାସରୂପରେ ନିଜ ସେବା ସୁଶୃଙ୍ଖଳରୂପେ ସମ୍ପାଦନ କରିବେ ଏହି ଏକମାତ୍ର ବାଞ୍ଛା । ଏତଦ୍‌ବ୍ୟତୀତ ଆଉ କିଛି ବାଞ୍ଛା ତାଙ୍କର ନାହିଁ । ଏଣୁ ମହାପ୍ରଭୁ ସନାତନଙ୍କୁ ଶିକ୍ଷା ଦେବା କାଳରେ ନିଜେ ଶ୍ରୀମୁଖରେ କହିଅଛନ୍ତି—

କୃଷ୍ଣଭକ୍ତ ଦୁଃଖହୀନ ବାଞ୍ଛାନ୍ତର ହୀନ
କୃଷ୍ଣପ୍ରେମ ସେବା ପୂର୍ଣ୍ଣାନନ୍ଦପ୍ରବୀଣ ।

[ ଚୈଃ ଚଃ ମଧ୍ୟ ୨୪ଷ ଅ ]

ଉତ୍ତମ ଭକ୍ତ ନିଜ ସୁଖ ଭୋଗ ବାସନା ପାଇଁ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି ନାହିଁ । କେବଳ ଶ୍ରୀକୃଷ୍ଣ ସେବା ନିମିତ୍ତ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି । ନିଜର ସୁଖ ଦୁଃଖକୁ କର୍ମଜନିତ ମଣି ସେଥିରେ ଆନନ୍ଦିତ କିମ୍ବା ଉଦ୍‌ବିଗ୍ନ ହୁଅନ୍ତି ନାହିଁ ।

ଶ୍ରୀ ବାଣୀନାଥ ପଟ୍ଟନାୟକଙ୍କୁ ବଡ଼ ସେନା ବାନ୍ଧି ନେଇ ଯାଉଅଛନ୍ତି କିନ୍ତୁ ଏହି ବିଷମ ସଙ୍କଟ କାଳରେ ସୁଦ୍ଧା ତାଙ୍କର ଚିତ୍ତ ଦଣ୍ଡକ ପାଇଁ ଉଦ୍‌ବିଗ୍ନ ହୋଇ ନ ଥିଲା । ସେ ଗୌରଚନ୍ଦ୍ରଙ୍କ ଅଭୟ ପାଦପଦ୍ମ ସ୍ମରଣ ପୂର୍ବକ ହରି ନାମ ଗ୍ରହଣ କରି ସଂଖ୍ୟା ଲାଗି ନିଜ ଅଙ୍ଗରେ ଗାର କାଟୁଥିଲେ ଓ ବନ୍ଧା ହୋଇ ନୀତ ହେବା କାଳରେ ମଧ୍ୟ ଆନନ୍ଦରେ ହରି ନାମ ସ୍ମରଣ କରୁଥିଲେ । ଶ୍ରୀ କାଶୀମିଶ୍ର ମହାପ୍ରଭୁଙ୍କୁ ଏହି ବାଣୀନାଥ ଓ ତାଙ୍କ ଭ୍ରାତା ଗୋପୀନାଥ ପଟ୍ଟନାୟକଙ୍କ ବିଷୟ କହିବା କାଳରେ କହିଅଛନ୍ତି ।

ସେହି ଶୁଦ୍ଧଭକ୍ତ ତୋମାଭଜେ ତୋମାଲାଗି
ଆପନାର ସୁଖ ଦୁଃଖେ ହୟ ଭୋଗ ଭାଗୀ ।

( ଚୈଃ ଚଃ ଅନ୍ତ୍ୟ ୯ମ ପଃ )

ଉତ୍ତମ ଭକ୍ତଗଣ ଏକ ମୁହୂର୍ତ୍ତ ସୁଦ୍ଧା ବୃଥାରେ କଟାନ୍ତି ନାହିଁ । ଦିବାନିଶି ଅଷ୍ଟପ୍ରହର ସେମାନଙ୍କର କୃଷ୍ଣ ଚିନ୍ତା ଓ କୃଷ୍ଣ ସେବା, ଅନ୍ୟ ବିଷୟକୁ ମନ ଦେବାକୁ ସେମାନଙ୍କର ତିଳମାତ୍ର ଅବସର ନ ଥାଏ । ଶ୍ରୀଲ ରଘୁନାଥ ଭଟ୍ଟଙ୍କ ସମ୍ବନ୍ଧରେ ଶ୍ରୀ କବିରାଜ ଗୋସ୍ୱାମୀ ଲେଖିଅଛନ୍ତି—

ଗ୍ରାମ୍ୟବାର୍ତ୍ତା ନା ଶୁନେନ, ନା କହେନ ଜିହ୍ୱାୟ
କୃଷ୍ଣକଥା ପୂଜା ଦିତେ ଅଷ୍ଟ ପ୍ରହର ଯାଏ ।

( ଚୈଃ ଚଃ ଅନ୍ତ୍ୟ ୧୩ଶ ପଃ )

ଶ୍ରୀଲ ରଘୁନାଥଦାସ ଗୋସ୍ୱାମୀଙ୍କର ମଧ୍ୟ ଭଜନ ସମ୍ବନ୍ଧରେ ସେହି ରୀତି । ଶ୍ରୀଲ କବିରାଜଙ୍କ ସୁମଧୁର ଭାଷାରେ ତାଙ୍କ ବିଷୟ ପାଠକେ ଶ୍ରବଣ କରନ୍ତୁ ।

ସହସ୍ର ଦଣ୍ଡବତ କରେ ଲୟେ ଲକ୍ଷ ନାମ
ସହସ୍ର ବୈଷ୍ଣବେ ନିତ୍ୟ କରେନ ପ୍ରଣାମ ।

ରାତ୍ରିଦିନେ ରାଧାକୃଷ୍ଣେର ମାନସେ ସେବନ
ପ୍ରହରେକ ମହାପ୍ରଭୁର ଚରିତ କଥନ ।
ତିନ୍ ସନ୍ଧ୍ୟା ରାଧାକୁଣ୍ଡେ ଅପତିତ ସ୍ନାନ
ବ୍ରଜବାସୀ ବୈଷ୍ଣବେରେ ଆଲିଙ୍ଗନ ମାନ ।
ସାର୍ଦ୍ଧ ସପ୍ତ ପ୍ରହର କରେ ଭକ୍ତିର ସାଧନେ
ଚାରିଦଣ୍ଡ ନିଦ୍ରା; ସେହ ନହେ କୋନ ଦିନେ ।

(ଚୈଃ ଚଃ ଆଦି ୧୦ମ ଅଃ)

ଏହାଠାରୁ ସାଧନର ଆଉ ଅଧିକତର ପ୍ରକାଷ୍ଠା, ଏ ଭୂମଣ୍ଡଳରେ ପ୍ରଦର୍ଶିତ ହୋଇପାରେ । ଆହା ! ମହାପ୍ରଭୁଙ୍କର ପାର୍ଷଦମାନେ କି ସୁନ୍ଦର ଆଦର୍ଶ ଆମ୍ଭମାନଙ୍କର ମଙ୍ଗଳାର୍ଥ ରଖି ଯାଇ ନାହାନ୍ତି ।

ଯଦି ଉଚ୍ଚଭକ୍ତ କେହି କୌତୁକବଶତଃ ପଶା ଖେଳାଦିରେ ଯୋଗ ଦିଅନ୍ତି ତେବେ ମଧ୍ୟ ସେ ଖେଳାରେ ସେମାନଙ୍କର ସମୟ ବୃଥା ଅତିବାହିତ ହୁଏ ନାହିଁ । ସମୟର ମୂଲ୍ୟ ସେମାନଙ୍କୁ ଉତ୍ତମରୂପେ ଜଣା । ଅତଏବ କୌତୁକ ବଶତଃ ପଶା ଖେଳିଲେ ମଧ୍ୟ ମନ ମଧ୍ୟରେ ଶ୍ରୀ ଗୋବିନ୍ଦଙ୍କର ଗୋପୀମାନଙ୍କ ସହ ପଶା ଖେଳାଦି ସ୍ମରଣ କରି ଅଷ୍ଟକାଳ ଲୀଳା ସ୍ମରଣର ପଥକୁ ଅକ୍ଷୁନ୍ନ ରଖନ୍ତି ।

ସେଥିପାଇଁ ବୈଷ୍ଣବ ସେବୀ ପରମ ଭାଗବତ କାଳିଦାସଙ୍କ ସମ୍ବନ୍ଧରେ ଶ୍ରୀଲ କବିରାଜ ଗୋସ୍ୱାମୀ ଲେଖି ଅଛନ୍ତି ।

କୌତୁକେତେ ତିହେଁ, ଯଦି ପାଶକ ଖେଳାୟ
ହରେକୃଷ୍ଣ ହରେକୃଷ୍ଣ କରି ପାଶକ ଚାଲାୟ ।

(ଚୈଃ ଚଃ ଅନ୍ତ୍ୟ ୧୬ଶ ପଃ)

ମହାଭାଗବତଗଣ ଜଗତକୁ କୃଷ୍ଣମୟ ଦେଖନ୍ତି । ଜଳରେ, ସ୍ଥଳରେ, ଗଛରେ, ପତ୍ରରେ, ସର୍ବତ୍ର ତାଙ୍କୁ କୃଷ୍ଣ ପ୍ରତୀୟମାନ ହୁଅନ୍ତି । ମହାପ୍ରଭୁ ଶ୍ରୀଲ ରାମାନନ୍ଦ ରାୟଙ୍କୁ ଏ ବିଷୟରେ କହିଥିଲେ ।

ମହାଭାଗବତ ଦେଖେ ସ୍ଥାବର ଜଙ୍ଗମ
ତାହାଁ ତାହାଁ ହୟ ତାର ଶ୍ରୀକୃଷ୍ଣ ସ୍ଫୁରଣ ।

ସ୍ଥାବର ଜଙ୍ଗମ ଦେଖେ ନା ଦେଖେ ତାର ମୂର୍ତ୍ତି
ସର୍ବତ୍ର ହୟ ନିଜ ଇଷ୍ଟଦେବ ସ୍ଫୂର୍ତ୍ତି ।
( ଚୈଃ ଚଃ ମଧ ୮ମ ପଃ )

ଏଠାରେ ମହାପ୍ରଭୁ ଆତ୍ମାରୋପନ ପାଇଁ ରାମାନନ୍ଦଙ୍କ ଠାରେ ଏ ଛଳବାକ୍ୟ ପ୍ରୟୋଗ କରିଥିଲେହେଁ କଥାଟି ଅତି ସତ୍ୟ । ଭକ୍ତ ହେବା ପାଇଁ ବିଦ୍ୟା ବା ଜ୍ଞାନର ଅବଶ୍ୟକ ରଖେ ନାହିଁ । ମୂର୍ଖ ହେଉ ପଛେ, କୃଷ୍ଣଗତ ପ୍ରାଣ ହେଲେ ସେ ଭକ୍ତ ମଧ୍ୟରେ ପରିଗଣିତ । ମହାପ୍ରଭୁ ଏହାର ସୁନ୍ଦର ଆଦର୍ଶ ଜୀବ ସମ୍ମୁଖରେ ଦେଖାଇ ଦେଇ ଯାଇଅଛନ୍ତି । ସେ ତୀର୍ଥ ଭ୍ରମଣ ଛଳରେ ଜୀବ ଉଦ୍ଧାର ପାଇଁ ଯେତେବେଳେ ଦକ୍ଷିଣ ଦେଶକୁ ଯାଇଥିଲେ ସେହି ସମୟରେ ଶ୍ରୀଶ୍ରୀରଙ୍ଗକ୍ଷେତ୍ରରେ ମହାବୈଷ୍ଣବ ଶ୍ରୀ ବେଙ୍କଟ ଭଟ୍ଟଙ୍କ ଗୃହରେ ଚାତୁର୍ମାସ୍ୟା ଅତିବାହିତ କରିଥିଲେ ।

ସେହି ସମୟରେ ଶ୍ରୀଶ୍ରୀରଙ୍ଗକ୍ଷେତ୍ରରେ ଏକ ଗୀତାଧ୍ୟାୟୀ ବୈଷ୍ଣବ ବ୍ରାହ୍ମଣଙ୍କ ଭେଟ ପାଇଲେ । ଦେଖିଲେ, ବ୍ରାହ୍ମଣ ନିବିଷ୍ଟ ମନରେ ଗୀତା ପାଠ କରୁଅଛନ୍ତି । ପଢ଼ିବା କାଳରେ ବ୍ରାହ୍ମଣ ବାହ୍ୟଜ୍ଞାନ ଶୂନ୍ୟ । ପୁଲକ, ଅଶ୍ରୁ, ସ୍ୱେଦ, କମ୍ପ ପ୍ରଭୃତି ସାତ୍ତ୍ୱିକ ଭାବ ତାଙ୍କ ଅଙ୍ଗରେ ପ୍ରକାଶ ପାଉଅଛି । ତାଙ୍କର ଅଶୁଦ୍ଧ ଗୀତା ପାଠରେ ଲୋକେ ତାଙ୍କୁ ପରିହାସ କରି ହସୁଅଛନ୍ତି । କେହି ନିନ୍ଦା କରୁଅଛନ୍ତି, ସେଥି ପ୍ରତି ତାଙ୍କର ଲକ୍ଷ୍ୟ ନାହିଁ। ମହାପ୍ରଭୁ ତାଙ୍କର ଏହି ଅପୂର୍ବ ସାତ୍ତ୍ୱିକ ଭାବ ଦର୍ଶନ କରି ପଚାରିଲେ । "ମହାତ୍ମନ୍ ! ଗୀତାର କି ଅର୍ଥ ବୁଝି ଆପଣଙ୍କର ଏତେ ସୁଖ ଜାତ ହେଉଅଛି ?" ସେ ବ୍ରାହ୍ମଣ ବିନୀତ ଭାବରେ ଉତ୍ତର କଲେ, "ଶ୍ରୀପାଦ ! ମୁଁ ମୂର୍ଖ, ଶ୍ରୀମଦ୍ଭଗବଦ୍ ଗୀତାର ଶବ୍ଦାର୍ଥ ମୋତେ ଜଣା ନାହିଁ । ଶୁଦ୍ଧ ପଢ଼ୁଛି କି ଅଶୁଦ୍ଧ ପଢ଼ୁଛି ସେ ଜ୍ଞାନ ମଧ୍ୟ ମୋର ନାହିଁ । କେବଳ ଶ୍ରୀଗୁରୁ ଆଜ୍ଞା ଶିରୋଧାର୍ଯ୍ୟ କରି ଗୀତା ପଠନ କରୁଅଛି । ମୁଁ ପାଠକାଳରେ ଦେଖିବାକୁ ପାଏ ନବଜଳଧର କାନ୍ତି ଶ୍ୟାମସୁନ୍ଦର ବୀର ଚୂଡ଼ାମଣି ଅର୍ଜୁନଙ୍କ ରଥରେ ସାରଥି ହୋଇ ବସିଅଛନ୍ତି, ଏବଂ ତାଙ୍କୁହିତ ଉପଦେଶ ପ୍ରଦାନ କରୁଅଛନ୍ତି । ଏହା ଦେଖି ମୋର ଅପାର ଆନନ୍ଦ ଜାତ ହୁଏ, ଯେତେବେଳେ ଯାଏ ମୁଁ ଗୀତା ପାଠ କରେଁ, ତେତେ-

ବେଳ ଯାଏ ମୁଁ ଏହା ଦେଖିବାକୁ ପାଏଁ ।'' ମହାପ୍ରଭୁ ତାଙ୍କ ମୁଖରୁ ଏହା ଶୁଣି ଅପାର ପ୍ରୀତ ଲାଭକର ତାଙ୍କୁ ଆଲିଙ୍ଗନ ପ୍ରଦାନ କଲେ ଏବଂ କହିଲେ "ଦ୍ୱିଜବର ! ଗୀତା ପାଠରେ ତୁମ୍ଭରହିଁ ପ୍ରକୃତ ଅଧିକାର । ତୁମ୍ଭେହିଁ ଗୀତାର ସାର ଅର୍ଥ ଜାଣ । ଯେଉଁମାନେ ପଣ୍ଡିତାଭିମାନରେ ଗୀତା ପାଠ କରନ୍ତି ସେମାନେ ଗୀତାର ପ୍ରକୃତ ମର୍ମ ଗ୍ରହଣ କରି ପାରନ୍ତି ନାହିଁ ।'' ଯଥାଃ—

ବିପ୍ର କହେ ମୂର୍ଖ ଆମି ଶବ୍ଦାର୍ଥ ନା ଜାନି
ଶୁଦ୍ଧାଶୁଦ୍ଧ ଗୀତା ପଡ଼ି ଗୁରୁ ଆଜ୍ଞା ମାନି ।
ଅର୍ଜୁନେର ରଥେ କୃଷ୍ଣ ହୟ ରଜ୍ଜୁଧର
ବସିଆଛେ ହାତେ ତୋତ୍ର ଶ୍ୟାମଲ ସୁନ୍ଦର ।
ଅର୍ଜୁନେରେ କହିତେଛେନ ହିତ ଉପଦେଶ
ତାଁରେ ଦେଖି ହୟ ମୋର ଆନନ୍ଦ ଆବେଶ ।
ଯାବତ ପଡ଼େଁା ତାବତ ପାଓଁ ତାଁର ଦରଶନ
ଏଇ ଲାଗି ଗୀତା ପାଠେ ନା ଛାଡ଼େ ମୋର ମନ ।
ପ୍ରଭୁ କହେ, "ଗୀତା ପାଠେ ତୋମାରଇ ଅଧିକାର
ତୁମି ସେ ଜାନହ ଏଇ ଗୀତାର ଅର୍ଥ ସାର'' ।

( ଚୈଃ ଚଃ ମଧ୍ୟ ୯ ମ ପଃ )

ଉତ୍ତମଭକ୍ତମାନଙ୍କର ନିଜ ଦୁଃଖ ପ୍ରତି ଭ୍ରୂକ୍ଷେପ ତ ନ ଥାଏ କିନ୍ତୁ ସେମାନେ ସତତ ପରଦୁଃଖରେ କାତର । ପର ଦୁଃଖ ଦେଖିଲେ ସେମାନଙ୍କ ଅନ୍ତରାତ୍ମା କାତର ହୋଇ ଉଠେ । ସେମାନେ ପର ପାଇଁ ସତତ ବ୍ୟଥିତ ହୋଇ ଭଗବାନଙ୍କ ଆରାଧନା କରନ୍ତି ଓ ଭଗବାନଙ୍କଠାରେ ସେମାନଙ୍କର ମଙ୍ଗଳ ପ୍ରାର୍ଥନା କରନ୍ତି । ମହାତ୍ମାମାନଙ୍କର ପର ଦୁଃଖ କାତରତା ପ୍ରଧାନ ଚିହ୍ନ । ଏହି ନିମିତ୍ତ ଶ୍ରୀଅଦ୍ୱୈତ ଚନ୍ଦ୍ର ଗଙ୍ଗାଜଳ ତୁଳସୀରେ ଶ୍ରୀକୃଷ୍ଣଙ୍କର ଆରାଧନା କରିଥିଲେ ଓ ଠାକୁର ଶ୍ରୀ ହରିଦାସ ଆତୁର ହୋଇ ଭଗବାନଙ୍କୁ ଡ଼ାକୁଥିଲେ । ଜୀବ ଦୁଃଖରେ କାତର ହୋଇ ଶ୍ରୀଲ ବାସୁଦେବ ଦତ୍ତ ଯେ ଉଦାହରଣ ଜଗତରେ ରଖି ଯାଇ ଅଛନ୍ତି, ତାହା ପୃଥିବୀ ଇତିହାସରେ ବିରଳ । ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ

ମହାପ୍ରଭୁଙ୍କୁ କାତର ହୃଦୟରେ ଏହି ବର ପ୍ରାର୍ଥନା କରିଥିଲେ, "ପ୍ରଭୋ ! ଜଗତର ସମସ୍ତ ଜୀବମାନଙ୍କର ସମସ୍ତ ପାପ ମୋ ଶିରରେ ଦେଇ ସମସ୍ତ ଜୀବଙ୍କୁ ପାପମୁକ୍ତ କରନ୍ତୁ । ମୁଁ ପଛେ ସମସ୍ତଙ୍କ ପାପ ନେଇ ମହାନରକ ଭୋଗ କରେ । ଯଥା ।—

ଜଗତେ ଯେତେକ ଜୀବ ତାର ପାପ ଲଇଁ
ନରକ ଭୁଞ୍ଜିବେ ମୁହିଁ ଜୀବେ ଛାଡ଼ାଇଣ ।
( ଚୈଃ ଚଃ ଆ ୧୦ ମ ଅ )

ଆହା କି ଅଦ୍ଭୁତ ପ୍ରାର୍ଥନା, କି ଅଦ୍ଭୁତ ପରୋପକାର ବ୍ରତ । ପରର ପାପ ତ ନିଜ ମୁଣ୍ଡରେ ନେବା ଦୂରର କଥା । କୌଣସି ପ୍ରକାର ନିଜ ଦୋଷକୁ ପର ଉପରେ ଢାଳି ପାରିଲେ ଆମ୍ଭେମାନେ ଖୁସି, ଆମ୍ଭମାନଙ୍କର ଏହାହିଁ ସାଧନା ଓ ବ୍ରତ ।



## ତୃତୀୟ ପରିଚ୍ଛେଦ ।

### ଭକ୍ତର କର୍ତ୍ତବ୍ୟ ।

ଭକ୍ତର କି କି କର୍ତ୍ତବ୍ୟ ତାହା ବହୁ ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଏହା କରିବା କର୍ତ୍ତବ୍ୟ ଓ ଏହା ଅକର୍ତ୍ତବ୍ୟ ଏରୂପ ଉପଦେଶ ବାକ୍ୟରେ ସେ ସବୁ ବର୍ଣ୍ଣନ ନ କରି ଶ୍ରୀ ଚୈତନ୍ୟଚରିତାମୃତ ପ୍ରବନ୍ଧରେ ମହାନୁଭବମାନେ ନିଜ ନିଜ ଆଚରଣଦ୍ୱାରା ଭକ୍ତମାନଙ୍କର ଯେଉଁ କର୍ତ୍ତବ୍ୟ ଦର୍ଶାଇଅଛନ୍ତି ତାହା ସଂଗ୍ରହପୂର୍ବକ ନିମ୍ନରେ ସନ୍ନିବେଶିତ କଲି ।

ମହାପ୍ରଭୁ ସ୍ୱୟଂ ନିଜକୃତ "ନ ଧନଂ ନ ଜନଂ" ଶ୍ଳୋକ ଉଦ୍ଧୃତ କରି ଶ୍ରୀରାମାନନ୍ଦ ରାୟ ଓ ଶ୍ରୀସ୍ୱରୂପ ଦାମୋଦରଙ୍କଠାରେ ଭକ୍ତପକ୍ଷରେ କି ପ୍ରଧାନ କର୍ତ୍ତବ୍ୟ ତାହା ସ୍ଥିର କରି ଯାଇଅଛନ୍ତି । ସେ କହିଅଛନ୍ତି "ଧନ ଜନ, ସୁନ୍ଦରୀ ଭାର୍ଯ୍ୟା, ସ୍ୱର୍ଗ, ସମ୍ପତ୍ତି ପ୍ରଭୃତି କୌଣସି ପଦାର୍ଥ ଶ୍ରୀକୃଷ୍ଣଙ୍କଠାରେ କାମନା କରିବ ନାହିଁ । କେବଳ ଶ୍ରୀକୃଷ୍ଣ ଚରଣାରବିନ୍ଦରେ ଅହୈତୁକୀ ଭକ୍ତି ପ୍ରାର୍ଥନୀୟ । ଯଥା—

"ଧନ ଜନ ନାହିଁ ମାଗେଁ କବିତା ସୁନ୍ଦରୀ
ଶୁଦ୍ଧ ଭକ୍ତି ଦେହ ମୋରେ କୃଷ୍ଣ କୃପାକରି ।"

[ ଚୈଃ ଚଃ ଅନ୍ତ୍ୟ ୨୦ଶ ପ ]

ଭକ୍ତ ସମସ୍ତର ପ୍ରୟୋଜନ ଉତ୍ତମରୂପେ ଅନୁଭବ କରି ମୁହୂର୍ତ୍ତମାତ୍ର ବୃଥା କଟାଇବାକୁ ଚାହାନ୍ତି ନାହିଁ । ତେଣୁ ଶ୍ରୀ ସନାତନ ଗୋସ୍ୱାମୀଙ୍କୁ ଶିକ୍ଷାଦେବା କାଳରେ ମହାପ୍ରଭୁ କହିଅଛନ୍ତି :—

"କୃଷ୍ଣସମ୍ବନ୍ଧ ବିନା ବ୍ୟର୍ଥ କାଳ ନାହିଁ ଯାୟ ।"

( ଚୈଃ ଚଃ ମଧ୍ୟ ୨୩ ଶଃ ପଃ )

ମହାପ୍ରଭୁ ଯେ ଏକା ଶ୍ରୀ ସନାତନଙ୍କୁ ଏହା ଶିକ୍ଷା ଦେଇଥିଲେ ଏମନ୍ତ ନୁହେ । ସର୍ବଜୀବମାନଙ୍କୁ ମହାପ୍ରଭୁ ସେହି ଶିକ୍ଷା ଦେଇଥିଲେ । ସେ ଯେଉଁଦିନ ସନ୍ନ୍ୟାସଗ୍ରହଣ ପାଇଁ ନବଦ୍ୱୀପ ତ୍ୟାଗକରିବାର ସଂକଳ୍ପ କରିଥିଲେ ସେହିଦିନ ସେ କୃପାରଜ୍ଜୁ ଦ୍ୱାରା ନିଜ-ଜନମାନଙ୍କୁ ଆକର୍ଷଣପୂର୍ବକ ସେମାନଙ୍କୁ ଅହର୍ନିଶ କୃଷ୍ଣ ଭଜନ କରିବାର ଉପଦେଶ ଦେଇଥିଲେ । ଯଥା—

"ଆପନା ଗଲାର ମାଲ୍ୟ ସବାକାରେ ଦିୟା
ଆଜ୍ଞା କରେ ପ୍ରଭୁ ସବେ କୃଷ୍ଣ ଗାଓ ଗିୟା,
ବଲ କୃଷ୍ଣ ଗାଓ କୃଷ୍ଣ ଭଜ କୃଷ୍ଣ ନାମ
କୃଷ୍ଣ ବିନୁ କେହ କିଛୁ ନା ଭାବିହ ଆନ ।
ଯଦି ଆମାପ୍ରତି ସ୍ନେହ ଥାକୟେ ସବାର
ତବେ କୃଷ୍ଣ ବ୍ୟତିରିକ୍ତ ନା ଗାଇବେ ଆର ।
କି ଶୟନେ କି ଭୋଜନେ କିବା ଜାଗରଣେ
ଅହର୍ନିଶ ଚିନ୍ତ କୃଷ୍ଣ ବଲହ ବଦନେ" ।

( ଚୈତନ୍ୟ ଭାଃ ମଧ୍ୟଃ ୨୬ ଶାଃ ପଃ )

ଏହି ଯେ ମହାପ୍ରଭୁଙ୍କର ଶ୍ରୀମୁଖର ଉପଦେଶ, ଏଥିରେ ମୋଟେ ହରି-ନାମ ନେବାର ସମୟ ନାହିଁ ଏ ଆପତ୍ତି ଆଉ ରହିଲା ନାହିଁ । ସବୁ କାର୍ଯ୍ୟ-କର ଅଥଚ କାର୍ଯ୍ୟ କରୁ କରୁ ମନେ ମନେ କୃଷ୍ଣଙ୍କୁ ସ୍ମରଣ କର ।

ତେବେ ଅନିନ୍ଦୁକ ହୋଇ କୃଷ୍ଣ ଭଜନ କରିବା ବିଧେୟ । ଅପର କୌଣସି ଧର୍ମ ସମ୍ପ୍ରଦାୟକୁ ନିନ୍ଦା କରିବା କିମ୍ବା ଦେବଦେବୀଙ୍କୁ ନିନ୍ଦା କରିବା କୃଷ୍ଣ ଭକ୍ତ ପକ୍ଷରେ ଅନୁଚିତ । ସେଥିରେ ହରିନାମର କୃପା ହୁଏ ନାହିଁ, ତେଣୁ କୃଷ୍ଣ ପ୍ରେମଲାଭ ହୋଇପାରେ ନାହିଁ । ସର୍ବାନ୍ତଃକରଣରେ କୃଷ୍ଣ ନାମ ଗ୍ରହଣ କରିବା ବିଧେୟ । ତେଣୁ ବୃନ୍ଦାବନ ଦାସ କହିଅଛନ୍ତି ।

"ସର୍ବଭାବେ ଭଜେ କୃଷ୍ଣ କାରେ ନାହିଁ ନିନ୍ଦେ,
ସେଇସବ ଗଣ ପାୟ ବୈଷ୍ଣବେର ବୃନ୍ଦେ" ।

[ ଚୈଃ ଭାଃ ମଧ୍ୟ ୨୩ ଶାଃ ପଃ ]

କୃଷ୍ଣଭକ୍ତମାନଙ୍କର ଯଦ୍‌ବୁଦ୍ଧି ଅଯେ ଜାଣନ୍ତୁ; ଯେମାନେ ଭଗବାନଙ୍କର ଦଣ୍ଡରେ ବିରକ୍ତ ନ ହୋଇ ତାକୁ ଭଗବତ୍‌କୃପା ବୋଲି ମନେ କରନ୍ତି ମହାପ୍ରଭୁ ଯେତେବେଳେ ପ୍ରଥମେ ନାମ ସଂକୀର୍ତ୍ତନ ପ୍ରଚାର ଆରମ୍ଭ କଲେ ସେତେବେଳେ କେବଳ କେତେକ ଅନ୍ତରଙ୍ଗ ଭକ୍ତ ଘେନି ଆରମ୍ଭ କରିଥିଲେ। ବହିରଙ୍ଗ ଲୋକ ସେଠାକୁ ପ୍ରବେଶ କରିପାରୁ ନ ଥିଲେ । ଏକ ବ୍ରହ୍ମଚାରୀ ଶ୍ରୀବାସଙ୍କୁ ବିଶେଷ ଅନୁରୋଧ କରିବାରୁ ଶ୍ରୀବାସ ମନେକଲେ ଏହି ବ୍ରହ୍ମଚାରୀ ଅନ୍ନ ଗ୍ରହଣ କରନ୍ତି ନାହିଁ, ପୟଃପାନ କରନ୍ତି ଅତଏବ ଏହାଙ୍କୁ କୀର୍ତ୍ତନ ଦେଖାଇବାକୁ ଅଭ୍ୟନ୍ତରକୁ ନେଲେ କିଛି ହାନି ନାହିଁ । ଏହା ମନେକରି ତାଙ୍କୁ ଗୃହାଭ୍ୟନ୍ତରକୁ ନେଇ ନିଭୃତରେ ରଖାଇଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ତାହା ଜାଣିପାରି କୀର୍ତ୍ତନ କରୁ କରୁ କହିଲେ, "ଆଜ ମନ କୀର୍ତ୍ତନରେ ଉଲ୍ଲସିତ ହେଉନାହିଁ କାହିଁକି ? କେହି ବହିରଙ୍ଗ ଲୋକ ଏଠାକୁ ଆସି ଅଛି କି ?"

ଶ୍ରୀବାସ ପଣ୍ଡିତ ମନେ ମନେ ଭୀତ ହୋଇ କହିଲେ "ପ୍ରଭୁ ! କେହି ପାଷଣ୍ଡ ଏ ପୁରମଧ୍ୟକୁ ଆସିନାହିଁ, କେବଳ ଜଣେ ବ୍ରହ୍ମଚାରୀ ଯେ କି ଅନ୍ନ ଗ୍ରହଣ କରନ୍ତି ନାହିଁ କେବଳ ଦୁଗ୍ଧ ମାତ୍ର ପାନ କରନ୍ତି ଏବଂ ନିଷ୍ପାପ ଅଟନ୍ତି ତାହାଙ୍କର ଭବଦୀୟ କୀର୍ତ୍ତନ ଶୁଣିବାର ବାସନା ହେବାରୁ ସେ ଆସି ଏ ଗୃହମଧ୍ୟରେ ରହିଅଛନ୍ତି । ମହାପ୍ରଭୁ କ୍ରୋଧ ପ୍ରକାଶ ପୂର୍ବକ କହିଲେ " ପଣ୍ଡିତ, ତାହାଙ୍କୁ ଶୀଘ୍ର ଏ ଗୃହରୁ ବାହାର କର, କେବଳ ପୟଃପାନ କଲେ ଭକ୍ତି ହୁଏ ନାହିଁ" । ମହାପ୍ରଭୁଙ୍କର କ୍ରୋଧ ବାକ୍ୟ ଶ୍ରବଣ କରି ବ୍ରହ୍ମଚାରୀ ପୁରରୁ ବାହାର ହୋଇଗଲେ । କିନ୍ତୁ ମହାପ୍ରଭୁଙ୍କ ପ୍ରତି ତାଙ୍କର ବିରକ୍ତି ବା କ୍ରୋଧ ଜାତ ହେଲା ନାହିଁ । ସେ ଭାବିଲେ ମୋର ଏ ବଡ ସୌଭାଗ୍ୟ ଯେ ମୁଁ ମହାପ୍ରଭୁଙ୍କର କଥିତ ପ୍ରେମର ନୃତ୍ୟ ଦର୍ଶନ କଲି । ମୁଁ ଯେତେବେଳେ ଅପରାଧୀ, ଅପରାଧାନୁରୂପ ଦଣ୍ଡ ପାଇଲି। ଶ୍ରୀଲ ବୃନ୍ଦାବନ ଦାସ ତାଙ୍କର ଏହିଭାବ ସମ୍ବନ୍ଧରେ କହି ଅଛନ୍ତି ।

"ସେବକ ହଇଲେ ଏଇମତ ବୁଦ୍ଧି ହୟ
ସେବକ ସେ ପ୍ରଭୁର ସକଲ ଦଣ୍ଡ ସୟ,,

( ଚୈଃ ଭାଃ ମଧ୍ୟଃ ୨୩·ଶଃ ପଃ )

ସର୍ବାନ୍ତର୍ଯାମୀ ମହାପ୍ରଭୁ ତାହାଙ୍କର ସେହି ମନୋଗତ ଭାବ ଜାଣି ସ୍ୱୀୟାଭ୍ୟନ୍ତରକୁ ଡକାଇ ଆଣି କୃପାପୂର୍ବକ ନିଜ ଦୁର୍ଲଭ ପାଦପଦ୍ମ ତାହାଙ୍କ ଶିରରେ ଅର୍ପଣକଲେ । ଭକ୍ତ ଭଗବତ ପ୍ରୀତି ନିମନ୍ତେ ଧନ ଜନ ଏମନ୍ତ କି ପ୍ରାଣ ପର୍ଯ୍ୟନ୍ତ ଅକ୍ଳେଶରେ ଦେବାକୁ କୁଣ୍ଠିତ ନୁହନ୍ତି । ସେ ତ୍ୟାଗ ମଧ୍ୟ ପ୍ରକୃତ ତ୍ୟାଗ ନୁହେ । ଏକ ସନ୍ନ୍ୟାସୀ ଆସି ଶ୍ରୀହାଡ଼ାଇ ପଣ୍ଡିତଙ୍କ ଘରେ ଅତିଥି ହେଲେ ଏବଂ ବିଦାୟ କାଳରେ ହାଡ଼ାଇ ପଣ୍ଡିତଙ୍କୁ କହିଲେ " ପଣ୍ଡିତ ! ମୋ ସଙ୍ଗରେ ଭଲ ବ୍ରାହ୍ମଣ ନ ଥିବାରୁ କଷ୍ଟ ହେଉଅଛି ତୁମ୍ଭର ଏ ଜ୍ୟେଷ୍ଠ ପୁତ୍ରାନଙ୍କୁ ମୋତେ ଦିଅ ।" ହାଡ଼ାଇପଣ୍ଡିତ ବଡ଼ ସଙ୍କଟରେ ପଡ଼ିଲେ; ଭାବିଲେ, ମୁହଁ ଲୋକେ ସନ୍ନ୍ୟାସୀଙ୍କୁ ପ୍ରାଣ ପର୍ଯ୍ୟନ୍ତ ଭିକ୍ଷା ଦେଉଅଛନ୍ତି, ମୁଁ ମନାକରିବି କିପରି । ସେ ଯାଇ ନିଜ ପତ୍ନୀ ପଦ୍ମାବତୀଙ୍କ ଠାରେ ଏହା ପ୍ରକାଶ କଲେ । ପତି ଯେମନ୍ତ ପତ୍ନୀ ମଧ୍ୟ ତଦ୍ରୂପ । ସେପରି ନ ହେଲେ ପ୍ରଭୁ ଶ୍ରୀନିତ୍ୟାନନ୍ଦ ସେମାନଙ୍କର ପୁତ୍ରତ୍ୱ ସ୍ୱୀକାର କରନ୍ତେ କିପାଇଁ । ପଦ୍ମାବତୀ ମଧ୍ୟ ସେଥିରେ ସମ୍ମତି ପ୍ରଦାନ କଲେ । ଉଭୟଙ୍କ ସମ୍ମତିକ୍ରମେ ସନ୍ନ୍ୟାସୀ ଶ୍ରୀମନ୍ ନିତ୍ୟାନନ୍ଦଙ୍କୁ ସଙ୍ଗେ ନେଇ ତୀର୍ଥପର୍ଯ୍ୟଟନ କରିବାକୁ ବାହାରିଲେ । ଏହି ତ୍ୟାଗ ସମ୍ବନ୍ଧରେ ଶ୍ରୀଲ ବୃନ୍ଦାବନ ଦାସ କହି ଅଛନ୍ତି ।—

"ପରମାର୍ଥେ ଏଇ ତ୍ୟାଗ ତ୍ୟାଗ କଭୁ ନୟ
ଏ ସକଲ କଥା ବୁଝେ କୋନ ମହାଶୟ ।"

[ ଚୈଃ ଭାଃ ମଧ୍ୟଃ ୩ୟ ପ ]

ଏଥିରେ ହାଡ଼ାଇ ପଣ୍ଡିତଙ୍କୁ ପୁତ୍ର ମମତା ତ୍ୟାଗ କରିବାକୁ ହୋଇଥିଲା, ଏହା ସାଧାରଣ ମମତା, କିନ୍ତୁ ସେ ତ୍ୟାଗଦ୍ୱାରା ପରମାର୍ଥତଃ ତାହାଙ୍କର ଯେ ପ୍ରକୃତ ଲାଭ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ଯେଉଁକୁଳରେ କେହି-ଜଣେ ବୈଷ୍ଣବ ହୁଅନ୍ତି, ତାହାର ଚତୁର୍ଦ୍ଦଶ ପୁରୁଷ ଉଦ୍ଧାର ହୁଅନ୍ତି । ପିଣ୍ଡଦାନରେ ପୁନ୍ନାମ ନରକରୁ ତ୍ରାଣ କରେ ବୋଲି ଯିନା ପୁତ୍ରର ଆବଶ୍ୟକ, କିନ୍ତୁ ସନ୍ନ୍ୟାସ ହେବାଦ୍ୱାରା ଲୋକ ଯେ ଚତୁର୍ଦ୍ଦଶ ପୁରୁଷ ଉଦ୍ଧାର କରେ, ଅତଏବ ଏ ତ୍ୟାଗତ ତ୍ୟାଗ ନୁହେ, ଏହା ପରମ ଲାଭ ।

ପ୍ରେମିକ ଭକ୍ତ ଆତ୍ମସୁଖ ସନ୍ଧାନୀ ନାହିଁ । ସେମାନେ ସତତ କୃଷ୍ଣ ସୁଖ ବାଞ୍ଛା କରନ୍ତି, ଏବଂ ସମସ୍ତ କାର୍ଯ୍ୟ ତାଙ୍କ ପ୍ରୀତି ନିମନ୍ତେ କରିଥାଆନ୍ତି । ନିଜର ଅସୀମ କଷ୍ଟ ହେଲେ ମଧ୍ୟ ସେଥିପ୍ରତି ତାହାଙ୍କର ଭ୍ରୂକ୍ଷେପ ନାହିଁ, ଏହା ମୋର ପ୍ରାଣନାଥ କୃଷ୍ଣଙ୍କୁ ପ୍ରୀତିକର ହେବ, ଏହା ଶ୍ରୀକୃଷ୍ଣଙ୍କୁ ସୁଖ ଲାଗିବ, ଏହି ଭାବନାରେ ସେମାନେ କାର୍ଯ୍ୟ କରନ୍ତି । ଏହାର ଉତ୍କୃଷ୍ଟତମ ଉଦାହରଣସ୍ଥଳ ଶ୍ରୀମାଧବେନ୍ଦ୍ର ପୁରୀ । ସେ ଶ୍ରୀଗୋପାଳଙ୍କ ସ୍ୱପ୍ନାଦେଶରେ ଶ୍ରୀବୃନ୍ଦାବନ ଧାମରୁ ଚନ୍ଦନ ନିମିତ୍ତ ଶ୍ରୀ ପୁରୁଷୋତ୍ତମ ଯାତ୍ରା କଲେ ଏବଂ ସେଠାରୁ ବହୁଯତ୍ନରେ ଚନ୍ଦନ ସଂଗ୍ରହ କରି ଶ୍ରୀ ଗୋପାଳଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲଗାଇ, ତାଙ୍କର ତାପ ଶାନ୍ତ କରିବେ ଏହି ଆନନ୍ଦରେ ବୃଦ୍ଧ ବୟସରେ ନିଜର କାୟକ୍ଲେଶ ପାଇଁ ଲେଶମାତ୍ର ଚିନ୍ତିତ ନ ହୋଇ ଉଲ୍ଲାସରେ ଗମନ କରିବାକୁ ଲାଗିଲେ । ତାଙ୍କର ସେହି ପ୍ରଗାଢ଼ କୃଷ୍ଣପ୍ରେମ ସମ୍ବନ୍ଧରେ ଶ୍ରୀଳ କବିରାଜ ଗୋସ୍ୱାମୀଙ୍କର ଅମୃତମୟୀ ଭାଷା ଶ୍ରବଣ କରନ୍ତୁ ।

"ପୁରୀରପ୍ରେମ ପରାକାଷ୍ଠା କରହ ବିଚାର
ନିଜଦୁଃଖ ବିଘ୍ନାଦିକ ନାକରେ ବିଚାର" ।

(ଚୈଃ ଚଃ ମଧ୍ୟ ୪ର୍ଥ ପ)

ଶ୍ରୀ ମହାପ୍ରଭୁଙ୍କର ଜନନୀ ଶ୍ରୀମତୀ ଶଚୀଦେବୀ କିରୂପ ଆତ୍ମସୁଖ ବର୍ଜନର ପରିଚୟ ଦେଇଅଛନ୍ତି ତାହା ଆଲୋଚନା କରାଯାଉ । ମହାପ୍ରଭୁ ଯୁବତୀଭାର୍ଯ୍ୟା ଓ ବୃଦ୍ଧା ଜନନୀଙ୍କୁ ନିଜର ପୂର୍ଣ୍ଣ ଯୌବନ କାଳରେ ଅର୍ଥାତ୍ ଚବିଶ ବର୍ଷ ବୟଃକ୍ରମ ସମୟରେ ପରିତ୍ୟାଗ ପୂର୍ବକ ସନ୍ନ୍ୟାସ ଗ୍ରହଣ କଲେ । ଶଚୀମାତା ସମସ୍ତ ପୁତ୍ରକନ୍ୟା ହରାଇ ଏକମାତ୍ର ପୁତ୍ର ବିଶ୍ୱମ୍ଭରଙ୍କୁ ଘେନି ସୁଖରେ କାଳାତିପାତ କରୁଥିଲେ । ବଧୂ ବିଷ୍ଣୁପ୍ରିୟା ଚତୁର୍ଦ୍ଦଶବର୍ଷୀୟା, ପୁତ୍ର ପୂର୍ଣ୍ଣ ଅପୂର୍ବ ରୂପବାନ୍ ଓ ଗୁଣବାନ୍ ଓ ଅଳ୍ପ ବୟସରେ ଅଦ୍ୱିତୀୟ ପଣ୍ଡିତ । ଏପରି ଅବସ୍ଥାରେ ତାଙ୍କର ପ୍ରାଣ ସର୍ବସ୍ୱ ନିମାଇ ସନ୍ନ୍ୟାସ ଅବଲମ୍ବନ ପୂର୍ବକ ଘରୁ ବାହାରି ଆସିଅଛନ୍ତି । ସେ କାଟୋୟାରେ ସନ୍ନ୍ୟାସ ଗ୍ରହଣପରେ ଶ୍ରୀ ବୃନ୍ଦାବନ ଧାମକୁ ଯାଉଥିଲେ । ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ତାଙ୍କୁ ଭୁଲାଇ ଶାନ୍ତିପୁରକୁ ନେଇ ଆସିଲେ, ଏବଂ ଶଚୀମାତାଙ୍କୁ ନେଇ ସନ୍ନ୍ୟାସାଶ୍ରମୀ ପୁତ୍ରଙ୍କସହ ଭେଟ

ଫେରାଇଲେ । ଜନନୀ ପୁତ୍ରଙ୍କୁ ପାଇ ଭାବିବାକୁ ଲାଗିଲେ ଏବଂ କିଛି ଦିନ ଶାନ୍ତିପୁରରେ ରହି ନାନାବିଧ ପାକଦ୍ରବ୍ୟ ପ୍ରସ୍ତୁତ କରି ମନ ଆବେଗରେ ସନ୍ନ୍ୟାସବେଶଧାରୀ ନିମାଇଙ୍କୁ ଭିକ୍ଷା କରାଇଲେ । ତତ୍ପରେ ମହାପ୍ରଭୁ ମାତାଙ୍କୁ ଏବଂ ପ୍ରିୟଭକ୍ତଗଣଙ୍କୁ ସମ୍ବୋଧନ ପୂର୍ବକ କହିଲେ "ମୁଁ ତୁମ୍ଭମାନଙ୍କ ଆଜ୍ଞା ବିନା ଶ୍ରୀବୃନ୍ଦାବନକୁ ଯାଉଥିବାରୁ ସେଥିରେ ବିଘ୍ନ ଘଟିଲା କିନ୍ତୁ ସନ୍ନ୍ୟାସୀ ପକ୍ଷରେ ନିଜ ଜନ୍ମ ସ୍ଥାନରେ ବାସ କରିବା ଶାସ୍ତ୍ର ବିରୁଦ୍ଧ । ମୁଁ ସନ୍ନ୍ୟାସ ଗ୍ରହଣ କରିଥିଲେହେଁ ତୁମ୍ଭମାନଙ୍କ ସ୍ନେହ ପାଶରେ ଚିର ଆବଦ୍ଧ । ଅତଏବ ଯେଉଁପରି ଲୋକନିନ୍ଦା ନ ହୁଏ ଓ ଧର୍ମରକ୍ଷା ହୁଏ ସେହି ଯୁକ୍ତି ପ୍ରଦାନ କର ।" ମହାପ୍ରଭୁଙ୍କର ଏହି ଉକ୍ତି ଶୁଣି ଅଦ୍ୱୈତାଦି ଶଚୀମାତାଙ୍କୁ ତାହାଙ୍କର ମତ ପଚାରିଲେ । ଶଚୀଦେବୀ ସେ ସମସ୍ତ ଶ୍ରବଣ କରି ଦୀର୍ଘ ନିଃଶ୍ୱାସ ପକାଇ କହିଲେ "ନିମାଇ ଯଦି ନଦୀୟାରେ ରହେ ଆମ୍ଭେମାନେ ତାକୁ ସତତ ଦେଖି ପାରିବା, ଆମ୍ଭମାନଙ୍କର ଅତୀବ ଆନନ୍ଦ ହେବ ଏହା ସତ୍ୟ, କିନ୍ତୁ ସେ ନଦୀୟାରେ ରହିଲେ ତାକୁ ଯେ ସମସ୍ତେ ନିନ୍ଦାକରିବେ । ନିମାଇର ନିନ୍ଦା ମୁଁ ପ୍ରାଣରେ ସହିବି କପରି ? ମୋର ସୁଖର ଆବଶ୍ୟକ ନାହିଁ । ତାର ଯାହା ସୁଖକର ତାହା ମଧ୍ୟ ମୋତେ ସୁଖକର, ଅତଏବ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବାସ କରୁ । ଲୋକ ମୁଖରୁ ମୁଁ ତାର ଶୁଭ ବାର୍ତ୍ତା ସମୟ ସମୟରେ ଶୁଣି-ପାରିବି, ତୁମ୍ଭେମାନେ ସମସ୍ତ ସମୟରେ ଶ୍ରୀନୀଳାଚଳକୁ ଯିବ ଓ ତାହାର ସମ୍ବାଦ ଆଣିବ । ସେ ମଧ୍ୟ ଶ୍ରୀଗଙ୍ଗାଦର୍ଶନ ନିମିତ୍ତ ସମୟରେ ଆସିପାରେ" ।

ଯଥା—"ଆପନାର ଦୁଃଖ, ସୁଖ ତାହା ନାହିଁ ଗଣି
ତାଁର ସେଇ ସୁଖ ସେଇ ନିଜ ସୁଖ ମାନି ।"
( ଚୈଃ ଚଃ ମଧ୍ୟ ୩ୟ ପ )

ଏହିରୂପ ଆଦର୍ଶରେ ଭକ୍ତର ସତତ କୃଷ୍ଣ ସୁଖ ବାଞ୍ଛା କରିବା ବିଧେୟ ।

ସମସ୍ତ ସଂସାର ଆତ୍ମ ସୁଖରେ ପ୍ରଧାବିତ, ଦିବାନିଶି ନିଜର ସୁଖଚିନ୍ତା, ଜୀବ ନିଜ ସୁଖ ପାଇଁ ପରପୀଡ଼ା ହିଂସା ପରି ଅନୁଷ୍ଠାନରେ କୁଣ୍ଠିତ ନୁହେଁ । ପର ପଛେ ଯେତେ କଷ୍ଟ ଭୋଗକରୁ ମୁଁ ସୁଖରେ ଥିବି, ସାଧାରଣ ଲୋକର ଏହି ମୂଳ ମନ୍ତ୍ର କିନ୍ତୁ ଭକ୍ତର ସ୍ୱଭାବ ଏହାର ଠିକ ବିପରୀତ । ଭକ୍ତ କେବେ

ନିଜ ସଂସାର ସୁଖରେ କଳାଙ୍କିତ ନୁହେ । ନିଜର ପରିଚ୍ଛେ ଅନିଷ୍ଟ ହେଉ ବା କପରି ସୁଖୀ ହେଉ, ଭକ୍ତ ସତତ ଏରୂପ ଚିନ୍ତା କରନ୍ତି ଏବଂ ଏହାହିଁ ଉଦାର ସ୍ୱଭାବ, ପରଦୁଃଖ-କାତର ଭକ୍ତଙ୍କର ସ୍ୱଭାବସିଦ୍ଧ ଗୁଣ, ଏଥିପାଇଁ ଶ୍ରୀଳ ବୃନ୍ଦାବନ ଦାସ ଲେଖିଅଛନ୍ତି ।

" ପର ଦୁଃଖ କାତର ସ୍ୱଭାବ ସାଧୁଜନ
ପରେର ଆନନ୍ଦ ସେବା ଭକ୍ତ ଅନୁକ୍ଷଣ "
( ଚୈ: ଭା: ୧୫ଶ ଅ )

ଭକ୍ତର ସ୍ୱଭାବ ନିରହଙ୍କାର । ମହାପ୍ରଭୁ " ତୃଣାଦପି " ଶ୍ଳୋକଦ୍ୱାରା ଆପଣାକୁ କପରି ନୀଚ ମନେ କରିବା ଉଚିତ ତାହା ଉତ୍ତମରୂପେ ଶିକ୍ଷା ଦେଇଅଛନ୍ତି । ଅତଏବ ଭକ୍ତଙ୍କର ସତତ ଏହିରୂପ ସତର୍କ ରହିବା ଉଚିତ ଯେ ଅହଙ୍କାର ଯେପରି ତାଙ୍କ ଚିତ୍ତକୁ ସ୍ପର୍ଶ ନ କରେ । ଭକ୍ତି ପଥରେ ଅନେକ ଉଚ୍ଚ ସ୍ଥାନକୁ ଉଠି ମଧ୍ୟ ଗର୍ବ ଭରରେ ପୁନର୍ବାର ପତନର ଆଶଙ୍କା ଅଛି । ଗର୍ବ ଭରରେ ପଦସ୍ଖଳିତ ହେଲେ ଊର୍ଦ୍ଧ୍ୱରୁ ପତନ ହେତୁ ଅଙ୍ଗ ଚୂର୍ଣ୍ଣ, ବିଚୂର୍ଣ୍ଣ ହୋଇଯାଏ । ସେଥି ନିମିତ୍ତ ଭକ୍ତଙ୍କର ପଦେ ପଦେ ସାବଧାନ ହେବା କର୍ତ୍ତବ୍ୟ । ନିଜଠାରୁ ଅଧିକତର ଗୁଣଶାଳୀ ପୁରୁଷମାନଙ୍କ ଉପରେ ସତତ ଦୃଷ୍ଟି ରହିଲେ ଅଭିମାନ ଅନ୍ତରକୁ ସହଜେ ଆସିପାରେ ନାହିଁ । ମନେ କର ଅମୁକ ଏମନ୍ତ ସାଧନ କରୁଅଛି ମୁଁ ତାଙ୍କ ଆଗରେ କି ଛାର । ମହାସାଗରକୁ ଦର୍ଶନ କଲେ କୂପର ନିଜ ଗର୍ବ ରହିପାରେ କି ? ବିଶାଳ ବଟବୃକ୍ଷକୁ ଦୃଷ୍ଟି କଲେ ଏରଣ୍ଡ ବୃକ୍ଷର ଗର୍ବ ଆଉ ରହେ କି ? ଅତଏବ ଭକ୍ତର ସତତ ନିଜଠାରୁ ଶତ ଶତ, ସହସ୍ର ସହସ୍ର ଗୁଣ ଉଚ୍ଚ ସାଧୁଙ୍କ ପ୍ରତି ଲକ୍ଷ୍ୟ ରଖି ବିଚରଣ କରିବା କର୍ତ୍ତବ୍ୟ । ଏହା କଲେ ଭକ୍ତ ନିଶ୍ଚୟ ଗର୍ବର ଭୀଷଣ କବଳରୁ ରକ୍ଷା ପାଇ ପାରିବେ । ଅହଙ୍କାର ଯେ କିରୂପ ଭୟାନକ ଏବଂ ତାହାର କବଳରୁ ରକ୍ଷା ପାଇବା ପାଇଁ କପରି ସାବଧାନ ହେବା ଉଚିତ, ଭକ୍ତପ୍ରବର ଶ୍ରୀଳ ବାସୁଦେବ ଏହାର ଉତ୍ତମ ଶିକ୍ଷା ଦେଇ ଯାଇ ଅଛନ୍ତି । ତାଙ୍କ ଦେହ କୁଷ୍ଠରୋଗ-କ୍ଳାନ୍ତ, କିନ୍ତୁ ହୃଦୟ ଯେ କିରୂପ ନିର୍ମଳ ତାଙ୍କର କାର୍ଯ୍ୟ ତାହାର ଉତ୍ତମ ସାକ୍ଷ୍ୟ ପ୍ରଦାନ କରୁଅଛି । ନିଜ ଅଙ୍ଗର

କୃମିମାନେ ଖସିପଡ଼ନ୍ତେ ସେ ସେମାନଙ୍କ ପ୍ରତି ଅନୁକମ୍ପାପୂର୍ବକ ଉଠାଇ ନିଜ ଅଙ୍ଗରେ ସନ୍ନିବିଷ୍ଟ କରୁଅଛନ୍ତି ଯଥା —

" ଅଙ୍ଗହୈତେ ଯେଇ କୀଡ଼ା ଖସିୟା ପଡ଼ୟ,
ଉଠାଇୟା ସେଇ କୀଡ଼ା ରାଖେ ସେଇଠାଇଁ "

( ଚୈଃ ଚଃ ମଧ୍ୟ ୭ମ ପଃ )

ମହାପ୍ରଭୁ କୂର୍ମ କ୍ଷେତ୍ରରେ ବିରାଜମାନ କରିଅଛନ୍ତି ଏହି ସଂବାଦ ଶୁଣି ଗଳିତ କୁଷ୍ଠ ବାସୁଦେବ ଆନନ୍ଦରେ ବିହ୍ୱଳ,—କୁଷ୍ଠାକ୍ରାନ୍ତ ହେବାରୁ ଚାଲିବାର ତେତେ ଶକ୍ତି ନାହିଁ, ତେବେ ଆନନ୍ଦ ତରଙ୍ଗର ସ୍ରୋତ ଅଙ୍ଗରେ ପ୍ରବାହିତ ହେବାରୁ ଗମନ କରିବାକୁ ଲାଗିଲେ । କୂର୍ମ କ୍ଷେତ୍ରରେ ପ୍ରବେଶ କରି ଭକ୍ତ-ବର ଶ୍ରୀକୂର୍ମନାମକ ବ୍ରାହ୍ମଣଙ୍କଠାରୁ ଶୁଣିଲେ, ମହାପ୍ରଭୁ ସେ ସ୍ଥାନରୁ ପ୍ରଭା-ତରୁ ସ୍ନାନ କରି ଚାଲିଯାଇ ଅଛନ୍ତି । ବାସୁଦେବଙ୍କ ମସ୍ତକରେ ବଜ୍ରପତନ ରୂପ କଷ୍ଟ ଅନୁଭୂତ ହେଲା । ସେ ମହାପ୍ରଭୁଙ୍କ ପାଦପଦ୍ମ ଦର୍ଶନରୁ ବଞ୍ଚିତ । ଏ ତୀବ୍ର କଷ୍ଟ ସହ୍ୟକରି ନ ପାରି ମୂର୍ଚ୍ଛିତ ହୋଇ ପଡ଼ିଲେ । ତାଙ୍କର ଅଦ୍ଭୁତ ଆକର୍ଷଣରେ ମହାପ୍ରଭୁଙ୍କର ଗତି ରୋଧ ହେଲା । ସେ ବାସୁଦେବ-ଙ୍କର ଆର୍ତ୍ତିରଜ୍ଜୁରେ ଆବଦ୍ଧ ହୋଇ କୂର୍ମକ୍ଷେତ୍ରକୁ ଫେରିଆସିଲେ ଏବଂ ବାସୁଦେବଙ୍କୁ କୃପାଦୃଷ୍ଟି କରି ଆଲିଙ୍ଗନ କଲେ । ମହାପ୍ରଭୁଙ୍କ ଆଲିଙ୍ଗନରେ ତାଙ୍କ ଦେହରୁ କୁଷ୍ଠରୋଗ ଅନ୍ତର୍ହିତ ହୋଇଗଲା ଓ ଦେହ ଅପୂର୍ବ ଶୋଭା ଧାରଣ କଲା, ସେ ନିଜର ଏହି ପରିବର୍ତ୍ତନ ଲକ୍ଷ୍ୟ କରି ବିସ୍ମିତ ହେଲେ ଓ କହିଲେ "ପ୍ରଭୋ ! ମୋ ପ୍ରତି ଏତେ ଦୟା କାହିଁକି ? ମୁଁ ତ କୁଷ୍ଠରୋଗରେ ଭଲ ଥିଲି, ବର୍ତ୍ତମାନ ଅଭିମାନ ଭୟାନକ ମୂର୍ତ୍ତିରେ ଆସି ଗ୍ରାସ କରିବ ଯଥା—

ମୋରେ ଦେଖି ମୋର ଗନ୍ଧେ ପଳାୟ ପାମର
ହେନ ମୋରେ ସ୍ପର୍ଶ ତୁମି ସ୍ୱତନ୍ତ୍ର ଈଶ୍ୱର
କିନ୍ତୁ ଆଛିଲାମ ଭାଲ ଅଧମ ହଇୟା
ଏବେ ଅହଙ୍କାର ମୋର ଜନ୍ମିବେ ଆସିୟା

( ଚୈଃ ଚ ମଧ୍ୟ ୭ମ ପ )

ମହାପ୍ରଭୁ କହିଲେ "ବାସୁଦେବ ! ସେଥିପାଇଁ ତୁମ୍ଭେ ଭକ୍ତବର ନା; ଅଭିମାନ ତୁମ୍ଭଙ୍କୁ ସ୍ପର୍ଶ କରିପାରିବ ନାହିଁ ।" ନିଜ ପ୍ରତିଷ୍ଠା ସ୍ଥାପନ ବିଷୟରେ ଭକ୍ତର କେତେଦୂର ସତର୍କ ହେବା ଉଚିତ ତାହାର ଆଉ ଏକ ଉଦାହରଣ ଦେଖାଯାଉ ।

ଶ୍ରୀଳ ମାଧବେନ୍ଦ୍ର ପୁରୀ ଶ୍ରୀମନ୍ ମହାପ୍ରଭୁଙ୍କର ପରମଗୁରୁ ଅର୍ଥାତ୍ ମହାପ୍ରଭୁଙ୍କ ଗୁରୁଦେବ ଶ୍ରୀଈଶ୍ୱରପୁରୀଙ୍କ ଗୁରୁ । ଶ୍ରୀବୃନ୍ଦାବନରେ ଅଯାଚକ ବୃତ୍ତି ଆଚରଣ କରି ଭଜନରେ ରତଥିଲେ । ଶ୍ରୀଗୋପାଳ ତାଙ୍କୁ ଗୋପ-ବାଳକ ରୂପରେ ଦର୍ଶନ ଦେଇ ଦୁଗ୍ଧ ଯୋଗାଇଲେ ଏବଂ ସ୍ୱପ୍ନରେ ସ୍ୱପ୍ନାଦେଶ କଲେ "ମୁଁ ଏହି ବନମଧ୍ୟରେ ଲୁକ୍କାୟିତ ଭାବରେ ରହିଅଛି, ମୋତେ ବାହାର କରାଇ ପୂଜା କର ।" ପୁରୀଗୋସ୍ୱାମୀ ସ୍ୱପ୍ନ ଦେଖି ଆନନ୍ଦ ବିହ୍ୱଳ ହୋଇ ଶ୍ରୀବୃନ୍ଦାବନବାସୀଙ୍କୁ ଘେନି ନିବିଡ଼ ଅରଣ୍ୟ ମଧ୍ୟରୁ ସୁନ୍ଦର ଗୋପାଳ ବିଗ୍ରହ ପ୍ରକାଶ କରାଇଲେ ଏବଂ ତାଙ୍କର ସେବାର ସୁନ୍ଦର ବ୍ୟବସ୍ଥା କରାଇଲେ । କିଛିଦିନ ପରେ ଶ୍ରୀଗୋପାଳ ପୁଣି ପୁରୀଗୋସ୍ୱାମୀଙ୍କୁ ଆଦେଶ କଲେ, "ତୁମ୍ଭେ ଶ୍ରୀପୁରୁଷୋତ୍ତମକ୍ଷେତ୍ରକୁ ଯାଇ ମଳୟଜ ଚନ୍ଦନ ଆଣି ମୋହର ଦେହରେ ଲେପନ କର, ମୋର ଦେହର ତାପ ଶାନ୍ତ ହେବ ।" ଆଜ୍ଞା ପାଇ ଶ୍ରୀପୁରୀଗୋସ୍ୱାମୀ ପୁରୀ ଯାତ୍ରା କଲେ । ପଥରେ ଶ୍ରୀରେମୁଣାରେ ପହଞ୍ଚି ଶ୍ରୀଗୋପୀନାଥଙ୍କ ଦର୍ଶନପୂର୍ବକ ପ୍ରେମବିହ୍ୱଳ ହେଲେ । ଏବଂ ସେଠାରେ ଉତ୍ତମ କ୍ଷୀରି ଭୋଗ ହେଉଥିବାର ଶୁଣି ମନେକଲେ ଯଦି ଏ କ୍ଷୀରି ପ୍ରସାଦ ଅଯାଚିତ ଭାବରେ ପାଇଲେ ଆସ୍ୱାଦନ କରି ତଦ୍ରୂପ କ୍ଷୀରି ମୋର ଗୋପାଳଙ୍କୁ ପ୍ରସ୍ତୁତ କରି ଖୁଆନ୍ତି । ଏ ସ୍ୱବତ ନିଜର ଜିହ୍ୱା ତର୍ପଣ ନିମିତ୍ତ ନୁହେଁ, ଶ୍ରୀଗୋପାଳଙ୍କୁ ଉତ୍ତମ କ୍ଷୀରି ଖୁଆଇବାର ଅଭିଳାଷ । ତଥାପି ଏହି ବାସନା ମନରେ ଉଦୟ ହେବାରୁ ସେ ମନେ ମନେ ଲଜ୍ଜିତ ହେଲେ । ତତ୍ପରେ ଶ୍ରୀଗୋପୀନାଥଙ୍କ ଭୋଗ ପର ଆରତି ଦର୍ଶନ କରି ପ୍ରଣାମାନ୍ତେ ବାହାରକୁ ଯାଇ ଏକ ନିର୍ଜନ ସ୍ଥାନରେ ବସି କୃଷ୍ଣସ୍ମରଣ କରିବାକୁ ଲାଗିଲେ ।

ଏଣେ ଶ୍ରୀଗୋପୀନାଥ ପୁରୀଙ୍କ ମାନସ ଜାଣି ବାରଗୋଟି କ୍ଷୀରମଧ୍ୟରୁ ଗୋଟିଏ ନିଜ ବସ୍ତ୍ର ମଧ୍ୟରେ ଲୁଚାଇ ରଖିଲେ । ଗୋପୀନାଥଙ୍କ ଇଚ୍ଛାରୁ ପୂଜାହାରୀ ତାହା ଲକ୍ଷ୍ୟକରି ପାରିଲେ ନାହିଁ । ତତ୍ପରେ ଗୋପୀନାଥ ପୂଜାହାରୀଙ୍କୁ ସ୍ୱପ୍ନରେ ଆଦେଶକଲେ ମୁଁ ଗୋଟିଏ କ୍ଷୀର ଲୁଚାଇ ରଖିଅଛି, ତାହା ତୁମ୍ଭେ ନେଇ ମୋର ପ୍ରିୟ ଭକ୍ତ ମାଧବେନ୍ଦ୍ର ପୁରୀଙ୍କୁ ଦେଇଆସ । ପୂଜାହାରୀ ଜାଗ୍ରତ ହୋଇ ଯାଇ ଦେଖିଲେ ପ୍ରକୃତରେ କ୍ଷୀର ରଖା ହୋଇଅଛି ସେ ବିସ୍ମିତ ହୋଇ ସେହି ରାତିରେ ପୁରୀଗୋସ୍ୱାମୀଙ୍କୁ ଅନ୍ୱେଷଣ କରି ସେ କ୍ଷୀରର ବୃତ୍ତାନ୍ତ ନିବେଦନ ପୂର୍ବକ ଅର୍ପଣ କଲେ ଏବଂ ତାଙ୍କୁ ପ୍ରଣାମ କଲେ । ପୁରୀଗୋସ୍ୱାମୀ ଶ୍ରୀଗୋପୀନାଥଙ୍କର ଅପାର କୃପା ଦର୍ଶନକରି ପ୍ରେମବିହ୍ୱଳ ହୋଇ ସେ କ୍ଷୀର ଆସ୍ୱାଦନ କଲେ । ଏଠାରେ ଆଉ ରହିଲେ ଏ କ୍ଷୀର ବୃତ୍ତାନ୍ତ ଚତୁର୍ଦ୍ଦିଗକୁ ବିସ୍ତୃତ ହୋଇ ମୋର ପ୍ରତିଷ୍ଠା ବର୍ଦ୍ଧିତ ହେବ ଏହି ଭୟରେ ପ୍ରତ୍ୟୁଷରେ ଶ୍ରୀଗୋପୀନାଥଙ୍କ ଉଦ୍ଦେଶ୍ୟରେ ପ୍ରଣାମପୂର୍ବକ ସେ ସ୍ଥାନ ତ୍ୟାଗକରି ପଳାଇ ଗଲେ । ଯଥା—

ଠାକୁର ଆମାକେ କ୍ଷୀର ଦିଲ ଲୋକ ସବ୍ ଶୁନି
ଦିନେ ଲୋକ ଭିଡ ହବେ ମୋର ପ୍ରତିଷ୍ଠା ଜାନି ।
ଏଇ ଭୟେ ରାତ୍ରିଶେଷେ ଚଲିଲା ଶ୍ରୀପୁରୀ
ସେଇ ଖାନେ ଗୋପୀନାଥେ ଦଣ୍ଡବତ କରି ।

( ଚୈଃ ଚଃ ମଧ୍ୟ ୪ର୍ଥ ପଃ )

ଯେଉଁ ଗୋପୀନାଥ ତାଙ୍କପାଇଁ କ୍ଷୀର ଚୋରି କରିଥିଲେ ତାଙ୍କୁ ପୁନର୍ବାର ଦର୍ଶନ କରିବେ ଏ ଅପେକ୍ଷା ମଧ୍ୟ ସେ ରଖିଲେ ନାହିଁ । ଯେଉଁ ପୁରୀଗୋସ୍ୱାମୀଙ୍କ ପାଇଁ ଗୋପୀନାଥ ଚିରକାଳ ପାଇଁ କ୍ଷୀରଚୋର ନାମ ଧାରଣ କଲେ ସେ ପୁରୀଗୋସ୍ୱାମୀଙ୍କ ବୈଭବ ଦେଖିଲେତ । "ପ୍ରତିଷ୍ଠା ଶୂକରୀ ବିଷ୍ଠା" ତାର ଗନ୍ଧ ବାଜିଲେ ଅଙ୍ଗ ଦୁର୍ଗନ୍ଧରେ ପୂର୍ଣ୍ଣ ହେବ । ଅତଏବ ଭକ୍ତଙ୍କ ପକ୍ଷରେ ପ୍ରତିଷ୍ଠାଶା ଏକାବେଳକେ ତ୍ୟାଗକରିବା କର୍ତ୍ତବ୍ୟ । ପ୍ରେମିକ ଭକ୍ତଗଣ ଏଣୁ ନିରହଙ୍କାର ଓ ପ୍ରତିଷ୍ଠା ଶୂନ୍ୟ, ନିର୍ଭୀକ ଓ ସ୍ପଷ୍ଟବାଦୀ । ଯଶାଦର ଲାଳସା ସେମାନଙ୍କର ନାହିଁ, ତେବେ 'ସେମାନେ

ଭସ୍ମ କରିବେ କାହିଁକି ? ଠାକୁର ଶ୍ରୀହରିଦାସ ଯବନମାନଙ୍କ କର୍ତ୍ତୃକ ଧୃତ ହୋଇ ଗୌଡବାଦସାହଙ୍କ ଠାକୁ ନୀତ ହୁଅନ୍ତେ, ବାଦସାହ ତାଙ୍କୁ କହିଲେ "ହରିଦାସ, ତୁମ୍ଭେ କଲମା ପାଠକର, ନୋହିଲେ, ଏ କାଜିମାନେ ତୁମ୍ଭର ଦଣ୍ଡ ବିଧାନ କରିବେ । ସେଥିରେ ସେ ଅକାତରେ ଉତ୍ତର କଲେ—

"ଯେ କରନ୍ ଈଶ୍ବରେ

ତାହାବଇ ଅର କେହ କରିତେ ନା ପାରେ ।
ଅପରାଧ ଅନୁରୂପ ଯାର୍ ଯେଇ ଫଲ୍,
ଈଶ୍ବରେ ସେ କରେ ଇହା ଜାନହ କେବଲ ।
ଖଣ୍ଡ ଖଣ୍ଡ ଯଦ ହୟ୍ୟା ଯାୟ ଦେହ ପ୍ରାଣ
ତବୁ ଅମି ବଦନେ ନା ଛାଡ଼ ହରି ନାମ ।

( ଚୈଃ ଭାଃ ଅନ୍ଧ ୧୪ ଶ ଅ )

ନିମ୍ନରେ ଶ୍ରୀଲ ସନାତନ ଗୋସ୍ବାମୀଙ୍କର ଓ ପଣ୍ଡିତ ଶ୍ରୀଦାମୋଦରଙ୍କର ହସ୍ତିବାଦଟୀର ପରିଚୟ ଉଦ୍ଧୃତ ହେଲା ।

ମହାପ୍ରଭୁ ଗୌଡଦେଶ ହୋଇ ଶ୍ରୀବୃନ୍ଦାବନ ଯାଉଅଛନ୍ତି । ସଙ୍ଗରେ ଅନେକ ପ୍ରିୟ ପାର୍ଷଦ ଅଛନ୍ତି । ପଥରୁ ପ୍ରିୟ ଭକ୍ତମାନଙ୍କର ସଂଖ୍ୟା କ୍ରମେ ବର୍ଦ୍ଧିତ ହୋଉଅଛି । ମହାପ୍ରଭୁ ଏହିରୂପଭାବରେ ରାମକେଳୀ ଗ୍ରାମରେ ଉପସ୍ଥିତ ହେଲେ । ତାହା ଗୌଡ ବାଦସାହଙ୍କର ମନ୍ତ୍ରୀ ଶ୍ରୀରୂପ ଓ ଶ୍ରୀସନାତନଙ୍କର ନିବାସ । ସେ ଦୁହେଁ ରାଜମନ୍ତ୍ରୀ ହେଲେହେଁ ମହାଭକ୍ତ । ସେ ଦୁହେଁ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସି ବହୁଦୈନ୍ୟ ପ୍ରକାଶପୂର୍ବକ ମହାପ୍ରଭୁଙ୍କ ଶ୍ରୀଚରଣ କମଳରେ ପ୍ରଣତ ହେଲେ । ନିଜ ପ୍ରିୟ ଭକ୍ତ ଦୁହିଙ୍କର ନିଷ୍କପଟ ଦୈନ୍ୟରେ ମହାପ୍ରଭୁଙ୍କର ଅନ୍ତର ଦ୍ରବୀଭୂତ ହେଲା । ମହାପ୍ରଭୁ ସେମାନଙ୍କ ଦୈନ୍ୟ ଦର୍ଶନରେ ଅତ୍ୟନ୍ତ ପ୍ରୀତ ହୋଇ କୃପା ବର୍ଷଣପୂର୍ବକ ବିଦାୟ ଦେଲେ । ବିଦାୟ କାଳରେ ଶ୍ରୀସନାତନ ଗୋସ୍ବାମୀ ପ୍ରଡୁଙ୍କୁ କହି ମହାପ୍ରଭୁଙ୍କ ପାଦପଦ୍ମରୁ ବିଦାୟ ନେଇ ଗୃହକୁ ଗଲେ ।

## ପ୍ରହେଳିକାଟି ଏହି ।

ଯାର ସଙ୍ଗେ ହୟ ଏଇ ଲୋକ ଲକ୍ଷ କୋଟି
ବୃନ୍ଦାବନ ଯାବାର ଏଇ ନହେ ପରିପାଟି ।
( ଚୈଃ ଚଃ ମଧ୍ୟ ୧୬ ଶଃ ପ )

ମହାପ୍ରଭୁ ଶ୍ରୀସନାତନଙ୍କର ପ୍ରହେଳିକାକୁ ସେତେବେଳେ ଭଲ ଲକ୍ଷ୍ୟ କରି ନ ଥିଲେ, ପରେ ଚିନ୍ତା କରି ଭାବିଲେ ସନାତନ ଯଥାର୍ଥ କହିଅଛି । ଲକ୍ଷ ଲକ୍ଷ ଲୋକଙ୍କ ସଙ୍ଗେ ନେଇ ଶ୍ରୀବୃନ୍ଦାବନ ଗମନ ଉଚିତ ନୁହେଁ ! ଏକା କିମ୍ବା ଦୁଇ ଏକ ଜଣ ମର୍ମୀ ଲୋକ ସଙ୍ଗେ ଯିବା ବିଧେୟ । ତେଣୁ ସେଥର ଶ୍ରୀବୃନ୍ଦାବନକୁ ନ ଯାଇ କନେଇ ନାଟଶାଳାଠାରୁ ଫେରି ଆସିଲେ ଓ ପୁନର୍ବାର ଶ୍ରୀ ବଳଭଦ୍ର ଭଟ୍ଟାଚାର୍ଯ୍ୟଙ୍କୁ ସଙ୍ଗେ ନେଇ ଝାର୍ଖଣ୍ଡ ବନପଥ ଦେଇ ଶ୍ରୀବୃନ୍ଦାବନ ଯାତ୍ରା କଲେ ।

ପଣ୍ଡିତ ଶ୍ରୀଦାମୋଦରଙ୍କର ନିର୍ଭୀକତା ଏହାଠାରୁ ଅଦ୍ଭୁତ ଏକଗୁଣ ଅଧିକତର । ମହାପ୍ରଭୁ ଶ୍ରୀପୁରୁଷୋତ୍ତମରେ ବାସ କରିବା କାଳରେ ଗୋଟିଏ ସୁନ୍ଦର ବାଳକ ତାଙ୍କଠାକୁ ଆସୁଥିଲେ ଏବଂ ମହାପ୍ରଭୁ ସ୍ନେହ ପରବଶ ହୋଇ ତାଙ୍କୁ ଆଦର କରୁଥିଲେ । ସେ ବାଳକ ଏକ ବିଧବାର ସନ୍ତାନ ସେ ବିଧବା ଯୁବତୀ ଓ ପରମାସୁନ୍ଦରୀ । ପଣ୍ଡିତ ଦାମୋଦର ଏହା ଜାଣିଥିଲେ ଅତଏବ ବାଳକର ପ୍ରତ୍ୟହ ଆଗମନ ଓ ମହାପ୍ରଭୁଙ୍କର ସେ ବାଳକ ପ୍ରତି ପ୍ରଗାଢ଼ ସ୍ନେହ ଦାମୋଦର ସହ୍ୟ କରିପାରିଲେ ନାହିଁ । ଦାମୋଦର ଜାଣନ୍ତି ମହାପ୍ରଭୁଙ୍କର ସେପରି ଭୟର କିଛି କାରଣ ନାହିଁ, ତଥାପି ସେ ସ୍ୱୟଂ ଆଚରଣ କରି ଧର୍ମ ଶିକ୍ଷା ଦେବାକୁ ଏ ଧରାକୁ ଆସି ଅଛନ୍ତି । ଅତଏବ ଏ କାର୍ଯ୍ୟ ତାଙ୍କର ସାଧାରଣ ଶିକ୍ଷାର ବାଧା ଜନକ ହେବ । ତେଣୁ ପଣ୍ଡିତ ଦାମୋଦର ନିଃସଙ୍କୋଚ ଭାବରେ ମହାପ୍ରଭୁଙ୍କୁ କହିଲେ "ପ୍ରଭୋ ! ଆପଣ ପରମସୁନ୍ଦର ଯୁବକ, ଏହି ଯେ ବିଧବା ସୁନ୍ଦରୀ ଯୁବତୀଟିର ସନ୍ତାନଟିକୁ ସ୍ନେହ କରୁଅଛନ୍ତି ଏଥିରେ ଆପଣଙ୍କର ଶ୍ରୀ ପୁରୁଷୋତ୍ତମରେ ବିଶେଷ ଅଖ୍ୟାତି ହେବ । ଯଥା—

ଅନ୍ୟୋଦେଶେ ପଣ୍ଡିତ କହେଁ ଗୋସାଇଁ ଠାଇଁ
ଗୋସାଇଁ ଗୋସାଇଁ ଏବେ ଜାନିବା ଗୋସାଇଁ ।
ଏବେ ଗୋସାଇଁର ଗୁଣ ସବଲୋକ ଗାଇବେ
ତବେ ଗୋସାଇଁର ପ୍ରତିଷ୍ଠା ପୁରୁଷୋତ୍ତମେ ହୈବେ ।
ଶୁନି ପ୍ରଭୁ କହେ କାହା କହ ଦାମୋଦର ?
ଦାମୋଦର କହେ ତୁମି ସ୍ୱତନ୍ତ୍ର ଈଶ୍ୱର ।
ସ୍ୱଚ୍ଛନ୍ଦେ ଆଚାର କର କେ ପାରେ ବଲିତେ
ମୁଖର ଜଗତେର ମୁଖ ପାର ଆଚ୍ଛାଦିତେ ?
ପଣ୍ଡିତ ହଞ୍ଚା ମନେ କେନ ବିଚାର ନା କର
ରାଣ୍ଡୀ ବ୍ରାହ୍ମଣୀର ବାଲକେ ପ୍ରୀତି କେନ କର ।
ଯଦ୍ୟପି ବ୍ରାହ୍ମଣୀ ସେଇ ତପସ୍ୱିନୀ ସତୀ
ତଥାପି ତାହାର ଦୋଷ ସୁନ୍ଦରୀ ଯୁବତୀ ।
ତୁମି ଓ ପରମ ଯୁବା ପରମ ସୁନ୍ଦର
ଲୋକ କାନା କାନି ବାତେ ଦେହ ଅବସର ।
( ଚୈଃ ଚଃ ଅନ୍ତ୍ୟ ୩ ପୃ ପ )

ମହାପ୍ରଭୁ ଦାମୋଦର ପଣ୍ଡିତଙ୍କୁ ନିରପେକ୍ଷ ଜାଣି ସନ୍ତୁଷ୍ଟହୋଇ ନିଜଗୃହର ଅଭିଭାବକସ୍ୱରୂପ ମାତାଠାକୁରାଣୀଙ୍କ ନିକଟରେ ରହିବା ପାଇଁ ତାଙ୍କୁ ଶ୍ରୀ ନବଦ୍ୱୀପକୁ ପଠାଇଥିଲେ । ଭକ୍ତଗଣ ଯେ ସ୍ପଷ୍ଟବାଦୀ, ତୋଷାମୋଦକାରୀ ନୁହନ୍ତି ଏହାର ଅନ୍ୟତର ଏକ ଉଦାହରଣ ଶ୍ରୀଜଗଦାନନ୍ଦଙ୍କ ବ୍ୟବହାରରୁ ଜଣାଯାଏ । ପଣ୍ଡିତ ଜଗଦାନନ୍ଦ ମହାପ୍ରଭୁଙ୍କର ଅତି ପ୍ରିୟ । ପଣ୍ଡିତ ଶ୍ରୀସନାତନ ବୟୋଧିକ ଓ ମହାପ୍ରଭୁଙ୍କର ସମ୍ମାନଭାଜନ ଏବଂ ପଣ୍ଡିତ ଜଗଦାନନ୍ଦ କନିଷ୍ଠ ଓ ସ୍ନେହାସ୍ପଦ । ଜଗଦାନନ୍ଦ ଶ୍ରୀ ସନାତନ ଗୋସ୍ୱାମୀଙ୍କୁ ଗୁରୁତୁଲ୍ୟ ମାନ୍ୟ କରୁଥିଲେ । ଏକସମୟରେ ଜଗଦାନନ୍ଦ ଶ୍ରୀବୃନ୍ଦାବନକୁ ଯାଇ ଶ୍ରୀସନାତନଙ୍କ କୁଟୀରରେ ବାସକଲେ । ଜଗଦାନନ୍ଦଙ୍କୁ ପରୀକ୍ଷା କରିବା ନିମିତ୍ତ ସନାତନ ଗୋସ୍ୱାମୀ ଏକଦିନ ମୁକୁନ୍ଦ ସରସ୍ୱତୀଙ୍କଠାରୁ ଏକ ଗୈରିକ ବସନ ନେଇ ମସ୍ତକରେ ବାନ୍ଧି ଜଗଦାନନ୍ଦ ପାକ କରୁଥିବା କାଳରେ

ତାଙ୍କଠାରେ ଉପସ୍ଥିତ ହେଲେ । ଜଗଦାନନ୍ଦ ପଣ୍ଡିତଙ୍କୁ “ ଶ୍ରୀପାଦ, ଏ ରକ୍ତୁଳ ବସନ କେଉଁଠାରୁ ପାଇଲେ ” ସନାତନ ଗୋସ୍ୱାମୀ କହିଲେ “ ମୁଁ ଏହା ମୁକୁନ୍ଦ ସରସ୍ୱତୀଙ୍କଠାରୁ ଆଣିଅଛି” । ଜଗଦାନନ୍ଦ ଭାବିଥିଲେ “ ଏ ରକ୍ତୁଳ ବସନ ବୋଧହୁଏ ମହାପ୍ରଭୁଙ୍କର ପ୍ରସାଦୀ ବସନ,” ତେଣୁ ମନେ ମନେ ଖୁସି ହୋଇଥିଲେ । ପରେ ଯେତେବେଳେ ଶୁଣିଲେ ଏହ ମୁକୁନ୍ଦ ସରସ୍ୱତୀଙ୍କର, ତେତେବେଳେ ଜଗଦାନନ୍ଦ କ୍ରୋଧାନ୍ଧ ହୋଇ ଭାତହାଣ୍ଡି ଧରି ସନାତନଙ୍କୁ ମାରିବାକୁ ଦୌଡ଼ିଲେ । ସନାତନ ଗୋସ୍ୱାମୀ ପ୍ରାମାଣିକ ଆଦର୍ଶ ବୈଷ୍ଣବ ଓ ସମସ୍ତଙ୍କର ଗୁରୁ ସ୍ଥାନୀୟ ଓ ମହାପ୍ରଭୁଙ୍କର ପ୍ରଧାନ ପାର୍ଷଦ । ଅପର ସନ୍ନ୍ୟାସୀଙ୍କର ବ୍ୟବହୃତ ବସ୍ତ୍ର ବ୍ୟବହାର କରିଅଛନ୍ତି ଏହା ଜଗଦାନନ୍ଦଙ୍କର ପ୍ରାଣରେ ସହ୍ୟ ହେଲା ନାହିଁ । ସନାତନ ଗୋସ୍ୱାମୀ ଯେ ତାଙ୍କର ଗୁରୁତୁଲ୍ୟ ମାନ୍ୟପାତ୍ର, ଜଗଦାନନ୍ଦ ସନାତନଙ୍କ ଅମର୍ଯ୍ୟାଦା କାର୍ଯ୍ୟରେ ତାହା ଭୁଲିଗଲେ । ଯାହା ଦେଖିବା ପାଇଁ ସନାତନ ଯେ ନିଜ ଅନୁପଯୁକ୍ତ ବସ୍ତ୍ର ଶିରରେ ବାନ୍ଧିଥିଲେ ତାହା ଦର୍ଶନ କରି ଜଗଦାନନ୍ଦଙ୍କୁ ଭୂୟସୀ ପ୍ରଶଂସା କଲେ ଏବଂ କହିଲେ,

> “ ଯାହା ଦେଖିବାରେ ବସ୍ତ୍ର ମସ୍ତକେ ବାନ୍ଧିଲ
> ସେଇ ଅପୂର୍ବପ୍ରେମ ଏଇ ପ୍ରତ୍ୟକ୍ଷ ଦେଖିଲ ।”
>
> ( ଚୈଃ ଚଃ ଅନ୍ତ୍ୟ ୧୩ଶ ପଃ)

ମହାପ୍ରଭୁଙ୍କର ପାର୍ଷଦଗଣ ସତତ ଧର୍ମ ମର୍ଯ୍ୟାଦା ପାଳନ କରି ଚଳୁଥିଲେ । ମର୍ଯ୍ୟାଦା ରକ୍ଷା ନ କଲେ ଧର୍ମର ବିଶୃଙ୍ଖଳା ଘଟେ । ତେଣୁ ମହାପ୍ରଭୁ ମର୍ଯ୍ୟାଦା ପାଳନ ବିଷୟରେ ନିଜ ଜନଙ୍କୁ ଶିକ୍ଷା ଦେଉଥିଲେ ।

ମହାପ୍ରଭୁ ଟୋଟା ଗୋପୀନାଥରେ ଭିକ୍ଷା କରୁଅଛନ୍ତି । ଜ୍ୟେଷ୍ଠମାସର ମଧ୍ୟାହ୍ନକାଳ, ପ୍ରଚଣ୍ଡ ରୌଦ୍ରତାପରେ ସମୁଦ୍ରର ବାଲୁକା ତାତି ଧପ ଧପ କରୁଅଛି । ଏମନ୍ତ ସମୟରେ ଭଗବାନ୍ ପ୍ରଭୁ ଶ୍ରୀସନାତନ ଗୋସ୍ୱାମୀଙ୍କୁ ଡକାଇ ପଠାଇଲେ । ବର୍ତ୍ତମାନ ଯେଉଁ ସ୍ଥାନରେ ବକୁଳ ମଠ, ସନାତନ ଗୋସ୍ୱାମୀ ସେହିଠାରେ ଠାକୁର ଶ୍ରୀହରିଦାସଙ୍କ ସଙ୍ଗେ ବାସ କରୁଥିଲେ । ମହାପ୍ରଭୁ ମୋତେ ଡକାଇ ଅଛନ୍ତି ଏହି ଆନନ୍ଦରେ ଶ୍ରୀସନାତନ ଗୋସ୍ୱାମୀ ଯିବାକୁ

ଲାଗିଲେ । ତୋଟା ଗୋପୀନାଥ ଯିବାକୁ ଶ୍ରୀଜଗନ୍ନାଥ ଦେଉଳ ପାର୍ଶ୍ୱରେ ସହର ମଧ୍ୟ ଦେଇ ଏକ ସରଳ ଓ ସୁବିଧା ଜନକ ପଥ ଅଛି କିନ୍ତୁ ସନାତନ ପାଦଚାର ଅବଗ । ଯବନ ରାଜାଙ୍କ ଅଧୀନରେ ମନ୍ତ୍ରୀତ୍ୱ କାର୍ଯ୍ୟ କରୁଥିବାରୁ ଓ ଯବନ ସଂସର୍ଗ କରିଥିବାରୁ ସେ ନିଜକୁ ପତିତ ବୋଲି ମନେ କରୁଥିଲେ । ସହର ପଥରେ ଶ୍ରୀଜଗନ୍ନାଥଦେବଙ୍କର ସେବକମାନେ ଗତାୟତ କରନ୍ତି ଅତଏବ ସେ ବାଟେ ଗଲେ କୌଣସି ସେବକଙ୍କର ଅଙ୍ଗସ୍ପର୍ଶ ଘଟିପାରେ । ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଯାତ୍ରୀମାନଙ୍କରେ ସତତ ପୂର୍ଣ୍ଣ ଅତଏବ ଏକାନ୍ତ ଭାବରେ ସହର ବାଟେ ଯିବା ସମ୍ଭବପର ନୁହେ । ଶ୍ରୀଜଗନ୍ନାଥଦେବଙ୍କ ସେବକଙ୍କୁ ସ୍ପର୍ଶକଲେ ତାଙ୍କର ଅପରାଧ ଜାତହେବ ଏହି ଭୟରେ ସହର ପଥରେ ନ ଯାଇ ବାଲୁକାମୟ ନିର୍ଜନ ପଥରେ ଯିବାକୁ ଲାଗିଲେ । ଅନ୍ତର ଆନନ୍ଦରେ ପୂର୍ଣ୍ଣ ଅତଏବ ତପ୍ତ ବାଲୁକାରେ ପାଦରେ ଫୋଟକା ଜାତ ହୋଇଥିଲେ ମଧ୍ୟ ସେ କଷ୍ଟ ଅନୁଭୂତ ହୋଇ ନ ଥାଏ । ତୋଟା ଗୋପୀନାଥରେ ପହଞ୍ଚି ମହାପ୍ରଭୁଙ୍କୁ ପ୍ରଣାମ କଲେ । ମହାପ୍ରଭୁ ତାହାଙ୍କୁ ପ୍ରସାଦ ସେବନ କରିବାକୁ ଆଦେଶ କଲେ । ପ୍ରସାଦ ସେବନାନ୍ତରେ ପଚାରିଲେ "ସନାତନ, ତୁମ୍ଭେ କେଉଁ ପଥରେ ଆସିଲ" ସନାତନ କହିଲେ "ମୁଁ ସମୁଦ୍ର ପଥରେ ଆସିଲି" ॥

ମହାପ୍ରଭୁ କହିଲେ "ଏତେ ଖରାରେ ତପ୍ତବାଲୁକାରେ ଆସିଲ, ଶ୍ରୀଦେଉଳ ପାଖଦେଇ ଶୀତଳ ବାଟରେ ଆସିଲ ନାହିଁ ?" ସନାତନ କହିଲେ "ପ୍ରଭୋ ! ସିଂହଦ୍ୱାର ପଥରେ ମୋର ଆସିବାର ଅଧିକାର ନାହିଁ । ବିଶେଷତଃ ଶ୍ରୀଜଗନ୍ନାଥ ଦେବଙ୍କ ସେବକମାନେ, ସେ ବାଟେ ଗତାୟାତ କରନ୍ତି । ସେମାନଙ୍କୁ ଛୁଇଁଲେ ମୋର କେତେ ଅପରାଧ ନ ହୁଅନ୍ତା ।" ମହାପ୍ରଭୁ ଦେଖିଲେ ସନାତନ ତାଙ୍କ ବଷମ ପରୀକ୍ଷାରେ ଉତ୍ତମରୂପେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ତେଣୁ ପ୍ରୀତିପୂର୍ବକ ସମ୍ବୋଧନ କରି କହିଲେ "ସନାତନ ! ତୁମ୍ଭଙ୍କୁ ସ୍ପର୍ଶକରି ସମସ୍ତ ଜଗତ୍ ପବିତ୍ର ହୋଇପାରେ, ଦେବତା ଓ ମୁନିଗଣ ତୁମ୍ଭଙ୍କୁ ସ୍ପର୍ଶକରି ପବିତ୍ର ହୁଅନ୍ତି । ତଥାପି ତୁମ୍ଭ ପକ୍ଷରେ ଏ ମର୍ଯ୍ୟାଦାରକ୍ଷଣ ଉପଯୁକ୍ତ ହୋଇଅଛି । ଯଥା:—

ଯଦ୍ୟପିଓ ହଓ ତୁମି ଜଗତ ପାବନ
ତୋମା ସ୍ପର୍ଶେ ପବିତ୍ର ହୟ ଦେବ ମୁନିଗଣ ।
ତଥାପି ଭକ୍ତେର ସ୍ୱଭାବ ମର୍ଯ୍ୟାଦା ରକ୍ଷଣ
ମର୍ଯ୍ୟାଦା ପାଳନ ହୟ ସାଧୁର ଭୂଷଣ ।

( ଚୈ: ଚ: ଅନ୍ତ୍ୟ ୪ର୍ଥ ପ: )

କୃଷ୍ଣଙ୍କ ପକ୍ଷରେ ଯେରୂପ କେତେକ କର୍ତ୍ତବ୍ୟ ପ୍ରଦର୍ଶିତ ହେଲା ସେହିରୂପ କେତେକ ଅକର୍ତ୍ତବ୍ୟ ମଧ୍ୟ ରହିଅଛି । ଭକ୍ତ ଭଗବାନଙ୍କୁ ନିଷ୍କାମ ଭଜନ କରନ୍ତି । ନିଜ ସୁଖ କାମନାରେ ବାବଦୀୟ ବାଧନାରେ ଭଜିବା ପ୍ରେମିକ ଭକ୍ତର କର୍ତ୍ତବ୍ୟ ନୁହେଁ । ପ୍ରାଣାନ୍ତ ହେଲେ ମଧ୍ୟ ପ୍ରେମିକ ଭକ୍ତ ଭଗବାନଙ୍କୁ ବିଷୟ ପ୍ରାର୍ଥନା କରନ୍ତି ନାହିଁ । ଶ୍ରୀଚୈତନ୍ୟ ଚରିତାମୃତରେ ଏହାର ଉତ୍ତମ ପ୍ରମାଣ ରହିଅଛି । ଗୋଟିଏ ଉଦାହରଣ ନିମ୍ନରେ ଦିଆଯାଉଅଛି ।

ଶ୍ରୀ ଗୋପୀନାଥ ପଟ୍ଟନାୟକ ବିଖ୍ୟାତ ଶ୍ରୀଳ ରାୟରାମାନନ୍ଦଙ୍କ କନିଷ୍ଠ ଭ୍ରାତା । ଉତ୍କଳେଶ୍ୱର ମହାରାଜ ଶ୍ରୀପ୍ରତାପରୁଦ୍ରଦେବଙ୍କ ଅଧୀନରେ କର୍ମ କରୁଥିଲେ । ତାଙ୍କ ଉପରେ କେତେକ ଟଙ୍କା ରାଜସରକାରରୁ ବାକିଥିଲା । ସେହି ଟଙ୍କା ଆଦାୟ ଦେବା ରାଜପୁତ୍ର ଶ୍ରୀପୁରୁଷୋତ୍ତମ ଜେନାଙ୍କୁ ଯେ କିଛି ତାଚ୍ଛଲ୍ୟ ଭାବ ପ୍ରକାଶ କରିବାରୁ ରାଜପୁତ୍ର ସେଥିରେ ରାଗାନ୍ୱିତ ହୋଇ ମହାରାଜଙ୍କୁ ଜଣାଇ ଗୋପୀନାଥ ପଟ୍ଟନାୟକଙ୍କ ପ୍ରତି ପ୍ରାଣଦଣ୍ଡର ଆଜ୍ଞା କରାଇ ଗୃଙ୍ଗ ଉପରେ ଚଢ଼ାଇଲେ କିନ୍ତୁ ସେହି ଅବସ୍ଥାରେ ମଧ୍ୟ ଧୀର ଭକ୍ତବୀର ଗୋପୀନାଥ ପଟ୍ଟନାୟକ ନିଜ ପ୍ରାଣ ନିମନ୍ତେ କାତର ନ ଥିଲେ । ସେ ସେତେବେଳେ ନିର୍ଭୟରେ ହରିନାମ ନେଉଥିଲେ । ମହାପ୍ରଭୁଙ୍କ କୃପା କୌଶଳରୁ ତାଙ୍କର ପ୍ରାଣ ରକ୍ଷା ହେଲା । ଓ ରାଜସରକାରରୁ ଦୁଇଗୁଣ ବର୍ତ୍ତନ ବୃଦ୍ଧି ହେଲା ।

ସେହି ଗୋପୀନାଥଙ୍କ ବିଷୟ ଶ୍ରୀକାଶୀମିଶ୍ର ମହାପ୍ରଭୁଙ୍କ ପାଖରେ କହିବା ସମୟରେ କହିଥିଲେ " ପ୍ରଭୋ ! ଯେଉଁ ବିଷୟ କାମନାରେ ତୋର ଶ୍ରୀଚରଣାରବିନ୍ଦ ଭଜନ କରେ ସେ ଅଜ୍ଞ ଯଥା—

'ବ୍ୟବହାର ଲାଗି ଯେ ତୋମା ଭଜେ ସେ ଜ୍ଞାନ ଅନ୍ଧ !
ତୋମାର ଭଜନ ଫଳ ତୋମାଠେ ପ୍ରେମଧନ
ବିଷୟ ଲାଗି ଯେ ତୋମା ଭଜେ ସେଇ ମୂଢ଼ଜନ ।
ତୋମା ଲାଗି ରାମାନନ୍ଦ ରାଜ୍ୟତ୍ୟାଗ କୈଲ,
ତୋମା ଲାଗି ସନାତନ ବିଷୟ ଛାଡ଼ିଲ ।
ତୋମାଲାଗି ରଘୁନାଥ ସବ ଛାଡ଼ି ଅଇଲ,
ସେଥାକୁ ତାହାର ପିତା ବିଷୟ ପାଠାଇଲ
ତୋମାର ଚରଣ କୃପା ହୋଇଛି ତାହାରେ
ଛତ୍ରମାଗି ଖାଇ ବିଷୟ ସ୍ପର୍ଶ ନାହିଁ କରେ ।

[ ଚୈଃ ଚଃ ଅନ୍ତ୍ୟ ୯ମ ପଃ ]

ଶ୍ରୀଗୋପୀନାଥ ପଟ୍ଟନାୟକ ନିଜେ ମଧ ମହାପ୍ରଭୁଙ୍କୁ ଯାହା କହିଥିଲେ ସେଥିରୁ ଭକ୍ତ ପକ୍ଷରେ ବିଷୟ ବାସନା ଉପର ପରିହାର୍ଯ୍ୟ ଉତ୍ତମରୂପେ ପ୍ରମାଣିତ ହେଉଅଛି । ଯଥା—

ନେତଧଟି ମାଥେ ଗୋପୀନାଥ ଚରଣେ ପଡ଼ିଲ,
ରାଜାର କୃପା ବୃତ୍ତାନ୍ତ ସକଳଇ କହିଲ,
ବାକି କୌଡ଼ିବାଦ, ଦ୍ୱିଗୁଣ ବର୍ତ୍ତନ କରିଲ
ପୁନଃ ସେଇ ବିଷୟ ଦିଲା ନେତଧଟି ଦିଲ ।
କାହାଁ ଶୃଙ୍ଗେର ଉପର ସେହି ମରଣ ପ୍ରମାଦ
କାହାଁ ନେତଧଟି ପୁନଃ ଏ ସବ ପ୍ରସାଦ ।
ଶୃଙ୍ଗେର ଉପର ତୋମାର ଚରଣ ଧ୍ୟାନ କୈଲି
ଚରଣ ସ୍ମରଣ ପ୍ରଭାବେ ଏହି ଫଳ ପାଇଲି ।
ଲୋକେ ଚମତ୍କାର ମୋର ଏସବ ଦେଖିୟା
ପ୍ରଶଂସେ ତୋମାର କୃପା ମହିମା ଗାଇୟା ।
କିନ୍ତୁ ତୋମା ସ୍ମରଣେର ନହେ ଏଇ ଫଲ
'ଫଲାଭାସ ଏଇ ଯାତେ ବିଷୟ ଚଞ୍ଚଲ ।
ରାମରାୟ ବାଣୀନାଥେ କୈଲେ ନିର୍ବିଷୟ

ସେ କୃପା ଆମାତେ ନାଇ ଯାତେ ଐ ଚ୍ଛିଦ୍ରୟ ।
ଶୁଦ୍ଧ କୃପାକର ଗୋସାଇଁ ଦୃଗୁଅ ତଦଯ୍ୟ
ଜୀବେଣ୍ଟି ଧରିଲେ ମୋତେ ଛିଷୟ୍ଯ ନାଚୟ ।

( ଚୈଃ ଚଃ ଅନ୍ତ୍ୟ ୧୦ମ ପ )

ମହାପ୍ରଭୁଙ୍କ ପ୍ରଧାନ ଶିକ୍ଷା ଜୀବରେ ଦୟା ଓ ଶ୍ରୀହରି ନାମରେ ରୁଚି । ଅତଏବ ଜୀବକୁ କୌଣସି ପ୍ରକାରେ ପୀଡ଼ାଦେବା ଭକ୍ତଙ୍କ ପକ୍ଷରେ ଅବିଧେୟ । ତେଣୁ ଶ୍ରୀଳ ବୃନ୍ଦାବନଦାସ କହିଅଛନ୍ତି । ଯଥା—

"ବୈଷ୍ଣବ ହିଂସାର କଥା ସେ ଥାଉକ ଦୂରେ
ସହଜେ ଜୀବେରେ ଯେ ଅଧମ ପୀଡ଼ାକରେ,
ବିଷ୍ଣୁ ପୂଜିୟାଓ ଯେ ପ୍ରଜାର ପୀଡ଼ାକରେ
ପୂଜାଓ ନିଷ୍ଫଲେ ଯାୟ ଆର ଦୁଃଖେ ମରେ ।
ସର୍ବଭୂତେ ଅଛେନ ଶ୍ରୀବିଷ୍ଣୁ ନା ଜାନିୟା ।
ବିଷ୍ଣୁ ପୂଜାକରେ ଅତି ପ୍ରାକୃତ ହଇୟା
ଏକହସ୍ତେ ଯେନ ବିପ୍ରଚରଣ ପାଖାଲେ
ଆରହସ୍ତେ ଢେଲମାରେ ମାଥାର ଉପରେ ।"

ଜୀବପ୍ରତି ଦୟା ନ କଲେ ଭଗବାନ ସେମାନଙ୍କର ପୂଜା ଗ୍ରହଣ କରନ୍ତି ନାହିଁ ।

ସାଧାରଣ ଜୀବପକ୍ଷେ ନିର୍ଦ୍ଦୟ ବ୍ୟବହାର ତ ଅନୁପଯୁକ୍ତ, ଭକ୍ତଙ୍କ ପ୍ରତି ଅସଦ୍‌ବ୍ୟବହାର ଯେ ଅଧିକତର ଦୁଷଣୀୟ ଏଥିରେ କି ସନ୍ଦେହ ଅଛି । ଯେ ଭକ୍ତ ପ୍ରତି ଅସଦ୍‌ବ୍ୟବହାର କରେ ଶ୍ରୀଭଗବାନ ତା ପ୍ରତି ଅସନ୍ତୁଷ୍ଟ ହୁଅନ୍ତି । ଯଦି କେହି ବ୍ୟକ୍ତି ମୋତେ ଅତ୍ୟନ୍ତ ଭକ୍ତି କରେ ଓ ମୋର ସ୍ତ୍ରୀ କମ୍ବା ସନ୍ତାନ ପ୍ରତି ଘୃଣା କରେ, ମୁଁ କି ଏ ବ୍ୟକ୍ତିକୁ କଦାପି ଭଲ ପାଇପାରିବି ? ସେଥିପାଇଁ ଶ୍ରୀଳ ବୃନ୍ଦାବନଦାସ କ୍ରୋଧ ଉପରେ ପାଦ ବାରଣ କରିଯାଇଅଛନ୍ତି । ଯଥା—

ଦେଖି ମୂର୍ଖ ଦରିଦ୍ର ଯେ ବୈଷ୍ଣବେରେ ହାସେ,
ତାର ପୂଜା ବିତ୍ତକଲ୍ପ କୃଷ୍ଣେରେ ନା ବାସେ

[ ଚୈଃ ଭାଃ ମଧ୍ୟ ୧୬ଶ ଅଃ ]

ଅହଙ୍କାର କରିବା ସମସ୍ତଙ୍କ ପକ୍ଷରେ ଅବିଧେୟ, ବିଶେଷତଃ ଭକ୍ତମାନଙ୍କ ପକ୍ଷରେ ଏହା ଅତ୍ୟନ୍ତ ଦୂଷଣୀୟ । ତେଣୁ ମହାପ୍ରଭୁ ଭକ୍ତମାନଙ୍କୁ ତୃଣାଦପି ନୀଚ ହେବାକୁ ଶିକ୍ଷା ଦେଇ ଅଛନ୍ତି । ଏକ ଦିଗ୍‌ବିଜୟୀ ପଣ୍ଡିତ ବିଦ୍ୟା ଗର୍ବରେ ଅନ୍ଧ ହୋଇ ଜୟ ବାସନାରେ ଶ୍ରୀନବଦ୍ୱୀପରେ ପ୍ରବେଶ କଲେ । ପଣ୍ଡିତ ଶ୍ରୀସରସ୍ୱତୀଙ୍କର କୃପାପାତ୍ର । ପୂଜା କରି ସେ ଦେବୀଙ୍କଠାରୁ ବର ପାଇଥିଲେ, ତେଣୁ ତାଙ୍କ ହୃଦୟ ଗର୍ବରେ ପୂର୍ଣ୍ଣ ଥିଲା । ନବଦ୍ୱୀପରେ ପ୍ରଧାନ ପ୍ରଧାନ ପଣ୍ଡିତମାନେ ତାଙ୍କ ସହ ପ୍ରତିଦ୍ୱନ୍ଦୀ ହେବାକୁ କେହି ଭୟରେ ସାହସୀ ହେଲେ ନାହିଁ । ମହାପ୍ରଭୁ ସେତେବେଳେ ନବଦ୍ୱୀପରେ ପ୍ରଧାନ ପଣ୍ଡିତ । ତାଙ୍କ ଶିଷ୍ୟବର୍ଗ ଏହି ଦିଗ୍‌ବିଜୟୀ ପଣ୍ଡିତଙ୍କ କଥା ଉତ୍ଥାପନ କରନ୍ତେ ମହାପ୍ରଭୁ ସେ ପଣ୍ଡିତଙ୍କ ଗର୍ବ ଚୂର୍ଣ୍ଣ କରିବେ ଏହା ମନରେ ସ୍ଥିର ଶିଷ୍ୟବର୍ଗଙ୍କୁ ପ୍ରବୋଧ ଦେଇ କହିଲେ,—

"ଶୁନ ଭାଇ ସବ ଏଇ କହି ତତ୍ତ୍ୱ କଥା
ଅହଂକାର ନା ସହେନ ଈଶ୍ୱର ସର୍ବଥା ।
ଯେ ଯେ ଗୁଣେ ମତ୍ତ ହଇ କରେ ଅହଙ୍କାର
ଅବଶ୍ୟ ଈଶ୍ୱର ତାହା କରେନ ସଂହାର ।

ଫଳବନ୍ତ ବୃକ୍ଷ ଆର ଗୁଣବନ୍ତ ଜନ
ନମ୍ରତା ଯେ ତାହାର ସ୍ୱଭାବ ଅନୁକ୍ଷଣ ।
ହୈହୟ, ନହୁଷ, ବାଣ, ନରକ, ରାବଣ
ମହାଦିଗ୍‌ବିଜୟୀ ଶୁନିଯାଛ ଯେ ଯେ ଜନ ।
ବୁଝ ଦେଖି କାର ଗର୍ବ ଚୂର୍ଣ୍ଣ ନାହିଁ ହୟ,
ସର୍ବଦା ଈଶ୍ୱର ଅହଂକାର ନାହିଁ ସୟ ।"

ମହାପ୍ରଭୁ ଯେ ମନୁଷ୍ୟର ଗର୍ବକୁ ଭଲ ପାଆନ୍ତି ନାହିଁ ଏହାର ଆଉ ଏକ ଉଦାହରଣ ଶ୍ରୀଲ କୃଷ୍ଣଦାସ କବିରାଜ ଦର୍ଶାଇ ଅଛନ୍ତି । ଯଥା —

ରାମଦାସ ବିଶ୍ୱାସ ଯବେ ପ୍ରଭୁରେ ମିଳିଲା
ମହାପ୍ରଭୁ ଅଧିକ ତାରେ କୃପା ନା କରିଲା ।

ଅନ୍ତରେ ମୁମୁକ୍ଷୁ ତହିଁ ବିଦ୍ୟା ଗର୍ବବାନ୍
ସର୍ବଚିତ୍ତ ଜ୍ଞାତା ପ୍ରଭୁ ସର୍ବଜ୍ଞ ଭଗବାନ ।
( ଚି ଚଃ ଅନ୍ତ୍ୟ ୧୩ ପ ଚଃ )

ଭକ୍ତ ଯଦି ଅନ୍ତରରେ ଗର୍ବ ପୋଷଣ କରି ମୁଁ ଖୁବ ବଡ଼ ସାଧକ, ମୁଁ ନିତ୍ୟ ଏତେ ହରିନାମ ଜପ କରୁଛି, ମୁଁ ଏତେ ସାଧୁ ସେବା କରୁଅଛି, ମୁଁ ନିତ୍ୟ ଶାସ୍ତ୍ର ଚର୍ଚ୍ଚା କରୁଅଛି ମୁଁ ଫଳ ମାତ୍ର ଆହାର କରି ଜୀବନ ଧାରଣ କରୁଅଛି, ଏହିରୂପେ ଅହଂକାର ପୋଷଣ କରନ୍ତି ଅନ୍ତର୍ଯାମୀ ଭଗବାନ ଭକ୍ତଙ୍କର ଏ ସମସ୍ତ ଅହଂକାରରେ ଅସନ୍ତୁଷ୍ଟ ହୁଅନ୍ତି । ଶ୍ରୀବାସ ଅଙ୍ଗନରେ କୀର୍ତ୍ତନ କାଳରେ ଶ୍ରୀବାସ ଯେଉଁ ବ୍ରହ୍ମଚାରୀଙ୍କୁ ଗୋପନରେ ନିଜ ମନ୍ଦିରରେ ରଖାଇଥିଲେ, ପ୍ରେମ ସଙ୍କୁଚିତ ହେବାରୁ ମହାପ୍ରଭୁ କେହି ବହିରଙ୍ଗର ପ୍ରବେଶ ଜାଣିପାରି ସେ ବ୍ରହ୍ମଚାରୀଙ୍କୁ ପୁର ମଧ୍ୟରୁ ବାହାର କରାଇ ଦେଇଥିଲେ; ସେହି ସମୟରେ ମହାପ୍ରଭୁ କଣ କହିଥିଲେ ଦେଖାଯାଉ,—

"ଦୁଇ ଭୁଜ ତୁଲି ପ୍ରଭୁ ଅଙ୍ଗୁଳି ଦେଖାୟ
ପୟଃପାନେ କଭୁ ମୋତେ କେହ ନାହିଁ ପାୟ ।
ଚଣ୍ଡାଳେଓ ମୋହର ଶରଣ ଯଦି ଲୟ
ସେହି ମୋର ମୁଁ ତାର ଜାନିହ ନିଶ୍ଚୟ ।
ସନ୍ନ୍ୟାସୀ ଓ ମୋର ଯଦି ନା ଲୟ ଶରଣ
ସେହ ମୋର ନହେ ସତ୍ୟ ବଲିଲ ବଚନ ।
ଗଜେନ୍ଦ୍ର ବାନର ଗୋପ କି ତପ କରିଲ
ବଲ ଦେଖି ତାରା ମୋରେ କି ତପେ ପାଇଲ ।
ଅସୁରେଓ ତପ କରେ କି ହୟ ତାହାର
ବିନେ ମୋର ଶରଣ ନହିଲେ ନାହିଁ ପାର ॥
( ଚୈ ଭାଃ ୨୩ ଅ )

ଅତଏବ କାମ, କ୍ରୋଧ, ଲୋଭ, ମୋହ ମଦ ମାତ୍ସର୍ଯ୍ୟାଦି ଭକ୍ତ-ପକ୍ଷରେ ଏକାନ୍ତ ବର୍ଜ୍ଜନୀୟ ।

ଭକ୍ତଙ୍କର ସତତ ଆପଣାକୁ ଭଗବତ୍ ଦାସ ଜାଣି ଓ ତାଙ୍କ ଦ୍ୱାରା ନିଯୋଜିତ ହୋଇ କରି ତାଙ୍କ ପ୍ରଦତ୍ତ ଶକ୍ତିରେ ସମସ୍ତ କାର୍ଯ୍ୟ କରୁଅଛି, ଏହିରୂପ ଭାବ କାର୍ଯ୍ୟ କରିବା ଉଚିତ ।

"ମୁଁ କରୁଛି, ଏ ଅଭିମାନ ଯେପରି ଟିକେ ମାତ୍ର ତାଙ୍କ ମନକୁ ନ ଆସେ, ମହାନୁଭବ ଶ୍ରୀଲ ରାୟ ରାମାନନ୍ଦ ଏହାର ଉତ୍ତମ ଆଦର୍ଶ ଦେଖାଇ-ଅଛନ୍ତି । ବିଦ୍ୟାନଗରଠାରେ ମହାପ୍ରଭୁ ଶ୍ରୋତାରୂପେ ତାଙ୍କଠାରୁ ଶ୍ରୀକୃଷ୍ଣ ତତ୍ତ୍ୱାଦି ଶ୍ରବଣ କଲା ପରେ ତାଙ୍କର ପ୍ରଶଂସା କରନ୍ତେ ସେ ସେଥିରେ ଉତ୍ତର କଲେ "ପ୍ରଭୋ" ମୋର କୃଷ୍ଣତତ୍ତ୍ୱ କହିବାର ଲେଶ ମାତ୍ର ଶକ୍ତି ନାହିଁ, ତୁମ୍ଭେ ହୃଦୟ ମନ୍ଦିରରେ ରହି ଯାହା ବୋଲାଉ ଅଛ ମୁଁ ତାହା କହୁ ଅଛି । ମୁଁ ନଟ ତୁମ୍ଭେ ସୂତ୍ରଧର ଯଥା;—

ରାୟ କହେ ଆମି ନଟ ତୁମି ସୂତ୍ରଧର
ଯେମତ ନାଚାଓ ସେମତ ଚାହି ନାଚିବାର ।
ମୋର ଜିହ୍ୱା ବୀଣା ଯନ୍ତ୍ର ତୁମି ବୀଣାଧାରୀ
ତୋମାର ମନେ ଯେ ଉଠେ ତାହାଇ ଉଚ୍ଚାରି ।

( ଚୈଃ ଚଃ ମଧ୍ୟ ୮ ମ ପଃ )

ଶ୍ରୀପ୍ରଦ୍ୟୁମ୍ନ ମିଶ୍ର ମହାପ୍ରଭୁଙ୍କଠାରେ କୃଷ୍ଣ କଥା ଶୁଣିବାର ପ୍ରାର୍ଥୀ ହୋଇ ଥିଲେ । ମହାପ୍ରଭୁ କହିଲେ, ଆପଣଙ୍କର କୃଷ୍ଣକଥା ଶୁଣିବାର ଇଚ୍ଛା ହୋଇଅଛି ଏ ଅତି ଉତ୍ତମ କଥା । ତେବେ କୃଷ୍ଣ କଥା ମୁଁ କି ଜାଣେ, ଆପଣ ରାୟ ରାମାନନ୍ଦଙ୍କଠାକୁ ଯାଆନ୍ତୁ ସେ ଆପଣଙ୍କୁ କୃଷ୍ଣକଥା ଶୁଣାଇ ମନ ତୃପ୍ତି କରାଇ ପାରିବେ । ମୁଁ ବିଦ୍ୟାନଗରଠାରେ ତାଙ୍କଠାରୁ କୃଷ୍ଣକଥା ଶ୍ରବଣ କରି ଆପଣାକୁ ଚରିତାର୍ଥ ମନେ କରିଅଛି । ସରଳ ପ୍ରକୃତି ପ୍ରଦ୍ୟୁମ୍ନ ମିଶ୍ର ମହାପ୍ରଭୁଙ୍କର ଏହି ଆଦେଶ ପାଇ ଶ୍ରୀଲ ରାୟରାମାନନ୍ଦଙ୍କଠାରେ ଉପସ୍ଥିତ ହେଲେ ଏବଂ ତାଙ୍କଠାରୁ କୃଷ୍ଣକଥା ଶ୍ରବଣ କରି ପ୍ରେମ ସାଗରରେ ମଗ୍ନ ହେଲେ । କିନ୍ତୁ ତେତେବେଳେ ବିନୟର ଖଣି ରାୟ ରାମାନନ୍ଦ ପ୍ରଦ୍ୟୁମ୍ନ ମିଶ୍ରଙ୍କୁ କହିଥିଲେ "ମହୋଦୟ : ମୁଁ ଏମାନ ଆପଣଙ୍କୁ ଶୁଣାଇଲି ଏହା ମନେ କରିବେ ନାହିଁ । ଶ୍ରୀଗୌରଚନ୍ଦ୍ର ଏ ସମସ୍ତ ମୋ ମୁଖରେ ପ୍ରଚାର

କୃଷ୍ଣ କଥା ବକ୍ତା କରି ନା ଜାନହ ମୋରେ,
ମୋର ମୁଖେ କଥା କହେ ଆପନ ଗୌରଚନ୍ଦ୍ର,
ଯୈଛେ କହାୟ ତୈଛେ କହି ଯେନ ବୀଣାଯନ୍ତ୍ର ।
ମୋର ମୁଖେ କହେ କଥା କରେ ପରଚାର
ପୃଥିବୀତେ କେ ଜାନିବେ ଏ ଲୀଳା ତାହାର ।

( ଚୈ: ଚ: ଅନ୍ତ୍ୟ ୮ମ ପ: )

ଶ୍ରୀଲ ରାୟ ରାମାନନ୍ଦଙ୍କ ପରି ମହାନୁଭବଙ୍କର ଅହଂ ଅଭିମାନ ସମ୍ବନ୍ଧରେ ଏରୂପ ଉକ୍ତି ଥାଇଁ ଥାଉଁ ଆମ୍ଭେମାନେ ଯଦି ଅସ୍ମାଭିମାନ କରୁଁ ଏହା କେବଳ ଆମ୍ଭମାନଙ୍କର ମୂର୍ଖତାର ପରିଚାୟକ ନୁହେ ତ ଆଉ କଣ ?

ଅହଂକାର ଯେ କେତେଦୂର ବର୍ଜ୍ଜନୀୟ ଶ୍ରୀବଲ୍ଲଭଭଟ୍ଟଙ୍କ ପ୍ରତି ମହାପ୍ରଭୁଙ୍କର କୃପାଶାସନ ତାହାର ଅତି ଉତ୍ତମ ପ୍ରମାଣ । ଶ୍ରୀବଲ୍ଲଭଭଟ୍ଟଙ୍କ ମନରେ ଏହି ଏକ ଗର୍ବ ଥିଲା ଯେ ମୁଁ ଶ୍ରୀମଦ୍ଭାଗବତର ଉତ୍ତମ ବ୍ୟାଖ୍ୟା କରିପାରେଁ । ବୈଷ୍ଣବ ସିଦ୍ଧାନ୍ତ ମୋତେ ଉତ୍ତମରୂପେ ଜଣା । ଏହିରୂପ ଅଭିମାନର ବଶବର୍ତ୍ତୀ ହୋଇ ସେ ଏକ ଦିନରେ ଶ୍ରୀମନ୍ ମହାପ୍ରଭୁଙ୍କ ନିକଟରେ ଆସି ନିବେଦନ କଲେ, " ପ୍ରଭୋ ! ମୁଁ ଶ୍ରୀମଦ୍ଭାଗବତର ଟୀକା କିଛି ଲେଖିଅଛି । ଆପଣ ଅନୁଗ୍ରହପୂର୍ବକ ଥରେ ଶ୍ରବଣ କରନ୍ତୁ ।" ଅନ୍ତର୍ଯ୍ୟାମୀ ମହାପ୍ରଭୁ ଭଟ୍ଟଙ୍କର ମନର ଗର୍ବ ଜାଣି କହିଲେ " ଶ୍ରୀମଦ୍ଭାଗବତର ଅର୍ଥ ବୁଝିବାର ମୋର ଶକ୍ତି ନାହିଁ । ମୁଁ ଶ୍ରୀମଦ୍ଭାଗବତ ଶୁଣିବାର ଉପଯୁକ୍ତ ପାତ୍ର ନୁହେ । ଶ୍ରୀକୃଷ୍ଣନାମ ଜପ କରେଁ । ଦିବାରାତ୍ର ସଂଖ୍ୟା ନାମ ପୂର୍ଣ୍ଣ ହୋଇପାରେ ନାହିଁ ।" ଭଟ୍ଟ କହିଲେ, " ପ୍ରଭୋ ! ତେବେ ମୁଁ ଯେ ଶ୍ରୀକୃଷ୍ଣନାମର ଅର୍ଥ ବିସ୍ତାରିତ ରୂପେ ବ୍ୟାଖ୍ୟା କରିଅଛି ତାହା ଶ୍ରବଣ କରନ୍ତୁ ।"

ମହାପ୍ରଭୁ କହିଲେ ମୁଁ କୃଷ୍ଣ ନାମର ଅର୍ଥ ଯଶୋଦାନନ୍ଦନ ଶ୍ୟାମସୁନ୍ଦର ବୋଲିହିଁ ଜାଣେ, ଏହାହିଁ କୃଷ୍ଣ ନାମର ସର୍ବଶାସ୍ତ୍ରାନୁମୋଦିତ ରୂଢ଼ି ମୁଖ୍ୟ ଅର୍ଥ । ଅନ୍ୟାନ୍ୟ ଅର୍ଥ ଜାଣିବାର କିଛି ଆବଶ୍ୟକ ମୁଁ ଦେଖୁନାହିଁ । ଭଟ୍ଟ ମହାଶୟ ଏଥିରେ ଲଜ୍ଜିତ ହୋଇ ନିଜ ଘରକୁ ପ୍ରସ୍ଥାନ କଲେ ।

କିନ୍ତୁ ତାଙ୍କ ଚିତ୍ତ ଗର୍ବ ପର୍ବତରେ ଅବରୋହଣ କରିଥିଲା । ସେ କିପରି ମହାପଣ୍ଡିତ ବୋଲି ପରିଚିତ ହେବେ, କିପରି ତାଙ୍କର ଯୁକ୍ତି ଓ ସିଦ୍ଧାନ୍ତ ଅକାଟ୍ୟ ବୋଲି ପ୍ରମାଣିତ ହେବ, ଏହି ଚିନ୍ତାରେ ସେ ଅସ୍ଥିର । ଅଉ ଏକଦିନ ସେ ଶ୍ରୀଳ ଅଦ୍ୱୈତ ଆଚାର୍ଯ୍ୟଙ୍କୁ ପଚାରିଲେ "ମହୋଦୟ ! ଜୀବ ପ୍ରକୃତି ଏବଂ ଶ୍ରୀକୃଷ୍ଣହିଁ ପୁରୁଷ ଓ ତେଣୁ ଜୀବର ପତି । ପତିବ୍ରତାମାନଙ୍କ ପକ୍ଷରେ ପତିର ନାମ ଉଚ୍ଚାରଣ ନିଷେଧ, ତେବେ ଆପଣମାନେ ଶ୍ରୀକୃଷ୍ଣ ନାମ ଗ୍ରହଣ କରନ୍ତି କିପରି ?" ଆଚାର୍ଯ୍ୟ ପ୍ରଭୁ ମହାପ୍ରଭୁଙ୍କୁ ନିର୍ଦ୍ଦେଶ ପୂର୍ବକ କହିଲେ "ମୂର୍ତ୍ତିମାନ ଧର୍ମ ତ ଆପଣଙ୍କର ସମ୍ମୁଖରେ ବର୍ତ୍ତମାନ, ତାହାଙ୍କୁ ପଚାରୁ ନାହାନ୍ତି ? ସେତ ଏ ପ୍ରଶ୍ନର ଯଥାର୍ଥ ଉତ୍ତର ଦେବେ । ଏହା ଶୁଣି ମହାପ୍ରଭୁ କହିଲେ, ଦେଖ, ପତିର ଆଜ୍ଞା ପାଳନହିଁ ପତିବ୍ରତାମାନଙ୍କର ପ୍ରଧାନ ଧର୍ମ ଏବଂ ଏଠାରେ ଜୀବ ପ୍ରକୃତିର ପତି ଶ୍ରୀକୃଷ୍ଣ ସତତ ନିଜନାମ ନେବାକୁ ଜୀବମାନଙ୍କୁ ଆଦେଶ କରି ଅଛନ୍ତି । ତେଣୁ ଜୀବମାନେ ତାଙ୍କର ନାମ ନିଅନ୍ତି ଓ ତାହାର ଫଳ ସ୍ୱରୂପ କୃଷ୍ଣ ପଦରେ ପ୍ରେମ ପ୍ରାପ୍ତ ହୁଅନ୍ତି । ଯଥା—

ପ୍ରଭୁ କହେନ ତୁମି ନା ଜାନ ଧର୍ମାଧର୍ମ
ସ୍ୱାମୀଆଜ୍ଞା ପାଳେ ଏଇ ପତିବ୍ରତା ଧର୍ମ ।
ପତିର ଆଜ୍ଞା ନିରନ୍ତର ତାର ନାମ ଲଇତେ
ପତି ଆଜ୍ଞା ପତିବ୍ରତା ନା ପାରେ ଲଙ୍ଘିତେ ।
ଅତଏବ ନାମ ଲୟ ନାମେର ଫଳ ପାୟ
ନାମେର ଫଳେ କୃଷ୍ଣ ପଦେ ପ୍ରେମ ଉପଜୟ ।

( ଚୈଃ ଚଃ ଅନ୍ତ୍ୟ ୭ମ ପ )

ବଲ୍ଲଭଭଟ୍ଟ ଏଥିରେ ବଡ଼ ଲଜ୍ଜିତ ହୋଇ ଭାବିଲେ ହାୟ ଏସଭାରେ ଜଣେ ସୁଦ୍ଧା ମୋ କଥା ପଡ଼ିଲା ନାହିଁ, ସବୁବେଳେ ମୋତେ ମୁଖ ତଳକୁ କରି ଆସିବାକୁ ହେଲା । ଅଉ ଏକଦିନ ମନମଧ୍ୟରେ ବିଶେଷ ଦମ୍ଭ ପୋଷଣ କରି ମହାପ୍ରଭୁଙ୍କର ସମ୍ମୁଖରେ ସଗର୍ବରେ କହିଲେ ଶ୍ରୀଧରସ୍ୱାମୀଙ୍କର ଶ୍ରୀମଦ୍ ଭାଗବତ ଟୀକାରେ ଏକ ବାକ୍ୟତା ନାହିଁ, ଯେଉଁଠାରେ ଯାହା ତାଙ୍କୁ ଭଲ ଲାଗିଛି ସେ ସେହି ସିଦ୍ଧାନ୍ତ ସମର୍ଥନ କରି ଅର୍ଥ କରିଅଛନ୍ତି, ଏଣୁ ମୁଁ

ଯେ ଟୀକା ସ୍ୱୀକାର କରେ ନାହିଁ । ମହାପ୍ରଭୁ ତାଙ୍କର ଏହି ଗର୍ବ ବାକ୍ୟକୁ ଅତି ଅହଙ୍କାରକର ମଣି ରହସ୍ୟପୂର୍ବକ କହିଲେ, ଯେ ସ୍ୱାମୀ ସ୍ୱୀକାର ନ କରେ ମୁଁ ତାଙ୍କୁ ବେଶ୍ୟା ମଧ୍ୟରେ ଗଣନା କରେଁ । ଯଥା :—

ପ୍ରଭୁ ହାସି କହେ ସ୍ୱାମୀ ନା ମାନେ ଯେଇ ଜନ
ବେଶ୍ୟାର ଭିତରେ ତାରେ କରଯେ ଗଣନ ।

[ ଚୈଃ ଚଃ ଅନ୍ତ୍ୟ ୭ମପ ]

ଏ ବ୍ୟଙ୍ଗୋକ୍ତିରେ ଭଟ୍ଟ ବଡ଼ ମର୍ମାହତ ହେଲେ କିନ୍ତୁ ଉପସ୍ଥିତ ଭକ୍ତମଣ୍ଡଳୀ ଏଥିରେ ବଡ଼ ସନ୍ତୁଷ୍ଟ ହେଲେ । ସେମାନେ ଭାବିଲେ ଆଜ ଭଟ୍ଟ ନିଜ ଗର୍ବର ସମୁଚିତ ଉତ୍ତର ପାଇଅଛନ୍ତି । ଇନ୍ଦ୍ର, ବ୍ରହ୍ମା ପ୍ରଭୃତିଙ୍କର ଗର୍ବଚୂର୍ଣ୍ଣକାରୀ ଶ୍ରୀମନ୍ ମହାପ୍ରଭୁ ଆଜ ଏହାଙ୍କର ଗର୍ବ ପର୍ବତକୁ ଏକ ସାମାନ୍ୟ ବାକ୍ୟଶର ଦ୍ୱାରା ଚୂର୍ଣ୍ଣବିଚୂର୍ଣ୍ଣ କରି ଦେଇଅଛନ୍ତି ।

ଯେ ଦିନ ବଲ୍ଲଭଭଟ୍ଟ ସ୍ୱଗୃହକୁ ଫେରି ଯାଇ ଚିନ୍ତା କଲେ ମହାପ୍ରଭୁ ତ ପ୍ରୟାଗଠାରେ ମୋ ପ୍ରତି ଅଶେଷ କୃପା କରି ମୋର ନିମନ୍ତ୍ରଣ ପର୍ଯ୍ୟନ୍ତ ସ୍ୱୀକାର କରିଥିଲେ, ତେବେ ଏଠାରେ କିପାଇଁ ଏତେ ବିରକ୍ତ ଭାବ ପ୍ରକାଶ କରୁଅଛନ୍ତି । ସେ ତ ପରମେଶ୍ୱର, ତାହାଙ୍କର ତ କିଛି ପରାପର ଜ୍ଞାନ ନାହିଁ, ତେବେ ମୋର ନିଜ ମନରେ ଗର୍ବ ଜାତ ହୋଇ ଥିବାରୁ ସେ ଗର୍ବ ଖର୍ବ କରିବାପାଇଁ ମୋ ପ୍ରତି ଏ ଢଙ୍ଗ ବ୍ୟବହାର କରୁଅଛନ୍ତି । ମୋହର ପ୍ରକୃତ ହିତ କାମନା ହିଁ ତାହାଙ୍କର ଉଦ୍ଦେଶ୍ୟ, ଏହିପରି ସଦ୍‌ବୁଦ୍ଧି ଉଦୟ ହେବାରୁ ସେ ଯାଇ ମହାପ୍ରଭୁଙ୍କର ଶରଣାପନ୍ନ ହେଲେ ଓ ଅନ୍ତର୍ଯ୍ୟାମୀ ମହାପ୍ରଭୁ ତାଙ୍କର ମନ ଜାଣି ତାଙ୍କୁ ହିତୋପଦେଶ ଦେଇ ଗର୍ବ ଖଣ୍ଡନ କରାଇଲେ ଓ ତାଙ୍କର ଭିକ୍ଷା ନିମନ୍ତ୍ରଣ ଗ୍ରହଣ କଲେ ।



## ଭକ୍ତ ଶ୍ରୀଭଗବାନଙ୍କର ଅତି ପ୍ରିୟ ।

## ଚତୁର୍ଥ ପରିଚ୍ଛେଦ ।

———❋❋———

ଭକ୍ତ ପଦଠାରୁ ଉଚ୍ଚ ପଦ ତ୍ରିଭୁବନରେ ନାହିଁ, କାରଣ ଶ୍ରୀ ଭଗବାନ୍ ସମସ୍ତଙ୍କର କର୍ତ୍ତା । ତାଙ୍କଠାରୁ ବଡ଼ ବା ତାଙ୍କ ସମାନ ଅନ୍ୟ କେହି ନାହିଁ । କିନ୍ତୁ ସେହି ଭଗବାନ ଭକ୍ତଙ୍କୁ ନିଜର ସର୍ବସ୍ୱ ବୋଲି ମନେ କରନ୍ତି । ଭଗବାନ ଶ୍ରୀଗୌରଚନ୍ଦ୍ର ନବଦ୍ୱୀପରେ ମହାପ୍ରକାଶ ସମୟରେ ଏହା ଶ୍ରୀମୁଖରେ କହିଅଛନ୍ତି । ଯଥା—

ଭକ୍ତ ବଇ ଆମାର ଦ୍ୱିତୀୟ ଆର ନାଇ
ଭକ୍ତ ମୋର ପିତା ମାତା ବନ୍ଧୁ ପୁତ୍ର ଭାଇ ।
ଯଦ୍ୟପି ସ୍ୱତନ୍ତ୍ର ଆମି ସ୍ୱତନ୍ତ୍ର ବିହାର
ତଥାପିଓ ଭକ୍ତବଶ ସ୍ୱଭାବ ଆମାର ।—

(ଚୈଃ ଭାଃ ଅନ୍ତ୍ୟ ୬ଷ୍ଠ ଅ )

ଭକ୍ତଙ୍କୁ ଭଗବାନ ଯେ କେବଳ ପିତା ମାତା ବନ୍ଧୁ ବା ପୁତ୍ରପରି ଦେଖନ୍ତି ଏମନ୍ତ ନୁହେ । ସେ ନିଜ ଆତ୍ମାଠାରୁ ଭକ୍ତଙ୍କୁ ଅଧିକତର ପ୍ରିୟବୋଲି ମଣନ୍ତି । ଏହା ସ୍ୱୟଂଭଗବାନ୍ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହିଥିବାର ଶ୍ରୀମଦ୍ଭାଗବତରେ ପ୍ରମାଣ ଅଛି । ଶ୍ରୀଲ କୃଷ୍ଣଦାସ କବିରାଜ ତଦନୁସରଣରେ କହି ଅଛନ୍ତି । ଯଥା ।—

କୃଷ୍ଣେର ସମତା ହଇତେ ଭକ୍ତପଦ ବଡ଼
ଆତ୍ମା ହଇତେ କୃଷ୍ଣେର ଭକ୍ତ ପ୍ରେମାସ୍ପଦ ।

ଆମା ହଇତେ ଭକ୍ତ କୃଷ୍ଣ ବଡ କରି ମାନେ
ତାହାତେ ବହୁତ ଶାସ୍ତ୍ର ବଚନ ପ୍ରମାଣେ ।

(ଚୈଃଚଃ ଆଦି ୬ଷ୍ଠ ପ)

ଭକ୍ତ ଭଗବାନଙ୍କ ଠାରୁ ଭିନ୍ନ ନୁହନ୍ତି । ତାଙ୍କର ସ୍ୱରୂପ । ଭକ୍ତ ହୃଦୟରେ ଭଗବାନ ସତତ ବାସ କରନ୍ତି । ଯଥା —

ଈଶ୍ୱର ସ୍ୱରୂପ ଭକ୍ତ ତାର ଅଧିଷ୍ଠାନ
ଭକ୍ତେର ହୃଦୟେ କୃଷ୍ଣେର ସତତ ବିଶ୍ରାମ ।

(ଚୈଃଚଃଆଦି ୧ମପ)

ଭଗବାନ ଭକ୍ତ ହୃଦୟରେ ବାସ ନକରି ଅନ୍ୟତ୍ର ଯିବେ କେଉଁଆଡ଼େ ! ଭକ୍ତ ଯେ ତାଙ୍କୁ ସ୍ନେହ ଓ ପ୍ରୀତିରୂପ ଡୋରରେ ହୃଦୟ ମଧ୍ୟରେ ବାନ୍ଧି ଥୋଇ ଅଛନ୍ତି । ଯଥା ।—

ଭକ୍ତ ଆମାୟ ବାନ୍ଧିଯାଛେ ହୃଦୟ ଭିତରେ
ଯାହାଁ ନେତ୍ର ପଡ଼େ ତାହାଁ ଦେଖୟେ ଆମାରେ ।

(ଚୈଃ ଚଃ ମଧ୍ୟ ୨୫ଶ ପଃ)

ଏହି ଶ୍ରୀକୃଷ୍ଣ ଚୈତନ୍ୟଙ୍କର ନିଜ ଉକ୍ତିରୁ ଉତ୍ତମ ପ୍ରମାଣ ଯେ ସେ ଭକ୍ତ ହୃଦୟରେ ସତତ ବନ୍ଧା ହୋଇ ରହିଅଛନ୍ତି । ସେ ଦୃଢ଼ ବନ୍ଧନ ଛିନ୍ନ କରିବାର ତାଙ୍କର ଶକ୍ତି ନାହିଁ । ଭକ୍ତପ୍ରବର ଶ୍ରୀଳ ବିଲ୍ୱମଙ୍ଗଳ ସେଥିପାଇଁ କହିଥିଲେ, " ହେ ଚପଳ ଚୂଡ଼ାମଣି ଶ୍ରୀକୃଷ୍ଣ ! ତୁ ବଳଶାଳୀ ଯୁବକ, ମୁଁ ଚକ୍ଷୁହୀନ ବୃଦ୍ଧ, ତେଣୁ ମୋ ହାତରୁ ଖସି ପଳାଇଗଲୁ । ଯଦି ତୁ ମୋ ହୃଦୟ ମଧ୍ୟରୁ ପଳାଇଯାଇ ପାରୁ ତେବେ ତୋର ପୌରୁଷ ଜଣାଯିବ " । ଶ୍ରୀଳ ବିଲ୍ୱମଙ୍ଗଳହିଁ ଏରୂପ କହି ପାରନ୍ତି । ଜନ ସାଧାରଣଙ୍କର ଏରୂପ କହିବାର ଶକ୍ତି କାହିଁ ?

ଭକ୍ତ ଅବା ଭଗବାନଙ୍କୁ ହୃଦୟ କମଳରେ ନ ବାନ୍ଧିବେ କାହିଁକି ? ଭକ୍ତ ଓ ଭଗବାନଙ୍କରତ ଭେଦ ନାହିଁ । ସେଥିପାଇଁ ଦେବାନନ୍ଦ ପଣ୍ଡିତଙ୍କୁ ଲକ୍ଷ୍ୟ କରି ଶ୍ରୀଭାଗବତ ଶାସ୍ତ୍ରଙ୍କ ମହିମା ବ୍ୟାଖ୍ୟା ସମୟରେ ଭଗବାନ ଶ୍ରୀଗୌର ଚନ୍ଦ୍ର କହିଅଛନ୍ତି । ଯଥା ।—

ମୁଁ ହିଁ ମୋର ଦାସ ଆଉ ଗ୍ରନ୍ଥ ଭଗବତେ
ଯାର ଭେଦ ଅଛେ ତାର ନାଶ ଭଲମତେ ।
( ଚୈଃ ଭାଃ ମଧ୍ୟ ୨୧ଶ ଅଃ )

ଭକ୍ତ ଏବଂ ଭଗବାନଙ୍କର ଯେ ଭେଦ ନାହିଁ, ଠାକୁର ଶ୍ରୀହରି-ଦାସଙ୍କ ପ୍ରତି ମହାପ୍ରଭୁଙ୍କ ଉକ୍ତି ମଧ୍ୟ ତାହାର ଆଉ ଏକ ପ୍ରମାଣ । ଯଥା ।—

ଏଇ ମୋର ଦେହ ହେତେ ତୁମି ମୋର ବଡ
ତୋମାର ଯେ ଜାତି ସେଇ ଜାତି ମୋର ଦଢ଼ ।
( ଚୈଃ ଭାଃ ମଧ୍ୟ ୧୦ ଅ )

ଶ୍ରୀଳ ଶୁକ୍ଳାମ୍ବର ବ୍ରହ୍ମଚାରୀଙ୍କ ପ୍ରତି ମଧ୍ୟ ମହାପ୍ରଭୁ ସେହିରୂପ ଉକ୍ତି ବ୍ୟବହାର କରିଥିଲେ । ଯଥା ।—

ତୋମାର ଭୋଜନେ ହୟ ଆମାର ଭୋଜନ
ତୁମି ଭିକ୍ଷାୟ ଚଲିଲେ ଆମାର ପର୍ଯ୍ୟଟନ ।
( ଚୈଃ ଭାଃ ମଧ୍ୟଃ ୧୬ଶ ଅଃ )

ଅପତ୍ୟ ସ୍ନେହ ହେତୁ ଶିଶୁର ଅର୍ଦ୍ଧସ୍ଫୁଟ ଅସଂଲଗ୍ନ ବାକ୍ୟ ପିତା ମାତାଙ୍କୁ ବଡ଼ ମଧୁର ଲାଗେ । ତଦ୍ରୂପ ଭକ୍ତ ଯଦି ମୂର୍ଖ ଥାଇ ଭକ୍ତିପ୍ଲୁତ ହୃଦୟରେ ଶ୍ରୀଭଗବାନଙ୍କର ସ୍ତୁତି କରେ, ଅଶୁଦ୍ଧ ହେଲେହେଁ ଭାବଗ୍ରାହୀ ଜନାର୍ଦ୍ଦନ ତାହା ଅଭକ୍ତ ପଣ୍ଡିତଙ୍କ ବିଶୁଦ୍ଧ ପାଣ୍ଡିତ୍ୟ ପୂର୍ଣ୍ଣ ସ୍ତୁତି ଠାରୁ ଅଧିକତର ଆଦରସହକାରେ ଗ୍ରହଣ କରନ୍ତି । ସେଥିପାଇଁ ଶ୍ରୀଳ ବୃନ୍ଦାବନ ଦାସ ଲେଖିଅଛନ୍ତି । ଯଥା ।—

ମୂର୍ଖେ ବଲେ ବିଷ୍ଣାୟ ବିଷ୍ଣବେ ବଲେ ଧୀର
ଦୁଇ ବାକ୍ୟ ପରିଗ୍ରହ କରେ କୃଷ୍ଣ ବୀର ।
ଚୈଃ ଭାଃ ଆଦିଃ ୯ମ ଅ )

ଭକ୍ତଙ୍କର ପ୍ରେମ ପୂର୍ଣ୍ଣ ଅଶୁଦ୍ଧ ସ୍ତୁତି ଭଗବାନଙ୍କୁ ପ୍ରୀତିକର ନ ହେବ କାହିଁକି ? ସ୍ନେହ ହେତୁ ଭକ୍ତଙ୍କର ସମ୍ପର୍କୀୟ ପ୍ରତ୍ୟେକ ଦ୍ରବ୍ୟ ଅଥବା ବିଷୟ ଭଗବାନଙ୍କୁ ପ୍ରୀତିପ୍ରଦ । ଏ ସଂସାରରେ ଯେ ଯାହାକୁ ଭଲ ପାଏ, ସେ ନିଜ ପ୍ରିୟଜନର ଦୋଷ ଦେଖି ପାରେ ନାହିଁ । ନିଜ ପ୍ରିୟଜନର ଗୁଣ

ଚଳଣ, ଅଙ୍ଗୀୟ ବ୍ୟବହାର ଓ ନିଜ ପ୍ରିୟଜନ ସମ୍ବନ୍ଧୀୟ ସମସ୍ତ ଦ୍ରବ୍ୟ ତାଙ୍କୁ ସୁନ୍ଦର ଦିଶେ । ତେବେ ଗୁଣଗ୍ରାହୀ ଶ୍ରୀଭଗବାନଙ୍କୁ ଭକ୍ତର ସମ୍ପର୍କୀୟ ସମସ୍ତ ଯେ ପ୍ରୀତିକର ହେବ ଏଥିରେ ଆଉ ବିଚାର କି ଅଛି ? ତେଣୁ ମହାପ୍ରଭୁ କୁଳୀନ ଗ୍ରାମସ୍ଥ ( ବର୍ଦ୍ଧମାନ ଜିଲ୍ଲା ମେମାରୀ ଷ୍ଟେସନ ନିକଟ ବର୍ତ୍ତୀ ଗ୍ରାମ ) ଶ୍ରୀସତ୍ୟରାଜ ଖାନ୍ ଓ ରାମାନନ୍ଦଙ୍କୁ ଶ୍ରୀ ପୁରୁଷୋତ୍ତମରେ ସ୍ନେହ ସମ୍ଭାଷଣ କରି କହିଥିଲେ, କୁଳୀନ ଗ୍ରାମର କୁକ୍କୁର ପର୍ଯ୍ୟନ୍ତ ମୋର ପ୍ରିୟ । ଯଥା—

ପ୍ରଭୁ କହେ କୁଲୀନ ଗ୍ରାମେର ଯେ ହୟ କୁକ୍କୁର
ସେହ ମୋର ପ୍ରିୟ ଅନ୍ୟଜନ ରହୁ ଦୂର ।

( ଚୈ: ଚ: ଅନ୍ତ: ୧୦ମ ପ )

ଯେଉଁ ଗ୍ରାମର କୁକ୍କୁର ପର୍ଯ୍ୟନ୍ତ ମହାପ୍ରଭୁଙ୍କର ପ୍ରିୟ ସେ ସ୍ଥାନ ମଧ୍ୟ ତଦ୍ରୂପ ଭକ୍ତି ସ୍ରୋତରେ ପୂର୍ଣ୍ଣ ଥିଲା । ତେଣୁ କବିରାଜ ଗୋସ୍ୱାମୀ କହି-ଅଛନ୍ତି । ଯଥା ।—

କୁଲୀନ ଗ୍ରାମୀର ଭାଗ୍ୟ କହନେ ନା ଯାୟ
ଶୂକର ଚରାୟ ଡୋମ ସେହ କୃଷ୍ଣ ଗାୟ ।

( ଚୈ: ଚ: ଅନ୍ତ ୧୦ମ ପ: )

ପ୍ରିୟ ଜନର ସମସ୍ତ ଯେତେବେଳେ ପ୍ରୀତି ପଦ ତେତେବେଳେ ଭକ୍ତ ଦତ୍ତ ଯତ୍ତ ସମାନ୍ୟ ପଦାର୍ଥକୁ ମଧ୍ୟ ଭଗବାନ ଆଦର ସହ ଗ୍ରହଣ କରନ୍ତି, ଶ୍ରୀ ଭାରତରେ ଅଛି ଶ୍ରଦ୍ଧାବହୀନ ହେତୁ ଭଗବାନ ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କର ବହୁମୂଲ୍ୟ ଉପକରଣ ଗ୍ରହଣ ନ କରି ଭକ୍ତବର ବିଦୁରଙ୍କ ଘରେ ଶ୍ରଦ୍ଧା ଦତ୍ତ ଶାକାନ୍ନ ଭୋଜନ କରି ଥିଲେ । ସେହିପରି ମହାପ୍ରଭୁ ଭାଗ୍ୟବାନ ଶ୍ରୀଶୁକ୍ଳାମ୍ବରଙ୍କ ଗୃହରୁ ଖୁଦକଣା ଅତି ସାଦରେ ଗ୍ରହଣ କରି ଥିଲେ । ଯଥା ।-

ପ୍ରଭୁ ବଲେ ତୋର ଖୁଦକଣ ମୁଞି ଖାଓ
ଅଭକ୍ତେର ଅମୃତ ଉଲଟି ନାହିଁ ଚାଓଁ ।—

( ଚୈ: ଭା: ମଧ୍ୟ: ୧୬ଶ ଅ: )

ଏମନ୍ତ ପ୍ରିୟ ଯେ ଭକ୍ତ ତାହାର କିଛି ଦୋଷ ଥିଲେ ମଧ୍ୟ ଭକ୍ତ-ବତ୍ସଳ ଭଗବାନ ଭକ୍ତର ସେ ଦୋଷ ଦେଖନ୍ତି ନାହିଁ । ସ୍ନେହର ପ୍ରାବଲ୍ୟ

ହେତୁ ସେ ଦୋଷ ଆଖିରେ ପଡ଼େ ନାହିଁ । ଦୋଷତ ଗ୍ରହଣ କରନ୍ତି ନାହିଁ କିନ୍ତୁ ଭକ୍ତର ଅଳ୍ପ ଗୁଣକୁ ବହୁତ ମନେ କରନ୍ତି । ମହାପ୍ରଭୁ ଶ୍ରୀରୂପଙ୍କ ଶ୍ରୀକୃଷ୍ଣ ଗୁଣ ବର୍ଣ୍ଣନାତ୍ମକ ମଧୁର କବିତା ଶ୍ରବଣ କରି ଅତିବ ପ୍ରୀତ ହୋଇ ଶ୍ରୀଳ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଓ ଶ୍ରୀରାୟ ରାମାନନ୍ଦଙ୍କ ଠାରେ ଶ୍ରୀରୂପଙ୍କ ଗୁଣ ବର୍ଣ୍ଣନ କରି ଥିଲେ । ଏହି କଥାକୁ ଲକ୍ଷ୍ୟକରି ଶ୍ରୀଳ କୃଷ୍ଣଦାସ କବିରାଜ ଲେଖିଅଛନ୍ତି । ଯଥା —

ଈଶ୍ୱର ସ୍ୱଭାବ ଭକ୍ତେର ନାଲୟ ଅପରାଧ
ଅଳ୍ପ ସେବା ବହୁମାନେ ଆତ୍ମ ପର୍ଯ୍ୟନ୍ତ ପ୍ରସାଦ ।
( ଚୈଃ ଚଃ ଅନ୍ତ୍ୟଃ ୧ମ ପରି )

ଆହା ! ଭକ୍ତବତ୍ସଳ ଭଗବାନ ଭକ୍ତଠାରେ ସନ୍ତୁଷ୍ଟ ହୋଇ ଅନ୍ୟ କିଛି ବସ୍ତୁ ଦେବା ଉପଯୁକ୍ତ ବିବେଚନା ନ କରି ଆପେ ଭକ୍ତଠାରେ ବିକ୍ରିତ ହୁଅନ୍ତି । ଭକ୍ତର ଏହି ସୌଭାଗ୍ୟଠାରୁ ଅଧିକ ତର ମୂଲ୍ୟବାନ ଆଉ କଣ ଅଛି ? ଯେତେବେ ଯେଉଁମାନେ ନିଜ ସୁଖ କାମନାରେ ଶ୍ରୀଭଗବାନଙ୍କୁ ଭଜନ୍ତି ଭଗବାନ ସେମାନଙ୍କର କାମନା ମଧ୍ୟ ପୂର୍ଣ୍ଣ କରିଥାନ୍ତି । ତେତେବେଳେ ସେ ସେ ଭକ୍ତ ଠାରେ ଏକାବେଳେ ବିକ୍ରିତ ହୁଅନ୍ତି ଏମନ୍ତ ନୁହେ । ଏ ଆତ୍ମବିକ୍ରୟ ଐକାନ୍ତିକ ନିଷ୍କାମ ଭକ୍ତ ପକ୍ଷରେ ପ୍ରଯୋଜ୍ୟ । କୌଣସି ଲୋକ ଯଦି ଅପରକୁ ଭଲ ପାଏ ତେବେ ତାହାର ଇଚ୍ଛା ସାଧ୍ୟମତ ପୂରଣ କରେ । ତେବେ ସଂସାର ଲୋକର ଶକ୍ତି ଅତି ସାମାନ୍ୟ । ସେ ସବୁବେଳେ ପ୍ରିୟଜନର ବାଞ୍ଛା ପୂର୍ଣ୍ଣ କରି ତାକୁ ସକ୍ଷମ ହୁଏ ନାହିଁ । ଇଚ୍ଛା ଥିଲେ ମଧ୍ୟ ଶକ୍ତି ଅଭାବରୁ ନିରସ୍ତ ହୁଏ । କିନ୍ତୁ ଭଗବାନତ ସର୍ବଶକ୍ତି ସମ୍ପନ୍ନ । ସେ ଭକ୍ତର ବାଞ୍ଛା ପୂର୍ଣ୍ଣ ନ କରିବେ କାହିଁକି ? ଅତଏବ ଭଗବାନ ମନ ଜାଣି ଭକ୍ତର ଇଚ୍ଛା ପୂରଣ କରନ୍ତି । ଯେ ପ୍ରକୃତ ଭକ୍ତ ତାହାର କିଛି ଅସତ୍ ବାସନା ରହିବାର ସମ୍ଭବ ନୁହେଁ । ଅତଏବ ବାଞ୍ଛାକଳ୍ପତରୁ ଭଗବାନ ଅଗ୍ରହ ସହକାରେ ଭକ୍ତର ଇଚ୍ଛା ପୂର୍ଣ୍ଣ କରନ୍ତି । ଆମ୍ଭେମାନେ ଅନେକ ସମୟରେ ଭାବଥାଉଁ ଅନେକ ପ୍ରାର୍ଥନା କଲୁଁ, କାତର ଭାବରେ ଅନେକ ଡାକିଲୁଁ ଭଗବାନ କାହିଁତ ଆମ୍ଭମାନଙ୍କର ବାଞ୍ଛା ପୂର୍ଣ୍ଣକଲେ ନାହିଁ ।

ଯେତେବେଳେ ଆମ୍ଭେମାନେ ଦେଖି ପାରୁ ନାହିଁ, ଆମ୍ଭମାନେ ପ୍ରକୃତ ଭକ୍ତମଧ୍ୟରେ ଗଣ୍ୟ କି ନା ଓ ଆମ୍ଭ ପ୍ରାର୍ଥନା ଅଭ୍ୟନ୍ତରରେ ନିଜ ସ୍ୱାର୍ଥ ଲୁକ୍କାୟିତ ଭାବରେ ନିହିତ ଅଛି କି ନା ? ପ୍ରକୃତ ଭକ୍ତ ହୋଇ ପ୍ରାର୍ଥନା କଲେ ଭଗବାନ ଅବଶ୍ୟ ବାଞ୍ଛା ପୂର୍ଣ୍ଣ କରନ୍ତି । ନ କଲେ ତାଙ୍କର ଭକ୍ତ-ବାଞ୍ଛା କଳ୍ପତରୁ ନାମରେ ଯେ କଳଙ୍କ ହେବ । ଭକ୍ତରବାଞ୍ଛା ପୂର୍ଣ୍ଣ କରିବା ଯେ ଭଗବାନଙ୍କର ଏକ କର୍ତ୍ତବ୍ୟ କାର୍ଯ୍ୟ । ସେଥିପାଇଁ ମହାନୁଭବ ବାସୁଦେବ ଦତ୍ତ ସମସ୍ତ ଜୀବର ପାପ ନିଜ ମୁଣ୍ଡକୁ ନେଇ ମହାପ୍ରଭୁଙ୍କ ଜୀବ ଉଦ୍ଧାର ପ୍ରାର୍ଥନା କରିଥିବା ସମୟରେ ମହାପ୍ରଭୁ ଶ୍ରୀମୁଖରେ କହିଥିଲେ । ଯଥା—

"କୃଷ୍ଣ ସେଇ ସତ୍ୟ କରେ ଯେଇ ମାଗେ ଭୃତ୍ୟ,
ଭୃତ୍ୟ ବାଞ୍ଛା ପୂର୍ତ୍ତିବିନା ନାହିଁ ଅନ୍ୟ କୃତ୍ୟ ।

( ଚୈ: ଚ: ମଧ୍ୟ: ୧୫ଶ ପରି: )

ଶ୍ରୀମନ୍ ବାସୁଦେବଙ୍କ ପରି ଜୀବହିତ କାମନା ଆମ୍ଭମାନଙ୍କର କାହିଁ ? ସତତ ନିଜ ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବାରେ ବ୍ୟସ୍ତ । ଅଳ୍ପବୁଦ୍ଧି ଲୋକ କି କେଭେ ଭକ୍ତ ମଧ୍ୟରେ ପରିଗଣିତ ହୋଇପାରେ । ନିଜର ଅନ୍ତର ତନ୍ନ ତନ୍ନ କରି ଦେଖିଲେ, ଆମ୍ଭେମାନେ ଦେଖି ପାରିବା ଆମ୍ଭମାନଙ୍କର ଅନ୍ତର କେବଳ ଆବର୍ଜ୍ଜନାରେ ପୂର୍ଣ୍ଣ । ଲୋକ ସମକ୍ଷରେ ଭକ୍ତ ବୋଲି ପରିଚୟ ଦେଲେହେଁ ଶ୍ରୀଭଗବାନଙ୍କ ଚକ୍ଷୁରେ ଆମ୍ଭେମାନେ ଭକ୍ତଠାରୁ ବହୁ ଦୂରରେ ଅବସ୍ଥିତ ।

ଅନ୍ତର୍ଯ୍ୟାମୀ ଭଗବାନତ ଭକ୍ତକୁ ଉତ୍ତମରୂପେ ଚିହ୍ନନ୍ତି । ସେତ ସର୍ବଜ୍ଞ, ତାଙ୍କ ଛଡ଼ାତ କିଛି ନାହିଁ । ସେ ବା ଭକ୍ତର ମନୋଗତଭାବ ନ ଜାଣିବେ କାହିଁକି ? କିନ୍ତୁ ପ୍ରିୟପାତ୍ର ହେତୁ ଭକ୍ତ ମଧ୍ୟ ଭଗବାନଙ୍କୁ ବୁଝି ପାରନ୍ତି । ଯେ ଭଗବାନଙ୍କର ଯେତେ ଅନ୍ତରଙ୍ଗ, ସେ ଭଗବାନଙ୍କୁ ସେତିକି ବୁଝି ପାରନ୍ତି । ଅନ୍ୟାନ୍ୟ ଭକ୍ତମାନଙ୍କ ମଧ୍ୟରେ ଗୋପୀମାନେ ଶ୍ରୀକୃଷ୍ଣଙ୍କର ଅଧିକତର ଅନ୍ତରଙ୍ଗ, ତେଣୁ ସମସ୍ତଙ୍କଠାରୁ ଗୋପୀମାନେ ଶ୍ରୀକୃଷ୍ଣଙ୍କର ଅନ୍ତର ଭଲରୂପେ ଜାଣନ୍ତି । ମହାପ୍ରଭୁଙ୍କ ପାର୍ଷଦମାନଙ୍କ ମଧ୍ୟରୁ କେହି କେହି ଅନ୍ତରଙ୍ଗ ମଧ୍ୟ ତାଙ୍କ ହୃଦୟସ୍ଥ କଥା ବୁଝିପାରୁଥିଲେ । ମହାପ୍ରଭୁ ଗୁଣ୍ଡିଚ୍ଚା

ଯାତ୍ରା ସମୟରେ ଶ୍ରୀଜଗନ୍ନାଥଙ୍କର ଶ୍ରୀବୃନ୍ଦାବନ ଗମନକୁ ଲକ୍ଷ୍ୟକରି "ଯଃ କୌମାର ହରଃ" ଶ୍ଳୋକ ପଠନ କରନ୍ତି । ଯେ ଶ୍ଳୋକ ଯେ ସେ କିଭା–ବରେ ଗାନ କରୁଅଛନ୍ତି ଏହା ଏକା ସେ ଜାଣୁଥିଲେ କିମ୍ବା ସ୍ୱରୂପାଦି କେହି କେହି ମହାପ୍ରଭୁଙ୍କର ଅନ୍ତରଙ୍ଗ ବ୍ୟକ୍ତି ଜାଣୁଥିଲେ । ସାଧାରଣ ଲୋକେ ତାହାର ମର୍ମ ଜାଣି ନ ଥିଲେ । କିନ୍ତୁ ଶ୍ରୀରୂପ ଗୋସ୍ୱାମୀ ମହାପ୍ରଭୁଙ୍କ ମୁଖରୁ ସେ ଶ୍ଳୋକ ପାଠ ଶୁଣି, ତାହାର ଭାବ ସ୍ପଷ୍ଟ ବ୍ୟକ୍ତ କରି "ପ୍ରିୟଃ ସୋଽୟଂ କୃଷ୍ଣ ସହଚରି କୁରୁକ୍ଷେତ୍ରେ ମିଳିତଃ" ଶ୍ଳୋକ ରଚନା କଲେ । ଅର୍ଥାତ୍ ଶ୍ରୀବୃନ୍ଦାବନ ଭିନ୍ନ ଅନ୍ୟତ୍ର ରାଧାମାଧବଙ୍କର ମିଳନରେ ପ୍ରକୃଷ୍ଟରୂପେ ସୁଖଜାତ ହୁଏ ନାହିଁ, ଶ୍ଳୋକର ମର୍ମ ଏହି । ଶ୍ରୀରୂପ ଗୋସ୍ୱାମୀ ସେ ଶ୍ଳୋକ ରଚନା କରି ତାଳପତ୍ରରେ ଲେଖି ନିଜ ବାସଗୃହର ଚାଳରେ ଖୋସିଦେଇ ସମୁଦ୍ରକୁ ସ୍ନାନ କରିବାକୁ ଯାଇଥିଲେ । ଏମନ୍ତ ସମୟରେ ମହାପ୍ରଭୁ ସେଠାକୁ ଆସି ଚାଳରେ ଖୋସା ହୋଇଥିବା ତାଳପତ୍ର ଦେଖି ଟାଣି ଆଣି ପଢ଼ି ଦେଖିଲେ, ତାଙ୍କ ନିଜ ମନୋଭାବ ସ୍ପଷ୍ଟ ପ୍ରକାଶିତ ହୋଇ ଏକ ଶ୍ଳୋକ ସେଥିରେ ଲେଖାଅଛି । ମହାପ୍ରଭୁ ତାହା ପାଠ କରି ପ୍ରେମାବିଷ୍ଟ ହେଲେ ଏବଂ ଶ୍ରୀରୂପ ଗୋସ୍ୱାମୀ ସ୍ନାନ ସାରି ଫେରି ଆସନ୍ତେ ମହାପ୍ରଭୁ ତାଙ୍କୁ ଅତି ସ୍ନେହବ୍ୟଞ୍ଜକ ଏକ ଚାପୁଡ଼ ମାରି କହିଲେ, ରୂପ, ମୋର ଶ୍ଳୋକର ଅଭିପ୍ରାୟ ଅପର କେହି ଜାଣେ ନାହିଁ । ତୁ ମୋର ମନ କଥା ଜାଣିଲୁ କିପରି । ଯଥା—

ଉଠି ମହାପ୍ରଭୁ ତାଁରେ ଚାପଡ଼ ମାରିୟା
କହିତେ ଲାଗିଲା କିଛୁ କୋଲେତେ କରିୟା ।
ମୋର ଶ୍ଳୋକେର ଅଭିପ୍ରାୟ କେହ ନାହିଁ ଜାନେ
ମୋର ମନେର କଥା ତୁଇ ଜାନିଲି କେମନେ ।

( ଚୈଃ ଚଃ ମଧ୍ୟ ୧ମ ପ )

ଅହା ଧନ୍ୟ ରୂପ ! ମହାପ୍ରଭୁଙ୍କର ସ୍ନେହଚାପଡ଼ ପାଇବାର ତୁମ୍ଭେହିଁ ଯୋଗ୍ୟ । ଏ ଚାପଡ଼ କି ଅନ୍ୟ ଭାଗ୍ୟରେ ଘଟେ । ଆଜି ତୁମ୍ଭହିଁଙ୍କର ଏ ସ୍ନେହର ଛବିଟିର ଅଭାବ ନାବ ମୋ ମାନସକୁ ଆନନ୍ଦସାଗରରେ ନିମଜ୍ଜିତ

କରୁଅଛ । ଠାକୁର ଶ୍ରୀହରିଦାସ ମଧ ମହାପ୍ରଭୁଙ୍କର ଅନ୍ତର କଥା ଜାଣିବାର ମହାପ୍ରଭୁଙ୍କର ଶ୍ରୀମୁଖ ଉକ୍ତି ଶ୍ରୀଚୈତନ୍ୟ ଚରିତାମୃତରେ ବର୍ଣ୍ଣିତ ଅଛି । ମହାପ୍ରଭୁଙ୍କ ପ୍ରଶ୍ନମତେ ଠାକୁର ଶ୍ରୀ ହରିଦାସ ଯେତେବେଳେ ହରିନାମର ଅପାର ମହିମା ବର୍ଣ୍ଣନ କଲେ, ମହାପ୍ରଭୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଥିଲେ—

"ମୋର ଗୂଢ଼ ଲୀଳା ହରିଦାସ କେମନେ ଜାନିଲ"

( ଚୈଃ ଚଃ ଅନ୍ତ୍ୟ ୩ୟ ପରି )

ଏଥିରୁ ଉତ୍ତମରୂପେ ପ୍ରମାଣ ଯେ ଭକ୍ତପ୍ରବରମାନେ ଭଗବାନଙ୍କର ଅନ୍ତର କଥା ତାଙ୍କ କୃପାରୁ ଜାଣିବାକୁ ସକ୍ଷମ ହୁଅନ୍ତି ।

ଭଗବାନ ଅବତାର ଗ୍ରହଣ କରି ଆତ୍ମଗୋପନ କଲେ ମଧ ପ୍ରିୟ ଭକ୍ତମାନେ ତାଙ୍କୁ ଚିହ୍ନିପାରନ୍ତି । ପ୍ରିୟଜନଙ୍କଠାରେ ଭଗବାନ ଆତ୍ମ-ଗୋପନ କରି ଅଧିକ କାଳ ରହି ପାରନ୍ତି ନାହିଁ । ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ କରି ଦକ୍ଷିଣ ଦେଶ ଭ୍ରମଣ କରିବାକୁ ଯାଇଅଛନ୍ତି । ଗୋଦାବରୀ ତୀରରେ ଶ୍ରୀଳ ରାମାନନ୍ଦଙ୍କ ସହ ତାଙ୍କର ଦେଖା ହୁଏ । ମହାପ୍ରଭୁ ନାନାପ୍ରକାର ଛଳ ପ୍ରକାଶ କଲେହେଁ, ରାମାନନ୍ଦ ଚିହ୍ନି ପାରିଲେ ଏ ତାଙ୍କ ହୃଦୟବଲ୍ଲଭ ସ୍ୱୟଂ ଶ୍ରୀକୃଷ୍ଣ । ତେଣୁ କବିରାଜ ଗୋସ୍ୱାମୀ ଶ୍ରୀଚୈତନ୍ୟ-ଚରିତାମୃତରେ ଏକ ସ୍ଥାନରେ ଲେଖିଅଛନ୍ତି । ଯଥା—

ଈଶ୍ୱର ସ୍ୱଭାବେ କୃଷ୍ଣେ କଭୁ ନାହିଁ ଜାନେ
ଲୁକାଇତେ ନାରେ କୃଷ୍ଣ ଭକ୍ତଜନ ସ୍ଥାନେ ।

( ଚୈଃ ଚଃ ଆଦି ୩ୟ )

ଭକ୍ତ ଭଗବାନଙ୍କର ଏତେ ପ୍ରିୟ ଯେ ଭଗବାନ୍ ସର୍ବଶକ୍ତିମାନ୍ ହେଲେହେଁ ଏବଂ ଅଜିତ ନାମ ଧାରଣ କଲେହେଁ ଭକ୍ତଠାରେ ସ୍ୱଇଚ୍ଛାରେ ଆପଣାର ପରାଜୟ ସ୍ୱୀକାର କରନ୍ତି । ମହାବୀର ଭୀଷ୍ମଙ୍କଠାରେ ପରାଜିତ ହୋଇ ନିଜ ପଣ ପରିତ୍ୟାଗ ପୂର୍ବକ ରଥଚକ୍ର ଧାରଣ କରି ଦଉଡ଼ିଥିଲେ । ଏହିରୂପେ ନାନାସ୍ଥାନରେ ଭଗବାନ ନିଜପ୍ରିୟ ଭକ୍ତଠାରେ ପରାଜୟ ସ୍ୱୀକାର କରିଅଛନ୍ତି । ମହାପ୍ରଭୁ ଶ୍ରୀଳ ଈଶ୍ୱର ପୁରୀଙ୍କଠାରୁ ଦୀକ୍ଷା ଗ୍ରହଣ

ଦୂରରୁ ଶ୍ରୀପୁରୀଗୋସ୍ୱାମୀ ଶ୍ରୀଧାମ ନବଦ୍ୱୀପକୁ ଆସିଥିଲେ ଓ ମହାପ୍ରଭୁ ତାଙ୍କୁ ପ୍ରଣାମ କରନ୍ତେ ସେ କହିଲେ "ବାପ ! ତୁମ୍ଭେ ପରମ ପଣ୍ଡିତ, ମତ୍କୃତ କୃଷ୍ଣ ଲୀଳାମୃତରେ ଯଦି କିଛି ଦୋଷ ଥାଏ ତେବେ ତାହା ମୋତେ ଜଣାଇବ ।" ମହାପ୍ରଭୁ କହିଲେ ତାହା ଶ୍ରୀକୃଷ୍ଣଙ୍କ ଚରିତ ଓ ଭକ୍ତ ମୁଖ ନିଃସୃତ । ସେଥିରେ ଦୋଷ ଦେଖିବାହିଁ ଦୋଷଦର୍ଶୀମ୍ୱ ।" ଶ୍ରୀଲ ଈଶ୍ୱର ପୁରୀ କହିଲେ "ଯଦି କିଛି ଦୋଷ ଦେଖ, ମୁଁ କହୁଅଛି, ତୁମ୍ଭେ ତାହା ମୋତେ ଜଣାଇବ । ସେଥିରେ ତୁମ୍ଭର ଦୋଷ ହେବ ନାହିଁ ।" ଦିନକରେ ମହାପ୍ରଭୁ ସେ ପୁସ୍ତକରୁ ଏକସ୍ଥାନରେ ଦୋଷ ଦେଖାଇ କହିଲେ, ଏତ ଆତ୍ମନେପଦୀ ହେବ ନାହିଁ । ଏହା ପରସ୍ମୈପଦୀ ହେବ । ଶ୍ରୀଈଶ୍ୱର ପୁରୀ ଅନେକ ଭାବ ତତ୍ପର ହେବାଯ ମହାପ୍ରଭୁଙ୍କୁ କହିଲେ, ତୁମ୍ଭେ ଯେ ଏ ଧାତୁ ପରସ୍ମୈପଦୀ କହୁଛ ମୁଁ ଦେଖୁଛି ଏତ ଆତ୍ମନେପଦୀ ହେବ । ଏହାକହି ବ୍ୟାଖ୍ୟା କରି ଦେଖାଇଲେ । ମହାପ୍ରଭୁ ସେଥିରେ ସନ୍ତୁଷ୍ଟ ହୋଇ ଶ୍ରୀପୁରୀ ଗୋସ୍ୱାମୀଙ୍କ ଜୟ ସ୍ୱୀକାର ମାନସରେ ସେଥିରେ ଆଉ ଦୋଷ ଜଣାଇଲେ ନାହିଁ । ତେଣୁ ଶ୍ରୀଲ ବୃନ୍ଦାବନ ଦାସ ଲେଖିଅଛନ୍ତି ଯଥା;—

ସର୍ବକାଳ ପ୍ରଭୁବାଢ଼ାଅନ୍ତିନ ଭୃତ୍ୟ ଜୟ
ଏଡାନ ସ୍ୱଭାବ ସକଲ ବେଦେ କୟ ।

( ଚୈଃ ଭ ଆଦି ୧ ମଧ )

ଏଥିପାଇଁ ସେ ଭୃଗୁମୁନିଙ୍କ ପାଦ ପ୍ରହାର ସହ୍ୟ କରି ସେ ପଦଚିହ୍ନ ହୃଦୟରେ ଗୌରବ ସ୍ୱରୂପ ଧାରଣ କରିଅଛନ୍ତି । ଶ୍ରୀଲ ବ୍ରହ୍ମାନନ୍ଦ ଭାରତୀ ଯେତେବେଳେ ଶ୍ରୀ ପୁରୁଷୋତ୍ତମକୁ ଆସି ମହାପ୍ରଭୁଙ୍କଠାକୁ ଗଲେ, ମହାପ୍ରଭୁ ମୁକୁନ୍ଦଠାରୁ ତାଙ୍କ ଆଗମନ ବାର୍ତ୍ତା ଶୁଣି ତାଙ୍କୁ ଭିତରକୁ ଆଣି-ବାକୁ ତାଙ୍କଠାରେ ଉପସ୍ଥିତ ହେଲେ । ଏବଂ ସେ ମୃଗଚର୍ମ ପରିଧାନ କରିଥିବାର ଦେଖି ମନେ ମନେ ଦୁଃଖିତ ହୋଇ ତାଙ୍କୁ ଶୋଧନ କରିବା ଇଚ୍ଛାରେ ଛଳ କରି ମୁକୁନ୍ଦଙ୍କୁ ପଚାରିଲେ "ଶ୍ରୀ ଭାରତୀ ଗୋସ୍ୱାମୀ କାହାନ୍ତି ?" ମୁକୁନ୍ଦ କହିଲେ "ଯେ ଯେ ଆଗରେ ବିଦ୍ୟମାନ ।" ମହାପ୍ରଭୁ କହିଲେ "ମୁକୁନ୍ଦ ! ତୁମ୍ଭେ ବୋଧହୁଏ ଶ୍ରୀଭାରତୀ ଗୋସ୍ୱାମୀଙ୍କୁ ଚିହ୍ନିନାହଁ । ଏତ ଚର୍ମ

ପରିଧାନ କରିଅଛନ୍ତି । ଶ୍ରୀଳ ଭରତୀ ଗୋସ୍ୱାମୀ କର୍ମ ପରିଧାନ କରି ଥାଅନ୍ତି" । ମହାପ୍ରଭୁଙ୍କର ଏହି ଉକ୍ତି ଶୁଣି ଶ୍ରୀଭରତୀ ଗୋସ୍ୱାମୀ ମନେ ମନେ ବିଚାର କଲେ ମୋର ଚର୍ମାମ୍ବର ପରିଧାନ ଏହାଙ୍କ ପ୍ରୀତିକର ନୁହେ । ପ୍ରକୃତରେ ଚର୍ମାମ୍ବର ଦମ୍ଭତାର ପରିଚାୟକ । ତଦ୍ୱାରା କେହି ସଂସାର ସାଗର ଉତ୍ତୀର୍ଣ୍ଣ ହୋଇ ନ ପାରେ । ମୁଁ ଅଦ୍ୟଠାରୁ ଆଉ ଚର୍ମାମ୍ବର ବ୍ୟବହାର କରିବି ନାହିଁ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ତାଙ୍କ ମାନସ ଜାଣି ବହିର୍ବାସ ଆଣାଇଲେ ଏବଂ ଶ୍ରୀଭରତୀ ଗୋସ୍ୱାମୀ ତତ୍‌କ୍ଷଣାତ୍ ସେହି ବହିର୍ବାସ ପରିଧାନ କରି ଚର୍ମାମ୍ବର ପରିତ୍ୟାଗ କଲେ । ଏବଂ ମହାପ୍ରଭୁ ତତ୍‌ପରେ ତାଙ୍କ ଚରଣ ବନ୍ଦନ କଲେ । ଶ୍ରୀଭରତୀ ଗୋସ୍ୱାମୀ କହିଲେ ତୁମ୍ଭେ ଲୋକ ଶିକ୍ଷା ନିମିତ୍ତ ମୋର ଚରଣ ବନ୍ଦନ କରୁଅଛ ସତ୍ୟ କିନ୍ତୁ ମୁଁ ସେଥିରେ ସଂକୋଚ; ବର୍ତ୍ତମାନ ଶ୍ରୀପୁରୁଷୋତ୍ତମରେ ଦୁଇ ବ୍ରହ୍ମ, ଶ୍ରୀଜଗନ୍ନାଥ ଅଚଳ ବ୍ରହ୍ମ ଓ ତୁମ୍ଭେ ସଚଳ ବ୍ରହ୍ମ, ତୁମ୍ଭେ ଗୌର ବ୍ରହ୍ମ ଓ ସେ ଶ୍ୟାମ ବ୍ରହ୍ମ । ଦୁଇବ୍ରହ୍ମ ସମସ୍ତ ଜଗତ ତାରୁ ଅଛ । ମହାପ୍ରଭୁ ଉତ୍ତର କଲେ, "ଭବଦୀୟ ବଚନ ସତ୍ୟ । ଆପଣଙ୍କ ନାମ ବ୍ରହ୍ମାନନ୍ଦ । ଅତଏବ ଆପଣ ସଚଳ ଗୌରବ୍ରହ୍ମ ଏବଂ ଶ୍ରୀ ଜଗନ୍ନାଥ ଅଚଳ ଶ୍ୟାମବ୍ରହ୍ମ" ଶ୍ରୀଭରତୀ ଗୋସ୍ୱାମୀ କହିଲେ, "ସାର୍ବଭୌମ ! ତୁମ୍ଭେ ମଧ୍ୟସ୍ଥ ହୋଇ ବିଚାର କର, ଜୀବହିଁ ବ୍ୟାପ୍ୟ ଓ ବ୍ରହ୍ମ ବ୍ୟାପକ । ଏ ମୋର ଚର୍ମାମ୍ବର ଛଡ଼ାଇ ମୋତେ ଶୋଧନ କଲେ । ଅତଏବ ମୁଁ ବ୍ୟାପ୍ୟ ଏବଂ ଏ ବ୍ୟାପକ । ଶ୍ରୀମହାଭାରତରେ ବିଷ୍ଣୁ ସହସ୍ର ନାମ ମଧ୍ୟରେ "ସୁବର୍ଣ୍ଣ ବର୍ଣ୍ଣ ସନ୍ନ୍ୟାସକୃତ୍" ଯେ ଏକ ନାମ ଅଛି, ଏ ସେହି ନାମର ଆସ୍ପଦ । ଏ ସବୁ ବିଚାର କରି ଉତ୍ତର ଦିଅ । ଶ୍ରୀସାର୍ବଭୌମ କହିଲେ, "ଭରତୀ ଗୋସ୍ୱାମୀ । ଆପଣଙ୍କର ଏଥିରେ ଜୟ ମୁଁ ଦେଖୁଅଛି ।" ମହାପ୍ରଭୁ କହିଲେ, ସେ ଗୁରୁ ଓ ମୁଁ ଶିଷ୍ୟ । ଗୁରୁଙ୍କଠାରେ ଶିଷ୍ୟର ସତତ ପରାଜୟ, ଶ୍ରୀଭରତୀ ଗୋସ୍ୱାମୀ କହିଲେ, ନା ଏହା ତାହାର କାରଣ ନୁହେଁ । ତୁମ୍ଭେ ସତତ ଭକ୍ତଠାରେ ପରାଜୟ ସ୍ୱୀକାର କର, ତାହାହିଁ ଏ ପରାଜୟର ହେତୁ । ଯଥା—

ଭଗବତୀ କହେ ଏ ନହେ ଅନ୍ୟ ହେତୁ ହୟ ।
ଭକ୍ତଠାଇଁ ହାର ତୁମି ଏ ତୋମାର ସ୍ୱଭାବ ।
ଆର ଏକ ଶୁଦ୍ଧ ତୁମି ଅଚନ ପ୍ରଭାବ ।
ଅଜନ୍ମ କରିନୁ ମୁଞ୍ଜି ନଗକାରଧାନ
ତୋମା ଦେଖି କୃଷ୍ଣ ହଇଲା ମୋର ବଦ୍ୟମାନ ।
କୃଷ୍ଣ ନାମ ସ୍ଫୁରେ ମୁଖେ ମନେ ନେବେ କୃଷ୍ଣ
ତୋମାକେ ତଦ୍ରୂପ ଦେଖି ହୃଦୟ ସନ୍ତୁଷ୍ଟ ।—
( ଚୈ: ଚ: ମଧ୍ୟ ୧୦ମ ପରି: )

ଭଗବାନ ଭକ୍ତଲାଗି କ କର ନ ପାରନ୍ତି । ଏମନ୍ତ କ ସେ ଭକ୍ତାନୁରୋଧରେ ଜ୍ୱଳନ୍ତ ଅନଳ ପର୍ଯ୍ୟନ୍ତ ଭକ୍ଷଣ କରିଅଛନ୍ତି । ଭକ୍ତର ଦାସତ୍ୱ ସ୍ୱୀକାର କରି ଶ୍ରୀଅର୍ଜୁନଙ୍କର ରଥରେ ସାରଥି ହୋଇଥିଲେ । ଭକ୍ତପ୍ରବର ବଳୀ ଦ୍ୱାରରେ ଦ୍ୱାରୀପଦ ସାଦରରେ ଗ୍ରହଣ କରିଥିଲେ । ଭକ୍ତର ଦାସତ୍ୱ ସ୍ୱୀକାର କରିବାର ଶତ ଶତ ଉଦାହରଣ ପୁରାଣାଦିରୁ ମିଳିପାରିବ । ଶ୍ରୀହରିଦାସ ଠାକୁରଙ୍କୁ ଯବନ ଗଣ ବାଇଶ ବଜାରରେ ପ୍ରହାର କାଳରେ ଠାକୁର ହରିଦାସ ସେ ଯବନମାନଙ୍କର ହିତ କାମନା କରିବାରୁ ଭଗବାନ ସେମାନଙ୍କୁ ଦଣ୍ଡ ଦେଇ ନ ପାରି ସମସ୍ତ ପ୍ରହାର ନିଜ କୋମଳ ଅଙ୍ଗରେ ଗ୍ରହଣ କରିଥିଲେ, ଏହି ବିଷୟ ବର୍ଣ୍ଣନ କାଳରେ ଶ୍ରୀଳ ବୃନ୍ଦାବନ ଦାସ ଲେଖିଅଛନ୍ତି । ଯଥା :—

ଜ୍ୱଳନ୍ତ ଅନଳ ପ୍ରଭୁ ଭକ୍ତ ଲାଗି ଖାୟ
ଭକ୍ତେର କିଙ୍କର ହୟ ଆପନ ଇଚ୍ଛାୟ ।
ଭକ୍ତ ବଇ କୃଷ୍ଣ ଆର କିଛୁଇ ନା ଜାନେ
ଭକ୍ତେର ସମାନ ନାହିଁ ଅନନ୍ତ ଭୁବନେ ।
( ଚୈ: ଭା: ମଧ୍ୟ: ୧୦ ମ ଅ )

ଠାକୁର ଶ୍ରୀହରିଦାସଙ୍କ ପ୍ରହାରତ ଅପ୍ରତ୍ୟକ୍ଷ ଭାବରେ ଗ୍ରହଣ କରିଥିଲେ । କେହି ତାହା ଦେଖି ପାରି ନ ଥିଲେ । ଭଗବାନ୍ ନିଜେ ପ୍ରକାଶ କରିବାରୁ ଜଣାଗଲା । ସେ ପ୍ରତ୍ୟକ୍ଷରେ ଭକ୍ତ ପାଇଁ ନିଜ ବକ୍ଷରେ ଭାର

ପର୍ଯ୍ୟନ୍ତ ବହନ କରନ୍ତି । ଅନ୍ଧ ଓ ଅଯାଚକ ଠାକୁର ଶ୍ରୀବଲ୍ଲମଙ୍ଗଳଙ୍କୁ ସେ ଗୋପାଳ ବାଳକ ରୂପରେ ଦୁଗ୍ଧ ଯୋଗାଉଥିଲେ । ପଣ୍ଡିତ ଅର୍ଜୁନ ମିଶ୍ର ଦରିଦ୍ର କିନ୍ତୁ ମହାଭକ୍ତ । ଶ୍ରୀମଦ୍ଭଗବତ୍ ଗୀତାର ଟୀକା ଲେଖିବା କାଳରେ, "ଯୋଗ କ୍ଷେମଂବହାମ୍ୟହଂ" ଏହି ପାଠରେ ବହାମି ଶବ୍ଦ ଠିକ ଭାବରେ ବ୍ୟବହୃତ ହୋଇନାହିଁ । ଭଗବାନ ସର୍ବ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ । ସେ କି ଭକ୍ତ ନିମନ୍ତେ ଅନାଦ୍ୱାରା ପଠାଇ ପାରନ୍ତି ନାହିଁ । ନିଜେ ନିଜେ ବହନ କରିବେ କିମ୍ପାଇଁ ? ଏହିରୂପ ଚିନ୍ତା କରି ଲେଖନ ମୁନରେ, "ବହାମି" ଶବ୍ଦଟିକୁ କର୍ତ୍ତନ କରି ସ୍ନାନ କରିବାକୁ ଗଲେ । ଇତି ମଧ୍ୟରେ ଶ୍ରୀରାମ ଓ ଶ୍ରୀକୃଷ୍ଣ ଦୁଇଟି ସୁନ୍ଦର ବାଳକ ବେଶରେ ନାନା ସାମଗ୍ରୀ ସ୍କନ୍ଧରେ ଧରି ଭାର ବହନ ପୂର୍ବକ ମହା ଯୌଭାଗ୍ୟବତୀ ଅର୍ଜୁନ ମିଶ୍ରଙ୍କ ପତ୍ନୀଙ୍କ ଠାରେ ପ୍ରବେଶ ହେଲେ ଓ ସ୍କନ୍ଧରୁ ଭାର ଓହ୍ଲାଇ ମିଶ୍ର ପତ୍ନୀଙ୍କ ଜମା କଲେ ଓ କହିଲେ ମିଶ୍ର ମହାଶୟ ଏ ସାମଗ୍ରୀମାନ ପଠାଇ ଅଛନ୍ତି । ମିଶ୍ରାଣୀ ବାଳକ ଦ୍ୱୟଙ୍କ ସ୍କନ୍ଧରେ ଅଦ୍ଭୁତ ଚିହ୍ନ ଦେଖି ପଚାରିଲେ, ବତ୍ସ ! ତୁମ୍ଭମାନଙ୍କ ସ୍କନ୍ଧରେ ଏ କି ? ଚିହ୍ନ ଏ କୋମଳ ଅଙ୍ଗରେ କିଏ ପ୍ରହାର କଲା ? ବାଳକ ଦ୍ୱୟ ଉତ୍ତର କଲେ ମିଶ୍ର ମହାଶୟ ଲୌହ ଶଳାକା ତପ୍ତ କରି ମାରି ଅଛନ୍ତି । ମିଶ୍ରାଣୀ ମନେକଲେ ଏ କି ଅସମ୍ଭବ ! ଯେଉଁ ମିଶ୍ର ସାମାନ୍ୟ ପିମ୍ପୁଡ଼ିକୁ ମାରନ୍ତି ନାହିଁ, ସେ ଏ ସୁକୁମାର ଅଙ୍ଗରେ ପ୍ରହାର କଲେ । ବାଳକ ଦୁହେଁ ତ ଦ୍ରବ୍ୟମାନ ଦେଇ ଅନ୍ତର ହୋଇଗଲେ । ମିଶ୍ରବର ଗୃହକୁ ଫେରନ୍ତେ ମିଶ୍ରାଣୀ ପଚାରିଲେ "ତୁମ୍ଭ ଯେଉଁ ବାଳକ ଦ୍ୱୟଙ୍କ ସ୍କନ୍ଧରେ ଦ୍ରବ୍ୟମାନ ଭାର କରି ପଠାଇଥିଲ ତାଙ୍କ ଅଙ୍ଗରେ ଏ ରୂପ ନିର୍ଦ୍ଦୟ ରୂପେ ପ୍ରହାର କଲ କାହିଁକି ? ତୁମ୍ଭ ସରଳ ପ୍ରାଣରେ ଏହା ସମ୍ଭବହେଲା କିପରି ? ଭକ୍ତ ପ୍ରବର ଏହା ଶୁଣି ଓ ଦ୍ରବ୍ୟମାନ ଦେଖି ଚମତ୍କୃତ ହେଲେ ଓ ଏହା ଯେ ଶ୍ରୀକୃଷ୍ଣ ବଳରାମଙ୍କର କାର୍ଯ୍ୟ ଏହା ଯେ ବୁଝିପାରିଲେ ।

ଏହିରୂପେ ଭକ୍ତପାଇଁ ଭଗବାନ ନିଜ ସ୍କନ୍ଧରେ ଭାର ବହନ କରନ୍ତି । ମହାପ୍ରଭୁ ଦିନେ ଭଙ୍ଗୀ କରି ଶ୍ରୀବାସଙ୍କୁ ପଚାରିଲେ, "ଶ୍ରୀବାସ ! ତୁମ୍ଭର କୁଟୁମ୍ବ ଅନେକ, ତୁମ୍ଭେ ଅର୍ଥାର୍ଜ୍ଜନ ନ କରି ସତତ ହରି ନାମ ଗ୍ରହଣ ଓ

ହରି ସେବାରେ ବ୍ୟସ୍ତ । ତୁମ୍ଭର ପରିବାର ବର୍ଗର ପୋଷଣ କେହ୍ବ କରୁଛେ ? ଶ୍ରୀବାସ ନିଜ କରରେ ତିନିଗୋଟି ତାଳି ଦେଇ ମହାପ୍ରଭୁଙ୍କର ଏ ପ୍ରଶ୍ନର ଉତ୍ତର ଦେଲେ । ମହାପ୍ରଭୁ ନ ବୁଝିଲାପରି ପଚାରିଲେ, ଏ ତିନି ତାଳିର ମର୍ମ କଣ ? ଶ୍ରୀବାସ କହିଲେ ଏକ ଦୁଇ ତିନି ଦିନ ପର୍ଯ୍ୟନ୍ତ ଉପବାସ କରି ରହିବ । ତତ୍ପରେ ଯଦି ଆହାର ନମିଳେ ତେବେ ଗଳାରେ ଘଟ ବନ୍ଧନ ପୂର୍ବକ ଅଗାଧ ଜଳରେ ପ୍ରବେଶ କରି ପ୍ରାଣତ୍ୟାଗ କରିବି । ମହାପ୍ରଭୁ ଏ ଉକ୍ତିରେ ମର୍ମାହତ ହୋଇ କହିଲେ, "କଣ ଶ୍ରୀବାସ ! ତୁ ଅନ୍ନାଭାବରୁ ଉପବାସ ରହିବୁ । ସ୍ୱୟଂ ଲକ୍ଷ୍ମୀ ଦେବୀ ଭିକ୍ଷା କରିବେ ଏହା ସମ୍ଭବ ହେଲେ ହୋଇପାରେ କିନ୍ତୁ ତୋରଘରେ କଦାପି ଅଭାବ ରହିବ ନାହିଁ । ମୁଁ ଶ୍ରୀଭଗବତ୍ ଗୀତାରେ ଯେ ଅର୍ଜୁନଙ୍କୁ କହିଅଛି ସେ କଥା କି ତୋର ମନେ ନାହିଁ ଯେ ମୋତେ ଅନନ୍ୟ ଶରଣ ହୋଇ ଚିନ୍ତାକରେ ମୁଁ ମଥାରେ ବହି ତାହାର ଅଭାବ ପୂରଣ କରେଁ ।" ଯଥାଃ—

ଯେ ଜନ ଚିନ୍ତୟେ ମୋରେ ଅନନ୍ୟ ହଇୟା
ତାରେ ଭିକ୍ଷା ଦେଉଁ ମୁକ୍ତି ମାଥାୟ ବହିୟା

( ଚୈଃ ଭାଃ ଅନ୍ତ୍ୟ ୫ମ ଅଃ )

ଭଗବାନ ନିଜ ପ୍ରିୟ ଭକ୍ତ ପାଇଁ ଯେ କେବଳ ସ୍କନ୍ଧରେ ଭାର ବହନ କରନ୍ତି ଏମନ୍ତ ନୁହେଁ । ଭକ୍ତମାନଙ୍କର ଆଶୀର୍ବାଦ୍ ମଧ୍ୟ ସାଦରେ ଗ୍ରହଣ କରନ୍ତି । ଶ୍ରୀନବଦ୍ୱୀପ ଧାମରେ ନିଜକୁ ଭଗବାନ ବୋଲି ପ୍ରିୟଜନଙ୍କଠାରେ ପ୍ରକାଶ କରାଇବା ପୂର୍ବରୁ ମହାପ୍ରଭୁ ପ୍ରଥମେ ବିଦ୍ୟା ଚର୍ଚ୍ଚାରେ ରତ ଥିଲେ । ତାଙ୍କର ପ୍ରତିଭା ଦେଖି ନଦୀୟାର ମୁଷ୍ଟିମେୟ ଭଗବତଭକ୍ତଗଣ ପରସ୍ପର ମଧ୍ୟରେ କଥୋପକଥନ ହେଲେ ଯଦି ଏ ଅଦ୍ଭୁତ ପ୍ରତିଭାଶାଳୀ ନିମାଇଁ ପଣ୍ଡିତର କୃଷ୍ଣଭକ୍ତି ହୁଏ ଏବଂ ଏ ଆମ୍ଭ ଦଳଭୁକ୍ତ ହୁଏ, ତେବେ ଭକ୍ତଗୋଷ୍ଠୀ ଶୀଘ୍ର ବୃଦ୍ଧି ପାଇବ । ଗୟାଧାମରୁ ପ୍ରତ୍ୟାଗମନ ପରେ ଶ୍ରୀଗୌରଚନ୍ଦ୍ର କୃଷ୍ଣପ୍ରେମରେ ବିହ୍ୱଳ ହେଲେ । ଏବଂ ନିଜ ଆଚରଣ ଦ୍ୱାରା ଲୋକଙ୍କୁ ଶିକ୍ଷା ଦେବାର ତାଙ୍କର ଅଭିପ୍ରାୟ ଥିବାରୁ ଆପଣାକୁ ତୃଣାଦପି ନୀଚ ମନେ କରି କୃଷ୍ଣଭକ୍ତମାନଙ୍କ ସେବାରେ ନିଯୁକ୍ତ ହେଲେ, କାହାରି

ଫୁଲଡ଼ାଲା, କାହାର ପରିଧେୟ ବସ୍ତ୍ର, ନିଜେ ବହନ କରି ବୈଷ୍ଣବ ସେବା କରିବାକୁ ଲାଗିଲେ, ନିମାଇଁ ପଣ୍ଡିତଙ୍କର ଈଦୃଶ ବ୍ୟବହାରରେ ଭକ୍ତଗଣ ଲଜ୍ଜିତ ହେଲେ ଏବଂ "ତୁମ୍ଭର କୃଷ୍ଣ ଭକ୍ତି ହେଉ" ଅକୈତବରେ ଏହି ଆଶୀର୍ବାଦ କରିବାକୁ ଲାଗିଲେ । ଭଗବାନ ଗୌରଚନ୍ଦ୍ର ନିଜପ୍ରିୟ ଭକ୍ତମାନଙ୍କର ଏହି ଆଶୀର୍ବାଦକୁ ଆନନ୍ଦରେ ଗ୍ରହଣ କଲେ ଏବଂ ତଦ୍ୱାରା ଜଗତକୁ ଏହି ଶିକ୍ଷା ଦେଲେ, ଭକ୍ତ ଆଶୀର୍ବାଦହିଁ କୃଷ୍ଣଭକ୍ତି ଲାଭର ଏକମାତ୍ର କାରଣ । ଯଥା—

ତୋମା ସବା ସେବିଲେ ସେ କୃଷ୍ଣଭକ୍ତି ପାଇ
ଏତ ବୋଲି କାରୁ ପାୟେ ଧରେ ସେଇଠାଇଁ ।
ନିଙ୍ଗାଡୟେ ବସ୍ତ୍ର କାରୁ କରିୟା ଯତନେ
ଧୂତ ବସ୍ତ୍ର ତୁଲି କାରୁ ଦେନ ତ ଆପନେ ।
କୁଶ ଗଙ୍ଗା ମୃତ୍ତିକା କାହାର ଦେନ କରେ
ସାଜି ବହି କୋନଦିନ ଚଲେ କାର ଘରେ ।
ସକଲ ବୈଷ୍ଣବଗଣ ହାୟ ହାୟ କରେ
କିକର କିକର ତଣ୍ଡୁ କରେ ବିଶ୍ୱମ୍ଭରେ ।
ଏଇମତ ପ୍ରତିଦିନ ପ୍ରଭୁ ବିଶ୍ୱମ୍ଭର
ଆପନ ଦାସେର ହୟ ଆପନେ କିଙ୍କର ।
କୋନ ଧର୍ମ ସେବକେର ପ୍ରଭୁ ନାହିଁ କରେ
ସେବକେର ଲାଗି ନିଜ ଧର୍ମ ପରିହରେ ।
ଭକ୍ତ ଆଶୀର୍ବାଦ ପ୍ରଭୁ ଶିରେ କରି ଲୟ
ଭକ୍ତ ଆଶୀର୍ବାଦେ ସେ କୃଷ୍ଣେତେ ଭକ୍ତି ହୟ ।

( ଚୈଃ ଭାଃ ମଧ୍ୟଃ ୨ୟଃ ଅଃ )

ହାୟ ଦୟାଳୁ ଭଗବଦ୍ ଭକ୍ତଗଣ ଏ ଅଧମ ପ୍ରତି କେବେ ନିଜ ଗୁଣରେ ଗ୍ରହଣ କରି ଶ୍ରୀଚରଣରେଣୁ ଦାନ ପୂର୍ବକ ଆଶୀର୍ବାଦ କରିବେ ଯେ ତଦ୍ୱାରା ମୁଁ ଶ୍ରୀବୃନ୍ଦାବନରେ ଶ୍ରୀରାଧା ଗୋବିନ୍ଦଙ୍କର ଚରଣ କମଳର ସେବା ପ୍ରାପ୍ତ ହେବି ।

ଯେ ଭଜନ କରେ ସେ ଭଗବାନଙ୍କର ପ୍ରିୟ । ଭଗବାନ୍ ଜନାର୍ଦ୍ଦନ ମାନସର ଭକ୍ତି ଦେଖି ଗ୍ରହଣ କରନ୍ତି । ଉଚ୍ଚଜାତି ଓ ଉଚ୍ଚ କୁଳର ଅପେକ୍ଷା ରଖନ୍ତି ନାହିଁ, ନୀଚ ଜାତି ହେଲେ ସୁଦ୍ଧା, ଯଦି କେହି ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦରେ ଐକାନ୍ତିକ ଭାବରେ ମନ ଦିଏ, ଭଗବାନ ଅଭକ୍ତ ସତ୍କୁଳ ବିପ୍ର ଅପେକ୍ଷା ତାଙ୍କୁ ଆଦରରେ ଗ୍ରହଣ କରନ୍ତି । ଶ୍ରୀଚୈତନ୍ୟ ଭାଗବତରେ ଠାକୁର ହରିଦାସଙ୍କ ଭକ୍ତିକୁ ଲକ୍ଷ୍ୟ କରି, ପ୍ରଭୁଙ୍କ ମୁଖରେ ବିଷ୍ଣୁଭକ୍ତ ନୀଚଙ୍କର ଭକ୍ତି ଏହାର ଉତ୍ତମ ପ୍ରମାଣ । ଯଥା—

ଅଧମକୁଳରେ ଯଦି ବିଷ୍ଣୁଭକ୍ତ ହୟ
ତଥାପି ସେଇ ସେ ପୂଜ୍ୟ ସର୍ବଶାସ୍ତ୍ରେ କୟ ।
ଉତ୍ତମ କୁଳେତେ ଜନ୍ମ ଶ୍ରୀକୃଷ୍ଣ ନା ଭଜେ
କୁଳେ ତାର କିକରିବେ ନରକେତେ ମଜେ ।

(ଚୈଃ ଭାଃ ଆଦିଃ ୧୧ ଅଃ)

ମନୁଷ୍ୟତ ଦୂରର କଥା, ଯଦି କୀଟ ପତଙ୍ଗ ସୁଦ୍ଧା ଶ୍ରୀଭଗବାନଙ୍କର ଚରଣରେ ଆଶ୍ରୟ ନିଅନ୍ତି, ଭଗବାନ ତାଙ୍କୁ ପରିତ୍ୟାଗ କରନ୍ତି ନାହିଁ । ଭାରତ ଯୁଦ୍ଧରେ ଭରଦ୍ୱାଜ ପକ୍ଷୀକୁ ଭଗବାନ ଘଣ୍ଟି ଘୋଡ଼ାଇ ରକ୍ଷା କରିଥିବାର ମହାଭାରତରେ ବର୍ଣ୍ଣିତ ଅଛି । ଗଜ ସ୍ତୁତି କରନ୍ତେ ଦୁର୍ଦ୍ଦାନ୍ତ କୁମ୍ଭୀର ହସ୍ତରୁ ଭଗବାନ ତାଙ୍କୁ ରକ୍ଷା କଲେ, ଶ୍ରୀଭଗବାନଙ୍କର ଏହି ଭକ୍ତ ପାଳକତ୍ୱ ଗୁଣକୁ ଲକ୍ଷ୍ୟକରି ଠାକୁର ଶ୍ରୀହରିଦାସ ମହାପ୍ରଭୁଙ୍କର ମହାପ୍ରକାଶ ଦର୍ଶନରେ ସ୍ତୁତି କରି କହିଅଛନ୍ତି । ଯଥା—

ଏକ ସତ୍ୟ କହିଅଛି ଆପନ ବଦନେ
ଯେଜନ ତୋମାର କରେ ଚରଣ ସ୍ମରଣେ ।
କୀଟ ତୁଲ୍ୟ ହୟ ଯଦି ତାଁରେ ନାହିଁ ଛାଡ଼
ଇହାତେ ଅନ୍ୟଥା ହୈଲେ ନରେନ୍ଦ୍ରେରେ ପାଡ଼ ।

(ଚୈଃ ଭାଃ ମଧ୍ୟଃ ୧୦ମଃ ଅଃ)

ଭଗବାନହିଁ ସର୍ବକାରଣର କାରଣ । ସେ ସୃଷ୍ଟିକର ଅଛନ୍ତି । ସେ ପାଳନ କରୁଅଛନ୍ତି ଓ ସେ ମଧ୍ୟ ସଂହାର କରୁଅଛନ୍ତି । ଅତଏବ ଯେ ସୃଷ୍ଟିର ମୂଳ କାରଣ ଭଗବାନଙ୍କର ଶ୍ରୀଚରଣୋଚ୍ଛିଷ୍ଟ କରେ ତାହାର କଷ୍ଟ ଅନିଷ୍ଟ ଘଟିବାର ସମ୍ଭାବନା ନାହିଁ, କିମ୍ବା ତାହାର ବିନାଶ ନାହିଁ । ଶ୍ରୀଭଗବାନଙ୍କର ମହାଅସ୍ତ୍ର ସୁଦର୍ଶନ ସତତ ଭକ୍ତରକ୍ଷାରେ ପ୍ରବୃତ୍ତ, ସାକ୍ଷାତ ସୁଦର୍ଶନ ଚକ୍ର ଭକ୍ତ ରକ୍ଷାରେ ନିଯୁକ୍ତ ଥାଉଁ ଥାଉଁ କାହାର ସାଧ୍ୟ ସେ ଭକ୍ତର ତିଳ ମାତ୍ର ଅନିଷ୍ଟ କରିପାରେ । ମୁନିବର ଦୁର୍ବାସା ଭକ୍ତପ୍ରବର ମହାରାଜା ଅମ୍ବରୀଷଙ୍କର ଅନିଷ୍ଟ କରି ପାରିଲେ ନାହିଁ । ଶେଷରେ ନିଜେ ମହାରାଜା ଅମ୍ବରୀଷଙ୍କର ଶରଣାପନ୍ନ ହେବାରୁ ଶ୍ରୀସୁଦର୍ଶନଙ୍କ ଠାରୁ ରକ୍ଷା ପାଇଲେ ।

ମହାପ୍ରଭୁ ସନ୍ୟାସ ଗ୍ରହଣ କରି ଶ୍ରୀପୁରୁଷୋତ୍ତମ ଯାଉ ଅଛନ୍ତି । କତିପୟ ଭକ୍ତ ସଙ୍ଗେ ଛତ୍ର ଭୋଗରେ ଉପସ୍ଥିତ ହେଲେ ଓ ସେଠାରେ ଅମ୍ବୁଲିଙ୍ଗ ଘାଟରେ ଗଙ୍ଗାସ୍ନାନ କରି ଶତମୁଖୀ ଗଙ୍ଗା ଦର୍ଶନରେ ପ୍ରେମରେ ବିହ୍ୱଳ ହେଲେ । ସେଠାରେ ରାମଚନ୍ଦ୍ର ଖାନଙ୍କୁ କୃପାକରି ତାଙ୍କ ପ୍ରସ୍ତୁତ ନୌକାରୋହଣ ପୂର୍ବକ ଶ୍ରୀପୁରୁଷୋତ୍ତମାଭିମୁଖରେ ଯାତ୍ରା କଲେ । ନଦୀ ମଧ୍ୟରେ ମହାପ୍ରଭୁ ପ୍ରେମରେ ବିହ୍ୱଳ ହୋଇ ପ୍ରିୟ ମୁକୁନ୍ଦାଦିଙ୍କର ସହ ହରି ସଂକୀର୍ତ୍ତନ ଆରମ୍ଭ କଲେ । ନାବିକଗଣ ଏଥିରେ ମହାବ୍ୟସ୍ତ ହେଲେ । କାରଣ ଏକେ ସେ ସମୟରେ ଯୁଦ୍ଧାଦି ହେତୁ ରାଜ୍ୟର ଅଶାନ୍ତି ଜନିତ ଭୟ, ଦ୍ୱିତୀୟତଃ ଦସ୍ୟୁଭୟ । କୌଣସି ସ୍ଥାନରେ ନୌକା ଲଗାଇ ଦେବେ ସେ ସୁବିଧା ମଧ୍ୟ ନାହିଁ । କାରଣ କୂଳରେ ବ୍ୟାଘ୍ରଭୟ । ଜଳ ମଧ୍ୟରେ ଓହ୍ଲାଇ ରହିବାର ମଧ୍ୟ ଭରସା ନାହିଁ, କାରଣ ଜଳ ମଧ୍ୟରେ କୁମ୍ଭୀର ଭୟ, ଗୃହଅତ୍ରୁ ଭୟର କାରଣ ଦେଖି ନାବିକମାନେ ଭୟରେ ଅସ୍ଥିର ହେଲେ ଏବଂ ମହାପ୍ରଭୁଙ୍କ ସଙ୍ଗୀମାନଙ୍କୁ ନକାୟୁତମାନଙ୍କ ଭୟରୁ ଓଡ଼ିଶା ଦେଶ ସୀମା ପ୍ରବେଶ ପର୍ଯ୍ୟନ୍ତ କୀର୍ତ୍ତନରୁ କ୍ଷାନ୍ତ ହେବାକୁ ଅନୁରୋଧ କଲେ । ନାବିକମାନଙ୍କ କଥାରେ ଭକ୍ତଗଣ କୀର୍ତ୍ତନରୁ କ୍ଷାନ୍ତ ହୁଅନ୍ତେ, ମହାପ୍ରଭୁଙ୍କର ଭାବାବେଶ ଭଙ୍ଗ ହେଲା । ସେ ସମସ୍ତଙ୍କୁ ନୀରବ ଦେଖି ଉତ୍ସାହ

ପ୍ରଦାନ ପୂର୍ବକ କହିଲେ, ତୁମ୍ଭେମାନେ ବୃଥା ଭୟ କରୁଅଛ କାହିଁକି ? ଓ କାହାକୁ ଭୟ କରୁଅଛ ? ଶ୍ରୀସୁଦର୍ଶନ ଚକ୍ର ଯେ ସତତ ଭକ୍ତ ରକ୍ଷାରେ ଭ୍ରମଣ କରୁଅଛନ୍ତି, ତୁମ୍ଭେ ମାନେ କି ଦେଖି ପାରୁନାହିଁ । ଯଥା:—

ସବାରେ ବଲେନ କେନେ ଭୟ କର କାରେ,
ଏଇ ନା ସମ୍ମୁଖେ ସୁଦର୍ଶନ ଚକ୍ର ଫିରେ
ବୈଷ୍ଣବ ଜନେର ନିରବଧି ବିଘ୍ନ ହରେ ।

( ଚୈଃ ଭାଃ ଅନ୍ତ୍ୟ ୨ୟ ଅଃ )

ଏହିରୂପେ ମହାପ୍ରଭୁ ସ୍ଥାନେ ୨ ଭକ୍ତମାନଙ୍କୁ ଦେଖାଇ ଅଛନ୍ତି ଯେ ଶ୍ରୀସୁଦର୍ଶନ ଚକ୍ର ସତତ ଭକ୍ତ ରକ୍ଷାରେ ନିଯୁକ୍ତ । ଭକ୍ତ ଜାଣୁ ବା ନ ଜାଣୁ ଶ୍ରୀସୁଦର୍ଶନ କ୍ଷଣକ ପାଇଁ ଭକ୍ତ ରକ୍ଷାରୁ ବିରତ ନୁହନ୍ତି । ଅଲକ୍ଷରେ ରହି ସତତ ଭକ୍ତଙ୍କୁ ରକ୍ଷା କରୁଅଛନ୍ତି । ତେଣୁ ଶ୍ରୀବୃନ୍ଦାବନ ଦାସ କହି ଅଛନ୍ତି । ଯଥାଃ—

ବ୍ୟପଦେଶେ ମହାପ୍ରଭୁ ବଲେନ ସବାରେ
ନିରବଧି ସୁଦର୍ଶନ ଭକ୍ତ ରକ୍ଷା କରେ ।

( ଚୈଃ ଭାଃ ଅନ୍ତ୍ୟ ୨ୟ ଅଃ )

ଶ୍ରୀବୃନ୍ଦାବନ ଦାସଙ୍କ ଉକ୍ତିରେ ଲେଶମାତ୍ର ଭ୍ରମ ନାହିଁ, ଏହା ଯେ ପରମ ସତ୍ୟ, ଭକ୍ତଗଣ ନିଜ ନିଜ ଜୀବନକୁ ଅନୁଧାବନ କଲେ ବୁଝି ପାରିବେ, ଭଗବତ୍ ପ୍ରେରିତ ସୁଦର୍ଶନ କିରୂପ ସୁନ୍ଦର ଭାବରେ ସେମାନଙ୍କୁ ସତତ ବିପଦରୁ ରକ୍ଷା କରୁଅଛନ୍ତି ।

ଭକ୍ତ ଭଗବାନଙ୍କର ଅତି ପ୍ରିୟ, ତେବେ ଭକ୍ତ ଯେଉଁରୂପ ଭାବରେ ଭଗବାନଙ୍କୁ ଭଜନ କରେ ଭଗବାନ ସେହିରୂପ ତାଙ୍କୁ ଗ୍ରହଣ କରନ୍ତି । ଭଗବାନ ଭକ୍ତଙ୍କୁ ଭକ୍ତିର ଅନୁରୂପ ଫଳ ପ୍ରଦାନ କରନ୍ତି, ଗୋପୀଗଣ ପ୍ରାଣ ସର୍ବସ୍ୱ ଦାନ କରି କାମନା ଶୂନ୍ୟ ହୋଇ କୃଷ୍ଣଙ୍କୁ ଭଜନ କଲେ ଓ କୃଷ୍ଣମଧ ଗୋପୀମାନଙ୍କୁ ଆତ୍ମସମର୍ପଣ ପୂର୍ବକ ସେମାନଙ୍କ ପ୍ରେମରେ ବର୍ଦ୍ଧିତ ହୋଇ ଚିର ଋଣୀ ରହିଲେ । ସେଥି ପାଇଁ ଶ୍ରୀଲ ବୃନ୍ଦାବନ ଦାସ କହି ଅଛନ୍ତି । ଯଥାଃ—

ଯେମତେ ସେବକେ ଭଜେ କୃଷ୍ଣେର ଚରଣ
କୃଷ୍ଣ ସେଇମତ ଦାସେ ଭଜେନ ଅନୁକ୍ଷଣ ।

( ଚୈଃ ଭାଃ ଅନ୍ତ୍ୟ ୩ୟ ଅଃ )

ଉପରୋକ୍ତ ପ୍ରମାଣ ଗୁଡ଼ିକରୁ ଉତ୍ତମ ରୂପେ ଦେଖାଯାଏ ଯେ ଭକ୍ତ ଭଗବାନଙ୍କର ଅତିପ୍ରିୟ । ଏମନ୍ତ କି ଭଗବାନ ନିଜ ଆତ୍ମାଠାରୁ ଭକ୍ତକୁ ପ୍ରିୟତର ମନେ କରନ୍ତି, ଯେତେବେଳେ ଭକ୍ତ ଭଗବାନଙ୍କର ଏତେ ଦୂର ପ୍ରିୟ, ଭକ୍ତର ପୂଜା ମଧ୍ୟ ତଦ୍ରୂପ । ସ୍ୱୟଂଭଗବାନଙ୍କ ପୂଜାଠାରୁ ଯେ ଭକ୍ତ ପୂଜା ବଡ଼ ଏହା ଶ୍ରୀଲ ବୃନ୍ଦାବନ ଦାସ ତାଙ୍କ ଶ୍ରୀଚୈତନ୍ୟ ଭାଗବତର ପ୍ରଥମ ପୃଷ୍ଠାରେ ଦେଖାଇଅଛନ୍ତି । ଯଥାଃ—

ଆମାର ଭକ୍ତେର ପୂଜା ଆମାହଇତେ ବଡ଼
ସେଇ ପ୍ରଭୁ ବେଦେ ଭାଗବତେ କୈଲ ଦଢ଼ ।

ଏବଂ ମହାପ୍ରଭୁ ନିଜେ ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କର ପୂଜା କରି ଭକ୍ତ ପୂଜା ଜଗତକୁ ଶିକ୍ଷା ଦେଇ ଯାଇ ଅଛନ୍ତି, ଶ୍ରୀମଦ୍ ଅଦ୍ୱୈତାଚାର୍ଯ୍ୟ ଏକ ସମୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମାଳା ଚନ୍ଦନ ଓ ତୁଳସୀ ମଞ୍ଜରି ଦ୍ୱାରା ମହାପ୍ରଭୁଙ୍କର ପୂଜା କଲେ, କିନ୍ତୁ ପୂଜା ଶେଷରେ ପାତ୍ରରେ ଯେଉଁ ଅବଶିଷ୍ଟ ପୁଷ୍ପ ଓ ତୁଳସୀ ଥିଲା ମହାପ୍ରଭୁ ତାହା ନେଇ ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କୁ ପୂଜା କଲେ । ଯଥାଃ—

ପୂଜା ପାତ୍ରେ ପୁଷ୍ପ ତୁଳସୀ ଶେଷ ଯେ ଆଛିଲ
ସେଇ ସକଲ ଲଞା ପ୍ରଭୁ ଆଚାର୍ଯ୍ୟ ପୂଜିଲ ।
"ଯୋଽସି ସୋଽସି ନମସ୍ତୁତେ" ଏଇ ମନ୍ତ୍ର ପଢ଼େ
ମୁଖ ବାଦ୍ୟ କରି ପ୍ରଭୁ ହସାଏ ଆଚାର୍ଯ୍ୟେରେ ।

( ଚୈଃ ଚଃ ମଧ୍ୟଃ ୧[illegible] ପରି )

ଆହା ! କେବେ ଏ ଅଧମର ଏହି ଭଗବତ୍ ପ୍ରିୟ ଭକ୍ତଙ୍କର ଶ୍ରୀଚରଣରେ ଦୃଢ଼ ଭକ୍ତିଜାତ ହେବ ! କେବେ ଏ ଅଧମ ଭକ୍ତ ପୂଜା ଶିକ୍ଷା କରିବ । ଜଗତରେ ଭକ୍ତିକରି ଅବନତ ମସ୍ତକ ହେଲେ ମଧ୍ୟ ଅନ୍ତରେ ଭକ୍ତମାନଙ୍କର ଦୋଷ ସେ ଖୋଜି ହୁଏଅଛି । କାହିଁ ଦୋଷ ଦର୍ଶନରୂପ ଚକ୍ଷୁ

ସ୍ୱରତ ହେଉ ନାହିଁ । ଏ ଯେ କପଟ ଭକ୍ତ, ଏଥିରେ କି ଭଗବାନ ସନ୍ତୁଷ୍ଟ ହେବେ । ସେ ଯେ ଅନ୍ତର୍ଯ୍ୟାମୀ, ଅନ୍ତରର ନିଭୃତ ସନ୍ଧିରେ ସଂଲଗ୍ନ ସାମାନ୍ୟ ମଳ ଯେ ତାଙ୍କ ଦୃଷ୍ଟି ଗୋଚର ହେଉଅଛି । ଲୁଚୁଛୁ କାହାକୁଁ ? ସାଧାରଣ ମନୁଷ୍ୟ ଚକ୍ଷୁରେ ଯିନା ଧୂଳି ଦେଉଅଛୁଁ, ଭଗବାନଙ୍କ କି ତାହା ଅଜଣା ଅଛି, ହେ ଅଦୋଷ ଦର୍ଶୀ ଉଦାର ଭକ୍ତଗଣ । ନିଜ ଗୁଣରେ ଏ ପାମରର ଦୋଷ ମାର୍ଜନା ପୂର୍ବକ ଶ୍ରୀଚରଣରେ ଆଶ୍ରୟ ଦିଅନ୍ତୁ । ଆପଣ-ମାନଙ୍କ ଶ୍ରୀଚରଣ ଧୂଳିହିଁ ଏ ଅଧମର ଏକାନ୍ତ ଭରସା ।

ଭକ୍ତ ପଦରଜ ଆଉ ଭକ୍ତ ପଦ ଜଳ-
ଭକ୍ତ ଭୁକ୍ତ ଅବଶେଷ ତିନ ମହାବଳ ।



## ପଞ୍ଚମ ପରିଚ୍ଛେଦ ।

### ଭକ୍ତମାହାତ୍ମ୍ୟ ।

ଭକ୍ତି ଯେତେବେଳେ ଭଗବାନଙ୍କର ଅତି ପ୍ରିୟ ସେତେବେଳେ ଭକ୍ତର ପଦ ଯେ ଅତି ଉଚ୍ଚରେ ଅବସ୍ଥିତ ଏଥିରେ ଦ୍ୱିରୁକ୍ତି ହୋଇ ନପାରେ । ତେଣୁ ଶ୍ରୀଲ କୃଷ୍ଣଦାସ କବିରାଜ ଭକ୍ତଙ୍କୁ ଅତି ଉଚ୍ଚସ୍ଥାନ ପ୍ରଦାନ କରି କହିଅଛନ୍ତି । ଯଥା—

ଏକ ଭଗବତ ବଡ଼ ଭଗବତ ଶାସ୍ତ୍ର
ଆର ଭଗବତ ଭକ୍ତ, ଭକ୍ତିରସ ପାତ୍ର ।

( ଚୈଃ ଚଃ ଆଦି ୧ମ ପରି )

ଭକ୍ତ କେତେ ଉଚ୍ଚସ୍ଥାନ ଅଧିକାର କରନ୍ତି ସେହି କବିରାଜ ଗୋସ୍ୱାମୀଙ୍କ ଅପର ସ୍ଥାନରେ ଏକ ଉକ୍ତିରୁ ତାହା ଦେଖାଯାଉ । ଶ୍ରୀ ସନାତନ ଗୋସ୍ୱାମୀଙ୍କୁ ଭକ୍ତର ମହିମା ବୁଝାଇବାକାଳରେ ମହାପ୍ରଭୁ ଶ୍ରୀମୁଖରେ କହିଅଛନ୍ତି । ଯଥା—

ଧର୍ମ୍ମାଚାରୀ ମଧ୍ୟେ ବହୁତ କର୍ମ୍ମନିଷ୍ଠ
କୋଟିକର୍ମ୍ମନିଷ୍ଠ ମଧ୍ୟେ ଏକ ଜ୍ଞାନୀଶ୍ରେଷ୍ଠ ।
କୋଟିଜ୍ଞାନୀ ମଧ୍ୟେ ହୟ ଏକଜନ ମୁକ୍ତ
କୋଟିମୁକ୍ତ ମଧ୍ୟେ ଦୁର୍ଲ୍ଲଭ କୃଷ୍ଣଭକ୍ତ ।

( ଚୈଃ ଚଃ ମଧ୍ୟ ୧୯ ଶ ପରି )

ଅତଏବ କର୍ମ୍ମୀ, ଜ୍ଞାନୀ, ଯୋଗୀ ଓ ମୁକ୍ତ ସମସ୍ତଙ୍କ ଠାରୁ କୃଷ୍ଣ ଭକ୍ତ ଶ୍ରେଷ୍ଠ । ଭକ୍ତ ଏତେ ଉଚ୍ଚ କାହିଁକି; ନା, ଶ୍ରୀକୃଷ୍ଣଙ୍କର ପ୍ରାୟ ସମସ୍ତ ସଦ୍‌ଗୁଣ ମାନ ଭକ୍ତ ଦେହରେ ସଞ୍ଚାର କରେ । ଅଗ୍ନିଙ୍କ ପ୍ରବେଶରେ ଅନ୍ଧକାର

ପଳାଇଲା ପରି ଭକ୍ତି ଉଦୟ ସଙ୍ଗେ ସଙ୍ଗେ ମନୁଷ୍ୟର ଦୁର୍ଗୁଣମାନ ଭକ୍ତ ହୃଦୟରୁ ଅନ୍ତର୍ହିତ ହୋଇଯାଏ ଏବଂ ସୁଗୁଣମାନ ଏକେ ଏକେ ସେ ସ୍ଥାନ ଅଧିକାର କରେ । ସେଥିପାଇଁ ଶ୍ରୀମହାପ୍ରଭୁ ଶ୍ରୀଲ ସନାତନ ଗୋସ୍ୱାମୀଙ୍କୁ କହିଅଛନ୍ତି । ଯଥା :—

ସର୍ବ ମହାଗୁଣ ଗଣ ବୈଷ୍ଣବ ଶରୀରେ
କୃଷ୍ଣଭକ୍ତେ କୃଷ୍ଣେର ଗୁଣ ସକଳ ସଞ୍ଚରେ ।
( ଚୈଃ ଚଃ ମଧ୍ୟଃ ୨୨ ଶ ପରି)

ଶ୍ରୀକୃଷ୍ଣଙ୍କର ସଦ୍‌ଗୁଣ ସମସ୍ତ ସଞ୍ଚାର ହେତୁ ଭକ୍ତଙ୍କ ଶରୀର ଅତି ପବିତ୍ର ହୋଇ ଉଠେ । ଭଗବାନ ତେଣୁ ଭକ୍ତ ଶରୀରକୁ ଅତି ଆଦର କରନ୍ତି ଏବଂ ଭକ୍ତଙ୍କୁ ବିଶେଷ ସମ୍ମାନ ପ୍ରଦାନ କରନ୍ତି । ଶ୍ରୀ ସନାତନ ଗୋସ୍ୱାମୀ ଗୌଡ ବାଦ୍‌ସାହଙ୍କର ମନ୍ତ୍ରୀ, କିନ୍ତୁ ଶ୍ରୀମନ୍ ମହାପ୍ରଭୁଙ୍କର ଦର୍ଶନ ପ୍ରାପ୍ତି ପରେ ତାଙ୍କର ରାଜକାର୍ଯ୍ୟରେ ଆଉ ଇଚ୍ଛା ରହିଲା ନାହିଁ । ବିଶେଷତଃ ହୋସେନ୍ ସାହାଙ୍କର ଉତ୍କଳ ଆକ୍ରମଣରେ ଶ୍ରୀ ଜଗନ୍ନାଥ ଦେବଙ୍କ ପ୍ରିୟ ଦେଶ ଓ ପ୍ରିୟଲୋକମାନେ ଉତ୍ପୀଡ଼ିତ ହେବେ ଏଥିରେ ସେ ସମ୍ମତ ନ ହେବାରୁ ଗୌଡ଼େଶ୍ୱର ତାଙ୍କୁ କାରାଗାରରେ ବନ୍ଦକରି ଦକ୍ଷିଣ ଦେଶକୁ ଯୁଦ୍ଧାର୍ଥ ଆଗମନ କଲେ । ସନାତନ କାରାଧ୍ୟକ୍ଷଙ୍କୁ ସାତସହସ୍ର ମୁଦ୍ରା ଉତ୍କୋଚ ଦେଇ କାରାଗାରରୁ ମୁକ୍ତ ହେଲେ ଓ ବନପଥରେ ପଳାଇଗଲେ । ଶ୍ରୀ କାଶୀ ଧାମରେ ଉପସ୍ଥିତ ହୋଇ ଶୁଣିଲେ ମହାପ୍ରଭୁ ମଧ୍ୟ ଶ୍ରୀବୃନ୍ଦାବନରୁ ସେଠାକୁ ଆସି ଶ୍ରୀ ଚନ୍ଦ୍ରଶେଖରଙ୍କ ଗୃହରେ ବାସ କରୁଅଛନ୍ତି । ତେଣୁ ଯାଇ ତାଙ୍କ ଶ୍ରୀଚରଣ ଦର୍ଶନ କଲେ । ମହାପ୍ରଭୁ ପ୍ରିୟ ସନାତନଙ୍କୁ ଦେଖି ଦୂରରୁ ଦଉଡ଼ି ଆସି ପ୍ରେମାବିଷ୍ଟ ହୋଇ ଆଲିଙ୍ଗନ କଲେ ଏବଂ ତାଙ୍କୁ ପିଣ୍ଡାଉପରେ ବସାଇ ଶ୍ରୀହସ୍ତରେ ତାଙ୍କ ଅଙ୍ଗ ସମ୍ମାର୍ଜନ କରିବାକୁ ଲାଗିଲେ । ସନାତନ ସେଥିରେ ସଙ୍କୁଚିତ ହୋଇ କହିଲେ "ପ୍ରଭୋ ? ମୁଁ ଅସ୍ପୃଶ୍ୟ ଓ ଘୃଣ୍ୟ, ଆପଣ ଏହା କରୁଅଛନ୍ତି । ମୁଁ ଯେ ଆପଣଙ୍କର ସ୍ପର୍ଶର ଅଯୋଗ୍ୟ" ସେଥିରେ ମହାପ୍ରଭୁ କହିଲେ "ସନାତନ ! ମୁଁ ନିଜେ ପବିତ୍ର ହେବାକୁ ତୁମ୍ଭକୁ ସ୍ପର୍ଶ କରୁଅଛି । ତୁମ୍ଭେ ଭକ୍ତିବଳରେ ବ୍ରହ୍ମାଣ୍ଡ ଶୋଧନ କରିପାର ।" ଯଥା ଃ—

ପ୍ରଭୁ କହେ ତୋମା ସ୍ପର୍ଶି ଆତ୍ମ ପବିତ୍ରିତେ
ଭକ୍ତିବଲେ ପାର ତୁମି ବ୍ରହ୍ମାଣ୍ଡ ଶୋଧିତେ ।
ତୋମା ଦେଖି ତୋମା ସ୍ପର୍ଶି ଗାଇ ତୋମାର ଗୁଣ
ସର୍ବେନ୍ଦ୍ରିୟ ଫଲ ଏଇ ଶାସ୍ତ୍ର ନିରୂପଣ ।
( ଚୈଃ ଚଃ ମଧ୍ୟ ୨୦ ଶ ପରି )

ମହାପ୍ରଭୁ ପୁଣି ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ମଧ୍ୟ ଜ୍ୟେଷ୍ଠମାସ ପ୍ରଚଣ୍ଡ ରୌଦ୍ର ତାପରେ ଦିବା ଦୁଇପ୍ରହର ସମୟରେ ଯମେଶ୍ୱର ଟୋଟାରେ ଥାଇ ଶ୍ରୀ ସନାତନଙ୍କୁ ପରୀକ୍ଷା ନିମନ୍ତେ ଡ଼କାଇଲେ ଏବଂ ଶ୍ରୀ ଜଗନ୍ନାଥଙ୍କ ସେବକ ମାନଙ୍କ ଅଙ୍ଗ ସ୍ପର୍ଶରେ ତାଙ୍କର ଅପରାଧ ହେବ ଏହି ଭୟରୁ କି ସେ ଦେଉଳ ପାଖ ଦେଇ ନ ଯାଇ ସମୁଦ୍ର ପଥରେ ତପ୍ତ ବାଲୁକା ପଥ ଦେଇ ଗମନ କରନ୍ତେ ମହାପ୍ରଭୁ ସନ୍ତୁଷ୍ଟ ହୋଇ ତାଙ୍କୁ କହିଥିଲେ । ଯଥା ଃ—

ଯଦ୍ୟପି ଓ ହଓ ତୁମି ଜଗତ ପାବନ
ତୋମାସ୍ପର୍ଶେ ପବିତ୍ର ହୟ ଦେବମୁନି ଗଣ ।
ତଥାପି ଭକ୍ତେର ସ୍ୱଭାବ ମର୍ଯ୍ୟାଦା ରକ୍ଷଣ
ମର୍ଯ୍ୟାଦା ପାଲନ ହୟ ସାଧୁର ଭୂଷଣ ।
(ଚୈଃ ଚଃ ଅନ୍ତ୍ୟଃ ୪ ର୍ଥ ପରି )

ଏତ ଗଲା ସନାତନଙ୍କ ସମ୍ବନ୍ଧରେ । ମହାପ୍ରଭୁ ପୁଣି ଭୁବନ ପାବନ ହରନାମ ପ୍ରଚାର କାରୀ ଠାକୁର ଶ୍ରୀହରିଦାସଙ୍କ ସମ୍ବନ୍ଧରେ କଣ କହି ଅଛନ୍ତି ଦେଖାଯାଉ । ଯଥା ଃ—

ପ୍ରଭୁ କହେ ତୋମା ସ୍ପର୍ଶି ପବିତ୍ର ହଇତେ
ତୋମାର ପବିତ୍ର ଧର୍ମ ନାହିକ ଆମାତେ ।
କ୍ଷଣେ କ୍ଷଣେ କର ତୁମି ସର୍ବତୀର୍ଥ ସ୍ନାନ
କ୍ଷଣେ କ୍ଷଣେ କର ତୁମି ଯଜ୍ଞ ତପ ଦାନ ।
ନିରନ୍ତର କର ତୁମି ବେଦ ଅଧ୍ୟୟନ
ଦ୍ୱିଜ ନ୍ୟାସୀ ହୈତେ ତୁମି ପରମ ପାବନ ।
( ଚୈଃ ଚଃ ମଧ୍ୟ ୧୧ ଶଃ ପରି )

ଭକ୍ତର ପ୍ରଗାଢ଼ ଭକ୍ତିରେ ଭଗବାନ ଆପଣାକୁ ଋଣୀମନେ କରନ୍ତି ଓ ସେହି ଋଣ ପରିଶୋଧ କରିବାର ଚେଷ୍ଟାକରି ଭକ୍ତରତୁଷ୍ଟି ସାଧନ କରନ୍ତି ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ଜଗତ ଭକ୍ତିହୀନ ଦେଖି ବିଚାର କଲେ ଶ୍ରୀକୃଷ୍ଣଙ୍କୁ ଜଗତକୁ ଆଣାଇ ହରିନାମ କୀର୍ତ୍ତନ ପ୍ରଚାର ନ କଲେ ଏ କଳିହତ ଜୀବ-ମାନଙ୍କର ଆଉ ଅନ୍ୟଗତି ନାହିଁ । କି ପ୍ରକାରେ ଶ୍ରୀକୃଷ୍ଣଙ୍କୁ ଧରାରେ ଅବ-ତୀର୍ଣ୍ଣ କରାଇବେ ଏହି ଚିନ୍ତା କରଚନ୍ତି ଗୌତମୀୟ ତନ୍ତ୍ରର ଗୋଟିଏ ଶ୍ଳୋକ ତାଙ୍କ ମନରେ ଉଦୟହେଲା ଏବଂ ତାହାର ମର୍ମ୍ମ ବିଚାରକରି ସେ କହିଲେ ଯେ ଶ୍ରୀକୃଷ୍ଣଙ୍କୁ ଜଳତୁଳସୀ ଅର୍ପଣ କରନ୍ତି, କୃଷ୍ଣ ତା ଠାରେ ଋଣୀହୋଇ ଋଣ ଶୁଝିବାର ଚିନ୍ତା କରନ୍ତି । ଯଥା ୫—

କୃଷ୍ଣକେ ଜଳତୁଳସୀ ଦେୟ ଯେଇ ଜନ
ତାର ଋଣ ଶୋଧିତେ କୃଷ୍ଣ କରେନ ଚିନ୍ତନ ।
ଜଳତୁଳସୀର ସମ କିଛୁ ନାହିଁ ଅନ୍ୟଧନ
ତାରେ ଆତ୍ମା ବେଚିକରେ ଋଣେର ଶୋଧନ ।

[ ଚୈଃ ଚଃ ଅଃ ୩ ୟ ପରିଃ ]

ପ୍ରକୃତରେ ଜଳତୁଳସୀ ଦ୍ୱାରା ପୂଜାରେ ସନ୍ତୁଷ୍ଟ ହୋଇ ଶ୍ରୀକୃଷ୍ଣ ଭକ୍ତର ବଶ ହୁଅନ୍ତି । ଭକ୍ତର ଭକ୍ତିରେ ଭଗବାନ ସନ୍ତୁଷ୍ଟ ହେବାର ଅନେକ ପ୍ରମାଣ ପୁରାଣାଦିରେ ବର୍ଣ୍ଣିତ ହୋଇଅଛି । କେତେକ ଗୋଟି ଉଦାହରଣ ନିମ୍ନରେ ଲିଖିତ ହେଲା ।

ବିଦ୍ୟାନଗରରୁ ଦୁଇଜଣ ବ୍ରାହ୍ମଣ ତୀର୍ଥପର୍ଯ୍ୟଟନ କରିବାକୁ ଯାଇ-ଥିଲେ । ସେମାନେ ଯାଇ ଶ୍ରୀବୃନ୍ଦାବନରେ ପହଞ୍ଚିଲେ, ଶ୍ରୀଗୋପାଳଙ୍କ ଶୋଭାରେ ପ୍ରୀତ ହୋଇ ସେଠାରେ କିଛିଦିନ ବାସକଲେ । ସେହି ଦୁହିଙ୍କ ମଧ୍ୟରୁ ଜଣେ କିଛି ବୟୋବୃଦ୍ଧ, ଅପର ଜଣକ ଯୁବକ । ଏବଂ ସେ ଯୁବକ ବୃଦ୍ଧ ବ୍ରାହ୍ମଣଙ୍କର ବହୁରୂପେ ସେବା କରୁଥିଲେ । ବୃଦ୍ଧବ୍ରାହ୍ମଣ ସେବାରେ ପ୍ରୀତ ହୋଇ ଯୁବକ ବିପ୍ରଙ୍କୁ କହିଲେ, "ମୁଁ ତୁମ୍ଭଙ୍କୁ ମୋର କନ୍ୟାଟି ପ୍ରଦାନ କରିବି ।" ଯୁବକ ବିପ୍ର ସେଥିରେ ପ୍ରତିବାଦ କରି କହିଲେ, "ମହାଶୟ, ଆପଣ ମହାକୁଳୀନ, ଧନୀ ଓ ବିଦ୍ୱାନ, ମୁଁ ନୀଚକୁଳୋଦ୍ଭବ ବ୍ରାହ୍ମଣ, ଧନହୀନ

ଓ ବିଦ୍ୟାସ୍ଥାନ । ଆପଣ ଏପରି କଥା କାହିଁକି କହୁଅଛନ୍ତି । ବ୍ରାହ୍ମଣଙ୍କର ସେବା ମନୁଷ୍ୟର କର୍ତ୍ତବ୍ୟ, ଯେଉଁଥିରେ କୃଷ୍ଣ ସନ୍ତୁଷ୍ଟ ହୁଅନ୍ତି, ମୁଁ ତେଣୁ କୃଷ୍ଣ ପ୍ରୀତ୍ୟର୍ଥେ ଆପଣଙ୍କର ସେବା କରୁଅଛି" । ବଡ଼ ବିପ୍ର ତହିଁରେ କହିଲେ, "ମୋର କନ୍ୟା ଉପରେ ମୋର ଅଧିକାର, ମୋର ଇଚ୍ଛା, ମୁଁ ସେ କନ୍ୟା ତୁମ୍ଭଙ୍କୁ ବିବାହ ଦେବି । ସେଥିରେ ଅନ୍ୟ କାହାର କିଛି କହିବାର ନାହିଁ । ସାନ ବିପ୍ର କହିଲେ, ମହାଶୟ ଆପଣଙ୍କର ସ୍ତ୍ରୀ ପୁତ୍ର ଓ ଜ୍ଞାତିମାନେ ନାନା ଆପତ୍ତି କରିବେ ଆପଣ ସେତେବେଳେ ସେମାନଙ୍କ ଉପରୋଧରେ ତାହା କଦାପି କରିପାରିବେ ନାହିଁ । ବଡ଼ବିପ୍ର କହିଲେ, "ମୋର କନ୍ୟା ମୋର, ସେଥିରେ ମୁଁ ଆଉ କାହା କଥା ଶୁଣିବି କାହିଁକି, ମୁଁ ଏଠାରେ ସତ୍ୟ କରୁଅଛି ନିଶ୍ଚୟ ମୋର କନ୍ୟାକୁ ତୁମ୍ଭଙ୍କୁ ଅର୍ପଣ କରିବି", ସାନବିପ୍ର ସେତେବେଳେ କହିଲେ "ହେଉ ଯଦି ନିତାନ୍ତ ମୋତେ କନ୍ୟା ଦେବାକୁ ଇଚ୍ଛନ୍ତି, ତେବେ ଏହି ଶ୍ରୀଗୋପାଳଙ୍କ ସମ୍ମୁଖରେ ସତ୍ୟ କରନ୍ତୁ" । ତହୁଁ ବଡ଼ବିପ୍ର ଶ୍ରୀ ଗୋପାଳଙ୍କୁ ସାକ୍ଷୀ କରି କହିଲେ "ହେ ଗୋପାଳ, ମୁଁ ଏ ସାନ ବିପ୍ରକୁ କନ୍ୟା ଦେବାକୁ ଅଙ୍ଗୀକାର କରୁଅଛି । ଆପଣ ଏଥିରେ ସାକ୍ଷୀ ରହିଲେ । ସାନ ବିପ୍ର କହିଲେ "ହେ ଗୋପାଳ ! ତୁମ୍ଭେ ଏବିଷୟରେ ମୋର ସାକ୍ଷୀ; ବଡ଼ ବିପ୍ର ମହାଶୟ ତାଙ୍କ କଥାର ଅନ୍ୟଥା କଲେ ଆପଣଙ୍କୁ ଏଥିରେ ସାକ୍ଷ୍ୟ ପ୍ରଦାନ କରିବାକୁ ହେବ" । ତତ୍ପରେ ଦୁହେଁ ଗୃହକୁ ଫେରି ଆସିବା ପରେ ବଡ଼ ବିପ୍ର ସାନ ବିପ୍ରଙ୍କୁ କନ୍ୟା ଦେବାର ଇଚ୍ଛା ପ୍ରକାଶ କରନ୍ତେ ବଡ଼ ବିପ୍ରର ପତ୍ନୀ ଓ ପୁତ୍ର ସେଥିରେ ବାଧା ଦେଲେ ଓ କହିଲେ "ତୁମ୍ଭେ ଏ ରୂପ ସମାଜ ଗର୍ହିତ କାର୍ଯ୍ୟ କଲେ ଆମ୍ଭେମାନେ ଆତ୍ମହତ୍ୟାରେ ପ୍ରାଣ ହରାଇବୁଁ ।" ବଡ଼ ବିପ୍ର ମହା ସଙ୍କଟରେ ପଡ଼ିଲେ । ସାନ ବିପ୍ର କନ୍ୟା ଗୁହାରିଲେ ବଡ଼ ବିପ୍ର ପୁତ୍ରାଦିଙ୍କ ଉପରୋଧରେ ଅନିଚ୍ଛା ସତ୍ତ୍ୱେ କହିଲେ ମୁଁ କନ୍ୟା ଦେବାକୁ ବାକ୍ୟ ଦେଇଥିବାର ମୋର ସ୍ମରଣ ନାହିଁ । ଏହା କହନ୍ତେ ବଡ଼ ବିପ୍ରଙ୍କର ପୁତ୍ର ସାନ ବିପ୍ରଙ୍କୁ ନାନାରୂପେ ତିରସ୍କାର କଲେ । ସାନ ବିପ୍ର ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କୁ ସମ୍ବୋଧନ ପୂର୍ବକ କହିଲେ 'ମହାଶୟଗଣ ! ଏ ବଡ଼ବିପ୍ର ପତ୍ନୀ ଓ ପୁତ୍ରଙ୍କ ଅନୁରୋଧରେ ଏମନ୍ତ କହୁଅଛନ୍ତି

କାରୁ ମୁଁ ସାକ୍ଷୀ ଆଣି ଏହାର ସତ୍ୟତା ପ୍ରମାଣ କରାଇବ । ଯାହାଙ୍କ ବାକ୍ୟକୁ ତ୍ରିଭୁବନରେ ସମସ୍ତେ ସତ୍ୟ ବୋଲି ମନେ କରନ୍ତି ସେ ଗୋପାଳ ମୋର ସାକ୍ଷୀ । ବଡ ବିପ୍ରଙ୍କ ପୁତ୍ର ଭାବିଲେ ସାକ୍ଷୀ ଏକେ ବିଗ୍ରହ ଓ ସେ ଦୂର ଦେଶରେ ଅତଏବ ସାକ୍ଷ୍ୟ ଦେବା ଅସମ୍ଭବ । ଏହା ଭାବି କହିଲେ " ହେଉ ତୁମ୍ଭେ ପ୍ରମାଣ କରାଇଲେ ଆମ୍ଭ ଭଗ୍ନୀକୁ ବିବାହ କରିବ । ସର୍ବ ସମ୍ମତି କ୍ରମେ ଏହି ମର୍ମରେ ଏକ ପତ୍ର ଲେଖା ହେଲା ଓ ତାହା ଭଦ୍ରଲୋକଙ୍କ ଠାରେ ରକ୍ଷିତ ହେଲା । ଏହାପରେ ଜ୍ୟେଷ୍ଠ ବିପ୍ର ପୁନର୍ବାର ଶ୍ରୀବୃନ୍ଦାବନ ଗମନ କଲେ । ଶ୍ରୀବୃନ୍ଦାବନରେ ପ୍ରବେଶ କରି ଜ୍ୟେଷ୍ଠ ବିପ୍ର ଗୋପାଳଙ୍କୁ ନିବେଦନ କଲେ " ପ୍ରଭୋ ! ତୁମ୍ଭେ ତ ମୋର ସାକ୍ଷୀ, ଏବେ ଚାଲ ସାକ୍ଷ୍ୟ ପ୍ରଦାନ କରିବ ।" ଭକ୍ତର ଅନୁରୋଧରେ ଗୋପାଳ କହିଲେ । "ତୁମ୍ଭେ ଯାଇ ତୁମ୍ଭ ଦେଶରେ ଏକ ସଭା ଆହ୍ୱାନ କର । ମୋତେ ସ୍ମରଣ କଲେ ମୁଁ ଆବିର୍ଭାବ ହୋଇ ସାକ୍ଷୀ ଦେବି" ଜ୍ୟେଷ୍ଠ ବିପ୍ର କହିଲେ " ଆପଣ ଚତୁର୍ଭୁଜ ମୂର୍ତ୍ତିରେ ପ୍ରକାଶ ପାଇଲେ ମଧ୍ୟ କେହି ସେଥିରେ ପ୍ରତ୍ୟୟ ଯିବେ ନାହିଁ । ଏହି ଶ୍ରୀ ବିଗ୍ରହ ରୂପରେ ଯାଇ ଏହି ଶ୍ରୀମୁଖରେ ସାକ୍ଷ୍ୟ ଦେବାକୁ ହେବ ।" ଶ୍ରୀଗୋପାଳ କହିଲେ "ପ୍ରତିମା ହୋଇ ଯିବି କିପରି" ? ବିପ୍ର କହିଲେ "ଆପଣ ପ୍ରତିମା ହୋଇ କଥା କହୁଛନ୍ତି କିପରି" ? ଗୋପାଳ ଆଉ ଭକ୍ତଠାରେ ଉତ୍ତର ଦେଇ ପାରିଲେ ନାହିଁ । ପ୍ରିୟ ଭକ୍ତର ପରମା ଭକ୍ତିରେ ପରାଜିତ ହେଲେ ଏବଂ ପଛେ ପଛେ ଯିବାକୁ ସମ୍ମତ ହେଲେ । ଏହିରୂପେ ଶ୍ରୀଗୋପାଳ ବିଗ୍ରହ ବିଦ୍ୟାନଗରକୁ ଆସି ଜ୍ୟେଷ୍ଠ ବିପ୍ରଙ୍କ ଅନୁରୋଧରେ ସାକ୍ଷ୍ୟ ପ୍ରଦାନ କଲେ । ତତ୍ପରେ ଗୋପାଳ ସେହି ଦୁଇ ବିପ୍ରଙ୍କ ଭକ୍ତିରେ ତୁଷ୍ଟ ହୋଇ ସେମାନଙ୍କୁ ବର ଯାଚିଲେ, ସେମାନେ ତାଙ୍କୁ ପ୍ରାର୍ଥନା କଲେ "ପ୍ରଭୋ ! ଯଦି କୃପା କରି ବର ଦେବାକୁ ଇଚ୍ଛା କରନ୍ତି, ତେବେ ଆମ୍ଭ ଦୁହିଙ୍କର ଏହି ପ୍ରାର୍ଥନା ଯେ ଆପଣ ଏହିଠାରେ ଚିରକାଳ ବିରାଜମାନ କରନ୍ତୁ; ଏବଂ ଭବଦୀୟ କୃପା ଚିରକାଳ ପାଇଁ ଲୋକରେ ଖ୍ୟାତ ହେଉ । ଶ୍ରୀ ଗୋପାଳ ତଥାସ୍ତୁ ବୋଲି ସେହିଠାରେ ରହିଲେ ଯଥା—

ଯଦି ବର ଯିବେ ତବେ ରହ ଏହି ସ୍ଥାନେ
କଙ୍କରେର ଦଶ୍ୟା ତବେ ସର୍ବ ଲୋକେ ଜାନେ
( ଚୈଃ ଚଃ ମଧ୍ୟ ୫ମ ପରି )

ଭକ୍ତ ବତ୍ସଳ ଗୋପାଳ ଭକ୍ତମାନଙ୍କ ଅନୁରୋଧରେ ସେହି ସ୍ଥାନରେ ରହିଲେ । ସେହି ଆଶ୍ଚର୍ଯ୍ୟ ବ୍ୟାପାର ଶ୍ରବଣ କରି ସେହି ଦେଶର ରାଜା ଗୋପାଳଙ୍କ ଦର୍ଶନ କରିବାକୁ ଆସିଲେ ଏବଂ ଦର୍ଶନ କରି ତାଙ୍କ ରହିବା ନିମନ୍ତେ ମନ୍ଦିର ପ୍ରସ୍ତୁତ କରାଇଲେ ଏବଂ ସେବାର ସୁବନ୍ଦୋବସ୍ତ କରି ଦେଲେ । ସାକ୍ଷୀ ଗୋପାଳ ନାମରେ ଗୋପାଳଙ୍କର ଖ୍ୟାତି ବିସ୍ତାର ହେଲା ।

ଅହା ! ଭକ୍ତଙ୍କର କି ଅଦ୍ଭୁତ ମହିମା । ଆମ୍ଭେମାନେ ଏତେଦୂର ଭ୍ରାନ୍ତ ଯେ ଏହି ପ୍ରତ୍ୟକ୍ଷ ଘଟଣାକୁ ଗଳ୍ପ ମନେ କରି ଉଡାଇ ଦେଉଅଛୁଁ । ହେ ଭକ୍ତବତ୍ସଳ ଶ୍ରୀଗୋପାଳ ତୁମ୍ଭେ ପୂର୍ଣ୍ଣ କୃପା ପ୍ରକାଶ ନ କଲେ ଆମ୍ଭମାନଙ୍କ ତର୍କନିଷ୍ଠ ମନରେ ବିଶ୍ୱାସ ଜାତ ହେବ କିପରି । ଆମ୍ଭେମାନେ ତ ବଡ଼ ବଡ଼ ବିଦ୍ୱାନ ଶ୍ରେଷ୍ଠ ବିପ୍ର ନୋହୁଁ ଯେ ଶ୍ରୀ ବିଗ୍ରହରୂପୀ ଆପଣଙ୍କ ଶ୍ରୀମୁଖର ବଚନ ଶୁଣିବାକୁ ସକ୍ଷମ ହେବୁଁ । ତେବେ କୃପାକରି ଆମ୍ଭମାନଙ୍କ ହୃଦୟ ମନ୍ଦିରରେ ଆବିର୍ଭୂତ ହୋଇ ଆପଣଙ୍କ ସ୍ୱରୂପ ତତ୍ତ୍ୱ ଓ ବିଗ୍ରହ ତତ୍ତ୍ୱ ଆମ୍ଭମାନଙ୍କୁ ବୁଝାଇ ଦିଅନ୍ତୁ ।

ଏହି ଘଟଣାର କେତେ ବର୍ଷ ପରେ ଓଡ଼ିଶାର ମହାରାଜା ଶ୍ରୀ ପୁରୁଷୋତ୍ତମ ଦେବ ବିଦ୍ୟା ନଗର ଜୟ କରି ଶ୍ରୀ ଗୋପାଳ ବିଗ୍ରହଙ୍କୁ ତାଙ୍କ ରାଜଧାନୀ କଟକ ନଗରକୁ ଯିବାକୁ ପ୍ରାର୍ଥନା କଲେ । ମହାରାଜାଙ୍କୁ ଭକ୍ତ ଜାଣି ଶ୍ରୀ ଗୋପାଳ ତାହା ଅନୁମୋଦନ କରନ୍ତେ ମହାରାଜା ଶ୍ରୀ ପୁରୁଷୋତ୍ତମ ଦେବ ଶ୍ରୀ ଗୋପାଳଙ୍କୁ କଟକକୁ ନେଇଆସିଲେ ।

ମହାରାଜା ଓ ମହାରାଣୀ ଦୁହେଁ ଭକ୍ତ । ସେମାନେ ଗୋପାଳ ବିଗ୍ରହ ଦର୍ଶନ କାଳରେ ମହାରାଣୀ ମନେ କଲେ ଯଦି ଗୋପାଳଙ୍କ ନାସାରେ ଛିଦ୍ର ଥାଆନ୍ତା ମୁଁ ମୋର ପରିହିତ ନାସାମୋତି ତାଙ୍କୁ ଦିଅନ୍ତି । ଏହି ରୂପ ମନେ କରି ଶ୍ରୀ ଗୋପାଳ ଦର୍ଶନାନନ୍ତର ଗୃହରେ ଯାଇ ଶୟନ କଲେ । ଶୟନ କାଳରେ ମହାରାଣୀ ସ୍ୱପ୍ନ ଦେଖିଲେ, ଗୋପାଳ ତାଙ୍କ ଦର୍ଶନ ଦେଇ କହିଲେ

ଅଛନ୍ତି, ବାଳକ କାଳରେ ମାତା ମୋର ନାକ ଫୋଡ଼ାଇ ମୁକ୍ତା ପିନ୍ଧାଇ ଥିଲେ ସେ ଛିଦ୍ର ଅଦ୍ୟାପି ରହିଅଛି । ତୁମ୍ଭେ ଯେଉଁ ମୁକ୍ତା ପିନ୍ଧାଇବାକୁ ଇଚ୍ଛା କରିଅଛ ତାହା ମୋ ନାକରେ ପିନ୍ଧାଅ ! ଯଥା—

ବାଳକ କାଳେ ମାତା ମୋର ନାସା ଛିଦ୍ର କରି
ମୁକ୍ତା ପରାଇୟା ଛିଲ ବହୁଯତ୍ନ କରି ।
ସେଇ ଛିଦ୍ର ଅଦ୍ୟାପିହ ଅଛୟେ ନାସାତେ
ସେଇ ମୁକ୍ତା ପରାହ ଯାହା ଚାହିୟାଛ ଦିତେ ।

( ଚୈଃ ଚଃ ମଧ୍ୟ ୫ମ ପରି )

ମହାରାଣୀ ଏହି ସ୍ୱପ୍ନ ବୃତ୍ତାନ୍ତ ମହାରାଜାଙ୍କୁ ଜଣାଇଲେ, ଏବଂ ଦୁହେଁ ଯାଇ ମହାସମାରୋହ ପୂର୍ବକ ଉତ୍ସବ କରି ମୁକ୍ତା ଶ୍ରୀଗୋପାଳଙ୍କ ଛିଦ୍ର ଯୁକ୍ତ ନାସାରେ ପିନ୍ଧାଇଲେ । ଧନ ସବୁବେଳେ ଭକ୍ତିର ପ୍ରତିବନ୍ଧକ ନୁହେ, ମଧ୍ୟେ ମଧ୍ୟେ କେତେକ ଧନୀବ୍ୟକ୍ତିଙ୍କୁ ଏହି ମହାରାଜା ଓ ମହାରାଣୀଙ୍କ ତୁଲ୍ୟ ଅତୀବ ଭକ୍ତିମାନ ଓ ଭକ୍ତିମତୀ ଦେଖାଯାଏ ।

ବର୍ତ୍ତମାନ ସେହି ଶ୍ରୀଗୋପାଳ ପୁରୀକୁ ଦଶମାଇଲ ଉତ୍ତର ସତ୍ୟବାଦୀ ନାମକ ଗ୍ରାମରେ ବିରାଜମାନ ।

ଏତ ବୟୋଧିକ ଲୋକମାନଙ୍କ କଥା, ଏବେ ଗୋଟିଏ ବାଳକର ଅଦ୍ଭୁତ ଭକ୍ତିର ପରିଚୟ ଏ ଠାରେ ଉଲ୍ଲେଖ ଯୋଗ୍ୟ । କୃଷ୍ଣ ଭଜନରେ ବାଳକ, ଯୁବା, ବୃଦ୍ଧ ଏସବୁ କାଳ ସାପେକ୍ଷ ନାହିଁ । ବୈଦ୍ୟ କୁଳ ତିଳକ ଖଣ୍ଡବାସୀ ଶ୍ରୀଲ ନରହରି ସରକାର ବୈଷ୍ଣବ ଜଗତରେ ଅତି ସୁଖ୍ୟାତ । ସେ ସର୍ବଦା ଗୌର ପ୍ରେମରେ ବିହ୍ୱଳ । ତାଙ୍କ ଜ୍ୟେଷ୍ଠ ଭ୍ରାତା ମୁକୁନ୍ଦ ଗୃହରେ ଠାକୁରଙ୍କୁ ସତତ ପୂଜା କରନ୍ତି । ଏକ ସମୟରେ ସେ କୌଣସି କାର୍ଯ୍ୟ ବଶତଃ ବିଦେଶକୁ ଗଲେ ଓ ତାଙ୍କର ବାଳକ ପୁତ୍ର ରଘୁନନ୍ଦନଙ୍କୁ କହିଗଲେ ମୁଁ ଯାଉଛି ମୋର ନଥିବା ସମୟରେ ତୁ ଶ୍ରୀବିଗ୍ରହଙ୍କର ସେବା କାର୍ଯ୍ୟ ସମାଧାନ କରିବୁ । ରଘୁନନ୍ଦନ ବାଳକ ହେଲେହେଁ ପରମ ଭକ୍ତ, ପିତାଙ୍କ ଆଦେଶରେ ବିଗ୍ରହ ସେବାର ଭାର ଗ୍ରହଣ କଲେ । ସେ ବିଗ୍ରହଙ୍କୁ ସ୍ନାନାଦି କରାଇ ଦେଇ ବସ୍ତ୍ର ପିନ୍ଧାଇଦେଲେ ଏବଂ ଭୋଗ ନିମିତ୍ତ ଲଡୁ ନେଇ

ନିବେଦନ କଲେ । କିଛିକ୍ଷଣ ଘରୁ ବାହାରି ଆସି ଠାକୁରଙ୍କର ଭୋଜନର ପ୍ରତୀକ୍ଷା କଲେ ତତ୍ପରେ ଯାଇ ଦେଖନ୍ତି ସମସ୍ତ ଲଡୁ ସେହିପରି ଅଛି । ସେ ମନେ କଲେ ପିତା ଭୋଗାର୍ପଣ କଲେ ଠାକୁର ଭୋଜନ କରନ୍ତି ବର୍ତ୍ତମାନ ଖାଉନାହାନ୍ତି କିପାଇଁ ପିତା ଯେ ମୋତେ ଠାକୁର ସେବାର ଭାରଅର୍ପଣ କରି ଅଛନ୍ତି ସେ ଫେରି ଆସିଲେ ମୋତେ କଅଣ କହିବେ ଏହିରୂପ ମନେ କରି ପୁନଃ ପୁନଃ ଭୋଗାର୍ପଣ କରି ଘରୁ ବାହାରି ଆସିଲେ ଓ ବାରମ୍ବାର ଠାକୁର ଭୋଜନ ନ କରିବାର ଦେଖି ଅଭିମାନରେ ଛୁରି ଆଣି କଣ୍ଠ ଗଳା ମାରିବାର ମନସ୍ଥ କଲେ । ଭକ୍ତ ବତ୍ସଳ ଭଗବାନ କି ଆଉ ସ୍ଥିର ରହିପାରନ୍ତି ଅର୍ପିତ ଲଡୁ ମଧ୍ୟରୁ କେତେକ ଶ୍ରୀ ହସ୍ତରେ ନେଇ ଭୋଜନ କଲେ ଯଥା—

ଶ୍ରୀ ମୂର୍ତ୍ତିକେ ଲାଡୁ ଖାଓୟାଇଲ ଯେଇଜନ
ତାରେ ଅଳ୍ପ ବୁଦ୍ଧି କହେ କୋନ ମୂଢ଼ଜନ ।

( ଚୈଃ ଚଃ ପୂର୍ବଖଣ୍ଡ )

ଧନ୍ୟ ସାକ୍ଷାତ୍ ପ୍ରଦ୍ୟୁମ୍ନଙ୍କର ଅବତାର ଶ୍ରୀ ରଘୁନନ୍ଦନ, ତୁମ୍ଭର ବାଲ କାଳର ଏ ଅଦ୍ଭୁତ କୀର୍ତ୍ତି କେତେ ଅବିଶ୍ୱାସୀଙ୍କ ମନରେ ବିଶ୍ୱାସବୀଜ ରୋପଣ କରୁନାହିଁ ।

ଶ୍ରୀଭଗବାନ ଯେ କେବଳ ଏହି କତିପୟ ଭକ୍ତଙ୍କୁ ଅଙ୍ଗୀକାର କରିଅଛନ୍ତି, ଆଉ କାହାକୁ ନ କରିବେ ଏମନ୍ତ ନୁହେ । ଭଗବାନ ସ୍ୱତନ୍ତ୍ର ହେଲେହେଁ, ଭକ୍ତାଧୀନ ଓ ତେଣୁ ପରତନ୍ତ୍ର । ଯେ ପ୍ରୀତି ପୂର୍ବକ ମନ ପ୍ରାଣ ଅର୍ପଣ କରି ତାଙ୍କୁ ଭଜନ କରେ ସେ ତାହାରି ହୁଅନ୍ତି । ଶ୍ରୀମନ୍ମହାପ୍ରଭୁଙ୍କ ଉକ୍ତି ଏହାର ପ୍ରମାଣ । ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ପୂର୍ବକ ଶ୍ରୀପୁରୁଷୋତ୍ତମକୁ ବାହାରି ଅଛନ୍ତି । ପ୍ରିୟ ପାର୍ଷଦଗଣ ସେଥିରେ ବାଧା ଦେଇ ଶ୍ରୀମତୀ ବିଷ୍ଣୁପ୍ରିୟା ଓ ଶ୍ରୀଶଚୀମାତାଙ୍କ ଅପାର ଦୁଃଖ ଦେଖାନ୍ତେ, ମହାପ୍ରଭୁ ତହିଁରେ ଉତ୍ତର ଦେଲେ ।

କେବା ବିଷ୍ଣୁ ପ୍ରିୟା କେବା ମୋର ମାତା ଶଚୀ
ଯେ ଭଜୟେ କୃଷ୍ଣ ତାର କୋଲେ ଆମି ଆଛି

( ଚୈଃ ମଃ ମଧ୍ୟଃ )

ଜନନୀ ଶଚୀଦେବୀଙ୍କ ପ୍ରତି ମଧ ମହାପ୍ରଭୁ ତଦ୍ରୂପ ଉତ୍ତର ଦେଇ-ଥିଲେ ଯଥା ।—

କିବା ଭକ୍ତ କିବା ବିଷ୍ଣୁ ପ୍ରିୟା କିବା ତୁମି
ଯେ ଭଜୟେ କୃଷ୍ଣ ତାର କୋଲେ ଅଛ ଆମି ।

ଅତଏବ କାହାର ବିବଶ ହେବାର କାରଣ ନାହିଁ । ଭଗବାନଙ୍କୁ ତ ଛିବା ପର ତାଙ୍କ ପାରଲେ ଧନ ଜନ ସମସ୍ତଠାରେ ଅସକ୍ତି ତ୍ୟାଗ କରି କେବଳମାତ୍ର ତାଙ୍କପ୍ରତି ମମତା ପ୍ରଦର୍ଶନ କରିପାରିଲେ ସେ ଭକ୍ତି ଡୋରରେ ନିଜେ ନିଜେ ଆସି ଆବଦ୍ଧ ହୁଅନ୍ତି । ଏଣେ ବିଷୟ ପ୍ରତି ଲୋଭ ଥିବ, ତେଣେ ଶ୍ରୀକୃଷ୍ଣଙ୍କୁ ମଧ ନିଜ ବଶ କରିବ ଏ ଦୁଇ କଦାପି ସମ୍ଭବପର ନୁହେ ।

ଶ୍ରୀଭଗବାନ ଭକ୍ତିରେ ବଶ ହୋଇ,ନିଜ ଦାସର ଦାସତ୍ୱ ପର୍ଯ୍ୟନ୍ତ ସ୍ୱୀକାର କରନ୍ତି । ଶ୍ରୀକୃଷ୍ଣ ନିଜ ପ୍ରିୟ ସଖା ମହାବୀର ଅର୍ଜୁନଙ୍କର ରଥରେ ସାରଥି ହୋଇଥିଲେ । ମହାମୁନି ନାରଦଙ୍କର ଶ୍ରୀଚରଣ ପ୍ରକ୍ଷାଳନ କରିଥିଲେ ଶ୍ରୀଭଗବାନଙ୍କର ଏହି ସେବକ ବତ୍ସଳ ଗୁଣକୁ ଲକ୍ଷ୍ୟ କରି ଶ୍ରୀବୃନ୍ଦାବନ ଦାସ ଲେଖିଅଛନ୍ତି ।

ଯେ ତାହାର ଦାସ୍ୟପଦ ଭାବେ ନିରନ୍ତର
ତାହାର ଅବଶ୍ୟ ଦାସ୍ୟ କରେନ ଈଶ୍ୱର ।।

( ଚୈଃ ଭାଃ ଆଦ୍ୟ ୧୬ଶ ଅଃ )

ଭଗବାନତ ଭକ୍ତର ଦାସତ୍ୱ ସ୍ୱୀକାର କରନ୍ତି ତାହା ଛଡ଼ା, ଭକ୍ତ ଭକ୍ତିବଳରେ ଶ୍ରୀଭଗବାନଙ୍କୁ ବିକ୍ରୟ କରିବା ପର୍ଯ୍ୟନ୍ତ ଅଧିକାର ମଧ ପ୍ରାପ୍ତ ହୁଅନ୍ତି । ଶ୍ରୀଧାମ ଦ୍ୱାରକାରେ ଶ୍ରୀମତୀ ସତ୍ୟଭାମା ତାହାର ଉଦାହରଣ । ଯଥା :—

କୃଷ୍ଣେରେ ବେଚିତେ ପାରେ ଭକ୍ତ ଭକ୍ତିରସେ
ତାର ସାକ୍ଷୀ ସତ୍ୟଭାମା ଦ୍ୱାରକା ନିବାସେ ।

( ଚୈଃ ଭାଃ ମଧ ୬ଷ୍ଠ ଅ )

ଶ୍ରୀଭଗବାନ୍ଙ୍କ ସତ୍ୟ ପ୍ରତିଜ୍ଞ । ଯେ ଯେତେବେଳେ ସର୍ବଶକ୍ତିମାନ, ସେତେବେଳେ ନିଜ ପ୍ରତିଜ୍ଞା ପାଳନରେ ପଶ୍ଚାତ୍ପଦ ହେବେ କାହିଁକି । କିନ୍ତୁ ସମୟ ସମୟରେ ଭକ୍ତବାତ୍ସଲ୍ୟ ଗୁଣରେ ନିଜ ପ୍ରତିଜ୍ଞା ପାଳନରେ ମଧ୍ଯ ଅକ୍ଷମ ହୁଅନ୍ତି । ନିଜ ପ୍ରିୟ ଭକ୍ତର ମହିମା ବଢ଼ାଇବା ସେଥିର ଉଦ୍ଦେଶ୍ୟ, ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧରେ ଅସ୍ତ୍ର ଧାରଣ କରିବେ ନାହିଁ ପ୍ରତିଜ୍ଞା କରିଥିଲେ କିନ୍ତୁ ଭକ୍ତପ୍ରବର ଭୀଷ୍ମ ପ୍ରତିଜ୍ଞା କରିଥିଲେ ଯେ ମୁଁ ଶ୍ରୀକୃଷ୍ଣଙ୍କୁ ଅସ୍ତ୍ରଧାରଣ କରାଇବି । ଭଗବାନ ଶ୍ରୀକୃଷ୍ଣ ନିଜ ଭକ୍ତର ପ୍ରତିଜ୍ଞା ସତ୍ୟ କରାଇବା ନିମନ୍ତେ ଅଶ୍ୱ ରଥ ଚକ୍ରଧାରଣ ପୂର୍ବକ ଭୀଷ୍ମଙ୍କ ପ୍ରତି ଧାବନ ହୋଇଥିଲେ । ଏହିରୂପେ ଯେ ନିଜଇଚ୍ଛାରେ ନିଜ ପ୍ରତିଜ୍ଞା ଚୂର୍ଣ୍ଣ କରାଇଥିଲେ । ଶ୍ରୀଳ ବୃନ୍ଦାବନ ଦାସ ଏକ ସ୍ଥାନରେ ଲେଖିଅଛନ୍ତି ।

ସକଳ ପ୍ରତିଜ୍ଞା ଚୂର୍ଣ୍ଣ ଭକ୍ତେର ଦୁଆରେ ।
( ଚୈଃ ଭା ମଧ୍ୟ ୧୭ ଅ )

ଭକ୍ତ ଭଗବାନଙ୍କର ଏତେ ପ୍ରିୟ ଯେ ସେ ଅଜିତ ହେଲେ ମଧ୍ୟ ଭକ୍ତଠାରେ ପରାଜୟ ସ୍ୱୀକାର କରନ୍ତି । ଯଥା—

ଅତଏବ ଭକ୍ତ ହୟ ଈଶ୍ୱର ସମାନ
ଭକ୍ତସ୍ଥାନେ ପରାଭବ ମାନେ ଭଗବାନ ।
[ ଚୈଃ ଭାଃ ମଧ୍ୟ ୨୨ଶ ଅ ]

ଅତଏବ ଭକ୍ତପାଇଁ ସେ କ କରି ନ ପାରନ୍ତି । ଏମନ୍ତ କି ନିଜ ପୁତ୍ରଙ୍କୁ ମଧ୍ୟ ଭକ୍ତ ନିମନ୍ତେ ବିନାଶ କରନ୍ତି ।

ମହାରାଜ ନରକ ଉତ୍ତମରୂପେ ପ୍ରଜା ପାଳନ କରୁଥିଲେ । ସଙ୍ଗ ଦୋଷରୁ ତାଙ୍କର ପତନ ଘଟେ ଏବଂ ସେ କୃଷ୍ଣଭକ୍ତମାନଙ୍କ ଦ୍ରୋହୀ ହୋଇ ଉଠିଲେ । ଭଗବାନ ଶ୍ରୀକୃଷ୍ଣ ଭକ୍ତପ୍ରତି ଦ୍ରୋହ ସହ୍ୟ କରି ନ ପାରି ନିଜପୁତ୍ର ହେଲେ ମଧ୍ୟ ନରକଙ୍କୁ ବଧ କଲେ ।

ଶ୍ରୀଗୌରଚନ୍ଦ୍ର ତେଣୁ ଶ୍ରୀମୁଖରେ ମୁରାରି ଗୁପ୍ତଙ୍କୁ କହିଥିଲେ
ସେବକେର ଦ୍ରୋହ ମୁଞି ସହିତେ ନା ପାରୋ ।
ପୁତ୍ର ଯଦି ହୟ ମୋର ତଥାପି ସଂହାରୋ ।

ପୂର୍ବ କୋଟି ଅପରାଧ ସେବକ ଲଭିୟା ।
ମିଥ୍ୟା ନାହିଁ କହି ଗୁପ୍ତ ଶୁନ ମନ ଦିୟା ।

( ଚୈଃ ଭାଃ ମଧ୍ୟ ୭ମ ଅ )

ଶ୍ରୀଭଗବାନ ଭକ୍ତପାଇଁ ଅକରଣୀୟ କାର୍ଯ୍ୟ କରନ୍ତି ଏବଂ ଏଣେ ଭକ୍ତଙ୍କଠାରୁ ଆଶୀର୍ବାଦ ଗ୍ରହଣ କରନ୍ତି । ଏହାଦ୍ୱାରା ସେ ଦେଖାନ୍ତି ଯେ ମୋଠାରୁ ଭକ୍ତ ମୋଠାରୁ ବଡ । ଯଥା :—

ଭକ୍ତ ଆଶୀର୍ବାଦ ପ୍ରଭୁ ଶିରେ କରି ଲୟ ।

( ଚୈଃ ଭାଃ ଅନ୍ତ୍ୟ ୧୦ ଅ )

ଭକ୍ତ ଭକ୍ତିବଳରେ ଶ୍ରୀଭଗବାନଙ୍କର ବିଧାନକୁ ମଧ୍ୟ ଖଣ୍ଡନ କରି ପାରନ୍ତି । ଭକ୍ତଠାରେ ଏହା ବିଚିତ୍ର ନୁହେ । ଭଗବାନ ଶ୍ରୀଗୌରଚନ୍ଦ୍ରଙ୍କର ମହାପ୍ରକାଶ କାଳରେ ସେ ଜଣେ ଜଣେ ଭକ୍ତଙ୍କୁ ତାଙ୍କ ତାଙ୍କ ପୂର୍ବ କଥା ସ୍ମରଣ କରାଇ ବର ଦେଉଅଛନ୍ତି । ପ୍ରିୟ ମୁକୁନ୍ଦଙ୍କୁ ଡକା ହୋଇନାହିଁ । ସେ ଆଜି ମହାପ୍ରକାଶ ଦର୍ଶନ କରିପାରୁନାହାନ୍ତି । ଶ୍ରୀବାସାଦି ଭକ୍ତଗଣ ମୁକୁନ୍ଦଙ୍କ ଦୁଃଖରେ ଦୁଃଖିତ । ମୁକୁନ୍ଦଙ୍କର ଦୁଃଖ ଶ୍ରୀବାସ ସହ୍ୟ କରି ନ ପାରି ମହାପ୍ରଭୁଙ୍କୁ ପଚାରିଲେ "ପ୍ରଭୋ" ମୁକୁନ୍ଦ ଆପଣଙ୍କର ଅତିପ୍ରିୟ ଓ ସେ ଆମ୍ଭମାନଙ୍କର ପ୍ରାଣସ୍ୱରୂପ । ତାର ସୁମଧୁର ଗୀତରେ ପଥର ତରଳି ଯାଏ । ତାଙ୍କୁ ଏ ସମୟରେ ଏତେ ନିଗ୍ରହ କାହିଁକି ? ମହାପ୍ରଭୁ କହିଲେ "ତାର ଅନ୍ତରେ ନିଷ୍ଠା ନାହିଁ ।। ସେ ଶ୍ରୀଅଦ୍ୱୈତଙ୍କଠାରେ ଭକ୍ତିର ଶ୍ରେଷ୍ଠତା ବ୍ୟାଖ୍ୟା କରେ, ଓ ଅନ୍ୟତ୍ର ଜ୍ଞାନର ଶ୍ରେଷ୍ଠତା ପ୍ରତିପାଦନ କରେ । ଅତଏବ ଭକ୍ତି ଦେବୀଙ୍କଠାରେ ତାହାର ଅପରାଧ ହୋଇଅଛି । ମୁକୁନ୍ଦ ଏହିକଥା ଶୁଣି-ପାରି ଆପଣାକୁ ମନେ ମନେ ଧିକ୍କାର କଲେ ଏବଂ ପ୍ରାଣ ବିସର୍ଜ୍ଜନର ସଂକଳ୍ପ କରି ମହାପ୍ରଭୁଙ୍କୁ ପଚାରି ପଠାଇଲେ କେବେ ସେ ମହାପ୍ରଭୁଙ୍କୁ ଦର୍ଶନଲାଭରେ ସକ୍ଷମ ହେବେ କି ନା । ଶ୍ରୀବାସ ଆଜି ମହାପ୍ରଭୁଙ୍କୁ ସେହି କଥା ପଚାରନ୍ତେ ମହାପ୍ରଭୁ କହିଲେ, "ହଁ ଅଉ କୋଟି ଜନ୍ମପରେ ସେ ମୋର ଦର୍ଶନ ଲାଭ କରିପାରିବ"। କୋଟି ଜନ୍ମ ପରେତ ପାଇବ ଏହି ଆଶୀର୍ବାଦ ଆଜ୍ଞା ଶ୍ରବଣରେ ମୁକୁନ୍ଦ ପ୍ରେମରେ ବିହ୍ୱଳ ହୋଇ ନାଚିବାକୁ ଲାଗିଲେ । ମହାପ୍ରଭୁ ଶ୍ରୀବାସ ଅଙ୍ଗନ ଅଭ୍ୟନ୍ତରରୁ ମୁକୁନ୍ଦଙ୍କୁ ତତ୍‌କ୍ଷଣାତ୍ ଡକାଇଲେ ଓ ମହାପ୍ରକାଶ ଦର୍ଶନ

କରିଥିଲେ, ଏବଂ ପ୍ରେମବିହ୍ୱଳ ମୁକୁନ୍ଦଙ୍କୁ ସମ୍ବୋଧନ ପୂର୍ବକ କହିଲେ "ମୁକୁନ୍ଦ ! ମୁଁ ତୋଠାରେ ପରାଜିତ ହେଲି । ତିଳାର୍ଦ୍ଧକ ସମୟ ମଧ୍ୟରେ ତୁ ସମସ୍ତ ଅପରାଧରୁ ଆପଣାକୁ ମୁକ୍ତ କଲୁ । ସଙ୍ଗଦୋଷ-ଜନିତ ପାପ ତୋର ମୁହୂର୍ତ୍ତକ ମଧ୍ୟରେ ବିନଷ୍ଟ ହୋଇଗଲା । ମୋର ବାକ୍ୟ ଅବ୍ୟର୍ଥ ଏହା ଦୃଢ଼ ପ୍ରତ୍ୟୟ ପୂର୍ବକ ତୋର ମନରେ ଯେ ଭାବ ଉଦୟ ହେଲା', ସେଥିରେ ତୋର ପୂର୍ବସଞ୍ଚିତ ପାପମାନ ଏକାବେଳେ ନଷ୍ଟ ହୋଇଗଲା, "କୋଟିଜନ୍ମପରେ ଦେଖିପାରିବୁ" ମୁଁ ଯେ ଏ ଆଦେଶ ଦେଇଥିଲି ତାହା ଆଜି ତୋର ଭକ୍ତିର ପ୍ରବଳ ବେଗରେ ରହିପାରିଲା ନାହିଁ । ଯଥା—

କୋଟିଜନ୍ମେ ପାବେ ହେନ ବଲିଲାମ ଆମି
ତିଳାର୍ଦ୍ଧେକେ ସବ ତାହା ଘୁଚାଇଲେ ତୁମି !
ଅବ୍ୟଥ ଆମାର ବାକ୍ୟ ତୁମି ସେ ଜାନିଲା
ତୁମି ଆମା ସର୍ବକାଲ ହୃଦୟେ ବାନ୍ଧିଲା ।

( ଚୈଃ ଭାଃ ମଧ୍ୟ ୧୦ମ ଅ )

ଆହା ! ଅନୁରାଗର କି ବଳ । କୋଟୀ କୋଟୀ ଯୁଗ ଜପତପରେ ଯେ ଭଗବତ୍ ଚରଣ ଦୁଷ୍ପ୍ରାପ୍ୟ, ଅନୁରାଗ ବୃଦ୍ଧି ହେଲେ ଏକ ମୁହୂର୍ତ୍ତ ମଧ୍ୟରେ ମନୁଷ୍ୟ ତାହା ପାଇ ପାରେ । ହାୟ, ଦୁର୍ଦ୍ଦୈବ ! ଏପରି ସୁମହତ୍ ତତ୍ତ୍ୱ ଜାଣି ଥାଇ ଆମ୍ଭେମାନେ ଦଣ୍ଡକ ପାଇଁ ଐକାନ୍ତିକ ଭାବରେ ଭଗବତ୍ ଚରଣାରବିନ୍ଦରେ ମନ ଲଗାଇ ପାରୁ ନାହୁଁ । କାଳର ପ୍ରବଳ ସ୍ରୋତ ଆମ୍ଭମାନଙ୍କୁ ସେ ଅଭୟପାଦପଦ୍ମରୁ ସତତ ଦୂରକୁ ଟାଣି ନେଇ ଯାଉଅଛି । ହାୟ, ଶ୍ରୀଗୁରୁଦେବ, ଅଶେଷ କୃପାପୂର୍ବକ ଶକ୍ତି ଦିଅନ୍ତୁ ଯେପରି ସର୍ବାନ୍ତଃକରଣରେ ଶ୍ରୀକୃଷ୍ଣ ପଦାରବିନ୍ଦରେ ମନ ଦେଇ ପାରେଁ ।

ଭକ୍ତ ଜାଣନ୍ତି ଭଗବାନ ମଙ୍ଗଳମୟ । ତାଙ୍କ ରାଜ୍ୟରେ ଅମଙ୍ଗଳ ନାହିଁ ନାହିଁ । ଅତଏବ ସାଧାରଣ ଲୋକମାନେ ଯାହାକୁ ବିପଦ ଭାବି କାତର ହୁଅନ୍ତି, ଭକ୍ତ ତାହାକୁ ଭଗବତ୍ କୃପା ମନେ କରି ଆନନ୍ଦରେ ବରଣ କରେ । ଯଦି କୌଣସି ଦୋଷ ହେତୁ ଭକ୍ତ ଦଣ୍ଡିତ ହୁଅନ୍ତି ସେ ତାକୁ ଭଗବତ୍ କୃପାମୃତ ବର୍ଷଣ ବୋଲି ମନେ କରନ୍ତି । ଶ୍ରୀମନ୍

ଅଦ୍ୱୈତାଚାର୍ଯ୍ୟଙ୍କୁ ମହାପ୍ରଭୁ ଗୁରୁଜ୍ଞାନରେ ସତତ ସମ୍ମାନ କରୁଥିଲେ। ଅଦ୍ୱୈତଙ୍କୁ ତାହା ପ୍ରୀତିକର ହେଉ ନଥିଲା। ମହାପ୍ରଭୁଙ୍କଠାରୁ ସେ କିରୂପ ଦଣ୍ଡ ପାଇବେ ଏହା ମନେ କରି ଭକ୍ତିର ଶ୍ରେଷ୍ଠତା ପ୍ରତିପାଦନ ପୂର୍ବକ ମୁକ୍ତିର ଶ୍ରେଷ୍ଠତା ବ୍ୟାଖ୍ୟା କରିବାକୁ ଲାଗିଲେ। ଅନ୍ତର୍ଯ୍ୟାମୀ ମହାପ୍ରଭୁ ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କର ମାନସ ଜାଣି ଶାନ୍ତିପୁରକୁ ଯାଇ ଅଦ୍ୱୈତା-ଚାର୍ଯ୍ୟଙ୍କୁ ପ୍ରଚୁର ପ୍ରହାର କଲେ। ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ନିଜ ଅଭୀଷ୍ଟ ସିଦ୍ଧ ହେବାର ଦେଖି ଆନନ୍ଦରେ ନାଚିବାକୁ ଲାଗିଲେ। ଯଥା—

ଦଣ୍ଡ ପାଇଲା ହେଲ ମୋର ପରମ ଆନନ୍ଦ
ଯେ ଦଣ୍ଡ ପାଇଲ ଭାଗ୍ୟବାନ ଯେ ମୁକୁନ୍ଦ।
ଯେ ଦଣ୍ଡ ପାଇଲେକ ଶ୍ରୀଶଚୀ ଭାଗ୍ୟବତୀ
ସେ ଦଣ୍ଡ ପ୍ରସାଦ ଅନ୍ୟ ଲୋକେ ପାବେ କତି।
(ଚୈଃ ଚଃ ଅନ୍ତ୍ୟ ୧୬ଶ ପଃ)

ଅନ୍ୟତ୍ର ଶ୍ରୀଲ ବୃନ୍ଦାବନ ଦାସ କହିଛନ୍ତି।—

ଚୈତନ୍ୟେର ଦଣ୍ଡ ମହାସୁକୃତି ସେ ପାୟ
ଯାର ଦଣ୍ଡେ ତରଲେ ବୈକୁଣ୍ଠେ ଲୋକ ଯାୟ।
(ଚୈଃ ଭାଃ ମଧ୍ୟ ୨୧ଶ ଅ)

ଶ୍ରୀମନ୍ ମହାପ୍ରଭୁ ଶ୍ରୀପୁରୁଷୋତ୍ତମରେ ଶ୍ରୀଜଗନ୍ନାଥଙ୍କ ରଥ ଆଗରେ କୀର୍ତ୍ତନମଣ୍ଡଳ ମଧ୍ୟରେ ନୃତ୍ୟ କରୁଅଛନ୍ତି। ଶ୍ରୀମନ୍ ନିତ୍ୟାନନ୍ଦ, କାଶୀ-ଶ୍ୱର, ମୁକୁନ୍ଦ ଆଦି ଲୋକଭିଡ଼ଭୟରେ କ୍ରମେ୨ ମଣ୍ଡଳୀ ହୋଇ ମହା-ପ୍ରଭୁଙ୍କୁ ବେଷ୍ଟନ କରି ରହିଅଛନ୍ତି। ବାହାରେ ମହାରାଜା ପ୍ରତାପରୁଦ୍ର ହରିଚନ୍ଦନ ପ୍ରଭୃତି ପାତ୍ରଗଣଙ୍କୁ ନେଇ ତୃତୀୟ ମଣ୍ଡଳୀ ବନ୍ଧନ ପୂର୍ବକ ଲୋକ ନିବାରଣ କରୁଅଛନ୍ତି। ମହାରାଜା ହରିଚନ୍ଦନଙ୍କ ସ୍କନ୍ଧରେ ଭର ଦେଇ ଅତ୍ୟନ୍ତ ଚିତ୍ତରେ ମହାପ୍ରଭୁଙ୍କ ଅପୂର୍ବ ନୃତ୍ୟ ଦର୍ଶନ କରୁଅଛନ୍ତି। ଏହି ସମୟରେ କୀର୍ତ୍ତନାବିଷ୍ଟ ଚିତ୍ତ ଶ୍ରୀବାସ ମହାରାଜାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେବାରୁ ହରିଚନ୍ଦନ ତାଙ୍କୁ ହାତରେ ଏକ ଅଡ଼ ହୋଇ ଛିଡ଼ିବାକୁ ଠେଲି ଦେଲେ। କୀର୍ତ୍ତନାବେଶରେ ଶ୍ରୀବାସ ଏକଥାଟିଆ ନ

ହେବାରୁ ହରିଚନ୍ଦନ ତାଙ୍କୁ ବାରମ୍ବାର ପେଲିବାକୁ ଲାଗିଲେ । ଶ୍ରୀବାସ ଏଥିରେ କ୍ରୁଦ୍ଧ ହୋଇ ହରିଚନ୍ଦନଙ୍କୁ ଏକ ଚାପୁଡ଼ା ମାଇଲେ । ହରିଚନ୍ଦନ ରାଜପୁତ୍ର । ତହିଁରେ ପୁଣି ମହାରାଜାଙ୍କ ସୁବିଧା ନିମନ୍ତେ ସେ ଶ୍ରୀବାସଙ୍କୁ ଅଟେଇ ଦେଉଥିଲେ । ଚପେଟାଘାତରେ ତାଙ୍କ ଅଭିମାନପୂର୍ଣ୍ଣ ହୃଦୟ କ୍ରୋଧରେ ଥରି ଉଠିଲା । ସେ ଶ୍ରୀବାସଙ୍କୁ ଭର୍ତ୍ସନା କରିବାକୁ ଉଦ୍ୟତ ହୁଅନ୍ତେ ମହାରାଜା ତାଙ୍କୁ ନିବାରଣ କରି କହିଲେ "ହରିଚନ୍ଦନ ! ତୁମ୍ଭେ ବଡ଼ ଭାଗ୍ୟବାନ, ସେଥିଯୋଗୁଁ ଶ୍ରୀବାସଙ୍କ ହସ୍ତ ସ୍ପର୍ଶ ପାଇଲ । ମୋର ସେ ସୌଭାଗ୍ୟ ନାହିଁ । ଯଥା—

ଭାଗ୍ୟବାନ୍ ତୁମି ଇହାର ହସ୍ତ ସ୍ପର୍ଶ ପାଇଲା
ଆମାର ଭାଗ୍ୟ ନାହିଁ ତୁମି କୃତାର୍ଥ ହଇଲା !

( ଚୈଃ ଚଃ ମଧ୍ୟ ୧୩ଶ ପ )

ଶ୍ରୀହରି ପାଦପଦ୍ମର ଗନ୍ଧମାଦବାଜିଲେ ଏହିପରି ସୁମତି ହୋଇଥାଏ । ଆହା ସମଗ୍ର ଉତ୍କଳର ଅଧିପତି ମହାରାଜା ଶ୍ରୀପ୍ରତାପରୁଦ୍ରଙ୍କର ହୃଦୟ ଗୌର କୃପାବଳରେ କିରୂପ ଦ୍ରବୀଭୂତ ହୋଇ ନଥିଲା । କାହାର ସାମାନ୍ୟ କଥାରେ ଅମ୍ଭେମାନେ ଅଜଗର ପରି ଫଁ ଫଁ ହୋଇ ଗରଜି ହେଉଅଛୁଁ ।

ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁ ଓ ଅନ୍ୟାନ୍ୟ ଅନେକ ଭକ୍ତ ଗୌଡ଼ ଦେଶରୁ ଶ୍ରୀ ପୁରୁଷୋତ୍ତମକୁ ଯାଉଅଛନ୍ତି । ଶ୍ରୀମାନ୍ ଶିବାନନ୍ଦ ସେନ୍ ଧନୀ ଓ ମହାପ୍ରଭୁଙ୍କର ପରମ ଭକ୍ତ । ସେ ପଥରେ ସମସ୍ତ ଭକ୍ତଙ୍କର ଗମନାଗମନର ବ୍ୟୟଭାର ବହନ କରନ୍ତି ଏବଂ ପଥର ସମସ୍ତ କାର୍ଯ୍ୟ ସମାଧାନ କରନ୍ତି । ଦିନେ ପଥରେ ଅସ୍ପଷ୍ଟ କୌଣସି କାରଣ ବଶତଃ ଶିବାନନ୍ଦଙ୍କର ଆସିବାର ଡେରି ହେଲା, ଶିବାନନ୍ଦ ବସା ଠିକ ନକଲେ କେହି ରହି ପାରୁ ନାହାନ୍ତି । ଅତଏବ ସମସ୍ତଙ୍କୁ ବୃକ୍ଷମୂଳରେ ଅପେକ୍ଷା କରିବାକୁ ପଡ଼ିଲା । ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁ କ୍ଷୁଧାରେ କାତର ହୋଇ ଶିବାନନ୍ଦଙ୍କୁ ଗାଳି ଦେବାକୁ ଲାଗିଲେ ଏବଂ କହିଲେ ଶିବାନନ୍ଦ ଏତେ ଡେରି କଲା, ତାର ଧନପୁତ୍ର ମରନ୍ତୁ । ଶିବାନନ୍ଦଙ୍କର ଗୃହିଣୀ ସେଥର ସଙ୍ଗରେ ଆସିଥିଲେ । ପ୍ରଭୁଙ୍କର ଏପରି ଶୁଣି ସେ ବଡ଼ କଷ୍ଟ ଅନୁଭବ କଲେ ଓ କାନ୍ଦିବାକୁ

ଲଗିଲେ । ଏହି ସମୟରେ ଶିବାନନ୍ଦ ଆସି ପ୍ରବେଶ ହୁଅନ୍ତେ ତାଙ୍କର ଗୃହିଣୀ ନିତ୍ୟାନନ୍ଦ ପ୍ରଭୁଙ୍କ ଗାଳିକଥା କହି କାନ୍ଦିବାକୁ ଲାଗିଲେ । ଶିବାନନ୍ଦ କହିଲେ "ପୁତ୍ରମାନେ ପ୍ରଭୁଙ୍କର ଅଳେଇ ବଳେଇ ସମସ୍ତ ନେଇ ମରନ୍ତୁ ନା ତୁମ୍ଭେ କାନ୍ଦୁଛ କିପାଇଁ ।" ଏହିରୂପ ପ୍ରବୋଧ ଦେଇ ସେ ଶ୍ରୀମନ୍ନିତ୍ୟାନନ୍ଦ ପ୍ରଭୁଙ୍କଠାରେ ଉପସ୍ଥିତ ହେଲେ । ପ୍ରଭୁ ଶ୍ରୀ ନିତ୍ୟାନନ୍ଦ କ୍ରୁଦ୍ଧ ହୋଇ ଶିବାନନ୍ଦଙ୍କୁ ପଦ ପ୍ରହାର କଲେ । ଶିବାନନ୍ଦ ସେ ପ୍ରହାରରେ ଆନନ୍ଦିତ ହୋଇ ଶୀଘ୍ର ଘରେ ବସା ଠିକ କଲେ, ଏବଂ ବିନତ ହୃଦୟରେ ପ୍ରଭୁଙ୍କୁ ନେଇ ସେଠାରେ ରଖାଇଲେ ଏବଂ କହିଲେ "ପ୍ରଭୋ ଆଜ ଜାଣିଲି ଆପଣ ମୋତେ ପ୍ରକୃତ ଭୃତ୍ୟ ବୋଲି ଗ୍ରହଣ କରିଅଛନ୍ତି । ଆପଣଙ୍କର ଏ ଶାସ୍ତି ନୁହେଁ କୃପାମୃତ ବର୍ଷଣ ।" ଯଥା—

ଆଜ ମୋରେ ଭୃତ୍ୟ କରି ଅଙ୍ଗୀକାର କୈଲ
ଯେମନ ଅପରାଧ ଭୃତ୍ୟେର ଯୋଗ୍ୟଫଲ ଦିଲ ।
ଶାସ୍ତି ଛଲେ କୃପାକର ଏ ତୋମାର କରୁଣା
ତ୍ରିଜଗତେ ତୋମାର ଚରିତ୍ର ବୁଝେ କୋନ ଜନା ।
ବ୍ରହ୍ମାର ଦୁର୍ଲଭ ତୋମାର ଶ୍ରୀଚରଣ ରେଣୁ
ହେନ ଚରଣ ସ୍ପର୍ଶ ପାଇଲ ମୋର ଅଧମ ତନୁ ।
ଆଜି ସଫଲ ହୈଲ ମୋର ଜନ୍ମ କୁଲ କର୍ମ
ଆଜ ପାଇନୁ କୃଷ୍ଣ ଭକ୍ତି ଅର୍ଥକାମ ଧର୍ମ ।

(ଚୈ: ଚ: ଅନ୍ତ୍ୟ ୧୨ ଶ ପରି)

ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁ ଏଥିରେ ସନ୍ତୁଷ୍ଟ ହୋଇ ତାଙ୍କୁ ପ୍ରେମାଲିଙ୍ଗନ ଦାନ କଲେ ।

ଭଗବତ୍ ପ୍ରେରିତ ଦଣ୍ଡକୁ ଭକ୍ତମାନଙ୍କର ଏହି ପରି ଭାବରେ ଗ୍ରହଣ କରିବା କର୍ତ୍ତବ୍ୟ, ତେବେ ଭଗବାନଙ୍କର ପୂର୍ଣ୍ଣ କରୁଣା ହେବ ।

ଭକ୍ତଗଣ ଭଗବତ୍ ପ୍ରେରିତ ଦଣ୍ଡରେ କାତର ନୁହନ୍ତି ବରଂ ଯେଉଁ ଲୋକ ସେମାନଙ୍କର ଅନିଷ୍ଟ କରନ୍ତି ଭକ୍ତ ସେମାନଙ୍କର ଅନିଷ୍ଟ ଚିନ୍ତା ନ କରି ମଙ୍ଗଳ କାମନା କରନ୍ତି ।

ଠାକୁର ଶ୍ରୀହରି ଦାସଙ୍କୁ କାଜି ସାହେବଙ୍କ ଆଦେଶାନୁସାରେ ପାଷାଣ ହୃଦୟ ଗଣ ବାଇଶ ବଜାରରେ ବୁଲାଇ ନିର୍ଘାତ ପ୍ରହାର କରୁ ଅଛନ୍ତି, କିନ୍ତୁ ଠାକୁର ଶ୍ରୀହରି ଦାସ ମନେ କରୁଅଛନ୍ତି, ଅହା ଏବେ ଏ ଯବନ ଗଣ ପାପୀ, ମୋତେ ପୁଣି ନିର୍ଦ୍ଦୟରେ ମାରିବା ଦ୍ୱାରା ଆହୁରି ଅଧିକ ପାପ ସଞ୍ଚୟ କରୁଅଛନ୍ତି । ଏଥି ଯୋଗୁଁ ଏମାନଙ୍କୁ କି ମହାଯାତନା ଭୋଗ କରିବାକୁ ନ ହେବ । ହେ କରୁଣାସାଗର ଭଗବାନ୍ ! ଏ ଅଜ୍ଞ ଯବନ ମାନଙ୍କୁ କ୍ଷମା କରନ୍ତୁ ମୋତେ ପ୍ରହାର କରୁଥିବା ପାଇଁ ଏମାନଙ୍କର ଅପରାଧ ନଧନ୍ତୁ । ଯଥା—

ଏ ସବ ଜୀବେରେ ପ୍ରଭୁ କରହ ପ୍ରସାଦ
ମୋର ଦ୍ରୋହେ ନହୁଏ ସବାର ଅପରାଧ । ( ଚୈଃ ଭାଃ ଅନ୍ତ୍ୟ ୧୪ ଅ )

ଶ୍ରୀ ବାସୁଦେବ ଦତ୍ତଙ୍କର ଭଗବାନ ଶ୍ରୀକୃଷ୍ଣ ଚୈତନ୍ୟଙ୍କ ଚରଣରେ ଜୀବ ଉଦ୍ଧାର ପ୍ରାର୍ଥନା ସେ ଏଥିଠାରୁ ଆହୁରି ଅଧିକ ଆଶ୍ଚର୍ଯ୍ୟ ଜନକ । ପୃଥିବୀ ଇତିହାସରେ ଏମନ୍ତ ଆଶ୍ଚର୍ଯ୍ୟପ୍ରଦ ପ୍ରାର୍ଥନା ଦ୍ୱିତୀୟ ନାହିଁ ବୋଲିଲେ ଅତ୍ୟୁକ୍ତି ହେବ ନାହିଁ । ଗୌଡ଼ାଗତ ପ୍ରିୟ ଭକ୍ତଗଣ ଶ୍ରୀ ପୁରୁଷୋତ୍ତମରୁ ସ୍ୱଗୃହକୁ ପ୍ରତ୍ୟାଗମନ ପୂର୍ବରୁ ଶ୍ରୀମନ୍ ମହାପ୍ରଭୁଙ୍କ ଶ୍ରୀଚରଣ କମଳରୁ ବିଦାୟ ନେଉଅଛନ୍ତି । ମହାପ୍ରଭୁ ଭକ୍ତ ବିଚ୍ଛେଦରେ କାତର ହୋଇ ଏକେ ଏକେ ପ୍ରିୟ ଭକ୍ତମାନଙ୍କ ଗୁଣ କୀର୍ତ୍ତନପୂର୍ବକ ବିଦାୟ ଦେଉଅଛନ୍ତି, ଶ୍ରୀ ବାସୁଦେବ ଦତ୍ତଙ୍କୁ ବିଦାୟ ଦେବା କାଳରେ ଦତ୍ତ ମହାଶୟ କାତର କଣ୍ଠରେ ମହାପ୍ରଭୁଙ୍କୁ ପ୍ରାର୍ଥନା କଲେ "ହେ କରୁଣାସାଗର ? ଜଗତ୍ ତାରିବା ପାଇଁ ଆପଣଙ୍କର ଅବତାର ଏବଂ ଆପଣ ସର୍ବଶକ୍ତିମାନ୍ । ମୋର ଏହି ନିବେଦନଟି ଗ୍ରହଣ କରି ଆଶା ପୂର୍ଣ୍ଣ କରନ୍ତୁ । ଜଗଜ୍ଜୀବମାନଙ୍କ ଦୁର୍ଦ୍ଦଶା ଦେଖି ମୋର ଅନ୍ତର ବିଦୀର୍ଣ୍ଣ ହେଉଅଛି । ସେମାନେ ସିନା ନିଜ ଭବ-ଦୁର୍ଦ୍ଦଶା ଦେଖି ପାରୁନାହାନ୍ତି, କିନ୍ତୁ ପରିଣାମରେ କି ଦୁର୍ବିସହ ଯାତନା ସେମାନେ ଭୋଗ ନ କରିବେ; ଅତଏବ ହେ କରୁଣାସାଗର ? ସମସ୍ତ ଜୀବଙ୍କର ପାପ ଆପଣ ମୋର ଶିର ଉପରେ ନ୍ୟସ୍ତ କରନ୍ତୁ ମୁଁ ସେମାନଙ୍କର ପାପ ନେଇ ନରକ ଯନ୍ତ୍ରଣା ଭୋଗ କରେଁ ଏବଂ ସଂସାରି ଜୀବଙ୍କର ସମସ୍ତ ଭବଯାତନା ନିବାରିତ ହେଉ ! ଯଥା—

ଜୀବେର ଦୁଃଖ ଦେଖି ମୋର ହୃଦୟ ବଦରେ
ସର୍ବ ଜୀବେର ପାପ ତୁମି ଦେହ ମୋର ଶିରେ ।
ଜୀବେର ପାପ ଲଞା ମୁଇଁ କରି ନରକ ଭୋଗ
ସକଳ ଜୀବେର ପ୍ରଭୁ ଘୁଚାଓ ଭବରୋଗ ।
ଏତ ଶୁନି ମହାପ୍ରଭୁର ଚିତ୍ତ ଦ୍ରବିଲା
ଅଶ୍ରୁ କମ୍ପ ସ୍ୱରଭଙ୍ଗେ କହିତେ ଲାଗିଲା ।
ତୋମାର ବିଚିତ୍ର ନହେ ତୁମି ଯେ ପ୍ରହ୍ଲାଦ
ତୋମାର ଉପରେ କୃଷ୍ଣେର ସମ୍ପୂର୍ଣ୍ଣ ପ୍ରସାଦ ।
କୃଷ୍ଣ ସେଇ ସତ୍ୟ କରେ ଯେଇ ମାଗେ ଭୃତ୍ୟ ।
ଭୃତ୍ୟ ବାଞ୍ଛା ପୂର୍ଣ୍ଣ ବିନା ନାହିଁ ଅନ୍ୟ କୃତ୍ୟ
ବ୍ରହ୍ମାଣ୍ଡ ଜୀବେର ତୁମି ବାଞ୍ଛିଲେ ନିସ୍ତାର
ବିନା ପାପ ଭୋଗେ ହବେ ସବାର ଉଦ୍ଧାର ।
ଅସମର୍ଥ ନହେ କୃଷ୍ଣ ଧରେ ସର୍ବ ବଲ
ତୋମାରେ ବା କେନ ଭୁଞ୍ଜାଇବେ ପାପଫଲ ।
ତୁମି ଯାର ହିତବାଞ୍ଛ, ସେ ହୈଲ ବୈଷ୍ଣବ
ବୈଷ୍ଣବେର ପାପ କୃଷ୍ଣ ଦୂର କରେ ସବ ।

( ଚୈଃ ଚଃ ମଧ୍ୟ ୧୫ଶ ପର )

ଅହୋ କି ଚମତ୍କାର ପରହିତ କାମନା । ସଂସାରର ସମସ୍ତ ଜୀବଙ୍କ ପାପ ମୁଣ୍ଡରେ ନେବାକୁ ପ୍ରସ୍ତୁତ । ଶ୍ରୀଲ ବାସୁଦେବ ଦତ୍ତ ଯେ ବାହ୍ୟିକ ଲୋକ ଦେଖାଏ କଥା କହୁଥିଲେ ଏମନ୍ତ ନୁହେ । ତାଙ୍କର ଅନ୍ତରାତ୍ମା ପର ଦୁଃଖରେ କାନ୍ଦୁଥିଲା । ତେଣୁ ସେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କୁ ସେମାନଙ୍କ ମଙ୍ଗଳ ପ୍ରାର୍ଥନା କରୁଥିଲେ । ତାଙ୍କର ମର୍ମ ବୁଝି ଭଗବାନ ଶ୍ରୀକୃଷ୍ଣ ଚୈତନ୍ୟ ଦେବଙ୍କର ହୃଦୟ ଦ୍ରବୀଭୂତ ହୋଇଥିଲା ଓ ସେ ଗଦ୍‌ଗଦ୍ କଣ୍ଠରେ ତାହାର ଏରୂପ ଉତ୍ତର ଦେଇଥିଲେ ।

ଭକ୍ତଙ୍କ ଚରିତ ବିଚିତ୍ରତାରେ ପୂର୍ଣ୍ଣ । ସେମାନଙ୍କ କାର୍ଯ୍ୟ ଦେଖି ଅବାକ୍ ହୋଇ ରହିବାକୁ ହୁଏ । ଏକ ସନ୍ନ୍ୟାସୀ ଥରେ ଏକ ଛୋଟ ଗ୍ରାମରେ

ହାଡ଼ାଇ ପଣ୍ଡିତଙ୍କ ଗୃହରେ ଅତିଥି ହେଲେ । ହାଡ଼ାଇ ପଣ୍ଡିତ ଓ ତାହାଙ୍କର ଗୃହିଣୀ ଦୁହେଁ ପରମ ଆନନ୍ଦରେ ଅତିଥିଙ୍କର ସେବାକଲେ । ବିଦାୟ କାଳରେ ସନ୍ୟାସୀ ହାଡ଼ାଇ ପଣ୍ଡିତଙ୍କୁ ସମ୍ବୋଧନ ପୂର୍ବକ କହିଲେ "ପଣ୍ଡିତ ; ମୋର ଆପଣଙ୍କ ଠାରେ ଗୋଟିଏ ଭିକ୍ଷା ଅଛି ।" ହାଡ଼ାଇ ପଣ୍ଡିତ ବିନୀତ ଭାବରେ କରଯୋଡ଼ି କହିଲେ "ମହାତ୍ମନ୍ ! ଦାସକୁ କି ଆଜ୍ଞା କରୁଅଛନ୍ତି କହିବା ହୁଅନ୍ତୁ । ଏ ଦାସ ପ୍ରାଣପଣରେ ତାହା ସମ୍ପାଦନ କରିବ" । ସନ୍ୟାସୀ କହିଲେ "ପଣ୍ଡିତ ମୁଁ ତୀର୍ଥ ପର୍ଯ୍ୟଟନ କରିବାକୁ ଯାଉଅଛି । ମୋ ସଙ୍ଗରେ ଭଲ ବ୍ରାହ୍ମଣ ନାହିଁ । ତୁମ୍ଭର ଏହି ଜ୍ୟେଷ୍ଠ ସନ୍ତାନଟିକୁ ଦିଅ , ମୁଁ ସଙ୍ଗରେ ନେଇଯିବି । ସେ ମୋ ସଙ୍ଗରେ ସମସ୍ତ ତୀର୍ଥ ପର୍ଯ୍ୟଟନ କରିବ ।" ପଣ୍ଡିତ ଭାବିଲେ "ସନ୍ୟାସୀ ପ୍ରାଣଭିକ୍ଷା କରୁଅଛନ୍ତି ମୁଁ କି କରିବି । ପୁରାଣରେ ଶୁଣା ଅଛି ମହାରାଜା ଦଶରଥ ପ୍ରାଣାଧିକ ଶ୍ରୀରାମ ଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ରଙ୍କ ହସ୍ତରେ ସମର୍ପଣ କରିଥିଲେ । ସନ୍ୟାସୀଙ୍କ ପ୍ରାର୍ଥନା ଅଗ୍ରାହ୍ୟ କଲେ ମୋର ଇହକାଳ ପରକାଳ ଦୁଇ ନଷ୍ଟ ହେବ । ଏହା ଭାବି ନିଜ ଗୃହିଣୀଙ୍କ ଠାରେ ସନ୍ୟାସୀଙ୍କ ପ୍ରାର୍ଥନା ବିଷୟ କହିଲେ । ଗୃହିଣୀ ମଧ୍ୟ ତାଙ୍କର ଅନୁରୂପ, ସେ କହିଲେ ଆପଣ ଯାହା ଭଲ ବିବେଚନା କରିବେ ସେଥିରେ ମୋର ଅସମ୍ମତି ନାହିଁ । ଏହିରୂପ ପତିପତ୍ନୀ ଦୁହେଁ ପରାମର୍ଶ କରି ପ୍ରାଣୋପମ ପୁତ୍ର ଶ୍ରୀମାନ ନିତ୍ୟାନନ୍ଦଙ୍କୁ ସନ୍ୟାସୀଙ୍କ କରରେ ଅର୍ପଣ କଲେ, ଏହିଠାରେ ଶ୍ରୀବୃନ୍ଦାବନ ଦାସ କହିଅଛନ୍ତି ।

> ଦେବିକେ ସେଇ ବସ୍ତୁ କେହୋ ନହିବ ସେ ମତ
> ଅନ୍ୟଥା ଲକ୍ଷ୍ମଣ ଯାର ସୁତହିତେ ଉଦ୍ଧୃତ ।
>
> ( ଚୈଃ ଭାଃ ମଧ୍ୟଖଣ୍ଡ ଅ· )

ଏହିରୂପ ଭକ୍ତମାନଙ୍କ ଚରିତ୍ର ବିଚିତ୍ରତାରେ ପୂର୍ଣ୍ଣ । ସାଧାରଣ ଲୋକଙ୍କର ବୁଝିବାର କଥା । ମହାମହୋ ପଣ୍ଡିତ ମାନଙ୍କ ପକ୍ଷରେ ମଧ୍ୟ ଭକ୍ତଚରିତ ଅନୁଭବ କରିବା କଠିନ ; ଗୋଟିଏ କଥା ଅଛି ଅନୁବନ୍ଧ ମନୁଷ୍ୟତ ଜଗତ ପ୍ରାପ୍ତ ସକଳଲୋକେ ଆହି ଜ୍ଞାନକୁ ମାପ ଯନ୍ତ୍ର କରି ତଦ୍ୱାରା ଅପର ଜ୍ଞାନର ;

ପରିମାଣ ହେବ କହିଥାଆନ୍ତି । କୃଷ୍ଣ କୃପାବଳରେ ପ୍ରେମିକ ଭକ୍ତମାନେ ଯେଉଁ ଅସାଧାରଣ କାର୍ଯ୍ୟ କରନ୍ତି କିମ୍ବା ଯେ ଅମାନୁଷିକ ଭାବ ହୃଦୟରେ ବହନ କରି ଆଚରଣ କରନ୍ତି, ସାଧାରଣ ଲୋକେ ତାହା ବୁଝିବେ କିପରି, ତେଣୁ ଶ୍ରୀଲ ସନାତନ ଗୋସ୍ୱାମୀଙ୍କୁ ଶିକ୍ଷା ଦେବା କାଳରେ ମହାପ୍ରଭୁ କହିଅଛନ୍ତି ।

ଯାର ଚିତ୍ତେ କୃଷ୍ଣ ପ୍ରେମ କରୟେ ଉଦୟ
ତାର ବାକ୍ୟ କ୍ରିୟା ମୁଦ୍ରା ବିଜ୍ଞେ ନା ବୁଝୟ ।

( ଚୈଃ ଚଃ ମଧ୍ୟ ୨୩ ପରି )

ଅର୍ଥାତ୍ ପ୍ରେମିକ ଭକ୍ତର କାର୍ଯ୍ୟମାନ ତ ଅଜ୍ଞଲୋକର ଅଗୋଚର କିନ୍ତୁ ବିଜ୍ଞଲୋକେ ମଧ୍ୟ ତାହା ହୃଦୟଙ୍ଗମ କରିବାକୁ ସକ୍ଷମ ନୁହନ୍ତି ।

ଭକ୍ତ ଏମନ୍ତ ଅଦ୍ଭୁତ ଶକ୍ତିସମ୍ପନ୍ନ ହେଲେ ମଧ୍ୟ ପ୍ରତିଷ୍ଠାର ଆଶା ସେମାନେ ରଖନ୍ତି ନାହିଁ । ସେମାନେ ସତତ ନିଜକୁ ତୃଣଠାରୁ ନୀଚ ବୋଲି ମନେ କରନ୍ତି କିନ୍ତୁ ସେମାନେ ଇଚ୍ଛା ନ କଲେହେଁ ପ୍ରତିଷ୍ଠା ଆପେ ସେମାନଙ୍କ ସଙ୍ଗେ ପ୍ରଧାବିତ ହୁଏ । ଶ୍ରୀମାଧବେନ୍ଦ୍ରପୁରୀ ଗୋସ୍ୱାମୀଙ୍କ ବିଷୟ ଟି ଏକ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି । ସେ ପ୍ରତିଷ୍ଠା ଭୟରେ ରେମୁଣାରୁ ପ୍ରତ୍ୟୁଷରେ ପଳାଇଗଲେ । କିନ୍ତୁ ଶ୍ରୀଗୋପୀନାଥ ଆଜି ପର୍ଯ୍ୟନ୍ତ କ୍ଷୀରଚୋରା ଗୋପୀନାଥ ନାମ ଧାରଣ ପୂର୍ବକ ନିଜପ୍ରିୟଭକ୍ତ ଶ୍ରୀଲ ମାଧବେନ୍ଦ୍ର ପୁରୀଙ୍କର ପ୍ରତିଷ୍ଠା ସର୍ବତ୍ର ପ୍ରଚାର କରୁଅଛନ୍ତି । ନିଜକୁ ଚୋର ବୋଲି ଜଗତରେ ଜଣାଇ ପ୍ରିୟ ଭକ୍ତର ଖ୍ୟାତିକୁ ବର୍ଦ୍ଧିତ କରୁଅଛନ୍ତି । ସେଥିପାଇଁ ଶ୍ରୀଲ କବିରାଜ ଗୋସ୍ୱାମୀ କହିଅଛନ୍ତି ।ଯଥା—

ପ୍ରତିଷ୍ଠାର ଭୟେ ପୁରୀ ଯାଏ ପଳାଇୟା
କୃଷ୍ଣଭକ୍ତ ସଙ୍ଗେ ପ୍ରତିଷ୍ଠା ଚଲେ ଲାଗଲାଗି ।

( ଚୈଃ ଚଃ ମଧ୍ୟ ୪ର୍ଥ ପରି )

ଯେଉଁ ପ୍ରିୟ ଭକ୍ତମାନଙ୍କର ପ୍ରତିଷ୍ଠା ଶ୍ରୀଭଗବାନ ନିଜେ ପ୍ରଚାର କରନ୍ତି ସେମାନଙ୍କର କାହାକୁହେଁ କୌଣସି କଥାରେ ଭୟ ନ ଥାଏ । ଦୁଷ୍ଟ ଲୋକର କାହାର ? ଯମ ପର୍ଯ୍ୟନ୍ତ ଯାର ଭୟ ନାହିଁ, ସେ ଆଉ ଡରିବ

କାହାକୁ । କୃଷ୍ଣର ଭକ୍ତଗଣ ସତତ ନିର୍ଭୟ ଚିତ୍ତରେ କୃଷ୍ଣନାମ ଗୁଣଗାୟନ ପୂର୍ବକ ପରମାନନ୍ଦରେ ବିଚରଣ କରନ୍ତି । ବିଘ୍ନ ସେମାନଙ୍କ ସୀମା ମାଡ଼ି ପାରେ ନାହିଁ । ନିଜ ଅନୁଭବରୁ ଶ୍ରୀଜଗନ୍ନାଥ ମିଶ୍ର ପୁରନ୍ଦର ଏଥିପାଇଁ କହିଅଛନ୍ତି ହେ କୃଷ୍ଣ ଯେ ତୋର ଚରଣ କମଳ ସ୍ମରଣ କରେ ବିଘ୍ନ ତା ମନ୍ଦିର ସ୍ପର୍ଶ କରିପାରେ ନାହିଁ । ଯଥା—

ଯେ ତୋମାର ଚରଣ କମଲ ସ୍ମୃତି କରେ
କଭୁ ବିଘ୍ନ ନା ଆଇସେ ତାହାର ମନ୍ଦିରେ ।
ତୋମାର ସ୍ମରଣ ହୀନ ଯେ ଯେ ପାପସ୍ଥାନ
ତଥାୟ ଡ଼ାକିନୀ ଭୂତ ପ୍ରେତ ଅଧିଷ୍ଠାନ ।
[ ଚୈଃ ଭାଃ ଆଦି ୭ମଃ ଅ ]

ଶ୍ରୀଲ ଗଦାଧର ଦାସ ଗୋପୀ ଭାବରେ ସତତ ବିହ୍ୱଳ । ତାଙ୍କର ବାହ୍ୟଜ୍ଞାନ ନ ଥାଏ । ତାଙ୍କ ଗ୍ରାମର କାଜିସାହେବ ବଡ କୀର୍ତ୍ତନ ଦ୍ୱେଷୀ । କିନ୍ତୁ ଶ୍ରୀ ଗଦାଧର ଦାସ ରଜନୀରେ ତାହାଙ୍କ ମନ୍ଦିରକୁ ଯାଇ ନିର୍ଭୟ ଚିତ୍ତରେ ତାହାଙ୍କୁ ଡ଼ାକି କ୍ରୋଧଭରେ କହିଲେ " କାଜୀ ? ତୁ ହରିନାମ ଉଚ୍ଚାରଣ କର ନୋହିଲେ ତୋର ମସ୍ତକ ଛେଦନ କରିବି " ଜଣେ ସାଧାରଣ ଲୋକଙ୍କୁ କେହି ଏରୂପ କହିବାକୁ ସାହାସ କରିବ ନାହିଁ ଏତ ଜଣେ ପ୍ରତାପଶାଳୀ କାଜୀ; ଏହି ଘଟଣା ବର୍ଣ୍ଣନକାଳରେ ଶ୍ରୀଲ ବୃନ୍ଦାବନ ଦାସ ଲେଖିଅଛନ୍ତି ।—

ସତ୍ୟ କୃଷ୍ଣଭାବ ହୟ ଯାହାର ଶରୀରେ
ଅଗ୍ନି ସର୍ପ ବ୍ୟାଘ୍ର ତାରେ ଲଙ୍ଘିତେ ନା ପାରେ ।
( ଚୈଃ ଭାଃ ଅନ୍ତ ୫ମ ଅ )

ଭଗବାନ ଶ୍ରୀଗୌରଚନ୍ଦ୍ର ମାତାଙ୍କୁ କପିଳ ଭାବରେ ଜ୍ଞାନ ଉପଦେଶ ପ୍ରଦାନ କରି କହିଥିଲେ "ମାତଃ । କୃଷ୍ଣସେବକର କୌଣସି କାଳରେ ନାଶ ନାହିଁ କାଳଚକ୍ର ମଧ୍ୟ କୃଷ୍ଣଦାସଙ୍କୁ ଦେଖି ଭୀତ ହୁଅନ୍ତି । ଯଥାଃ—

କୃଷ୍ଣ ସେବକେର ମାତା କଭୁ ନାହିଁ ନାଶ
କାଳଚକ୍ର ଡରାୟ ଦେଖିଯା କୃଷ୍ଣଦାସ ।
( ଚୈଃ ଭାଃ ମଧ୍ୟ ୧ମ ଅଃ )

କାଳଚକ୍ର ଉତ୍ତରବା ବଚନ ନ୍ତ୍ରକ । ସ୍ୱୟଂ ବିଷ୍ଣୁଚକ୍ର ମଧ୍ୟ ଭକ୍ତଇଚ୍ଛା ଅତିକ୍ରମ କରି କାର୍ଯ୍ୟ କରିବାକୁ ଅକ୍ଷମ । ଯବନଗଣ ପ୍ରିୟଭକ୍ତ ଠାକୁର ଶ୍ରୀହରିଦାସଙ୍କୁ ନିର୍ଘାତ ପ୍ରହାର କରୁଥିବାର ଦେଖି ଭଗବାନ୍ ଶ୍ରୀ ସୁଦର୍ଶନ ଚକ୍ରଙ୍କୁ . ପ୍ରହାରକାରୀ ଯବନମାନଙ୍କ ଧ୍ୱଂସ ନିମିତ୍ତ ପଠାଇଲେ । ଶ୍ରୀସୁଦର୍ଶନ ଯାଇ ଦେଖିଲେ, ଠାକୁର ଶ୍ରୀହରିଦାସ ମନେ ମନେ ପ୍ରହାରକାରୀମାନଙ୍କ ମଙ୍ଗଳ ପ୍ରାର୍ଥନା କରୁଅଛନ୍ତି । ଅତଏବ ଶ୍ରୀସୁଦର୍ଶନ ଯେ ଯବନମାନଙ୍କୁ ଦଣ୍ଡ ଦେବାକୁ ସକ୍ଷମ ହେଲେ ନାହିଁ ।

ତୁମି ଭାଲ ଚନ୍ଦ୍ରଲେ ନା କରୋଁ ମୁକ୍ତିବଲ
ମୋର ଚକ୍ର ତୋମା ଲାଗି ହଇଲ ବିଫଲ ।
( ଚୈଃ ଭାଃ ମଧ୍ୟ ୧୦ମ ଅଃ )

ଠାକୁର ଶ୍ରୀହରିଦାସ ଯେପରି ଭକ୍ତ, ତାଙ୍କ ଇଚ୍ଛାକୁ ବ୍ୟତିକ୍ରମ କରିବାକୁ ଶ୍ରୀସୁଦର୍ଶନ ମଧ୍ୟ କୁଣ୍ଠିତ ହେଲେ । ଏହା ହେବାରହିଁ କଥା । ଠାକୁର ଶ୍ରୀହରିଦାସଙ୍କ ସମାନ ଭାଗ୍ୟବାନ୍ ଆଉ କିଏ ଅଛି । ଯାହାଙ୍କ ନିର୍ଯାଣ କାହାଣୀ ମହାବୀର ଭାଗ୍ୟଙ୍କ ମହାତ୍ମ୍ୟକୁ ଜଣାଉଛି । ନିର୍ଯାଣ ପରେ ଯାହାଙ୍କ ଶରୀରକୁ ମହାପ୍ରଭୁ ନିଜ କୋଳରେ କରି କୀର୍ତ୍ତନ କରିଥିଲେ ଏବଂ ଯାହାଙ୍କ ଶରୀରକୁ ସମାଧିସ୍ଥ କରିବାକୁ ନେଇ ମହାପ୍ରଭୁ ସ୍ୱୟଂ ସମୁଦ୍ରରେ ସ୍ନାନ କରାଇ ଆଜିଠାରୁ ଏହି ସମୁଦ୍ର ମହାତୀର୍ଥରେ ପରିଣତ ହେଲା ବୋଲି ବର ଦେଇଥିଲେ । ଯଥା:—

ହରିଦାସେ ସମୁଦ୍ରଜଲେ ସ୍ନାନ କରାଇଲ
ପ୍ରଭୁ କହେ ସମୁଦ୍ର ଏଇ ମହାତୀର୍ଥ ହୈଲ ।
( ଚୈଃ ଚଃ ଅନ୍ତ୍ୟ ୧୧ପରି )

ଶ୍ରୀନୀଳାଚଳ ଚନ୍ଦ୍ରଙ୍କ ବିହାର ସ୍ଥଳ ହେତୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥ ସମୁଦ୍ର ତୀର୍ଥହିଁ, କିନ୍ତୁ ଠାକୁର ଶ୍ରୀହରିଦାସଙ୍କ ଦେହକୁ ସେଥିରେ ସ୍ନାନ କରାଇ ମହାପ୍ରଭୁ ସମୁଦ୍ରକୁ ଏହି ବର ଦେଲେ ଯେ "ହେ ସମୁଦ୍ର ! ତୁମ୍ଭେ ଆଜିଠାରୁ ମହାତୀର୍ଥ ହେଲ " ଏହାଦ୍ୱାରା ମହାପ୍ରଭୁ ଦେଖାଇଲେ ଭକ୍ତଦେହ ଚିନ୍ମୟ, ଏବଂ ମହାଭକ୍ତ ହରିଦାସଙ୍କ ମହାତ୍ମ୍ୟ ଯେ କେତେ ଉଚ୍ଚ ତାହା ଏହି ଉଦାହରଣ ତାହାର ଅତି ଉତ୍କୃଷ୍ଟ ପ୍ରମାଣ ।

ଶ୍ରୀଭଗବାନଙ୍କର ତତ୍ତ୍ୱ କେହି ଜାଣିପାରନ୍ତି ନାହିଁ । ସେ ଜ୍ଞାନର ଅଗୋଚର । କିନ୍ତୁ ଭକ୍ତ ତାଙ୍କର ଏତେଦୂର ପ୍ରିୟପାତ୍ର ଯେ ଶ୍ରୀଭଗବାନ ଭକ୍ତଙ୍କଠାରେ ଅଂଶ ଗୋପନ କରି ରହିପାରନ୍ତି ନାହିଁ । ଭକ୍ତି ବଳରେ ଭକ୍ତମାନେ ବାକ୍ୟମନର ଅଗୋଚର ଶ୍ରୀଭଗବାନଙ୍କୁ ସ୍ୱରୂପତଃ ଜାଣିପାରନ୍ତି, ସେଥିପାଇଁ ପଣ୍ଡିତ ପ୍ରବର ଶ୍ରୀମନ୍ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଶ୍ରୀମହାପ୍ରଭୁଙ୍କୁ କହିଥିଲେ । ଯଥା :—

ଆପନେ ସେ ଆପନାରେ ଜାନ ତୁମି ମାତ୍ର
ଆର ଜାନେ ଯେ ଜନ ତୁମାର କୃପାପାତ୍ର ।

( ଚୈଃ ଭାଃ ଅନ୍ତ୍ୟ ୩ୟ ଅଃ )

ଶ୍ରୀଭଗବାନଙ୍କର ପ୍ରକୃତ ତତ୍ତ୍ୱ ଏକାଭକ୍ତମାନଙ୍କୁହିଁ ଗୋଚର । ଭକ୍ତମାନେହିଁ ଶ୍ରୀଭଗବାନଙ୍କ ପ୍ରକୃତ ସ୍ୱରୂପ ଦେଖି ପାରନ୍ତି । ଅନ୍ୟ କାହାରି ତାହା ଦେଖିବାର ଅଧିକାର ନାହିଁ । ଶ୍ରୀଧର କପର୍ଦ୍ଦକଶୂନ୍ୟ ଗରିବ ବ୍ରାହ୍ମଣ କଦଳୀ ମଞ୍ଜା ବିକି ଅତି କଷ୍ଟରେ ଜୀବିକା ନିର୍ବାହ କରୁଥିଲେ । ଅତିଶୟ ଗରିବ ହେଲେ କି ହେବ ଭକ୍ତି ଧନରେ ଶ୍ରୀଧର ମହାଧନୀ । ସେଥିପାଇଁ ତାଙ୍କୁ ମହାପ୍ରଭୁ ଛଳକରି ଲକ୍ଷେଶ୍ୱର ବୋଲି ପରିହାସ କରୁଥିଲେ । ମହାପ୍ରଭୁ ମହାପ୍ରକାଶ ଦିବସ ଶ୍ରୀଧରଙ୍କୁ ଡକାଇ ନିଜ ସ୍ୱରୂପ ଦେଖାଇଲେ । ଶ୍ରୀଧର ମହାପ୍ରଭୁଙ୍କ ନିଜ ସ୍ୱରୂପ ଦର୍ଶନ କରି ବିମୋହିତ ହୋଇ ତାଙ୍କର ବହୁ ସ୍ତବ କରିଥିଲେ । ସେହି ଶ୍ରୀଧରଙ୍କ ସମ୍ବନ୍ଧେ ଶ୍ରୀଲ ବୃନ୍ଦାବନ ଦାସ କହିଅଛନ୍ତି ।—

କଲା ମୂଲା ବେଚଯ୍ୟା ଶ୍ରୀଧର ପାଇଲ ଯାହା
କୋଟି କଲ୍ପେ କୋଟୀଶ୍ୱରେ ନା ଦେଖିବେ ତାହା ।

( ଚୈଃ ଭାଃ ମଧ୍ୟ ୯ମ ଅଃ )

ଭଗବତ୍ ପ୍ରିୟ ଭକ୍ତଙ୍କ ସେବାହିଁ ସ୍ୱୟଂ ଶ୍ରୀଭଗବାନଙ୍କ ସେବାଠାରୁ ଅଧିକ । ଯେଉଁମାନେ ଶ୍ରୀକୃଷ୍ଣ ଚରଣାରବିନ୍ଦ ପ୍ରାପ୍ତି କାମନା କରନ୍ତି, ଶ୍ରୀକୃଷ୍ଣ ପ୍ରେମଲାଭ କରିବାକୁ ଯେଉଁମାନେ ଲାଳାୟିତ ସେମାନଙ୍କ ପକ୍ଷରେ ବୈଷ୍ଣବ ସେବା ଏକାନ୍ତ କର୍ତ୍ତବ୍ୟ । ସେଥିପାଇଁ ଶ୍ରୀ ବୃନ୍ଦାବନଦାସ କହିଅଛନ୍ତି ।—

କୃଷ୍ଣ ଭଜିବାରେ ଯାର ଆଛେ ଅଭିଳାଷ
ସେ ଭଜୁକ କୃଷ୍ଣେର ମଙ୍ଗଳ ପ୍ରିୟ ଦାସ ।
( ଚୈଃ ଭାଃ ମଧ୍ୟ ୬ଷ୍ଠ ଅଃ )

ଶ୍ରୀମନ୍ ମହାପ୍ରଭୁ ଶ୍ରୀସନାତନଙ୍କୁ ଏ ଶିକ୍ଷାରେ କହିଅଛନ୍ତି ।—
ମହତ୍ କୃପା ବିନା କୋନ କାର୍ଯ୍ୟ ସିଦ୍ଧି ନୟ
ଭକ୍ତି ରହୁ ଦୂରେ ସଂସାର ନା ଯାଏ କ୍ଷୟ ।

ମହାପ୍ରଭୁ ନିଜେ ବୈଷ୍ଣବଙ୍କ ସେବା କରି ଏହି ମହତ୍ ଶିକ୍ଷା ନିଜ ଆଚରଣ ଦ୍ୱାରା ଜୀବକୁ ଦେଖାଇଥିଲେ । ଯଥା —
ସବାରେ ଶିଖାୟ ଗୌରଚନ୍ଦ୍ର ଭଗବାନେ
ବୈଷ୍ଣବେର ସେବା ପ୍ରଭୁ କରିୟା ଆପନେ ।
( ଚୈଃ ଭାଃ ମଧ୍ୟ ୬ଷ୍ଠ ଅ )

ଦେବାନନ୍ଦ ପଣ୍ଡିତ ଶ୍ରୀ ଭାଗବତର ଅଧ୍ୟାପକ ଓ ମହାପଣ୍ଡିତ । କିନ୍ତୁ ଭକ୍ତି ଅଭାବରୁ ତାଙ୍କର ବୈଷ୍ଣବ ଅପରାଧ ଜାତ ହୋଇଥିଲା । ମହାପ୍ରଭୁ ସେହି ପଣ୍ଡିତ ଦେବାନନ୍ଦଙ୍କୁ ଉପଦେଶ କରିଥିଲେ । କିନ୍ତୁ ମହାପ୍ରଭୁଙ୍କ ସନ୍ନ୍ୟାସ ହେବାପରେ ଏକଦା ଭକ୍ତପ୍ରବର ଶ୍ରୀବକ୍ରେଶ୍ୱର ପଣ୍ଡିତ ଦେବାନନ୍ଦଙ୍କ ଗୃହରେ ଉପସ୍ଥିତ ହେଲେ । ଦେବାନନ୍ଦଙ୍କର ସେତେବେଳେ ସୁମତି ଜାତ ହେବାରୁ ସେ ପଣ୍ଡିତ ଶ୍ରୀବକ୍ରେଶ୍ୱରଙ୍କର ବହୁତ ସେବା କଲେ । ପ୍ରେମମୟ କଳେବର ପଣ୍ଡିତ ଶ୍ରୀବକ୍ରେଶ୍ୱରଙ୍କ ଅପୂର୍ବ ନୃତ୍ୟ କାଳରେ ପଣ୍ଡିତ ଦେବାନନ୍ଦ ହସ୍ତରେ ବେତ୍ର ଧାରଣ ପୂର୍ବକ ଲୋକ ଭିଡ଼ରୁ ତାଙ୍କୁ ରକ୍ଷା କରିବାକୁ ଲାଗିଲେ । ପଣ୍ଡିତ ଶ୍ରୀବକ୍ରେଶ୍ୱର ପ୍ରେମରେ ମୂର୍ଚ୍ଛିତ ହେଲେ, ଦେବାନନ୍ଦ ତାହାଙ୍କୁ ନିଜ କୋଳରେ ଧାରଣ ପୂର୍ବକ ଶୁଶ୍ରୂଷା କଲେ ଏବଂ ତାଙ୍କ ଶ୍ରୀଚରଣ ରେଣୁ ଗ୍ରହଣ ପୂର୍ବକ ନିଜ ଅଙ୍ଗରେ ବୋଳି ହେଲେ । ଏହିରୂପେ ଭାଗବତୋତ୍ତମ ପଣ୍ଡିତ ଶ୍ରୀବକ୍ରେଶ୍ୱରଙ୍କ ସେବା କରନ୍ତେ ତାଙ୍କ କୃପାରୁ ପଣ୍ଡିତ ଦେବାନନ୍ଦଙ୍କର ବୈଷ୍ଣବାପରାଧ ଖଣ୍ଡନ ହେଲା । ମହାପ୍ରଭୁଙ୍କ ପ୍ରତି ତାଙ୍କ ମନରେ ପୂର୍ଣ୍ଣ ବିଶ୍ୱାସ ଉଦୟ ହେଲା । ପୂର୍ବରୁ ଶ୍ରୀକୃଷ୍ଣ ସେବା କରି ମଧ୍ୟ ଦେବାନନ୍ଦ କୃଷ୍ଣ ପ୍ରେମରୁ ବଞ୍ଚିତ ଥିଲେ । ମହାଭାଗବତ ଶ୍ରୀ

ବକ୍ରେଶ୍ୱରଙ୍କୁ ସେବା କରି ତାଙ୍କ କୃପା ପ୍ରଭାବରେ ସେ କୃଷ୍ଣ ପ୍ରେମଲାଭ କଲେ । ଏଣୁ ଶ୍ରୀଲବୃନ୍ଦାବନଦାସ କହିଛନ୍ତି ।—

ବୈଷ୍ଣବ ସେବାର ଫଳ କହେ ଯେ ପୁରାଣେ,
ତାର ସାକ୍ଷୀ ଏଇ ସବେ ଦେଖ ବିଦ୍ୟମାନେ ।
ଅଜନ୍ମ ଧାର୍ମିକ ଉଦାସୀନ ଜ୍ଞାନବାନ ।
ଭାଗବତ ଅଧ୍ୟାପନା ବିନା ନାହିଁ ଆନ ।
ଶାନ୍ତ ଦାନ୍ତ ଜିତେନ୍ଦ୍ରିୟ ନିର୍ଲୋଭ ବିଷୟ
ପ୍ରାୟ ଆର କତେକ ବା ଗୁଣ ତାନେହୟ ।
ତଥାପି ଓ ଗୌରଚନ୍ଦ୍ରେ ନହିଲ ବିଶ୍ୱାସ
ବକ୍ରେଶ୍ୱର ପ୍ରସାଦେ ସେ କୁବୁଦ୍ଧି ବିନାଶ ।
କୃଷ୍ଣ ସେବା ହୈତେ ବୈଷ୍ଣବେର ସେବାବଡ଼
ଭାଗବତ ଆଦି ସବ ଶାସ୍ତ୍ରେ କୈଲ ଦଢ଼ ।
ଏତେକ ବୈଷ୍ଣବ ସେବା ପରମ ଉପାୟ
ଭକ୍ତ ସେବା ହୈତେ ସେ ସବାଇ କୃଷ୍ଣପାୟ ।

( ଚୈଃ ଭାଃ ଅନ୍ତ୍ୟ ୩ୟ ଅଃ )

ଭକ୍ତର ପଦ ଏତେ ଉଚ୍ଚ ଏବଂ ଭକ୍ତର ମାହାତ୍ମ୍ୟ ଏତେ ଅଧିକ ଯେ ଭକ୍ତାଗ୍ରଣୀ ଠାକୁର ଶ୍ରୀହରିଦାସ ଭକ୍ତ ଗୃହରେ କୁକ୍କୁର ହୋଇ ବାସ କରିବାକୁ ମହାପ୍ରଭୁଙ୍କୁ ପ୍ରାର୍ଥନା କରିଥିଲେ । ଯଥା ।—

ଶଚୀର ନନ୍ଦନ ବାପ କୃପା କର ମୋରେ
କୁକୁର କରିୟା ମୋରେ ରାଖ ଭକ୍ତ ଘରେ ।

( ଚୈଃ ଭାଃ ମଧ୍ୟ ୧୦ମ ଅ । )

ଠାକୁର ଶ୍ରୀହରିଦାସଙ୍କ ଏହି ପ୍ରାର୍ଥନା ମୂଳରେ ଭକ୍ତି ମହିମାର କି ଉଚ୍ଚତମ ସୋପାନ ନିହିତ ନ ରହିଅଛି । କୁକୁର ଏକ ଘୃଣ୍ୟଜୀବ, ବିଷ୍ଠା ଭୋଜନ କରେ । ହିନ୍ଦୁଶାସ୍ତ୍ର ମତେ କୁକୁର ଅସ୍ପୃଶ୍ୟ । କୁକୁରର ଦୃଷ୍ଟି ପଡ଼ିଲେ କୌଣସି ଖାଦ୍ୟ ଦ୍ରବ୍ୟ ଦେବଭୋଗ୍ୟ ହୋଇପାରେ ନାହିଁ । ଏମନ୍ତ ଘୃଣ୍ୟ ଜୀବ ଯେ କୁକୁର ଭକ୍ତ ଘରେ ତାର ସେ ଘୃଣ୍ୟତ୍ୱ ଦୂରୀଭୂତ

ହୋଇଯାଏ । ଭକ୍ତ ସଙ୍ଗ ଗୁଣରେ କୁକୁର ଉଚ୍ଚ ସୋପାନ ଆରୋହଣ କରେ । ଶ୍ରୀଶିବାନନ୍ଦ ସେନଙ୍କ କୁକୁର ସମ୍ବନ୍ଧୀୟ ଘଟଣା ମଧ୍ୟ ଏହାର ପ୍ରତ୍ୟକ୍ଷ ପ୍ରମାଣ, ଯେଉଁ କୁକୁର ମୁଖରେ ମହାପ୍ରଭୁ ଶ୍ରୀହରିନାମ ଉଚ୍ଚାରଣ କରାଇ ତାକୁ ବୈକୁଣ୍ଠ ଧାମକୁ ପ୍ରେରଣ କରିଥିଲେ । ଅତଏବ ଭକ୍ତ ମାହାତ୍ମ୍ୟ ବଢ଼ାଇବା ପାଇଁ ଶ୍ରୀ ଗୌର ଚନ୍ଦ୍ର ଠାକୁର ଶ୍ରୀହରିଦାସଙ୍କ ମୁଖରୁ ଏମନ୍ତ ଉକ୍ତି ବାହାର କରାଇ ଅଛନ୍ତି । ଭକ୍ତ ମାହାତ୍ମ୍ୟ ବିଷୟରେ ଶ୍ରୀ କବିରାଜ ଗୋସ୍ୱାମୀ ଶ୍ରୀଲ ବୃନ୍ଦାବନ ଦାସ ଓ ଶ୍ରୀଲ ଲୋଚନଦାସଙ୍କ ଏହି ସମସ୍ତ ଉକ୍ତି ଉତ୍ତମ ସାକ୍ଷ୍ୟ ଦେଉଅଛି । ମୁଁ ଅଧମ ଭକ୍ତିଶୂନ୍ୟ କପଟାଗ୍ରହୀ । ଈଦୃଶ ଭକ୍ତଙ୍କ ମାହାତ୍ମ୍ୟ ବିଷୟରେ କଣ ଲେଖିବି; ସେପରି ଆଶା କରିବା ମୋ ପକ୍ଷରେ ବିଡମ୍ବନା ମାତ୍ର ।

ଏମନ୍ତ କୃଷ୍ଣପ୍ରିୟମାନଙ୍କୁ ଯେ ସମ୍ମାନ ପ୍ରଦର୍ଶନ ନ କରେ ସେମାନଙ୍କର ଅପ୍ରିୟାଚରଣ କରେ ସେମାନଙ୍କ ପ୍ରତି ଅକାରଣରେ ଦ୍ରୋହ କରେ ଅଥବା ସେମାନଙ୍କୁ ପୀଡ଼ାଦିଏ ତାହାର ବୈଷ୍ଣବାପରାଧ ଜାତ ହେଲେ ତାହାର କୌଣସି କାଳରେ ସଦ୍‌ଗତି ନାହିଁ । କ୍ଷମା ସାଗର ହେଲେହେଁ ଭଗବାନ ବୈଷ୍ଣବାପରାଧୀର ଦୋଷ ମାର୍ଜ୍ଜନା କରନ୍ତି ନାହିଁ । ଶ୍ରୀ ମହାପ୍ରଭୁ ଏହା ଶ୍ରୀମୁଖରେ କହି ଅଛନ୍ତି । ଶ୍ରୀନବଦ୍ୱୀପରେ ଭ୍ରମଣ କରୁଥିବା କାଳରେ ଏକ କୁଷ୍ଠ ରୋଗୀ ମହାପ୍ରଭୁଙ୍କ ଶ୍ରୀଚରଣ ତଳେ ପଡ଼ି ପ୍ରାର୍ଥନା ପୂର୍ବକ କହିଲା ପ୍ରଭୋ ! ସମସ୍ତେ କହୁଅଛନ୍ତି ଆପଣ ଶ୍ରୀପୁରୁଷୋତ୍ତମ ଜନାର୍ଦ୍ଦନ ! ଅତଏବ ହେ କରୁଣାସିନ୍ଧୁ ହେ ଜଗତର ବନ୍ଧୁ ମୁଁ ମହାପାତକୀ, କୁଷ୍ଠ ବ୍ୟାଧିରେ ପ୍ରପୀଡ଼ିତ ହୋଇ ଆପଣଙ୍କର ଶରଣାପନ୍ନ ହେଲି ଆପଣ ଉଦ୍ଧାର କରନ୍ତୁ । ମହାପ୍ରଭୁ ତାହାଙ୍କ ଉକ୍ତିରେ କ୍ରୁଦ୍ଧ ହୋଇ କହିଲେ " ସଂସାରରେ ମୋର କେହି ଶତ୍ରୁ ନାହିଁ ଏହା ସତ୍ୟ । କିନ୍ତୁ ତୁ ଯେତେବେଳେ ମୋର ପ୍ରିୟ ଦାସ ଶ୍ରୀବାସପଣ୍ଡିତଙ୍କ ଠାରେ ଅପରାଧ କରିଅଛୁ, ତୁ ମୋର ପ୍ରକୃତ ଶତ୍ରୁ । ଭକ୍ତ ଦ୍ରୋହୀଙ୍କୁ ମୁଁ ଉଦ୍ଧାର କରି ନ ପାରେଁ, ମୋ ଠାରେ ଦ୍ୱେଷ କରି ମଧ୍ୟ ଯେ ମୋର ଭକ୍ତ ସେବା କରେ ମୁଁ ତାହାର ଉଦ୍ଧାର ସାଧନ କରେଁ; କିନ୍ତୁ ମୋର ଭକ୍ତ ପ୍ରତି ଦ୍ୱେଷ କଲେ ମୁଁ ତା ପ୍ରତି କୌଣସି କାଳରେ ପ୍ରସନ୍ନ ହୋଇ ନ ପାରେଁ । ବୈଷ୍ଣବାପରାଧୀର ଆଉ ଅନ୍ୟଗତି ନାହିଁ । ଯଥାଃ—

ବୈଷ୍ଣବେର ଅପରାଧ କରେ ଯେଇ ଜନ
ନରକେ ପଡ଼ୟେ ତାର ନାହିଁ କ ଶରଣ ।
ବୈଷ୍ଣବେର ସେବା କରେ ମୋର କରେ ଦ୍ୱେଷ,
ତାର ପରିତ୍ରାଣ କରି ଘୁଚୁଇବ୍ୟେ କ୍ଲେଶ ।
ତାହାରେ ପରଣ ଦେଖ ଏଇ ମୋର ଦେହ
ବୈଷ୍ଣବ ଅନ୍ତରେ ପ୍ରାଣ ନାହିଁକ ସନ୍ଦେହ ।

( ଚୈ: ମ: ମଧ୍ୟ )



## ୬ଷ୍ଠ ପରିଚ୍ଛେଦ ।

### ଭକ୍ତର ଦୃଢ଼ତା ।

ଭକ୍ତ ଭଜନ କରୁ କରୁ ଶ୍ରୀଭଗବାନଙ୍କ ଗୁଣ କର୍ମ୍ମ ସମ୍ବନ୍ଧରେ ତାହାଙ୍କର ବିଶ୍ୱାସ କ୍ରମେ ଦୃଢ଼ୀଭୂତ ହୁଏ । ସେ ସେତେବେଳେ ବୁଝି ପାରନ୍ତି ଭଗବାନ ସର୍ବଶକ୍ତିମାନ ଏବଂ ପରମ କରୁଣ । ଏହା ହୃଦୟଙ୍ଗମ କଲେ ଭକ୍ତଙ୍କ ମନରେ ଏହି ଧାରଣା ଉପସ୍ଥିତ ହୁଏ ଯେ ଏକ ଜନ୍ମରେ ହେଉ କିମ୍ବା ବହୁ ଜନ୍ମପରେ ହେଉ ଶ୍ରୀଭଗବାନ ତାଙ୍କୁ ନିଶ୍ଚୟ ଏ ଭବ କୂପରୁ ଉଦ୍ଧାର କରିବେ । କାରଣ ସେ ଯେତେବେଳେ ପରମ କରୁଣ, ମାଦୃଶ ଦୀନ ପ୍ରତି କୃପା ନ କରି ରହିପାରିବେ ନାହିଁ; ଏବଂ ସର୍ବ ଶକ୍ତିମାନ ହେତୁ ମୋତେ ଉଦ୍ଧାର କରିବାକୁ ଅଶକ୍ତ ନୁହନ୍ତି । ଏହିପରି ଦୃଢ଼ ବିଶ୍ୱାସ ତାହାଙ୍କ ମନରେ ଆସି ଉପସ୍ଥିତ ହୁଏ । ଯଥା—

କୃଷ୍ଣକୃପା କରିବେନ ଦୃଢ଼ କରିମାନେ ।

( ଚୈଃ ଚଃ ମଧ ୨୩ ପଃ )

ଏମନ୍ତ ଦୃଢ଼ ବିଶ୍ୱାସ ସାମାନ୍ୟ ଭକ୍ତିରେ ଘଟେ ନାହିଁ, ସୌଭାଗ୍ୟକ୍ରମେ ଏରୂପ ଭାଗ୍ୟ ଜାତ ହେଲେ ଭଗବାନ ବି ଆଉ ସ୍ଥିର ହୋଇ ରହିପାରନ୍ତି । ସେ ଅବିଳମ୍ବରେ ଏପରି ଦୃଢ଼ନିଷ୍ଠାଯୁକ୍ତ ଭକ୍ତର ବଶୀଭୂତ ହୁଅନ୍ତି ଓ ତାହାର ବାସନା ସଫଳ କରନ୍ତି ।

ମହାରାଜା ପ୍ରତାପରୁଦ୍ର ଏହିରୂପ ଦୃଢ଼ ବିଶ୍ୱାସ ବିଷୟରେ ଏକ ଜ୍ୱଳନ୍ତ ଉଦାହରଣ । ମହାପ୍ରଭୁ ସନ୍ନ୍ୟାସୀ ହୋଇ ଶ୍ରୀପୁରୁଷୋତ୍ତମରେ ବାସ କରୁଥିଲେ । ମହାରାଜା ପ୍ରତାପରୁଦ୍ରଙ୍କର କଟକ ରାଜଧାନୀ ହେଲେହେଁ ସେ

ଜଗନ୍ନାଥ ଦର୍ଶନ ନିମିତ୍ତ ଶ୍ରୀପୁରୁଷୋତ୍ତମକୁ ଅନେକ ସମୟରେ ଯାଉଥିଲେ । ସାର୍ବଭୌମ ପ୍ରଭୃତିଙ୍କଠାରୁ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କ ବିଷୟ ଶୁଣି ସେ ଯେ ସ୍ୱୟଂ ଭଗବାନ ନରରୂପରେ ଭକ୍ତି ପ୍ରଚାର ନିମିତ୍ତ ଧରାକୁ ଆସିଅଛନ୍ତି, ଏ ବିଶ୍ୱାସ ତାଙ୍କ ମନରେ ବଦ୍ଧମୂଳ ହେଲା । ସେ ମହାପ୍ରଭୁଙ୍କ ଶ୍ରୀଚରଣଦର୍ଶନର ପ୍ରୟାସୀ ହେଲେ । ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ କରି-ଥିବାରୁ ରାଜଦର୍ଶନରେ ସ୍ୱୀକୃତ ହେଲେ ନାହିଁ । ମହାପ୍ରଭୁଙ୍କର ପ୍ରିୟ ଭକ୍ତ ପଣ୍ଡିତ ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଓ ଶ୍ରୀଳ ରାୟରାମାନନ୍ଦ ପ୍ରଭୃତି ବହୁଯତ୍ନ କଲେହେଁ ମହାପ୍ରଭୁ ମହାରାଜାଙ୍କୁ ଦର୍ଶନ ଦାନ ଦେବାକୁ କୌଣସି ମତେ ସମ୍ମତ ହେଲେ ନାହିଁ । ମହାରାଜାଙ୍କ ମନରେ ଉତ୍କଣ୍ଠା ଅତି ପ୍ରବଳ ହେବାକୁ ଲାଗିଲା । ସେ ଭାବିଲେ ହାୟ, ନୀଚ ପାମର ସମସ୍ତେ ମହାପ୍ରଭୁଙ୍କ ଦର୍ଶନ ପାଇ ଉଦ୍ଧାର ହେଉଅଛନ୍ତି ମହାପାପୀ । ଜଗାଇ ମାଧାଇ ଉଦ୍ଧାର ଏହାର ସାକ୍ଷୀ । ମହାପ୍ରଭୁ ପତିତ ଉଦ୍ଧାରିବାପାଇଁ ଅବତାର ଗ୍ରହଣ କରିଅଛନ୍ତି । କିନ୍ତୁ ହାୟ ! ମୋର ଏହି ରାଜମୁକୁଟ ମୋର ସର୍ବ ଅନର୍ଥର କାରଣ ହେଲା । ତାଙ୍କ ଶ୍ରୀଚରଣାରବିନ୍ଦ ଦର୍ଶନ ବିନା ମୋର ଏ ରାଜ୍ୟରେ ଓ ଦେହରେ ଆଉ କି ପ୍ରୟୋଜନ । ଅସ୍ତୁ ! ଯଦି ମହାପ୍ରଭୁଙ୍କର ପ୍ରତିଜ୍ଞା ଯେ ସେ ମୋତେ ଦର୍ଶନ ଦେବେ ନାହିଁ, ମୁଁ ମଧ୍ୟ ପ୍ରତିଜ୍ଞା କରୁଅଛି, ତାଙ୍କ ଦର୍ଶନ ନ ପାଇଲେ ଏ ଜୀବନ ବିସର୍ଜନ କରିବି । ଯଥା—

ତାଁର ପ୍ରତିଜ୍ଞା ମୋରେ ନା କରିବେନ ଦର୍ଶନ
ମୋର ପ୍ରତିଜ୍ଞା ତାହାଁ ବିନା ଛାଡ଼ିବ ଜୀବନ ।
ଯଦି ସେଇ ମହାପ୍ରଭୁର ନାପାଇ କୃପାଧନ
କିବା ରାଜ୍ୟ କିବା ଦେହ ସବ ଅକାରଣ ।

( ଚୈଃ ଚଃ ମଧ୍ୟ ୧୧ଶ ପଃ )

ମହାରାଜା ପ୍ରତାପରୁଦ୍ରଙ୍କର ଦୃଢ଼ତା ଫଳବତୀ ହୋଇଥିଲା । ମହା-ପ୍ରଭୁ ନିଜପଣ ପରିତ୍ୟାଗ କରି ମହାରାଜାଙ୍କୁ ଦର୍ଶନ ଦାନ ଏବଂ ଶେଷରେ ଆଲିଙ୍ଗନ ପର୍ଯ୍ୟନ୍ତ ଦାନପୂର୍ବକ ଚରିତାର୍ଥ କରିଥିଲେ । ଉତ୍ତମ ଭକ୍ତ-

ମାନଙ୍କର ବିଶ୍ୱାସ ଅଟଳ । ପୂର୍ବେ ଯେଉଁରୂପ କୌଣସି ଘାତ ପ୍ରତିଘାତରେ ବିଚଳିତ ହୁଏ ନାହିଁ ଉତ୍ତମ ଭକ୍ତମାନଙ୍କ ମନ ସେହିରୂପ ଭଗବାନଙ୍କ ପାଦପଦ୍ମରୁ ବିଚଳିତ ହୁଏ ନାହିଁ । ସେମାନେ ଶ୍ରୀଭଗବାନଙ୍କର ଯେଉଁରୂପ ବା ଆକାର ଧାରଣା କରି ଭଜନ କରନ୍ତି ସେଥିରେ ସେମାନଙ୍କର ବିଶ୍ୱାସ ଅଟଳ ।

ଶ୍ରୀଳ ସନାତନ, ଶ୍ରୀରୂପ ଓ ଶ୍ରୀଅନୁପମ ତିନିଭାଇ । ଶ୍ରୀସନାତନ ଓ ଶ୍ରୀରୂପ ଶ୍ରୀକୃଷ୍ଣ ଭଜନ କରନ୍ତି କିନ୍ତୁ ଶ୍ରୀଅନୁପମ ରାମୋପାସକ । ଶ୍ରୀସନାତନ ଓ ଶ୍ରୀରୂପ ନିଜ କନିଷ୍ଠଭ୍ରାତା ଅନୁପମଙ୍କୁ ପରୀକ୍ଷା କରିବା ନିମନ୍ତେ କହିଲେ "ବଲ୍ଲଭ ( ଅନୁପମ ) ଶ୍ରୀକୃଷ୍ଣ ପରମ ମଧୁର, ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରେ ଶ୍ରୀରାମଚନ୍ଦ୍ରଙ୍କଠାରୁ ଅଧିକ । ଶ୍ରୀକୃଷ୍ଣଙ୍କର ବିଳାସମହତ୍ତ୍ୱ ଶ୍ରୀରାମଙ୍କଠାରେ ନାହିଁ । ଅତଏବ ତୁମ୍ଭେ ଶ୍ରୀରାମଭଜନ ପରିତ୍ୟାଗ ପୂର୍ବକ ଶ୍ରୀକୃଷ୍ଣଭଜନ କର, ତିନିଭାଇ କୃଷ୍ଣକଥା ଆଳାପ କରି ସୁଖରେ କାଳ କଟାଇବା ।" ବାରମ୍ବାର ଏରୂପ କହିବାରେ ଅନୁପମଙ୍କର ମନ କିଛି ଫେରିଗଲା । ସେ କୃଷ୍ଣଭଜନ କରିବାକୁ ମୁଖରେ ଅଙ୍ଗୀକାର କଲେ । କିନ୍ତୁ ଅଙ୍ଗୀକାର କରି ଘରରେ ସେହି ବିଷୟ ଚିନ୍ତା କରିବାକୁ ଲାଗିଲେ । ଶ୍ରୀରଘୁନାଥଙ୍କ ଚରଣ-କମଳ ପରିତ୍ୟାଗ କରିବାକୁ ତାଙ୍କ ମନ ବ୍ୟାକୁଳ ହେଲା । ସେ ସମସ୍ତ ରାତି ଉଜାଗରରେ କ୍ରନ୍ଦନ କରି କଟାଇଲେ ଓ ପରଦିବସ ପ୍ରାତଃକାଳରେ ଭାଇମାନଙ୍କୁ କହିଲେ, "ମୁଁ ଶ୍ରୀରଘୁନାଥଙ୍କ ଶ୍ରୀପଦକମଳରେ ମୋର ମସ୍ତକ ବିକ୍ରି କରିଅଛି । ବର୍ତ୍ତମାନ ସେଠାରୁ ମସ୍ତକ କାଢ଼ିଆଣି ନପାରେଁ । ମୋତେ ଆପଣମାନେ କୃପା ଅନୁମତି କରନ୍ତୁ ମୁଁ ଜନ୍ମେ ଜନ୍ମେ ଶ୍ରୀରଘୁନାଥଙ୍କ ଚରଣକମଳ ସେବା କରେଁ" । ଅନୁପମଙ୍କର ଏହି ଦୃଢ଼ତା ଦେଖି ଶ୍ରୀରୂପ ଓ ଶ୍ରୀସନାତନ ତାଙ୍କୁ ଭୂୟସୀ ପ୍ରଶଂସା କଲେ । ଏହି ବିଷୟ ସନାତନ ଗୋସ୍ୱାମୀ ଶ୍ରୀପୁରୁଷୋତ୍ତମରେ ମହାପ୍ରଭୁଙ୍କୁ କଥା ପ୍ରସଙ୍ଗରେ କହନ୍ତେ, ମହାପ୍ରଭୁ ଅନୁପମଙ୍କୁ ପ୍ରଶଂସା କଲେ ଏବଂ କହିଲେ ନିଜ ଉପାସ୍ୟ ପ୍ରଭୁଙ୍କ-ଠାରେ ଭକ୍ତର ଈଦୃଶ ଦୃଢ଼ତା ବାଞ୍ଛନୀୟ । ମୁରାରି ଗୁପ୍ତଙ୍କୁ ମୁଁ ପୂର୍ବେ ଏହି ବିଷୟରେ ପରୀକ୍ଷା କରିଥିଲି ଏବଂ ତାଙ୍କଠାରୁ ଈଦୃଶ ଉତ୍ତର ମଧ୍ୟ

ପାଇଥିଲେ । ଅତଏବ ଯେ ଭକ୍ତ ନିଜ ପ୍ରଭୁଙ୍କ ଚରଣ ଶତ ଶତବାଧା ବିଘ୍ନରେ ମଧ୍ୟ ତ୍ୟାଗ ନ କରେ ସେ ଧନ୍ୟ । ଯଥା ଃ—

ସେଇ ଭକ୍ତ ଧନ୍ୟ ଯେ ନା ଛାଡ଼େ ପ୍ରଭୁର ଚରଣ
ସେଇ ପ୍ରଭୁ ଧନ୍ୟ ଯେ ନା ଛାଡ଼େ ନିଜ ଜନ ।

[ ଚୈଃ ଚଃ ଅନ୍ତ୍ୟ ୪ର୍ଥ ପଃ ]

ଏ ବିଷୟରେ ଠାକୁର ଶ୍ରୀହରିଦାସ ଅତି ଜାଜ୍ୱଲ୍ୟମାନ ଉଦାହରଣ ଦେଖାଇ ଅଛନ୍ତି । କାଜୀସାହେବ ହରିଦାସଙ୍କ ହରିନାମ ଗ୍ରହଣ ଓ ହରିନାମ ପ୍ରଚାର ବିଷୟରେ ଅତିଶୟ କ୍ରୁଦ୍ଧ ହୋଇ ଗୌଡ଼େଶ୍ୱରଙ୍କୁ ଜଣାଇଲେ "ମହାରାଜ, ହରିଦାସ ଯବନ କୁଳର କଳଙ୍କ । ସେ ମୁସଲମାନ ହୋଇ ହିନ୍ଦୁଙ୍କ ଈଶ୍ୱର ଶ୍ରୀହରିଙ୍କୁ ଭଜନ କରୁଅଛି । ଏପରି ହେଲେ ଆମ୍ଭ ମୁସଲମାନ ଧର୍ମ୍ମ ଆଉ ରହିବନାହିଁ । ତାହାର ଅନୁକରଣ କରି ସମସ୍ତ ମୁସଲମାନ ହିନ୍ଦୁହୋଇ ଯିବେ ।" କାଜୀସାହେବଙ୍କ କଥା ଶୁଣି ଗୌଡ଼େଶ୍ୱର ହରିଦାସଙ୍କୁ ଧରାଇ ଆଣାଇଲେ, ଏବଂ କହିଲେ ତୁମ୍ଭେ ହିନ୍ଦୁଧର୍ମ୍ମ ପରିତ୍ୟାଗ ପୂର୍ବକ କଲମା ଉଚ୍ଚାରଣ କର, ନୋହିଲେ ତୁମ୍ଭର ପ୍ରାଣଦଣ୍ଡ ଅନିବାର୍ଯ୍ୟ । ଏହି ଭୟ ପ୍ରଦର୍ଶନରେ ହରିଗତଜୀବନ ଶ୍ରୀହରିଦାସ ଲେଶମାତ୍ର ଭୀତ ହେଲେ ନାହିଁ । ସେ ଉତ୍ତମ ରୂପେ ଜାଣିଥିଲେ ଏକମାତ୍ର କର୍ତ୍ତା ଶ୍ରୀହରି । ତାଙ୍କ ଛଡ଼ା ଅନ୍ୟ କାହାର କିଛିମାତ୍ର ଶକ୍ତି ନାହିଁ । ଯଦି ଶ୍ରୀହରିଙ୍କର ମୋତେ ଦଣ୍ଡ ଦେବାକୁ ଇଚ୍ଛାଥିବ ମୁଁ ଅବଶ୍ୟ ଦଣ୍ଡ ଭୋଗ କରିବି । ନତୁବା ଯଦି ତାଙ୍କର ଇଚ୍ଛା ନ ଥିବ, ଲକ୍ଷ ଚେଷ୍ଟା କଲେ ମଧ୍ୟ ଏ ବାଦ୍‌ସାହା ମୋତେ ଦଣ୍ଡ ଦେଇ ନ ପାରନ୍ତି । ଏହା ଭାବି ସେ କହିଲେ, 'ମୋର ଦେହ ପ୍ରାଣ ଖଣ୍ଡ ବିଖଣ୍ଡ ହେଲେ ମଧ୍ୟ ମୁଁ ତୁଣ୍ଡରୁ ମଧୁର ଶ୍ରୀହରି ନାମ ଛାଡ଼ି ନ ପାରେ । ଯଥାଃ—

ଖଣ୍ଡ ଖଣ୍ଡ ଯଦି ହଇଯାୟ ଦେହ ପ୍ରାଣ ।
ତବୁ ଆମି ବଦନେ ନ ଛାଡ଼ି ହରିନାମ ।

( ଚୈଃ ଭାଃ ଆଦି ୧୦ ପର )

ଶ୍ରୀହରିଙ୍କର ଚରଣକମଳ ପାଇବାପାଇଁ ଏହିରୂପ ଦୃଢ଼ତା ଆବଶ୍ୟକ । ଭକ୍ତ ପ୍ରବର ପ୍ରହ୍ଲାଦ ବାଲ୍ୟାବସ୍ଥାରେ ଯେପରି ଦୃଢ଼ତା ଦେଖାଇଥିଲେ ତାହା ପୃଥିବୀର ଇତିହାସରେ ବିରଳ । ତାଙ୍କର ପିତା ପ୍ରବଳପ୍ରତାପୀ ହିରଣ୍ୟ-

କଶିପୁ ବାଳକ ପ୍ରହ୍ଲାଦଙ୍କୁ ଶତଶତ ଭୟ ପ୍ରଦର୍ଶନ କରି ଶେଷରେ ବିଷ ପାନ କରାଇଲେ ଏବଂ ଜ୍ୱଳନ୍ତ ଅଗ୍ନିକୁଣ୍ଡରେ ନିକ୍ଷେପ କଲେ ତଥାପି ସେ ଶ୍ରୀହରିଙ୍କର ମଧୁର ନାମ ଉଚ୍ଚାରଣ ପାଇଁ ସ୍ପୃହା ଛାଡ଼ି ନ ଥିଲେ ।



## ୭ମ ପରିଚ୍ଛେଦ ।

### ସାଧନ ଭକ୍ତି ।

ଯାହା ଶ୍ରବଣାଦି ଇନ୍ଦ୍ରିୟମାନଙ୍କ ପ୍ରେରଣଦ୍ୱାରା ସାଧ୍ୟ ଏବଂ ପ୍ରେମ ଯାହାର ଫଳ ତାହାକୁ ସାଧନ ଭକ୍ତି ବୋଲାଯାଏ, ଅର୍ଥାତ୍ ଶ୍ରବଣ, କୀର୍ତ୍ତନ ଆଦି ସାଧନ ଭକ୍ତିର ସ୍ୱରୂପ ଲକ୍ଷଣ ଏବଂ ଏଥିରୁ ଯେ ପ୍ରେମ ଜାତହୁଏ ତାହା ତାହାର ତଟସ୍ଥ ଲକ୍ଷଣ । ଯଥାଃ—

ଶ୍ରବଣାଦି କ୍ରିୟାତାର ସ୍ୱରୂପ ଲକ୍ଷଣ
ତଟସ୍ଥ ଲକ୍ଷଣେ ଉପଜାୟ ପ୍ରେମଧନ ।

( ଚୈଃ ଚଃ ମଧ୍ୟ ୨୨ପରି )

କିନ୍ତୁ "ସାଧ୍ୟ" ଏହି ଶବ୍ଦ ବ୍ୟବହାର ଦ୍ୱାରା ଏହା ବୋଧ ହୁଏ ଯେ ତାହା ଜନ୍ୟ ଅର୍ଥାତ୍ ନିତ୍ୟବସ୍ତୁ ନୁହେ । କିନ୍ତୁ ଏହି ଅଶଙ୍କା ପରିହାର ନିମନ୍ତେ ଶ୍ରୀଳ କବିରାଜ ଗୋସ୍ୱାମୀ ସାଧ୍ୟର ଅର୍ଥ ସ୍ପଷ୍ଟରୂପେ ବୁଝାଇ ଦେଇ ଅଛନ୍ତି । ଅର୍ଥାତ୍ କୃଷ୍ଣପ୍ରେମ ନିତ୍ୟସିଦ୍ଧ, କେବଳ ଅପ୍ରକାଶିତ । ନିତ୍ୟସିଦ୍ଧ କୃଷ୍ଣପ୍ରେମ ଯେଉଁ ପ୍ରକ୍ରିୟା ଦ୍ୱାରା ହୃଦୟ ମଧ୍ୟରୁ ପ୍ରକାଶିତ ହୁଏ ତାହାକୁ ସାଧନ ବୋଲି କୁହା ହୋଇ ଅଛି । ଯଥାଃ—

ନିତ୍ୟ ସିଦ୍ଧ କୃଷ୍ଣପ୍ରେମ ସାଧ୍ୟ କଭୁ ନୟ
ଶ୍ରବଣାଦି ଶୁଦ୍ଧ ଚିତ୍ତେ କରୟେ ଉଦୟ ।

( ଚୈଃ ଚଃ ମଧ୍ୟ ୨୨ଶପରି )

ଏହି ସାଧନ ଭକ୍ତି ଦୁଇ ପ୍ରକାର, ବୈଧୀ ଭକ୍ତି ଓ ରାଗାନୁଗା ଭକ୍ତି । ଶ୍ରୀମନ୍ କୃଷ୍ଣ ଦାସ କବିରାଜ ମହାଶୟ ସନାତନ ଶିକ୍ଷାରେ ଏ ବୈଧୀ ଭକ୍ତି ଓ

ଗ୍ରନ୍ଥମାନଙ୍କ ଭକ୍ତି ବିଷୟ ଭାବରେ ବୁଝାଇ ଅଛନ୍ତି. ଯେଉଁମାନେ ଏହା ଉତ୍ତମ ରୂପେ ବୁଝିବାକୁ ଇଚ୍ଛାନ୍ତି ସେମାନେ ଶ୍ରୀଚୈତନ୍ୟ ଚରିତାମୃତ ଓ ଶ୍ରୀଭକ୍ତିରସାମୃତ ସିନ୍ଧୁ ଆଦି ଗ୍ରନ୍ଥମାନ ବିଶେଷରୂପେ ଆଲୋଚନା କରି ପାରନ୍ତି । ମୁଁ କେବଳ ସାମାନ୍ୟ ଭାବରେ ଏମାନ ଉଲ୍ଲେଖ କରୁଅଛି ।

ଶ୍ରୀଭଗବାନଙ୍କଠାରେ ଲୋଭ ଉତ୍ପନ୍ନ ହୋଇ ନାହିଁ, ଅଥଚ ଶାସ୍ତ୍ର ଶାସନ ଭୟରୁ ଭଗବତ୍ ସେବାର ଯେଉଁ ପ୍ରବୃତ୍ତି ଜାତ ହୁଏ ତାହାକୁ ବୈଧୀ ଭକ୍ତି ବୋଲାଯାଏ ।

ରାଗହୀନ ଜନ ଭଜେ ଶାସ୍ତ୍ରେର ଆଜ୍ଞାୟ
ବୈଧୀ ଭକ୍ତି ବଲି ତାରେ ସର୍ବଶାସ୍ତ୍ରେ ଗାୟ ।

( ଚୈଃ ଚଃ ମଧ୍ୟ ୨୨ଶ ପର )

ଏହି ବୈଧୀ ଭକ୍ତିର ଅଙ୍ଗ ବହୁ ପ୍ରକାର । ଅର୍ଥାତ୍ ଅନେକ ରୂପରେ ଏହା ସାଧନ କରାଯାଏ । ଶ୍ରୀଭକ୍ତିରସାମୃତ ସିନ୍ଧୁ ଆଦି ଗ୍ରନ୍ଥରେ ୬୪ ପ୍ରକାର ଅଙ୍ଗ ଉଲ୍ଲେଖ ହୋଇଅଛି । ଯଥା—୧-ଗୁରୁପାଦାଶ୍ରୟ, ୨-ଗୁରୁଦେବଙ୍କଠାରୁ ଦୀକ୍ଷା ଗ୍ରହଣ ପୂର୍ବକ ତତ୍ତ୍ୱ ବିଷୟ ଶିକ୍ଷା, ୩-ବିଶ୍ୱାସ ସହକାରେ ଗୁରୁସେବା, ୪-ସାଧୁମାନଙ୍କର ଆଚରିତ ପଥର ଅନୁଗମନ, ୫-ସଦ୍ଧର୍ମ ଜିଜ୍ଞାସା, ୬-ଶ୍ରୀକୃଷ୍ଣଙ୍କର ପ୍ରସନ୍ନତା ନିମିତ୍ତ ଭୋଗାଦି ତ୍ୟାଗ, ୭- ଦ୍ୱାରକାଦି ଧାମରେ କିମ୍ବା ଗଙ୍ଗାଦି ତୀର୍ଥରେ ବାସ, ୮-ଯାବତ୍ ନିର୍ବାହ ପରିଗ୍ରହ ଅର୍ଥାତ୍ ବ୍ୟବହାରାଦିରେ ଯେତିକି ମାତ୍ର ଆବଶ୍ୟକ ତାହାହିଁ ଗ୍ରହଣ, ୯-ଏକାଦଶୀ ଜନ୍ମାଷ୍ଟମୀ ପ୍ରଭୃତି ହରିବାସର ମାନଙ୍କର ଯଥାଶକ୍ତି ସମ୍ମାନ, ୧୦-ଆମଳକୀ, ଅଶ୍ୱତ୍ଥ, ଗୋରୁ ବିପ୍ର ଓ ବୈଷ୍ଣବମାନଙ୍କ ପୂଜା, ୧୧-ଅବୈଷ୍ଣବ ସଙ୍ଗ ତ୍ୟାଗ, ୧୨-ଅନଧିକାରୀ ବ୍ୟକ୍ତିକୁ ଶିଷ୍ୟରୂପେ ଅଙ୍ଗୀକାର ନ କରିବା, ୧୩-ମହତ୍ତ୍ୱ ଆରମ୍ଭରେ ନିରୁଦ୍ୟମତା ( ମଠାଦି ନିର୍ମାଣ ଇତ୍ୟାଦି, ) ୧୪-ବହୁଗ୍ରନ୍ଥ ଅଧ୍ୟୟନ କିମ୍ବା ବହୁକଳା ଅଭ୍ୟାସ ବା ବ୍ୟାଖ୍ୟା ଅଥବା ବାଦ ବର୍ଜନ, ୧୫-ବ୍ୟବହାରରେ କୃପଣତା ଶୂନ୍ୟ ଅର୍ଥାତ୍ ଅନ୍ନବସ୍ତ୍ରାଦି ଅଲଭ୍ୟ ହେଲେ କିମ୍ବା ବିନଷ୍ଟ ହେଲେ ସେଥିପାଇଁ ବ୍ୟାକୁଳ ନ ହେବା, ୧୬-ଶୋକ ମୋହାଦିରେ ଅବଶୀଭୂତତା, ୧୭-ଅନ୍ୟ ଦେବତାଙ୍କୁ ଅବଜ୍ଞା ନ କରିବା, କିମ୍ବା

ଅନ୍ୟ ଧର୍ମଶାସ୍ତ୍ରକୁ ନିନ୍ଦା ନ କରିବା, ୧୮-ପ୍ରାଣିମାନଙ୍କୁ ଉଦ୍ବେଗ ନ ଦେବା, ୧୯-ସେବା ଅପରାଧ ଓ ନାମାପରାଧ ଯେପରି ଉତ୍ପନ୍ନ ନ ହୁଏ ଏଥିରେ ସାବଧାନ ରହିବା, ୨୦-ଶ୍ରୀକୃଷ୍ଣ କିମ୍ବା ତାହାଙ୍କର ଭକ୍ତ ବୃନ୍ଦଙ୍କ ନିନ୍ଦା ଶ୍ରବଣରେ ଅସହିଷ୍ଣୁତା ପ୍ରକାଶ, ୨୧-ବୈଷ୍ଣବ ଚିହ୍ନ ଧାରଣ କରିବା, ୨୨-ଶରୀରରେ ହରିନାମାକ୍ଷର ଲିଖନ, ୨୩-ନିର୍ମାଲ୍ୟ ଧାରଣ, ୨୪-ଶ୍ରୀଭଗବାନଙ୍କ ଅଗ୍ରରେ ନୃତ୍ୟ, ୨୫-ଦଣ୍ଡବତ ଓ ନମସ୍କାର, ୨୬-ଶ୍ରୀକୃଷ୍ଣଙ୍କର ବିଗ୍ରହ ଦର୍ଶନ କରି ଗାତ୍ରୋତ୍‌ଥାନ, ୨୭ ଅନୁ ବ୍ରଜ୍ୟା ଅର୍ଥାତ୍ ପ୍ରତିମୂର୍ତ୍ତି ପଶ୍ଚାତ୍ ପଶ୍ଚାତ୍ ଗମନ, ୨୮-ଶ୍ରୀଭଗବାନଙ୍କ ଅଧିଷ୍ଠାନ ସ୍ଥାନକୁ ଗମନ, ୨୯-ପରିକ୍ରମା, ୩୦-ଅର୍ଚ୍ଚନ (ପୂଜା) ୩୧-ପରିଚର୍ଯ୍ୟା (ଉପକରଣ ପରିଷ୍କାର ବା ଚାମରାଦି ବ୍ୟଜନ), ୩୨-ଗୀତ, ୩୩-ସଙ୍କୀର୍ତ୍ତନ ୩୪-ଜପ, ୩୫-ବିଜ୍ଞପ୍ତି (ନିବେଦନ) ୩୬-ସ୍ତବପାଠ, ୩୭-ନୈବେଦ୍ୟାସ୍ୱାଦନ, ୩୮-ଶ୍ରୀଚରଣାମୃତର ଆସ୍ୱାଦନ, ୩୯-ଧୂପମାଲ୍ୟାଦିର ସୌରଭ ଗ୍ରହଣ, ୪୦-ଶ୍ରୀମୂର୍ତ୍ତି ସ୍ପର୍ଶନ, ୪୧-ଶ୍ରୀମୂର୍ତ୍ତିଦର୍ଶନ, ୪୨-ଆରତି ଓ ଉତ୍ସବାଦି ଦର୍ଶନ ୪୩-ନାମ ଗୁଣ ଲୀଳାଦି ଶ୍ରବଣ, ୪୪-ଶ୍ରୀକୃଷ୍ଣଙ୍କ କୃପା ପ୍ରତି ଅପେକ୍ଷା କରି ରହିବା, ୪୫-ସ୍ମରଣ, ୪୬-ଧ୍ୟାନ, ୪୭-ଦାସ୍ୟ, ୪୮-ସଖ୍ୟ, ୪୯-ଆତ୍ମ ନିବେଦନ, ୫୦-ଶ୍ରୀକୃଷ୍ଣଙ୍କୁ ନିଜ ପ୍ରିୟ ବସ୍ତୁ ପ୍ରଦାନ, ୫୧-ଶ୍ରୀକୃଷ୍ଣଙ୍କ ନିମିତ୍ତ ସମସ୍ତ ଚେଷ୍ଟା, ୫୨-ସକଳ ଅବସ୍ଥାରେ ଶରଣାପତ୍ତି, ୫୩-ଶ୍ରୀକୃଷ୍ଣ ସମ୍ବନ୍ଧୀୟ ବସ୍ତୁ ମାତ୍ରର ସେବନ ଅର୍ଥାତ୍ ତୁଳସୀ ସେବନ, ୫୪-ଶ୍ରୀଭଗବତାଦି ଶାସ୍ତ୍ରର ସେବନ, ୫୫-ମଥୁରାମଣ୍ଡଳର ସେବନ, ୫୬-ବୈଷ୍ଣବାଦିଙ୍କ ସେବନ ୫୭-ନିଜ ବିତ୍ତାନୁରୂପ ମହୋତ୍ସବ କରଣ, ୫୮-କାର୍ତ୍ତିକ ମାସର ବିଶେଷ ସମାଦର, ୫୯-ଶ୍ରୀକୃଷ୍ଣଙ୍କ ଜନ୍ମ ଯାତ୍ରା, ୬୦-ଶ୍ରଦ୍ଧାପୂର୍ବକ ଶ୍ରୀମୂର୍ତ୍ତିର ପରିଚର୍ଯ୍ୟା ୬୧-ରସିକ ଭକ୍ତମାନଙ୍କସହ ଶ୍ରୀମଦ୍ଭାଗବତ ଅର୍ଥ ଆସ୍ୱାଦନ, ୬୨-ସଜାତୀୟ ସ୍ନିଗ୍ଧ ଆପଣାଠାରୁ ଶ୍ରେଷ୍ଠ ସାଧୁମାନଙ୍କର ସଙ୍ଗ, ୬୩-ନାମ ସଂକୀର୍ତ୍ତନ ୬୪-ଏବଂ ମଥୁରାମଣ୍ଡଳରେ ବାସ ।

ଏହି ୬୪ ଅଙ୍ଗ ସାଧନ ଭକ୍ତି ମଧ୍ୟରେ ସାଧୁସଙ୍ଗ, ନାମକୀର୍ତ୍ତନ,

ଭଗବତ ଶ୍ରବଣ, ମଥୁରାବାସ ଏବଂ ଶ୍ରଦ୍ଧାରେ ଶ୍ରୀମୂର୍ତ୍ତି ସେବନ ଏହି ପଞ୍ଚ ଅଙ୍ଗ ପ୍ରଧାନ ଯଥା ।—

ସାଧୁସଙ୍ଗ ନାମ କୀର୍ତ୍ତନ, ଭଗବତ ଶ୍ରବଣ,
ମଥୁରାବାସ ଶ୍ରୀମୂର୍ତ୍ତିର ଶ୍ରଦ୍ଧାୟ ସେବନ ।
ସକଳ ସାଧନ ଶ୍ରେଷ୍ଠ ଏଇ ପଞ୍ଚ ଅଙ୍ଗ,
କୃଷ୍ଣ ପ୍ରେମ ଜନ୍ମାୟ ଏଇ ପାଞ୍ଚେର ଅଳ୍ପ ସଙ୍ଗ ।

( ଚୈଃ ଚଃ ମଧ୍ୟଃ ୨୨ଶ ପରି )

ରାଗାନୁଗା ଭକ୍ତିର ସାଧନ ମଧ୍ୟ ଏହି ୬୪ ଅଙ୍ଗ କ୍ରମ । ତହିଁ ମଧ୍ୟରୁ କେତେକ ଅଙ୍ଗ ସାଧନରେ ଅନୁଷ୍ଠିତ ହୁଏ । ରାଗାନୁଗୀୟ ସାଧକମାନେ ଯେ ଏ ୬୪ ଅଙ୍ଗ ସାଧନ ପରିତ୍ୟାଗ କରନ୍ତି, ଏମନ୍ତ ନୁହେ । ସେମାନଙ୍କୁ ମଧ୍ୟ ଏ ସାଧନାଙ୍ଗମାନ ଅବଲମ୍ବନ କରିବାକୁ ହୁଏ । ତେବେ ପ୍ରଥମେ ରାଗାନୁଗା ଭକ୍ତି କାହାକୁ କହନ୍ତି ତାହା ବୁଝାଯାଉ, ବ୍ରଜରେ ଶ୍ରୀକୃଷ୍ଣଙ୍କର ପିତା ମାତା ସଖା ଓ ପ୍ରେୟସୀ ପ୍ରଧାନ ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କଠାରେ ଯେଉଁ ସ୍ୱାଭାବିକ ସ୍ନେହ ଓ ଭକ୍ତି ତାହାକୁ ରାଗାତ୍ମିକା ଭକ୍ତି ବୋଲଯାଏ ଏବଂ ଏହି ରାଗାତ୍ମିକା ଭକ୍ତିର କାର୍ଯ୍ୟମାନ ଶ୍ରବଣ କରି ସାଧକମାନେ ଯେତେବେଳେ ତଦ୍ରୂପ ଭଜନ କରିବାର ଅଭିଳାଷ କରି କେବଳ ଅନୁରାଗ ସହ ଲୋଭ ବଶତଃ ଭଜନ କରନ୍ତି । ସେମାନଙ୍କ ଭକ୍ତିକୁ ରାଗାନୁଗା ଭକ୍ତି ବୋଲଯାଏ ଯଥା ।—

ରାଗାତ୍ମିକ ଭକ୍ତିର ଲକ୍ଷଣ ଶୁନ ସନାତନ,
ରାଗାନୁଗା ଭକ୍ତି ମୁଖ୍ୟା ବ୍ରଜବାସୀ ଜନ,
ତାର ଅନୁଗତ ଭକ୍ତିର ରାଗାନୁଗା ନାମେ ।
ରାଗମୟୀ ଭକ୍ତିର ହୟ ରାଗାତ୍ମିକା ନାମ ।
ତାହା ଶୁଣି ଲୁବ୍ଧ ହୟ କୋନ ଭାଗ୍ୟବାନ ।

( ଚୈଃ ଚଃ ମଧ୍ୟଃ ୨୨ )

ଯେଉଁ ଦାସ, ସଖା, ପିତା ମାତା ଓ ଗୋପୀମାନଙ୍କର ଭାବାନୁରୂପ ଭାବ ଧାରଣ କରି ଶ୍ରୀକୃଷ୍ଣଙ୍କୁ ଶ୍ରଦ୍ଧା ପୂର୍ବକ ଯେଉଁ ମାନେ ଭଜନ କରନ୍ତି ସେମାନେ ରାଗାନୁଗ ଭକ୍ତ ମଧ୍ୟରେ ପରିଗଣିତ । ଏ ଭକ୍ତମାନେ ବାହ୍ୟକରେ

ଶ୍ରବଣ କୀର୍ତ୍ତନାଦି ସାଧନ କଲେହେଁ ପ୍ରେମର ଉତ୍କର୍ଷରେ ନିଜ ସିଦ୍ଧଦେହ ମନେ ମନେ କଳ୍ପନା କରି ଦିବା ରାତ୍ର ଶ୍ରୀକୃଷ୍ଣ ସେବାରେ ରତ ଥାଆନ୍ତି ।
ଯଥା ।—

ବାହ୍ୟ ଅନ୍ତର ଇହାର ଦୁଇତ ସାଧନ,
ବାହ୍ୟେ ସାଧକ ଦେହେ କରେ ଶ୍ରବଣ କୀର୍ତ୍ତନ
ମନେ ନିଜ ସିଦ୍ଧ ଦେହ କରିଯା ଭାବନ
ରାତ୍ରିଦିନେ କରେ ବ୍ରଜେ କୃଷ୍ଣେର ସେବନ ।
( ଚୈଃ ଚଃ ମଧ୍ୟ ୨୨ ପରି )

ବୈଧୀ ଭକ୍ତି ଓ ରାଗାନୁଗା ଭକ୍ତିର ବାହାରେ ସାଧନ ପ୍ରକ୍ରିୟା ଏକ ପ୍ରକାର ହେଲେହେଁ ରାଗାନୁଗା ଭକ୍ତିର ବୈଶିଷ୍ଟ୍ୟ ଏହି ଯେ, ଏହି ମାର୍ଗର ସାଧକ ନିଜ ଗୁରୁଦତ୍ତ ସିଦ୍ଧ ଦେହ ଭାବନା କରି ତଦ୍ଦ୍ଵାରା ଦିବାରାତ୍ର ବ୍ରଜରେ ଶ୍ରୀରାଧାଗୋବିନ୍ଦଙ୍କର ମାନସିକ ସେବା କରନ୍ତି । ଏବଂ ଶ୍ରୀକୃଷ୍ଣଙ୍କ ପ୍ରତି ସ୍ନେହ ମମତା ବୃଦ୍ଧି ହେବାରୁ ବୈଧିଭକ୍ତି ପ୍ରତି ସେତେ ଲକ୍ଷ୍ୟ ରହେ ନାହିଁ । ଅନୁରାଗ ବଶରୁ କୌଣସି ୨ ସ୍ଥଳରେ ବିଧିର ଲଙ୍ଘନ ମଧ ଘଟେ ।

ଭକ୍ତି ସାଧନର କ୍ରମ ବର୍ଣ୍ଣନରେ ଦେଖାଯାଏ, ପ୍ରଥମରେ ଶ୍ରଦ୍ଧା, ତତ୍ପରେ ସାଧୁସଙ୍ଗ, ତତ୍ପରେ ଭଜନ କ୍ରିୟା ଅର୍ଥାତ୍ ଶ୍ରୀକୃଷ୍ଣ କଥା ଶ୍ରବଣରେ ଏବଂ କୃଷ୍ଣ ଗୁଣ କୀର୍ତ୍ତନରେ ଇଚ୍ଛା ଜନ୍ମେ ଓ ତାହା ଅଭ୍ୟାସ କରୁ କରୁ ସମସ୍ତ ଅନର୍ଥ ନିବୃତ୍ତି ହୋଇଯାଏ ଏବଂ ଭକ୍ତିରେ ନିଷ୍ଠା ଆସି ପ୍ରବେଶ ହୁଏ । ଭକ୍ତର ଚିତ୍ତ ଯେତେବେଳେ କୃଷ୍ଣନିଷ୍ଠ ହୋଇ ଯାଏ ସେତେବେଳେ କୃଷ୍ଣ କଥା ଶ୍ରବଣାଦିରେ ରୁଚି ଜନ୍ମେ । ରୁଚିରୁ ଆସକ୍ତି ଏବଂ ଏହି ଆସକ୍ତି ଜାତ ହେଲେ ଭକ୍ତକୁ କୃଷ୍ଣବିଷୟ ଛଡା ଅନ୍ୟ ବିଷୟ ଭଲ ଲାଗେ ନାହିଁ । ଆସକ୍ତି ପ୍ରବଳ ହେଲେ ଭକ୍ତର ଯେଉଁ ମାନସିକ ଅବସ୍ଥା ଆସି ଉପସ୍ଥିତ ହୁଏ ତାହାକୁ ରତ୍ୟଙ୍କୁର ବୋଲାଯାଏ । ସେହି ରତି ପ୍ରଥମେ ତରଳ ଥାଏ, ତାହା କ୍ରମେ କ୍ରମେ ଗାଢ଼ତାକୁ ପ୍ରାପ୍ତ ହୋଇ ପ୍ରେମ ନାମ ଧାରଣ କରେ ।
ଯଥା—

କୋନ ଭାଗ୍ୟେ କୋନ ଜୀବେର ଶ୍ରଦ୍ଧା ଯଦି ହୟ
ତବେ ସେଇ ଜୀବ ସାଧୁ ସଙ୍ଗ କରୟ ।
ସାଧୁ ସଙ୍ଗ ହୈତେ ହୟ ଶ୍ରବଣ କୀର୍ତ୍ତନ
ସାଧନ ଭକ୍ତ୍ୟେ ହୟ ସର୍ବାନର୍ଥ ନିବର୍ତ୍ତନ ।
ଅନର୍ଥ ନିବୃତ୍ତି ହୈଲେ ଭକ୍ତିନିଷ୍ଠା ହୟ ।
ନିଷ୍ଠା ହୈତେ ଶ୍ରବଣାଦ୍ୟେର ରୁଚି ଉପଜୟ
ରୁଚି ହୈତେ ହୟ ତବେ ଆସକ୍ତି ପ୍ରଚୁର
ଆସକ୍ତି ହୈତେ ଚିତ୍ତେ ଜନ୍ମେ ରତିର ଅଙ୍କୁର ।
ସେଇ ରତି ଗାଢ଼ ହୈଲ ଧରେ ପ୍ରେମ ନାମ
ସେଇ ପ୍ରେମା ପ୍ରୟୋଜନ ସର୍ବାନନ୍ଦ ଧାମ ।

( ଚୈଃ ଚଃ ମଧ୍ୟ ୨୩ ପରି )

ଏହି ଯେ ସାଧନ ଭକ୍ତି ବୈଧୀ ଓ ରାଗାନୁଗା ଭେଦରେ ଦ୍ୱିବିଧ ସାଧନ କ୍ରମରେ ପ୍ରଦର୍ଶିତ ହୋଇଅଛି; ଏଥିର ପ୍ରାପ୍ତବ୍ୟ ଫଳ ମଧ୍ୟ ବିଭିନ୍ନ । ଭାବଜାତ ନ ହେବା ପର୍ଯ୍ୟନ୍ତ ଭକ୍ତ ବୈଧୀ ଭକ୍ତିରେ ପରିଗଣିତ । ଭାବ ଉଦୟ ହେଲେ ଭକ୍ତ ରାଗାନୁଗା ଭକ୍ତି ମଧ୍ୟରେ ପରିଗଣିତ ହୋଇ ପାରନ୍ତି । ରାଗାନୁଗା ଭକ୍ତିରେହିଁ ଶ୍ରୀକୃଷ୍ଣ ଭକ୍ତଙ୍କର ବଶ ହୁଅନ୍ତି । ସେହି ରାଗାନୁଗା ଭକ୍ତି ଦ୍ୱିବିଧ । ସମ୍ବନ୍ଧାନୁଗା ଓ କାମାନୁଗା । ଶ୍ରୀକୃଷ୍ଣଙ୍କ ସଙ୍ଗେ ପିତାମାତା ବା ସଖାଦି ସମ୍ବନ୍ଧ ସ୍ଥାପନ ପୂର୍ବକ ଶ୍ରୀନନ୍ଦ ଯଶୋଦା ଓ ଶ୍ରୀଦାମସୁବଳାଦି ସଖାଙ୍କ ଅନୁଗତ ହୋଇ ଯେଉଁ ଭଜନ ତାହା ସମ୍ବନ୍ଧାନୁଗା ଓ ଗୋପୀମାନଙ୍କର ଆନୁଗତ୍ୟରେ ଯେଉଁ ଭଜନ ତାହା କାମାନୁଗା ଭକ୍ତିନାମରେ ଅଭିହିତ । କାମାନୁଗା ହେଉ ବା ସମ୍ବନ୍ଧାନୁଗା ହେଉ କୌଣସି ପ୍ରକାର ରାଗାନୁଗା ଭକ୍ତିପଥରେ ଅଗ୍ରସର ହେଲେ ସାଧକର ବେଦଧର୍ମ ପ୍ରତିପାଳନ ପ୍ରତି ପ୍ରାୟ ଅପେକ୍ଷା ରହେ ନାହିଁ । ସେ ଯେ ଇଚ୍ଛା ସହିତ ତାହା ପରିତ୍ୟାଗ କରନ୍ତି ଏମନ୍ତ ନୁହେ । ସାର୍ବଭୌମ ଭଟ୍ଟାଚାର୍ଯ୍ୟ ମହା ନୈୟାୟିକ ପଣ୍ଡିତ । ବିଧିମାର୍ଗରୁ ଏକ ତିଳମାତ୍ର ବ୍ୟତିକ୍ରମ କରି ସେ ଚଳୁ ନଥିଲେ । ମହାପ୍ରଭୁ ତାଙ୍କୁ ଅନୁଗ୍ରହ ପୂର୍ବକ ଭାଗବତତତ୍ତ୍ୱ ଉପଦେଶ କରି ତାଙ୍କର ଦିବ୍ୟଚକ୍ଷୁ ଉନ୍ମୋଚନ

କଲେ । ତତ୍ପରେ ଏକ ଦିବସ ପରୀକ୍ଷା ସ୍ୱରୂପ ପ୍ରାତଃକାଳରୁ ସାର୍ବ ଭୌମ ଶଯ୍ୟାରୁ ନ ଉଠୁଣୁ ମହାପ୍ରଭୁ ସ୍ୱହସ୍ତରେ ମହାପ୍ରସାଦ ଘେନି ତାଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ଶଯ୍ୟାରୁ ଉଠାଇ ମହାପ୍ରସାଦ ଅର୍ପଣ କଲେ; ସାର୍ବଭୌମ ନିତ୍ୟକୃତ୍ୟ ସମାପନ ନ କରି ସେହି ମହାପ୍ରସାଦ କର୍ଦ୍ଦିକାର ଭାବରେ ସେବନ କଲେ । ମହାପ୍ରଭୁଙ୍କର ନିଜଗଣ ଶ୍ରୀଧାମ ନବଦ୍ୱୀପରୁ ଆସି ଶ୍ରୀପୁରୁଷୋତ୍ତମରେ ପହଞ୍ଚନ୍ତେ ମହାପ୍ରଭୁଙ୍କ ଇଙ୍ଗିତରେ ବାଣୀନାଥ ପଟ୍ଟନାୟକ ସେମାନଙ୍କ ସେବାର୍ଥ ମହାପ୍ରସାଦ ଗୁଣ୍ଡାଇ ନେଇ ଗଲେ । ମହାରାଜା ପ୍ରତାପ ରୁଦ୍ର ନିଜ ପ୍ରାସାଦଉପରୁ ଏହି ମହାପ୍ରସାଦ ନୀତହେବାର କାରଣ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କୁ ପଚାରିଲେ । ସେ କହିଲେ ମହାରାଜ ! ଭକ୍ତମାନଙ୍କ ସେବନାର୍ଥ ଦେବାପାଇଁ ମହାପ୍ରଭୁଙ୍କ ଆଦେଶ କ୍ରମେ ବାଣୀ-ନାଥ ଏ ମହାପ୍ରସାଦ ନେଉଅଛନ୍ତି । ମହାରାଜା ତହିଁ ପଚାରିଲେ ତୀର୍ଥରେ ପ୍ରବେଶ କରି ପ୍ରଥମେ କ୍ଷୌର ଏବଂ ଉପବାସ ବିଧି ବିଧି । ଏ ପୁଣି କି ରୂପ ନୂତନ ବିଧି । ସାର୍ବଭୌମ ଉତ୍ତର କଲେ, ମହାରାଜ ! ଆପଣ ଯାହା କହୁଅଛନ୍ତି ସେ ବିଧି ଧର୍ମ କିନ୍ତୁ ରଜୋମାର୍ଗର ପ୍ରଣାଳୀ ତାହାଠାରୁ ବଡ଼ ସୂକ୍ଷ୍ମ । କ୍ଷୌର ଉପବାସାଦି ଈଶ୍ୱରଙ୍କର ପରୋକ୍ଷ ଆଜ୍ଞା । କିନ୍ତୁ ମହାପ୍ରସାଦ ସେବନ ନିମନ୍ତେ ମହାପ୍ରଭୁ ସାକ୍ଷାତ ଆଜ୍ଞା କରୁଅଛନ୍ତି । ମହାପ୍ରଭୁଙ୍କ ଆଜ୍ଞା ଲଙ୍ଘନରେ ଅପରାଧ ହେବ ; ବିଶେଷତଃ ମହାପ୍ରଭୁ ଶ୍ରୀହସ୍ତରେ ସ୍ୱୟଂ ପରିବେଷଣ କରିବେ ଏହା କି ଛାଡ଼ିବାର କଥା । ମୋତେ ମହାପ୍ରଭୁ ଦିନେ ପରୀକ୍ଷା କରିବା ପାଇଁ ମୁଁ ଶଯ୍ୟାରୁ ନ ଉଠୁଣୁ ସେ ନିଜେ ସ୍ୱହସ୍ତରେ ମହାପ୍ରସାଦ ଘେନି ମୋ ନିକଟରେ ଉପସ୍ଥିତ । ମୁଁ ଶଯ୍ୟାରୁ ଉଠନ୍ତେ ମହାପ୍ରଭୁ ମୋତେ ପ୍ରସାଦ ଦେଲେ ଓ ମୁଁ ଦନ୍ତ ଧାବନାଦି ନ କରି ତାହା ସେବନ କଲି । ମହା-ପ୍ରଭୁ କୃପାକରି ହୃଦୟରେ ପ୍ରେମଭକ୍ତି ଉଦୟ କରାଇଲେ ଆଉ ବିଧି ପ୍ରତି ଭକ୍ତର ଲକ୍ଷ୍ୟ ରହେ କି । ଯଥା :—

ଯାରେ କୃପା କରି କରେ ହୃଦୟେ ପ୍ରେରଣ
କୃଷ୍ଣାଶ୍ରୟେ ସେଇ ଛାଡ଼େ ବେଦ ଲୋକ ଧର୍ମ ।

( ଚୈ : ଚ : ମଧ୍ୟ )

ଶ୍ରୀକୃଷ୍ଣ ଚରଣାରବିନ୍ଦରେ ଯାହାର ଅନୁରାଗ ଉପସ୍ଥିତ ହୁଏ ସେ ଯେହି ଅନୁରାଗ ବଳରେ ଶ୍ରୀକୃଷ୍ଣ ପ୍ରେମ ପାଇବାପାଇଁ ଧାବମାନ ହୁଏ । ନଦୀ ବଢ଼ିଲେ ସମ୍ମୁଖର ସମସ୍ତ ବାଧାବିଘ୍ନ ଅତିକ୍ରମ କରି ସାଗରେ ସଙ୍ଗେ ମିଳିତ ହୁଏ । ସେତେବେଳେ ବାନ୍ଧ ଅବାନ୍ଧ ମାନେ ନାହିଁ । କୃଷ୍ଣାନୁରାଗ ମଧ୍ୟ ତଦ୍ରୂପ । ଭକ୍ତର ଅନୁରାଗ ଜାତ ହେଲେ ସେ ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ଦେଖିବାକୁ ପାଏ ଓ ତାଙ୍କୁ ପାଇବାକୁ ଦଉଡ଼େ । ଭକ୍ତବତ୍ସଳ ଭଗବାନ ତାହାର ସମ୍ମୁଖରୁ ସମସ୍ତ ବାଧାମାନଙ୍କୁ ଅପସାରିତ ବା ଚୂର୍ଣ୍ଣିଭୂତ କରିଦଅନ୍ତି । ଅତଏବ କୃଷ୍ଣ ଓ କୃଷ୍ଣପ୍ରେମ ପ୍ରାପ୍ତି ବିଷୟରେ ଅନୁରାଗୀ ଭକ୍ତର କିଛି ମାତ୍ର କଷ୍ଟାନୁଭୂତ ହୁଏ ନାହିଁ ।

ଶ୍ରୀକୃଷ୍ଣଙ୍କଠାରେ ଏହିରୂପ ଅନୁରାଗ ଜାତ ହେଲେ ଭକ୍ତର ଅନ୍ୟ ବସ୍ତୁ ପ୍ରତି ରାଗ ଆଉ ରହେ ନାହିଁ । ଯଥା :—

କୃଷ୍ଣେର ଚରଣେ ଯଦି ହୟ ଅନୁରାଗ
କୃଷ୍ଣ ବିନୁ ଅନ୍ୟତ୍ର ତାର ନାହିଁ ରହେ ରାଗ ।

( ଚୈଃ ଚ ଃ ଅନ୍ତ )

ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣ ସମ୍ବନ୍ଧୀୟ ବସ୍ତୁ ଛଡ଼ା ଅନ୍ୟ ସମସ୍ତ ତାଙ୍କୁ ପିତା ଲାଗେ ।

ଏହି ଯେ ରାଗ ମାର୍ଗର ଭଜନ ଏହା ଅବଲମ୍ବନ କରିବାକୁ ହେଲେ ଶ୍ରୀବ୍ରଜବାସୀଜନଙ୍କର ଅନୁଗତ୍ୟ ଗ୍ରହଣ କରିବାକୁ ହେବ । ସେମାନଙ୍କ ଅନୁଗତ୍ୟ ବ୍ୟତିରେକେ ଏ ରାଗମାର୍ଗର ଭଜନ ହୋଇ ନ ପାରେ । ଅନ୍ୟ-ରିତ ଦୂରର କଥା । ଶ୍ରୀମନ୍ ନାରାୟଣଙ୍କ ଅଙ୍କଗତା ପ୍ରେୟସୀ ଲକ୍ଷ୍ମୀ ଠାକୁ-ରାଣୀ ଶ୍ରୀକୃଷ୍ଣ ଓ ଶ୍ରୀନାରାୟଣ ଏକ ଜାଣି ଏବଂ ଶ୍ରୀକୃଷ୍ଣଙ୍କର ଅଧିକତର ବୈଚିତ୍ର୍ୟ ଶ୍ରବଣ କରି ଶ୍ରୀକୃଷ୍ଣଙ୍କୁ ପ୍ରାପ୍ତି କାମନା କରି କଠୋର ତପସ୍ୟା କଲେ । କିନ୍ତୁ ଅଭିମାନିନୀ ଲକ୍ଷ୍ମୀ ବ୍ରଜଲଳନାମାନଙ୍କୁ କିପରି ଅନୁସରଣ କରିବେ ଏ ଅଭିମାନ ପରିତ୍ୟାଗ କରି ପାରିଲେ ନାହିଁ । ତେଣୁ ବ୍ରତାଚରଣ କରି ମଧ୍ୟ ସେ ବ୍ରଜରେ ବିଦଗ୍ଧ ଶିରୋମଣି ଶ୍ରୀକୃଷ୍ଣଚନ୍ଦ୍ରଙ୍କର ସଙ୍ଗ ପାଇ ପାରିଲେ ନାହିଁ । ସେଥିପାଇଁ ଶ୍ରୀମନ୍ ମହାପ୍ରଭୁ ବେଙ୍କଟ ଭଟ୍ଟଙ୍କୁ ଏହି ରାଗା-ନୁଗା ପଥର ଭଜନ ଶିକ୍ଷା ଦେଇ କହିଅଛନ୍ତି :—

ବ୍ରଜଲୋକେର ଭାବେ ପାଇଯେ ତାହାର ଚରଣ
ତାରେ ଈଶ୍ୱର କରି ନାହିଁ ଜାନେ ବ୍ରଜଜନ ।
କେହ ତାଁରେ ପୁତ୍ର ଜ୍ଞାନେ ଉଦୂଖଲେ ବାନ୍ଧେ
କେହ ସଖା ଜ୍ଞାନେ ଜିନି ଚଡେ ତାଁର କାନ୍ଧେ ।

ବ୍ରଜେନ୍ଦ୍ର ନନ୍ଦନ ତାଁରେ ଜାନେ ବ୍ରଜଜନ
ଐଶ୍ୱର୍ଯ୍ୟ-ଜ୍ଞାନେ ନାହିଁ ସମ୍ବନ୍ଧ ମନନ ।
ବ୍ରଜଲୋକେର ଭାବେ ଯେଇ କରଯେ ଭଜନ
ସେଇ ବ୍ରଜେ ପାଯେ ଶୁଦ୍ଧ ବ୍ରଜେନ୍ଦ୍ର ନନ୍ଦନ ।

ଶ୍ରୁତିଗଣ ଗୋପୀଗଣେର ଅନୁଗତ ହଞା
ବ୍ରଜେଶ୍ୱରୀ ସୁତ ଭଜେ ଗୋପୀଭାବ ଲଞା ।
ବାହ୍ୟାନ୍ତରେ ଗୋପୀଦେହ ବ୍ରଜେ ଯବେ ପାଇଲ
ସେଇ ଦେହେ କୃଷ୍ଣ ସଙ୍ଗେ ରାସ କ୍ରୀଡ଼ା କୈଲ ।

ଗୋପ ଜାତି କୃଷ୍ଣ ଗୋପୀ ପ୍ରେୟସୀ ତାହାର
ଦେବୀ ବା ଅନ୍ୟ ସ୍ତ୍ରୀ କୃଷ୍ଣ ନା କରେ ଅଙ୍ଗୀକାର ।
ଲକ୍ଷ୍ମୀ ଚାହେଁ ସେଇ ଦେହେ କୃଷ୍ଣେର ସଙ୍ଗମ
ଗୋପୀ ରାଗାନୁଗା ହଞା ନା କୈଲ ଭଜନ ।

ଅନ୍ୟ ଦେହେ ନା ପାଇଯେ ରାସ ବିଲାସ
ଅତଏବ ନାୟଂ ଶ୍ଳୋକେ କହେ ବେଦବ୍ୟାସ ।

ଶ୍ରୀକୃଷ୍ଣ ବ୍ରଜେନ୍ଦ୍ର ନନ୍ଦନ । ପୂର୍ଣ୍ଣ ମାଧୁର୍ଯ୍ୟର ଅକର । କେବଳ ଗୋପୀ ଭାବରୂପ ଦର୍ପଣ ସମ୍ମୁଖରେ ସେହି ଶ୍ରୀକୃଷ୍ଣମାଧୁର୍ଯ୍ୟ ପ୍ରତିକ୍ଷଣରେ ନବନବାୟମାନ ହୋଇ ପ୍ରତୀୟମାନ ହୁଏ । କୃଷ୍ଣମାଧୁର୍ଯ୍ୟ ଓ ଗୋପୀ ଭାବ ଦୁହେଁ ପରସ୍ପରଙ୍କ ସନ୍ଦର୍ଶନରେ କ୍ରମେ ଏମନ୍ତ ବଢ଼ିବାକୁ ଆରମ୍ଭ କରନ୍ତି ଯେ ସେ ଦୁହିଙ୍କ ମଧ୍ୟରୁ କେହି ପରାସ୍ତ ହୁଏ ନାହିଁ । କିନ୍ତୁ ସେହି ଯେ ଅଦ୍ଭୁତ କୃଷ୍ଣ ମାଧୁର୍ଯ୍ୟ ତାହା ଆସ୍ୱାଦନ କରିବାର ଏକମାତ୍ର ପଥ ରାଗ ମାର୍ଗରେ ଭଜନ । କର୍ମ, ତପ, ଯୋଗ, ଜ୍ଞାନ କିମ୍ବା ବିଧିଭକ୍ତି ଆଚରଣ ଦ୍ୱାରା ମଧ୍ୟ ସେ

ମାଧୁର୍ଯ୍ୟାସ୍ୱାଦନ କଦାପି କାହାର ଭାଗ୍ୟରେ ମିଳି ନ ପାରେ। ଏ ସମ୍ବନ୍ଧରେ ମହାପ୍ରଭୁଙ୍କର ଶ୍ରୀମୁଖୋକ୍ତି ଯଥା—

ଗୋପୀଭାବ ଦର୍ପଣ    ନବ ନବ କ୍ଷଣେ କ୍ଷଣ
ତାର ଆଗେ କୃଷ୍ଣେର ମାଧୁର୍ଯ୍ୟ
ଦୁହେଁ କରେ ହୁଡ଼ା ହୁଡ଼ି    ବାଢ଼େ ମୁଖ ନାହିଁ ମୁଡ଼ି
ନବ,ନବ ଦୋହାଁର ପ୍ରାଚୁର୍ଯ୍ୟ।
କର୍ମ ତପ ଯୋଗ ଜ୍ଞାନ    ବିଧି ଭକ୍ତି ଜପ ଧ୍ୟାନ
ଇହା ହୈତେ ମାଧୁର୍ଯ୍ୟ ଦୁର୍ଲଭ
କେବଳ ଯେ ରାଗମାର୍ଗେ    ଭଜେ କୃଷ୍ଣେ ଅନୁରାଗେ
ତାରେ କୃଷ୍ଣ ମାଧୁର୍ଯ୍ୟ ସୁଲଭ।

ଏହି ଯେ ରାଗମାର୍ଗର ଭଜନ ତାହା ଅବଲମ୍ବନ କଲେ ଭଜନକାରୀଙ୍କୁ ଦେବଋଣ, ପିତୃଋଣ, ଓ ଋଷିଋଣ ପ୍ରଭୃତିରେ ଋଣୀ ହେବାକୁ ପଡେ ନାହିଁ। ରାଗମାର୍ଗରେ କୃଷ୍ଣ ଭଜନ କଲାମାତ୍ରେ ଏ ସମସ୍ତ ଋଣଦାୟରୁ ମାନବ ମୁକ୍ତି ଲାଭ କରେ। ବିଧି ଧର୍ମ ତ୍ୟାଗ ପୂର୍ବକ ଏକାନ୍ତ ଭାବରେ ଶ୍ରୀକୃଷ୍ଣ ଚରଣାରବିନ୍ଦ ଆଶ୍ରୟକାରୀ ଜନର ନିଷିଦ୍ଧ ପାପାଚାରର ବିଷୟରେ ପ୍ରବୃତ୍ତି ହୁଏ ନାହିଁ। ଯଦି ଏମନ୍ତ ରାଗମାର୍ଗାବଲମ୍ବୀ ଭକ୍ତର ଅଜ୍ଞାନ ବଶତଃ କେତେବେଳେ ପାପ ଉପସ୍ଥିତ ହୁଏ ତେବେ, କୃଷ୍ଣ କୃପାପୂର୍ବକ ତାକୁ ସେଥିରୁ ମୁକ୍ତ କରନ୍ତି। ସେଥିପାଇଁ ସେ ଭକ୍ତକୁ ପ୍ରାୟଶ୍ଚିତ କରିବାକୁ ପଡେ ନାହିଁ। ମହାପ୍ରଭୁଙ୍କର ଶ୍ରୀସନାତନ ଗୋସ୍ୱାମୀଙ୍କୁ ଉପଦେଶ—

ବିଧି ଧର୍ମ ଛାଡ଼ି ଭଜେ କୃଷ୍ଣେର ଚରଣ
ନିଷିଦ୍ଧ ପାପାଚାରେ ତାର କଭୁ ନହେ ମନ।
ଅଜ୍ଞାନେଓ ହୟ ଯଦି ପାପ ଉପସ୍ଥିତ
କୃଷ୍ଣ ତାରେ ଶୁଦ୍ଧ କରେନ ନା କରେ ପ୍ରାୟଶ୍ଚିତ।
( ଚୈଃ ଚଃ ମଧ୍ୟ )

ଶ୍ରୀଭଗବାନ ଯେ ବିଧିର ଅପେକ୍ଷା ରଖନ୍ତି ନାହିଁ, ଭକ୍ତର ଅନୁରାଗ ଦେଖି ତାକୁ ଗ୍ରହଣ କରନ୍ତି, ଅବତାର ଶିରୋମଣି ଶ୍ରୀଗୌରଚନ୍ଦ୍ର ମଧ୍ୟ

ଭକ୍ତଗଣଙ୍କ ସଙ୍ଗେ ନଗର ସଂକୀର୍ତ୍ତନ କରୁଁ କରୁଁ ଶ୍ରୀଧରଙ୍କ ଗୃହରେ ଆସି ଉପସ୍ଥିତ ହେଲେ ଏବଂ ତାଙ୍କ ଗୃହର ବାହାରେ ଭଙ୍ଗାଲୌହ କଳସରେ ଯେଉଁ ଜଳ ଥିଲା ତାହା ନେଇ ଅତି ପ୍ରୀତିପୂର୍ବକ ପାନ କଲେ । ମହାପ୍ରଭୁଙ୍କର ଏ ଅପୂର୍ବ କରୁଣା ଦେଖି ଶ୍ରୀଧର ମୂର୍ଚ୍ଛିତ ହେଲେ ଓ ଅପର ସଙ୍ଗୀମାନେ ଚମତ୍କୃତ ହେଲେ ଏବଂ ଶ୍ରୀଧର ଗୃହର ବାହାରର ଜଳ ପାନକୁ ଲକ୍ଷ୍ୟ କରି ଶ୍ରୀଲ ବୃନ୍ଦାବନ ଦାସ କହିଅଛନ୍ତି—

ଯେ ଯେ ଦ୍ରବ୍ୟ ସେବକେର ସର୍ବଭାବେ ଖାୟ
ନୈବେଦ୍ୟାଦି ବିଧିର ଅପେକ୍ଷା ନାହିଁ ଚାୟ ।

ଅତଏବ ମହାପ୍ରଭୁଙ୍କ ଚେଷ୍ଟା ଓ ଆଚରଣରୁ ଦେଖାଗଲା ରାଗମାର୍ଗର ଭଜନହିଁ ସର୍ବୋତ୍କୃଷ୍ଟ ପଥ ।



# ଅଷ୍ଟମ ପରିଚ୍ଛେଦ ।

## ରସ ତତ୍ତ୍ୱ ।

କୌଣସି ଭାଗ୍ୟରୁ ମନୁଷ୍ୟର ଇଚ୍ଛା ଜାତ ହେଲେ ସେ ସାଧୁ ସଙ୍ଗ କରନ୍ତି ଏବଂ ସାଧୁ ସଙ୍ଗରୁ ଶ୍ରବଣ କୀର୍ତ୍ତନାଦି ଭକ୍ତି ଅଙ୍ଗମାନ ଯାଜନ କରୁ କରୁ ଭକ୍ତଙ୍କର କ୍ରମେ ଶ୍ରୀକୃଷ୍ଣଙ୍କ ଠାରେ ରତି ଜାତ ହୁଏ । ଏବଂ ତାହା କ୍ରମେ ଗାଢ଼ତା ପ୍ରାପ୍ତ ହେଲେ ପ୍ରେମନାମ ଧାରଣ କରେ । ସେହି ରତି ଅଧିକାରୀ ଭେଦରେ ପଞ୍ଚପ୍ରକାର । ଶାନ୍ତ, ଦାସ୍ୟ, ସଖ୍ୟ ବାତ୍ସଲ୍ୟ ଓ ମଧୁର । ଯଥା —

ଅଧିକାରୀ ଭେଦେ ରତି ପଞ୍ଚପରକାର
ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ମଧୁର ଆର ।

( ଚୈ ଃ ଚ ଃ ମଧ୍ୟ ୧୯ )

ଏହି ପାଞ୍ଚଗୋଟି ସ୍ଥାୟୀଭାବ ପାଞ୍ଚରସ ମଧ୍ୟରେ ପରିଗଣିତ । ଏପାଞ୍ଚରତି ଯେତେବେଳେ ରସରେ ପରିଣତ ହୁଏ ତେତେବେଳେ ତାହାର ବିଷୟ ଆଲମ୍ବନ ଶ୍ରୀକୃଷ୍ଣ ସେହି ରସମାନଙ୍କ ଦ୍ୱାରା ବଶ ହୁଅନ୍ତି ଏବଂ ଆଶ୍ରୟ ଆଲମ୍ବନ ପଞ୍ଚବିଧ ଭକ୍ତମାନେ ମଧ୍ୟ ସୁଖୀ ହୁଅନ୍ତି ।

ଦଧି ସଙ୍ଗରେ ଚିନି, କର୍ପୂର ଓ ମରିଚ ମିଶାଇଲେ ଯେପରି ଏକ ସୁନ୍ଦର ରସାଳ ପ୍ରସ୍ତୁତ ହୁଏ ଓ ଜିହ୍ୱାର ଅତୀବ ସୁଖ ଦାୟକ ହୁଏ ସେହିପରି ସ୍ଥାୟୀ ଭାବର ଏହି ପଞ୍ଚରତିର ସଙ୍ଗରେ ବିଭାବ, ଅନୁଭାବ, ସାତ୍ତ୍ୱିକ ଓ ବ୍ୟଭିଚାରୀ ଭାବମାନ ଯୁକ୍ତ ହୋଇ ରସରୂପେ ପରିଣତ ହୋଇ ତାହା

ସ୍ୱାଦ୍ୟମାନ ହୁଏ । ବିଭାବ, ଅନୁଭାବ, ସାତ୍ତ୍ୱିକ ଓ ବ୍ୟଭିଚାରୀ ଏମାନ ଶ୍ରୀଭକ୍ତି ରସାମୃତସିନ୍ଧୁ ଗ୍ରନ୍ଥରେ ଉତ୍ତମରୂପେ ପ୍ରଦର୍ଶିତ ହୋଇଅଛନ୍ତି । ତେବେ ଏମାନଙ୍କର ସାମାନ୍ୟ ଲକ୍ଷଣ ଏଠାରେ ବିବୃତ ହେଲା ।

ବିଭାବ—ରତିର ଆସ୍ୱାଦନର କାରଣମାନଙ୍କୁ ବିଭାବ ବୋଲାଯାଏ । ବିଭାବ ଦୁଇ ପ୍ରକାର—ଆଲମ୍ବନ ଓ ଉଦ୍ଦୀପନ । ଶ୍ରୀକୃଷ୍ଣ ଏବଂ ଭକ୍ତ ଏମାନେ ଆଲମ୍ବନ ଏବଂ ଶ୍ରୀକୃଷ୍ଣଙ୍କର ଗୁଣ, ଚେଷ୍ଟା, ହାସ୍ୟ, ଅଙ୍ଗଗନ୍ଧ, ବଂଶୀ, ଶୃଙ୍ଗ, ନୂପୁର, ପଦଚିହ୍ନ, ତୁଳସୀ ଓ ଏକାଦଶୀ ପ୍ରଭୃତି ଉଦ୍ଦୀପନ ।

ଅନୁଭାବ—ଯେଉଁମାନେ ଚିତ୍ତର ଭାବମାନଙ୍କୁ ପ୍ରକାଶ କରନ୍ତି ଏବଂ ବାହାରେ ବିକାର ସଦୃଶ ପ୍ରତୀୟମାନ ହୁଅନ୍ତି ସେମାନଙ୍କୁ ଅନୁଭାବ କୁହାଯାଏ । ନୃତ୍ୟ, ଭୂମିପତନ, ଗାନ, ଗାତ୍ରମୋଟନହୁଙ୍କାର, ହାଇ, ଦୀର୍ଘଶ୍ୱାସ ମେଲ, ଅଟ୍ଟହାସ୍ୟ ଓ ଲୋକାନପେକ୍ଷା ତ୍ୟାଗ ଏହିସବୁ ଅନୁଭାବର ଚିହ୍ନ ।

ସାତ୍ତ୍ୱିକ—ସାକ୍ଷାତ୍ ଶ୍ରୀକୃଷ୍ଣ ସମ୍ବନ୍ଧୀୟ ହେଉ ଅଥବା କିଞ୍ଚିତ ବ୍ୟବଧାନ ସହ ହେଉ ଭାବଦ୍ୱାରା ଚିତ୍ତ ଆକ୍ରାନ୍ତ ହେଲେ ତାହାକୁ ସତ୍ତ୍ୱ ବୋଲାଯାଏ ଏବଂ ଏହି ସତ୍ତ୍ୱରୁ ଉତ୍ପନ୍ନ ଭାବମାନଙ୍କୁ ସାତ୍ତ୍ୱିକ ବୋଲାଯାଏ, ଏହି ସାତ୍ତ୍ୱିକ ଭାବ ଆଠ ପ୍ରକାର । ଯଥା—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, କମ୍ପ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ ।

ବ୍ୟଭିଚାରୀ—ହୃଦୟର ଯେଉଁ ଭାବମାନ କ୍ଷଣେ କ୍ଷଣେ ସ୍ଥାୟୀ ଭାବରୁ ଉଦୟ ହୋଇ ଆସ୍ୱାଦିତ ହେବା ପରେ ପୁନଶ୍ଚ ସ୍ଥାୟୀ ଭାବରେ ଲୟ ହୋଇଯାଏ ତାହାକୁ ବ୍ୟଭିଚାରୀ ଭାବ ବୋଲାଯାଏ, ନିର୍ବେଦ, ବିଷାଦ, ଚିନ୍ତା ଦୈନ୍ୟ ପ୍ରଭୃତି ତାହା ତେତିଶ ପ୍ରକାର । ଅଧିକାଂଶ ଭେଦରେ ଏକ ବା ତତୋଧିକ ବ୍ୟଭିଚାରୀ ଭାବ ଯୁଗପତ୍ ବା କ୍ରମଶଃ ଭକ୍ତ ଚିତ୍ତରେ ଉଦୟ ହୋଇ ଭାବସନ୍ଧି, ଭାବସାବଲ୍ୟ ପ୍ରଭୃତି ଅପୂର୍ବ ରସମାନ ବିସ୍ତାର କରି ଭକ୍ତକୁ ନିତ୍ୟ ଅମୃତ ସାଗରରେ ବୁଡ଼ାଏ କିମ୍ବା ଭସାଏ ।

ଉପରେ ଲିଖିତ ହୋଇଥିବା ପଞ୍ଚରସ ମଧ୍ୟରୁ ପ୍ରତ୍ୟେକର କି କି ଲକ୍ଷଣ ତାହା କିଞ୍ଚିତ ଦେଖାଯାଉ । ଶ୍ରୀମନ୍ କବିରାଜ ଗୋସ୍ୱାମୀ ଶ୍ରୀରୂପାନୁଗ୍ରହରେ ଏମାନ ଦର୍ଶାଇ ଅଛନ୍ତି । ଯଥା—

ଭକ୍ତଭେଦେ ରତିଭେଦ ପଞ୍ଚପରକାର,
ଶାନ୍ତରତି ଦାସ୍ୟରତି ସଖ୍ୟରତି ଆର;
ବାତ୍ସଲ୍ୟ ରତି ମଧୁର ରତି ଏ ପଞ୍ଚ ଭେଦ,
ରତିଭେଦେ କୃଷ୍ଣ ଭକ୍ତିରସ ପଞ୍ଚଭେଦ ।
ଶାନ୍ତ ଦାସ୍ୟ ସଖ୍ୟ ବାତ୍ସଲ୍ୟ ମଧୁର ରସନାମ
କୃଷ୍ଣ ଭକ୍ତିରସ ମଧ୍ୟେ ଏ ପଞ୍ଚ ପ୍ରଧାନ ।
( ଚୈଃ ଚଃ ମଧ୍ୟ ୧୯ ପରି )

ଶାନ୍ତ ଭକ୍ତମାନଙ୍କର ଈଶ୍ୱର ବିଶ୍ୱାସ ଜାତ ହୁଏ । ଏଣୁ ସେମାନେ ଅନ୍ୟ କାମନା ସମସ୍ତ ତ୍ୟାଗ କରି ଈଶ୍ୱରଙ୍କଠାରେ ନିଷ୍ଠା ରଖନ୍ତି । ଶାନ୍ତ ଭକ୍ତଗଣ ଭକ୍ତଶ୍ରେଣୀ ଭୁକ୍ତ, ଅତଏବ ସେମାନଙ୍କର ସ୍ୱର୍ଗଲାଭ କାମନା କିମ୍ବା ମୋକ୍ଷ କାମନା ନ ଥାଏ । ଯଥା—

କୃଷ୍ଣବିନା ତୃଷ୍ଣାତ୍ୟାଗ ତାର କାର୍ଯ୍ୟ ମାନି
ଅତଏବ ଶାନ୍ତ, କୃଷ୍ଣଭକ୍ତ ଏକ ଜାନି ।
ସ୍ୱର୍ଗ ମୋକ୍ଷ କୃଷ୍ଣଭକ୍ତ ନରକ କରି ମାନେ
କୃଷ୍ଣ ନିଷ୍ଠା ତୃଷ୍ଣାତ୍ୟାଗ ଶାନ୍ତେର ଦୁଇଗୁଣେ ।
ଶାନ୍ତେର ସ୍ୱଭାବ କୃଷ୍ଣେ ମମତା ଗନ୍ଧହୀନ
ପରଂବ୍ରହ୍ମ ପରମାତ୍ମା ଜ୍ଞାନ ପ୍ରବୀଣ ।
କେବଳ ସ୍ୱରୂପ ଜ୍ଞାନ ହୟ ଶାନ୍ତରସେ
( ଚୈଃ ଚଃ ମଧ୍ୟ ୧୯ ପରି )

ଶ୍ରୀକୃଷ୍ଣଙ୍କୁ ଶାନ୍ତଭକ୍ତଗଣ ପରମାତ୍ମା ଅଥବା ପରମବ୍ରହ୍ମ ବୋଲି ଜାଣନ୍ତି, ଶ୍ରୀକୃଷ୍ଣଙ୍କଠାରେ ଦାସାଦି ଭକ୍ତଙ୍କ ପରି ଶାନ୍ତ ଭକ୍ତଙ୍କର ମମତା ଜାତ ହୁଏ ନାହିଁ ।

ଦାସ୍ୟରେ ଶ୍ରୀଭଗବାନଙ୍କର ପୂର୍ଣ୍ଣୈଶ୍ୱର୍ଯ୍ୟ ଜ୍ଞାନ ଜାତ ହୁଏ । ତେଣୁ ଦାସ ଭକ୍ତ ଆପଣାକୁ ଶ୍ରୀଭଗବାନଙ୍କର ଦାସ ମଣି ସର୍ବଦା ତାଙ୍କ ସେବାରେ ରତ ହୁଅନ୍ତି । ସେବା ହିଁ ସେମାନଙ୍କର ଜୀବନ । ସେବାଦ୍ୱାରା ଦାସମାନେ ଶ୍ରୀକୃଷ୍ଣଙ୍କୁ ସୁଖ ପ୍ରଦାନ କରନ୍ତି ଏବଂ ଆପେ ମଧ୍ୟ ସୁଖୀ ହୁଅନ୍ତି ।

ଈଶ୍ୱର ଜ୍ଞାନ ସମ୍ଭ୍ରମ ଗୌରବ ପ୍ରଚୁର
ସେବାକରି କୃଷ୍ଣେ ସୁଖ ଦେନ ନିରନ୍ତର ( ଚୈଃ ଚଃ ମଧ୍ୟ ୧୯ ପରି )

ଅତଏବ ଆପଣାକୁ ଶ୍ରୀକୃଷ୍ଣଙ୍କର ଦାସ ମଣି ତାଙ୍କର ସେବାରେ ନିଯୁକ୍ତ ହେବା ଦ୍ୱାରା ଯେ ସୁଖ ଲଭ ହୁଏ କୋଟି ବ୍ରହ୍ମ ସୁଖ ତାହାର ସମାନ ନୁହେ । ଏଥିପାଇଁ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ଜୀବମାନଙ୍କୁ ଶ୍ରୀକୃଷ୍ଣଙ୍କର ଦାସ ହେବାକୁ ଉପଦେଶ ଦେଇ କହିଅଛନ୍ତି—

କୃଷ୍ଣଦାସ ଅଭିମାନେ ଯେ ଆନନ୍ଦ ସିନ୍ଧୁ
କୋଟି ବ୍ରହ୍ମ ସୁଖ ନହେ ତାର ଏକ ବିନ୍ଦୁ ।
ମୁଞି ଦାସ ଚୈତନ୍ୟର ଆର ନିତ୍ୟାନନ୍ଦ
ଦାସ ଭାବ ସମ ନହେ ଅନ୍ୟତ୍ର ଆନନ୍ଦ ।
ପରମ ପ୍ରେୟସୀ ଲକ୍ଷ୍ମୀ ହୃଦୟେ ବସତି
ତେହୋ ଦାସ୍ୟ ସୁଖ ମାଗେ କରିୟା ବିନତି ।
ଦାସ୍ୟଭାବେ ଆନନ୍ଦିତ ପାରିଷଦ ଗଣ
ବିଧି ଭବ ନାରଦ ଆର ଶୁକ ସନାତନ ( ଚୈଃ ଚଃ ଆଦି ୬ଷ୍ଠ )

ବାତ୍ସଲ୍ୟ ରସର ମୂର୍ତ୍ତିମାନ ବିଗ୍ରହ ଶ୍ରୀମନ୍ ନନ୍ଦ ମହାରାଜା ମଧ୍ୟ ପ୍ରେମରେ କୃଷ୍ଣଦାସ୍ୟ ପ୍ରାର୍ଥନା କରିଥିଲେ । ଶୁଦ୍ଧ ସଖ୍ୟମୟ ଶ୍ରୀକୃଷ୍ଣ ସଖା ବ୍ରଜବାଳକଗଣ ମଧ୍ୟ ଦାସ ଭାବରେ ଶ୍ରୀକୃଷ୍ଣଙ୍କ ଚରଣ ସେବା କରନ୍ତି । ପରମ ପ୍ରିୟବର୍ଗ ଗୋପରମା ସକଳ, ମହାତ୍ମା ଉଦ୍ଧବ ଯେଉଁମାନଙ୍କ ପଦରେଣୁ ପ୍ରାର୍ଥୀ, ସେମାନେ ମଧ୍ୟ ଆପଣାକୁ କୃଷ୍ଣ ଦାସୀ ମଣି ତାଙ୍କର ସେବା କରନ୍ତି, ଏବଂ ସର୍ବୋପରି ନିଜ ପ୍ରାଣଠାରୁ ଅଧିକା ପ୍ରେୟସୀ ଶ୍ରେଷ୍ଠା ଶ୍ରୀରାଧିକା ମଧ୍ୟ ଶ୍ରୀକୃଷ୍ଣଙ୍କର ଚରଣ ସେବା କରନ୍ତି । ଯଥା —

ଅନ୍ୟେର କା କଥା ଯେଇ ନନ୍ଦ ମହାଶୟ
ତାଁର ସମ ଗୁରୁ କୃଷ୍ଣେର ଆର କେହୋ ନୟ ।
ଶୁଦ୍ଧ ବାତ୍ସଲ୍ୟ ଈଶ୍ୱର ଜ୍ଞାନ ନାହିଁ ଯାର
ତାହାକେଇ ପ୍ରେମେ କରୟ ଦାସ୍ୟ ଅନୁକାର ।
ତେହୋ ରତି ମତି ମାଗେ କୃଷ୍ଣେର ଚରଣେ

ତାହାର ଶ୍ରୀମୁଖ ବାଣୀ ତାହାତେ ପ୍ରମାଣେ ।
ଶୁନ ଉଦ୍ଧବ ! ସତ୍ୟ କୃଷ୍ଣ ଆମାର ତନୟ
ତେଁହୋ ଈଶ୍ୱର ହେନ ଯଦି ତୋମାର ମନେ ଲୟ ।
ତଥାପି ତାହାତେ ମୋର ଇଶ୍ୱ ମନୋବୃତ୍ତି
ତୋମାର ଈଶ୍ୱର କୃଷ୍ଣେ ହଉକ ମୋର ରତି ।

( ଅନ୍ତ୍ୟ ୭ମ ପରି )

ଶ୍ରୀକୃଷ୍ଣ ଯାହାଙ୍କୁ ସତତ ମାନ୍ୟ କରନ୍ତି ଏବଂ ଗୋଷ୍ଠରେ ଶୁଆଇ ନଜେ ଯାହାଙ୍କର ପଦ ସେବା କରନ୍ତି ସେହି ମାନ୍ୟାଗ୍ରଗଣ୍ୟ ଶ୍ରୀବଳଦେବ ମଧ୍ୟ ଶ୍ରୀକୃଷ୍ଣଙ୍କର ଦାସ ଭାବ ସ୍ୱୀକାର କରନ୍ତି । ଅପରର କଥା ଅଉ କଣ । ଯଥା –

ଅନେର କି କଥା ବଳଦେବ ମହାଶୟ
ଯାଁର ଭାବ ଶୁଦ୍ଧ ସଖ୍ୟ ବାତ୍ସଲ୍ୟାଦିମୟ ।
ତେଁହ ଆପନାକେ କରେ ଦାସ ଭାବନା
କୃଷ୍ଣଦାସ ଭାବ ବିନା ଅଛେ କୋନ ଜନା ।

( ଚୈ: ଚ ଅନ୍ତ୍ୟ ୭ମ ପରି )

ଶ୍ରୀଲ ବୃନ୍ଦାବନ ଦାସ ମଧ୍ୟ ଶ୍ରୀକୃଷ୍ଣ ଦାସର ମହିମା କୀର୍ତ୍ତନ କରି କହି ଅଛନ୍ତି ।—

ଅନନ୍ତ ବ୍ରହ୍ମାଣ୍ଡ ଧରେ ପ୍ରଭୁ ବଳରାମ
ସେହି ପ୍ରଭୁ ଦାସ୍ୟ କରେ କେବା ନୟ ଆନ ।

( ଚୈ: ଭା: ମଧ୍ୟ ୧୭ଅ )

ଅହା ! କୃଷ୍ଣଦାସ ହେବା କେଡ଼େ ସୌଭାଗ୍ୟର କଥା । ପରମ ସୌଭାଗ୍ୟ ନ ଥିଲେ କେହି ଭକ୍ତପଦ ପାଇ ନ ପାରେ । କୃଷ୍ଣଦାସ ପଦ ପାଇବାକୁ ପରମ ସାଧନା ଆବଶ୍ୟକ ଅଥବା ତାହା ଶ୍ରୀଭଗବତ୍ କୃପାରେ ମିଳିପାରେ । ସେଥିପାଇଁ ଶ୍ରୀଲ ବୃନ୍ଦାବନ ଦାସ କହିଅଛନ୍ତି ।—

ଅଳ୍ପ କରି ନାମାକହ ଦାସ ହେନ ନାମ
ଅଳ୍ପ ଭାଗ୍ୟେ ଦାସ ନାହିଁ କରେ ଭଗବାନ ।

( ଚୈ: ଭା: ମଧ୍ୟ ୧୬ ଶ ଅ )

ପୁଣି ଅନ୍ୟ ଏକ ଶ୍ଳୋକରେ କହୁଅଛନ୍ତି ।—

ଅଲ୍ପ ହେବ ନାମାନନ୍ଦ କୃଷ୍ଣଦାସ ନାମ
ଅଲ୍ପଭାଗେ ଦାସ ନାହିଁ କରେ ଭଗବାନ ।

( ଚୈଃ ଭାଃ ମଧ୍ୟ ୬ଷ୍ଠ )

ସେବକଙ୍କୁ ଶ୍ରୀକୃଷ୍ଣଙ୍କର ପିତା, ମାତା, ପତ୍ନୀ, ଭାଇ, ବନ୍ଧୁ । ସେବକ ଛଡ଼ା ତାଙ୍କର ଦ୍ୱିତୀୟ ଆଉ କେହି ନାହିଁ । ସେବକ ଯେ ରୂପ ଇଚ୍ଛା କରନ୍ତି କୃଷ୍ଣ ତଦ୍ଭାବାନୁଯାୟୀ ରୂପ ଧାରଣ କରନ୍ତି । ସେବକ ଯଦି ତାଙ୍କୁ ନିଜସନ୍ତାନ ଭାବନ୍ତି ସେ ତାଙ୍କଠାରେ ପ୍ରିୟ ସନ୍ତାନ । ସେବକ ଯଦି ସଖା ମନେ କରନ୍ତି ଶ୍ରୀଭଗବାନ ତାଙ୍କର ସଖାରୂପେ ବର୍ତ୍ତମାନ । ସେବକ ଯଦି ଭଗବାନଙ୍କୁ ନିଜ ପତିରୂପେ ସେବନ୍ତି ଭଗବାନ ତାଙ୍କଠାରେ ପତିରୂପେ ଉପଗତ ହୁଅନ୍ତି । ଦାସ ଇଚ୍ଛା କଲେ ଶ୍ରୀକୃଷ୍ଣଙ୍କୁ ବଶୀଭୂତ କରି ପାରନ୍ତି । ଯଥା ।—

ସେବକ କୃଷ୍ଣର ପିତା ମାତା ପତ୍ନୀ ଭାଇ
ଦାସବଇ କୃଷ୍ଣେର ଦ୍ୱିତୀୟ ଆର ନାଇ ।
ଯେଇରୂପ ଚିନ୍ତୟେ ଦାସେ ସେଇରୂପ ହୟ
ଦାସେ କୃଷ୍ଣେ କରିବାରେ ପାରୟେ ବିଜୟ ।

( ଚୈଃ ଭାଃ ମଧ୍ୟ ୬ଷ୍ଠ ଅ )

ଯେ ଭଗବତ୍ ଦାସତ୍ୱ ଅରେ ଲାଭ କରିଅଛି । ତାକୁ ରାଜପଦାଦି କିଛି ଭଲ ଲାଗେ ନାହିଁ । ତାହାର ପ୍ରଧାନ ସାକ୍ଷୀ ଶ୍ରୀରାମଚନ୍ଦ୍ରଙ୍କର ଚରଣାଶ୍ରିତ ବୀରବର ଶ୍ରୀହନୁମାନ । ସେହି ବୀର ହନୁମାନ ଏ କଳିଯୁଗରେ ଶ୍ରୀଗୌର ଚନ୍ଦ୍ରଙ୍କର ପାର୍ଷଦ ମୁରାରି ଗୁପ୍ତ । ମହାପ୍ରକାଶ ସମୟରେ ମହାପ୍ରଭୁ ମୁରାରିଙ୍କୁ ଡାକି କହିଲେ, "ମୁରାରି, ମୋର ରୂପ ଦର୍ଶନ କର," ମୁରାରି ଦେଖିଲେ ନବଦୁର୍ବାଦଳକାନ୍ତି ରଘୁବୀର ଧନୁ ଧାରଣ କରି ବୀରାସନରେ ଉପବେଶନ କରି ଅଛନ୍ତି ! ବାମରେ କନକ ପ୍ରତିମା ସୀତା ଓ ଦକ୍ଷିଣରେ ବୀର ଚୂଡ଼ାମଣି ରାମାନୁଜ ଲକ୍ଷ୍ମଣ । ବାନରେନ୍ଦ୍ରଗଣ ଚତୁର୍ଦ୍ଦିଗରେ ଘେରି ସ୍ତୁତି କରୁଅଛନ୍ତି । ମୁରାରି ନିଜ ପ୍ରଭୁଙ୍କର ଏହି ଐଶ୍ୱର୍ଯ୍ୟ ଦର୍ଶନ କରି ମୂର୍ଚ୍ଛିତ ହେଲେ । ମହାପ୍ରଭୁ ତାଙ୍କୁ ଡାକି କହିଲେ "ରେ ହନୁମାନ୍ ! ରାବଣ ଯେ ତୋ ପୁଚ୍ଛରେ ଅଗ୍ନି ପ୍ରଦାନ କରିଥିଲା ଓ ତୁ ଯେ ତଦ୍ୱାରା ତାର ସୁବର୍ଣ୍ଣମୟ ପୁରୀକୁ ପୋଡ଼ି

ଛାର୍ ଖାର କରି ଦେଲୁ ଏ ସମସ୍ତ କ ପାଶୋରି ଗଲୁ । " ମୁରାରି ବୈଦ୍ୟ ଲାଭ କରି କାନ୍ଦିବାକୁ ଲାଗିଲେ; ମହାପ୍ରଭୁ କହିଲେ "ମୁରାରି ! ବର ପ୍ରାର୍ଥନା କର । ମୁଁ ତୋତେ ବର ଦେବାକୁ ପ୍ରସ୍ତୁତ"। ମୁରାରି କହିଲେ "ପ୍ରଭୋ ! କି ବର ମୁଁ ମାଗିବି, ମୋର ରାଜ୍ୟାଦି ଐଶ୍ୱର୍ଯ୍ୟ ପ୍ରଭୃତି ଆବଶ୍ୟକ ନାହିଁ । ଜନ୍ମ ଜନ୍ମାନ୍ତରରେ ମୁଁ ତୋର ଶ୍ରୀଚରଣରେ ଦାସ ହୋଇ ସେବା କରୁଥାଏଁ । ଯେଉଁ-ଠାରେ ତୁ ପ୍ରଭୁ ଓ ମୁଁ ଦାସ ଏ ସମ୍ବନ୍ଧ ନାହିଁ ମୋତେ ସେ ସ୍ଥଳକୁ ଯେପରି କଦାପି ନ ନେ" । ଯଥା—

ତୁମି ପ୍ରଭୁ ମୁଇଁ ଦାସ ଇହା ନାହିଁ ଯଥା
ହେନ ସତ୍ୟ କର ପ୍ରଭୁ ନା ଫେଲିହ ତଥା ।
ସଦାର୍ଷିଦେ ତୁମି ଯଥା କର ଅବତାର
ତଥାଇ ତଥାଇ ଦାସ ହଇବ ତୋମାର ।

ମୁରାରି ଭଗବଦ୍‌ଦାସବର୍ଯ୍ୟ ହନୁମାନ, ସେ କପାଇଁ ଅନ୍ୟବରଗ୍ରହଣରେ ଏ ଉକ୍ତି ତାଙ୍କର ଉପଯୋଗୀ ହୋଇଅଛି । ଶ୍ରୀରାମଙ୍କଠାରେ ତାଙ୍କର ଐକାନ୍ତିକ ନିଷ୍ଠା ହେତୁ ସେ ସେହି ନବ ଦୁର୍ବାଦଳ ଶ୍ୟାମ ମୂର୍ତ୍ତି ଦେଖିବାକୁ ପାଇଲେ ।

ନିଜ ଦାସଠାରେ ଭଗବାନ ଆତ୍ମଗୋପନ କରି ରହି ପାରନ୍ତି ନାହିଁ । ଗୋପନରେ ବିଚରଣ କରୁଥିଲେହେଁ ଦାସଠାରେ ଆତ୍ମ ପ୍ରକାଶ କରନ୍ତି । ମହାପ୍ରଭୁ ନବଦ୍ୱୀପରେ ଅବତୀର୍ଣ୍ଣ ହୋଇ ବାଳକରୂପରେ ଶଚୀଗୃହ ଆଲୋକିତ କରି ବିଚରଣ କରୁଅଛନ୍ତି । ସମସ୍ତେ ବିଷ୍ଣୁ ମାୟାରେ ବିମୋହିତ, ଏ ଚପଳ ବାଳକଟି ଯେ ସ୍ୱୟଂ-ଭଗବାନ, କେହି ଏହା ଜାଣନ୍ତି ନାହିଁ । ଏକ ଦିନରେ ଜଣେ ତୈର୍ଥିକ ବ୍ରାହ୍ମଣ ଶ୍ରୀଜଗନ୍ନାଥ ମିଶ୍ରଙ୍କ ଘରେ ଅତିଥି ହେଲେ । ବିପ୍ରବର ଶ୍ରୀବାଳଗୋପାଳଙ୍କ ଉପାସକ । ଗୋପାଳଙ୍କୁ ସମର୍ପଣ ନ କରି କିଛି ଖାଆନ୍ତି ନାହିଁ । ଶ୍ରୀ ଜଗନ୍ନାଥ ମିଶ୍ର ମହାସମାଦରରେ ତାଙ୍କୁ ଗୃହରେ ରଖି ପାକ ସାମଗ୍ରୀ ସମସ୍ତ ଯୋଗାଡ଼ କରିଦେଲେ । ସୁକୃତ ବିପ୍ର ପାକ ସମାପନ କରି ଶ୍ରୀକୃଷ୍ଣଙ୍କୁ ନିବେଦନ କରିବାକୁ ବସି ଧ୍ୟାନ କରନ୍ତେ ଦିଗମ୍ବର ମୂର୍ତ୍ତି ଶ୍ରୀ ଶଚୀନନ୍ଦନ ଅଲକ୍ଷିତରେ ଆସି ସେ ଅନ୍ନରୁ ଏକ ମୁଷ୍ଟି ଗ୍ରହଣ କରି ମୁଖରେ

ହେଲେ । ବିପ୍ରବରଙ୍କର ଧ୍ୟାନଭଙ୍ଗ ହେଲା ଓ ସେ ହାସ୍ୟ ହାସ୍ୟ କରିବାକୁ ଲାଗିଲେ । ଏହା ଦେଖି ଶ୍ରୀଜଗନ୍ନାଥ ମିଶ୍ର ଚଞ୍ଚଳ ଶିଶୁଟିକୁ ପ୍ରହାର କରିବାକୁ ବସିଲେ ଅତିଥି ତାହାଙ୍କ କର ଧରି ନିବାରଣ କଲେ । ମିଶ୍ରଙ୍କ ଅନୁରୋଧରେ ଅତିଥି ଦ୍ୱିତୀୟ ଥର ପାକ କଲେ ଏବଂ ଶ୍ରୀଶଚୀଦେବୀ ନିଜ ଚଞ୍ଚଳ ଶିଶୁଟିକୁ ଦୂରସ୍ଥ ଏକ ଗୃହକୁ ନେଇଗଲେ ।

ବିପ୍ରବର ଦ୍ୱିତୀୟଥର ପାକ ସମାପନ କରି ପୁନର୍ବାର ବାଳଗୋପାଳଙ୍କୁ ଧ୍ୟାନ କରନ୍ତେ ଶ୍ରୀ ଶଚୀସୁତ ମାତାର ସମସ୍ତ ନାରୀମାନଙ୍କୁ ଫାଙ୍କି ଦେଇ ଅଲକ୍ଷିତଭାବେ ଅତିଥିଙ୍କଠାରେ ଉପସ୍ଥିତ ହେଲେ ଓ ଏକମୁଷ୍ଟି ଅନ୍ନ ନେଇ ପଳାଇଗଲେ । ବିପ୍ରବର ହାସ୍ୟ ହାସ୍ୟ କରନ୍ତେ ମିଶ୍ରବର ଯଷ୍ଟି ଧରି ନିମାଇଙ୍କୁ ପ୍ରହାର କରିବାକୁ ଦଉଡ଼ିଲେ । ଉପସ୍ଥିତ ବ୍ୟକ୍ତିଗଣ ଆସି ମିଶ୍ରଙ୍କ କରରୁ ଯଷ୍ଟି ଛଡ଼ାଇ ନେଲେ । ମିଶ୍ର ମଥାରେ ହାତ ଦେଇ ବସିଲେ । ଏହିପରି ସମୟରେ ମହାପ୍ରଭୁଙ୍କ ଅଗ୍ରଜ ବିଶ୍ୱରୂପ ଆସି ଅତିଥିଙ୍କୁ ବହୁ ଅନୁନୟ ପୂର୍ବକ ପୁନର୍ବାର ପାକ କରାଇଲେ । ଏଥର ସମସ୍ତଙ୍କ ଯୁକ୍ତି କ୍ରମେ ଜଗନ୍ନାଥ ମିଶ୍ର ଚଞ୍ଚଳ ଚୂଡ଼ାମଣି ନିମାଇଙ୍କୁ ଗୃହମଧ୍ୟରେ ରଖି ବାହାରୁ କବାଟ କିଳି ଆସିଲେ । ଏଥିମଧ୍ୟରେ ଯୋଗମାୟା ପ୍ରଭାବରେ ସମସ୍ତଙ୍କୁ ନିଦ୍ରା ଆସିଲା । ଅତିଥି ପାକ ସମାପନ କରି ବାଳଗୋପାଳଙ୍କୁ ଧ୍ୟାନ କରନ୍ତେ ଗୌର କାନ୍ତି ବାଳଗୋପାଳ ଆସି ପ୍ରବେଶ କଲେ । ତାଙ୍କୁ ପୁନର୍ବାର ଆସିବାର ଦେଖି ଅତିଥି ବ୍ରାହ୍ମଣ ଡରରେ ଡାକିବାକୁ ଲାଗିଲେ । ସମସ୍ତେତ ନିଦ୍ରାରେ ତାଙ୍କ କଥା ଶୁଣୁଛି କିଏ । ମହାପ୍ରଭୁ ଧୀରେ ଧୀରେ ମନ୍ଦ ମନ୍ଦ ହସି କହିଲେ "ବିପ୍ରବର ! ତୁମ୍ଭେ ତ ମୋତେ ବାରମ୍ବାର ଡ଼ାକୁଅଛ, ମୁଁ ନ ଆସି ରହନ୍ତି କିପରି ? ତୁମ୍ଭେ ଯେ ମୋର ମନ୍ତ୍ର ଜପ କରି ମୋତେ ଡ଼ାକୁଅଛ । ମୋତେ ଦେଖିବା ପାଇଁ ସର୍ବଦା ମନରେ ଚିନ୍ତା କରୁଅଛ । ତେଣୁ ତୁମ୍ଭଙ୍କୁ ଦର୍ଶନ ଦେବା ପାଇଁ ମୁଁ ତୁମ୍ଭ ନିକଟରେ ଉପସ୍ଥିତ" । ଏହା କହି ପ୍ରଥମେ ଶଙ୍ଖ ଚକ୍ର ଗଦାପଦ୍ମଧାରୀ ଚତୁର୍ଭୁଜ ମୂର୍ତ୍ତି ଦେଖାଇଲେ । ବିପ୍ରବର ବିପ୍ର ଦେଖିଲେ । ସେ ଦୁଇ କରରେ ମୁରଲୀ ଧାରଣ କରିଅଛନ୍ତି ଓ ତୃତୀୟ କରରେ ନବନୀତ ଧରି ଚତୁର୍ଥ କରରେ ଭକ୍ଷଣ କରୁଅଛନ୍ତି । ଏହିରୂପ ପରମ

ସୁଧନ୍ୟ ବାଳକରେ ଏହି ମୂର୍ତ୍ତିର ଦର୍ଶନ ଦେଲେ । ଅପୂର୍ବ ଶିଖିପୁଚ୍ଛ ଭୂଷିତ ମକରକୁଣ୍ଡଳ ଦୋଳାୟମାନ ନବଗୁଞ୍ଜା ପରିବେଷ୍ଟିତ ମଧୁର ଅଙ୍ଗ ଶୋଭା ଦର୍ଶନ କରି ଆନନ୍ଦରେ ମୂର୍ଚ୍ଛିତ ହେଲେ । ଶ୍ରୀଗୋପାଳ ନିଜ କର କମଳ ସ୍ପର୍ଶରେ ତାଙ୍କୁ ଚେତନ କରାଇ କହିଲେ । "ହେ ପ୍ରବର ତୁମ୍ଭେ ଜନ୍ମ ଜନ୍ମେ ମୋର ଦାସ । ଦ୍ୱାପର ଯୁଗରେ ଶ୍ରୀନନ୍ଦ ଗୃହରେ ତୁମ୍ଭେ ଏହିରୂପ ଅପୂର୍ବ ହୋଇ ମୋର ଅଦ୍ଭୁତ ଲୀଳା ଦେଖିଥିଲ । ବର୍ତ୍ତମାନ ମଧ୍ୟ ଏ ନବଦ୍ୱୀପରେ ତାହା ଦେଖିବାକୁ ପାଇଲ । ତୁମ୍ଭେ ମୋର ଚିରଦାସ । ସେଥିଯୋଗୁଁ ତୁମ୍ଭଙ୍କୁ ମୋର ଏ ପ୍ରକାଶ ଦେଖାଇଲି" । ଯଥା :-

ଏତେକ ଆମାର ତୁମି ଜନ୍ମେ ଜନ୍ମେ ଦାସ
ଦାସ ବିନୁ ଅନ୍ୟ ମୋର ନା ଦେଖେ ପ୍ରକାଶ ।

( ଚୈଃ ଭାଃ ଆଦି ୪ଅ )

ଅହୋ ! ଏ ଯେ ବାଳଗୋପାଳରୂପୀ ଶ୍ରୀମହାପ୍ରଭୁଙ୍କର ଶ୍ରୀମୁଖର ବାଣୀ । ଆହା ! ଦାସ, ଭଗବାନଙ୍କର ସମସ୍ତ ଗୂଢ଼ତତ୍ତ୍ୱ ଜାଣିବାକୁ ସକ୍ଷମ । ଦାସବତ୍ସଳ ଭଗବାନ ନିଜପ୍ରିୟ ଦାସଠାରେ ସମସ୍ତ ପ୍ରକାଶ କରନ୍ତି । କିଛି ଗୋପନ କରି ରଖି ପାରନ୍ତି ନାହିଁ । ଅତଏବ ଏ ସମସ୍ତରୁ ଏହା ସ୍ପଷ୍ଟରୂପେ ପ୍ରତୀତ ହେଉଅଛି ଯେ କୃଷ୍ଣଦାସର ପଦ ଅତି ଉଚ୍ଚ । ହାୟ ! ଯେତେକ ଏ ଦୀନ କୋଟି ଜନ୍ମ ପରେ ଅନ୍ତର୍ନିହିତ କପଟ ସମସ୍ତ ପରିତ୍ୟାଗ ପୂର୍ବକ ସରଳ ଭାବରେ କୃଷ୍ଣ ଦାସ ହେବାକୁ ସକ୍ଷମ ହେବ । ହେ ଦୟାଳୁ ବୈଷ୍ଣବଗଣ, ଆପଣମାନେ ଶ୍ରୀଚରଣରେଣୁ ଦାନ କରି ମୋତେ ଶ୍ରୀରାଧାକୃଷ୍ଣଙ୍କ ଶ୍ରୀଚରଣ ସେବା ପ୍ରଦାନ କରନ୍ତୁ ।

ସଖ୍ୟରସରେ ପ୍ରିୟ ସଙ୍ଗୀଗଣ ଭଗବାନଙ୍କୁ ଗଟଣ ଆପଣାର ସଙ୍ଗୀ ବୋଲି ମଣନ୍ତି । ସେଠାରେ ଦାସୋଚିତ ଗୌରବ ଅଥବା ସମ୍ଭ୍ରମ ନାହିଁ । କେବଳ ବିଶ୍ୱାସ । ସଖା କେତେବେଳେ ସ୍ନେହାଧିକ୍ୟରେ ଶ୍ରୀକୃଷ୍ଣଙ୍କର ସେବା କରୁଅଛନ୍ତି । କେତେବେଳେ ବା ଶ୍ରୀକୃଷ୍ଣଙ୍କଠାରୁ ସେବା ଗ୍ରହଣ କରୁଅଛନ୍ତି । କେତେବେଳେ ତାଙ୍କୁ ନିଜସ୍କନ୍ଧରେ ଆରୋହଣ କରାଉଅଛନ୍ତି ।

କେତେବେଳେ ଅବା ତାଙ୍କ ସ୍କନ୍ଧ ଉପରେ ଚଢ଼ୁଅଛନ୍ତି । ଶ୍ରୀକୃଷ୍ଣଙ୍କ ପ୍ରତି ସଖାମାନଙ୍କର ମମତାର ସୀମା ନାହିଁ । କୌଣସି ସ୍ୱାଦୁ ପଦାର୍ଥ ପାଇଲେ ଶ୍ରୀକୃଷ୍ଣଙ୍କୁ ନ ଖୁଆଇବା ଯାଏ ମନ ସ୍ଥିର ନାହିଁ । କୌଣସି ସୁନ୍ଦର ଦର୍ଶନୀୟ ପଦାର୍ଥ ଦେଖିଲେ ଶ୍ରୀକୃଷ୍ଣଙ୍କୁ ନ ଦେଖାଇବା ଯାଏ ମନର ତୃପ୍ତି ନାହିଁ । ସେମାନେ ଶ୍ରୀକୃଷ୍ଣଙ୍କୁ ନିଜପ୍ରାଣର ପ୍ରାଣ ବୋଲି ମନେ କରନ୍ତି । ସେହି ଗୁଣରେ ଶ୍ରୀକୃଷ୍ଣ ସେମାନଙ୍କର ବଶ ହୁଅନ୍ତି । ଯଥା ।—

କାନ୍ଧେ ଚଢ଼େ କାନ୍ଧେ ଚଢ଼ାଇ କରେ କ୍ରୀଡ଼ାରଣ
କୃଷ୍ଣ ସେବେ କୃଷ୍ଣେ କରାନ୍ତି ଆପନ ସେବନ ।
ବିଶ୍ରମ୍ଭ ପ୍ରଧାନ ସଖ୍ୟ ଗୌରବ ସମ୍ଭ୍ରମ ହୀନ
ଅତଏବ ସଖ୍ୟରସେର ତିନଗୁଣ ଚିହ୍ନ ।
ମମତା ଅଧିକ କୃଷ୍ଣେ ଆତ୍ମ ସମ ଜ୍ଞାନ
ଅତଏବ ସଖ୍ୟରସେ ବଶ ଭଗବାନ ।

( ଚୈଃ ଚଃ ମଧ୍ୟ ୮ମ)

ଅନ୍ୟତ୍ର ଏକ ସ୍ଥାନରେ ଶ୍ରୀଲକୃଷ୍ଣଦାସ କହୁଅଛନ୍ତି ।—

ସଖା ଶୁଦ୍ଧ ସଖ୍ୟେ କରେ ସ୍କନ୍ଧେ ଆରୋହଣ
ତୁମ କୋନ ବଡ଼ ଲୋକ ତୁମି ଆମି ସମ ।

( ଚୈଃ ଚଃ ଆଦି ୪ ପରି )

ଏହିରୂପେ ଯେ କୃଷ୍ଣଙ୍କୁ ଅତି ସ୍ନେହରେ ନିଜର ସମାନ ଅଥବା ନିଜପ୍ରାଣଠାରୁ ଅଧିକ ପ୍ରିୟବୋଲି ସଖାମାନେ ଭାବନ୍ତି ସେଥିରେ ଶ୍ରୀକୃଷ୍ଣ ସେମାନଙ୍କର ବଶ ହୋଇ ପଡ଼ନ୍ତି । ଶ୍ରୀକୃଷ୍ଣଙ୍କର ନିଜ ଉକ୍ତି ଏହାର ପ୍ରମାଣ । ଯଥା ।—

ଆପନାକେ ବଡ଼ମାନେ ଆମାରେ ସମ ହୀନ
ସେଇ ଭାବେ ହଇ ଆମି ତାହାର ଅଧୀନ ।

( ଚୈଃ ଚଃ ଆଦି ୪ ର୍ଥ ପରି ]

ବାତ୍ସଲ୍ୟରସର ଭକ୍ତଗଣ ଶ୍ରୀ ଭଗବାନଙ୍କୁ ନିଜ ସନ୍ତାନ ବୋଲି ମନେ କରନ୍ତି । ଅତଏବ ପାଳକ ଜ୍ଞାନ ଏବଂ ଶ୍ରୀକୃଷ୍ଣଙ୍କୁ ପାଲ୍ୟଜ୍ଞାନ ; ଏବଂ ସେଥିପାଇଁ ତାଙ୍କ ତାଡ଼ନ ଭର୍ତ୍ସନ ମଧ୍ୟ କରନ୍ତି । ଯଥା ।—

ମମତା ଅଧିକ୍ୟ ତାଡ଼ନ ଭର୍ତ୍ସନ ବ୍ୟବହାର । [ ଚୈଃ ଚଃ ମଧ୍ୟ ୮ମ ]

ଶ୍ରୀ ଭଗବାନଙ୍କ ପ୍ରତି ଯାହାର ଶୁଦ୍ଧ ବାତ୍ସଲ୍ୟ ଭାବ ସେ ଅବା ତାଙ୍କୁ ତାଡ଼ନ ଭର୍ତ୍ସନ ନ କରିବ କାହିଁକି । କୋଟି ଐଶ୍ୱର୍ଯ୍ୟ ଦେଖିଲେ ମଧ୍ୟ ବାତ୍ସଲ୍ୟର ମହା ତରଙ୍ଗରେ ସେ ଐଶ୍ୱର୍ଯ୍ୟଗିରି ବୁଡ଼ି ଯାଏ ।

ଏକ ସମୟରେ ଶିଶୁ ନିମାଇଁ ଜନନୀଙ୍କୁ ସ୍ନେହରେ ପ୍ରହାର କରନ୍ତେ ସ୍ନେହମୟୀ ଶଚୀ ମୂର୍ଚ୍ଛାର ଛଳନା କଲେ; ନିମାଇ ମାତାଙ୍କୁ ମୂର୍ଚ୍ଛିତା ଦେଖି କାନ୍ଦିବାକୁ ଲାଗିଲେ । ଉପସ୍ଥିତ ନାରୀମାନେ କହିଲେ ନିମାଇ ତୁ ମାରିବାରୁ ତୋର ଜନନୀ ମୂର୍ଚ୍ଛା ଗଲେ । ତୁ ଯଦି ଦୁଇଗୋଟି ନାରିକେଳ ଆଣିଦେବୁ ତେବେ ତୋର ମାତା ଜୀଇଁବେ । ଏହା ଶୁଣି ଶିଶୁ ନିମାଇ ସେହିକ୍ଷଣି ଦୁଇଗୋଟି ଉତ୍ତମ ନାରିକେଳ ଆଣି ଉପସ୍ଥିତ କରାଇଲେ । ଏହା ଦେଖି ସମସ୍ତ ନାରୀଗଣ ଆଶ୍ଚର୍ଯ୍ୟ ହେଲେ ଓ ଭାବିଲେ ଏ ଶିଶୁ ଏ ନାରିକେଳ କେଉଁଠାରୁ ଆଣିଲା; ଜନନୀ ଶଚୀ ଦେବୀ ମଧ୍ୟ ବିସ୍ମିତା ହେଲେ । ନିମାଇ ତାଙ୍କ ଗର୍ଭରେ ଥିବା କାଳରୁ ସେ ଦିବସ ପର୍ଯ୍ୟନ୍ତ ଯେଉଁ ଯେଉଁ ଅଲୌକିକ ଘଟଣା ସବୁ ଘଟିଥିଲା, ସମସ୍ତ ଏକେ ଏକେ ଆସି ତାଙ୍କ ଚିତ୍ତ ପଟରେ ଉଦିତ ହେଲା; ସେ ଭାବିଲେ, ଏତ ମୋର ତନୟ ନୁହନ୍ତି ଏ ଯେ ଜ୍ୟୋତିର୍ମୟ ସନାତନ ପୁରୁଷ ନାରାୟଣ । କିନ୍ତୁ ଏମନ୍ତ ସମୟରେ ଶିଶୁ ନିମାଇ ତାଙ୍କ କୋଳ ମଧ୍ୟରେ ପ୍ରବେଶ କରନ୍ତେ ଶଚୀ ଦେବୀ ଐଶ୍ୱର୍ଯ୍ୟ ଭାବରୁ ଏକାବେଳକେ ଭୁଲିଗଲେ ଓ ଭାବିଲେ କୌଣସି ଦେବ ମୋର ପୁତ୍ର ଅଙ୍ଗରେ ଆବିର୍ଭାବ ହୋଇଅଛନ୍ତି । ଅତଏବ ଦେବାବିଷ୍ଟ ହେତୁ ମୋର ପୁତ୍ରର ଏମନ୍ତ କଥାମାନ ଘଟୁଅଛି । ଶଚୀ ଏହି ଚିନ୍ତାରେ ଚିନ୍ତିତ ହୋଇ ନିଜ ସନ୍ତାନର ମଙ୍ଗଳପାଇଁ ଜନାର୍ଦ୍ଦନ ହୃଷୀକେଶ ଗୋବିନ୍ଦ ନାମ ଉଚ୍ଚାରଣ ପୂର୍ବକ ନିମାଇ ଅଙ୍ଗରେ ରକ୍ଷା ବନ୍ଧନ କଲେ ଏବଂ ମନ୍ତ୍ର ପାଠ ପୂର୍ବକ ନିମାଇର ସମସ୍ତ ଅଙ୍ଗରେ ଥୁ ଥୁ ପ୍ରଦାନ କଲେ । ଯଥା ।—

ଏତ ଚିନ୍ତ୍ୟ ରକ୍ଷା ବାନ୍ଧେ ଅଙ୍ଗେ ହାତ ଦିୟା
ଜନାର୍ଦ୍ଦନ ହୃଷୀକେଶ ଗୋବିନ୍ଦ ବଲିୟା ।

ଯବ ଅଙ୍ଗ ଥୁ ଥୁ କୃତ ଦସ୍ୟୁ ଶଚୀମାତା
ହୃଷ୍ଟ ଭାବେ ଅତେଟଯୁ କୈଲ ଉନମତ୍ତା ।

( ଚୈଃ ମଃ )

ଏ ତ ଗଲା ଶିଶୁ କାଳର କଥା । ଅନନ୍ତର ବାଳକାଳରେ ଏକାଧାରର ଘଟଣା ଅବଲମ୍ବନ କରି ଶ୍ରୀଲ ବୃନ୍ଦାବନ ଦାସ କ ଲେଖିଅଛନ୍ତି ଦେଖା ଯାଉ । ନିମାଇଁ ପାଠ ପଢ଼ିବାକୁ ଯାଇଅଛନ୍ତି । ସେ ସବୁଦିନେ ଚଞ୍ଚଳ । ତାଙ୍କ ଚଞ୍ଚଳତାରେ ପ୍ରତିବେଶୀମାନେ ସନ୍ତ୍ରସ୍ତ ଅସ୍ଥିର, କିନ୍ତୁ ଅପର ଦୁଷ୍ଟ ଲୋକର କାର୍ଯ୍ୟରେ ଲୋକେ ଯେପରି ବିରକ୍ତ ହୁଅନ୍ତି, ନିମାଇଙ୍କ ଚାଞ୍ଚଲ୍ୟରେ ଲୋକେ ତଦ୍ରୂପ ବିରକ୍ତ ହେଉ ନ ଥିଲେ । ଚାଞ୍ଚଲ୍ୟ ଦ୍ୱାରା ମଧ୍ୟ ନିମାଇଁ ସମସ୍ତଙ୍କର ଅନ୍ତରକୁ ଆକର୍ଷଣ କରୁଥିଲେ । ନିଜ ଶିଶୁର ଚାଞ୍ଚଲ୍ୟରେ ଜନକଜନନୀ ଯେ ରୂପ ପ୍ରୀତି ଅନୁଭବ କରନ୍ତି ନିମାଇଙ୍କର ଚାଞ୍ଚଲ୍ୟରେ ନଦୀଆର ନରନାରୀମାନେ ତତୋଧିକ ପ୍ରୀତିଲାଭ କରୁଥିଲେ । ଏକଦିନରେ ନିମାଇ ଅଧ୍ୟୟନ ଶେଷପରେ ସହାଧ୍ୟାୟୀମାନଙ୍କ ସଙ୍ଗେ ଗଙ୍ଗାକୁ ଯାଇ ଜଳ ମଧ୍ୟରେ ବୁଡ଼ି କୁମ୍ଭୀର ପ୍ରାୟ ଆସି କୌଣସି ନୈଷ୍ଠିକ ବ୍ରାହ୍ମଣର ଧ୍ୟାନ ଭଙ୍ଗ କଲେ । ତାହା ଉପରେ କଲ୍ଲୋଳ ପ୍ରଦାନ କଲେ । କାହାର ପୂଜା ଶିବଲିଙ୍ଗ ଚୋରି କରି ନେଇ ପଳାଇଲେ । କାହାର ସୁରକ୍ଷିତ ବସ୍ତ୍ର ପୂଜାର ଫୁଲ ଚନ୍ଦନ ଆଦିକି ବ୍ୟବହାର କରି ନୈବେଦ୍ୟ ଖାଇ ପଳାଇଗଲେ ଏବଂ କହିଲେ ଚିନ୍ତା କରନା ଯାହା ପାଇଁ ନୈବେଦ୍ୟାଦି ଆଣିଥିଲ ସେ ତ ନିଜେ ଖାଇଲେ । ଜଳ ମଧ୍ୟରେ ହଠାତ୍ ଆସି କାହାର ପୃଷ୍ଠାରୋହଣ ପୂର୍ବକ କହିଲେ, ମୁଁ ମହେଶ । କେହି କେହି ବାଳିକାମାନଙ୍କର ବସନ ଅପହରଣ କଲେ ଏବଂ ଠାକୁର ପୂଜା ନିମିତ୍ତ ଆଣିଥିବା ଫୁଲଫଳମାନ ବିଚ୍ଛୁଡ଼ି ଦେଲେ, ଏହି ରୂପ ବ୍ୟବହାରରେ ନଦୀଆର ନରନାରୀ ଓ ବାଳିକାମାନେ ପ୍ରପୀଡ଼ିତ ହୋଇ ତାଙ୍କ ଜନକଜନନୀଙ୍କୁ ପୁନର୍ବାର ଅତ୍ୟାଚାରମାନ ଜଣାଇଲେ । ଏଥିରେ ଉଦାର ଜଗନ୍ନାଥ ମିଶ୍ର କ୍ରୁଦ୍ଧ ହୋଇ ପୁଅକୁ ଶାସନ କରିବାକୁ ଗଙ୍ଗା ତୀରକୁ ଅଗ୍ରସର ହେଲେ । ପିତାଙ୍କ ଆଗମନ ବାର୍ତ୍ତା ସାଥୀମାନଙ୍କ ଠାରୁ ଶୁଣି ନିମାଇ ଲୁଚି ପଳାୟନ କଲେ । ଶ୍ରୀ ଜଗନ୍ନାଥ ମିଶ୍ର ଆସି ଦେଖିଲେ ନିମାଇ

ଗଙ୍ଗାରେ ନାହିଁ । ମିଶ୍ରବର ପଚାରନ୍ତେ ନିମାଇଙ୍କ ପ୍ରକୃତି ଜାଣି ତାଙ୍କ ସଙ୍ଗୀ ବାଳକମାନେ କହିଲେ, "ନିମାଇ ତ ଆଜି ଆମ୍ଭ ମାନଙ୍କ ସଙ୍ଗେ ଗଙ୍ଗାସ୍ନାନ କରିବାକୁ ଆସି ନାହିଁ । ସେ ତ ପାଠ ସାରି ସୋଝା ଘରକୁ ଫେରିଗଲା ଯେଉଁମାନେ କୌତୁକରେ ଶ୍ରୀଜଗନ୍ନାଥ ମିଶ୍ରଙ୍କଠାରେ ନିମାଇଙ୍କ ବିରୁଦ୍ଧରେ ଅଭିଯୋଗ କରିଥିଲେ ସେମାନେ କହିଲେ, "ମହାଶୟ ! ଆପଣଙ୍କ ପୁତ୍ର ଭୟରେ ଘରକୁ ପଳାଇଲେଣି, ତାଙ୍କୁ ମାରିବେ ନାହିଁ । ଆଜିଦିନ ଯେଉଁପରି ଦୁଷ୍ଟାଚରଣ କଲେ ଆମ୍ଭେମାନେ ତାଙ୍କୁ ଧରି ଆପଣଙ୍କ ଠାକୁ ନେଇ ଆସିବୁ ।" ମିଶ୍ରବର ସେମାନଙ୍କ ପ୍ରିୟବଚନ ଶୁଣି ଓ ସେମାନଙ୍କୁ ଆଶ୍ୱାସନା ଦେଇ ଗୃହକୁ ଫେରିଗଲେ । ଏଣେ ନିମାଇ ଅପର ପଥରେ ଯାଇ ଘରେ ଉପସ୍ଥିତ ହୁଅନ୍ତେ ପିତା ମାତା ଦେଖିଲେ, ନିଗନ କାଳି ଶ୍ରୀ ଅଙ୍ଗରେ ଶୋଭା ପାଉଅଛି, ପରିହିତ ବସନ ଶୁଷ୍କ-ଶ୍ରୀଅଙ୍ଗରେ ଧୂଳି ଲାଗିଅଛି, ସ୍ନାନର ଲେଶ ମାତ୍ର ଚିହ୍ନ ନାହିଁ । ମିଶ୍ରବର ପଚାରିଲେ, ନିମାଇ ତୋର ଏକି ରୂପ ବୁଦ୍ଧି । ଗଙ୍ଗା ଘାଟରେ ଲୋକମାନଙ୍କ ପ୍ରତି ଏରୂପ ମନ୍ଦବ୍ୟବହାର କରିବାତ ଭଲ ନୁହେ । ଏହାଶୁଣି ନିମାଇ କହିଲେ, ପିତଃ 'ମୁଁ ତ ଆଦୌ ଗଙ୍ଗା ଘାଟକୁ ଆଜି ଯାଇ ନାହିଁ, ମୋ ନାମରେ ଲୋକମାନେ କପଟେ ଏମନ୍ତ ମିଥ୍ୟା ଅଭିଯୋଗ କଲେ । ମୁଁ କିଛି ନ କରି ଯଦି ସେମାନେ ମୋ ନାମରେ ମିଥ୍ୟାରେ ଏମନ୍ତ କହିଲେ ତେବେ ମୁଁ ସେମାନଙ୍କ ପ୍ରତି ଭଲ କରି ଦୁଷ୍ଟାଚରଣ କରିବି । ବାତ୍ସଲ୍ୟ ସ୍ନେହରେ ବିହ୍ୱଳ ଶ୍ରୀଜଗନ୍ନାଥ ମିଶ୍ର ଏଥିରେ କିଛି ପ୍ରତ୍ୟୁତ୍ତର ଦେଇ ପାରିଲେ ନାହିଁ । ନିମାଇ ପୁନର୍ବାର ସ୍ନାନ କରିବାକୁ ଗମନ କଲେ । ଏଣେ ଶଚୀ ଓ ଜଗନ୍ନାଥ ମିଶ୍ର ମନେମନେ ଭାବିଲେ, ଏ କି ଚମତ୍କାର ସେ ବ୍ରାହ୍ମଣଗଣ ତ ମିଥ୍ୟା କହିବାର ପାତ୍ର ନୁହନ୍ତି, ଏ ବାଳକ ନାମରେ ଅବା ସେମାନେ ମିଥ୍ୟା କହିବେ କାହିଁ କି ? ତେବେ କି ଆମ୍ଭ ନିମାଇ ମନୁଷ୍ୟ ନୁହେ ? ଶ୍ରୀକୃଷ୍ଣ କି ନିଜେ ଆସି ଆମ୍ଭ ଘରେ ଜନ୍ମ ଗ୍ରହଣ କରିଅଛନ୍ତି କିମ୍ବା ଏ ଅପର କେହି ମହାପୁରୁଷ । ଜନକ ଜନନୀ ଏହିରୂପ ଚିନ୍ତା କରୁଅଛନ୍ତି ନିମାଇ ସ୍ନାନ ସାରି ଆସି ଘରେ ପହଞ୍ଚିଲେ । ନିମାଇଙ୍କୁ ଦେଖିବା ମାତ୍ର ବାତ୍ସଲ୍ୟ ସ୍ନେହର ପ୍ରାବଲ୍ୟରେ ସେ ଐଶ୍ୱର୍ଯ୍ୟମୟ ଭାବନାସକଳ ସେମାନଙ୍କ ମନରୁ ଅନ୍ତର୍ହିତ ହୋଇଗଲା । ଯଥା—

ପୁତ୍ର ଦରଶନାନନ୍ଦେ ଦ୍ରବିଲା ଶଚୀର
ସ୍ନେହେ ପୂର୍ଣ୍ଣ ହୋଇଲା ଦୋହେଁ କିଛୁ ନାହିଁ ଆର

( ଚୈଃ ଭାଃ ଆଦି ୫ମ )

ଶଚୀମାତା ବାତ୍ସଲ୍ୟ ରସର ବିଗ୍ରହ । ପ୍ରତି କାର୍ଯ୍ୟରେ ପ୍ରତି କଥାରେ ସେ ନିମାଇଁ ପ୍ରତି ଅପୂର୍ବ ବାତ୍ସଲ୍ୟ ସ୍ନେହ ଦେଖାଇ ଅଛନ୍ତି । ତାଙ୍କର ଶ୍ରୀକୃଷ୍ଣଙ୍କ ଠାରେ ଏକ ଅଭିନବ ପ୍ରାର୍ଥନାରୁ ଦେଖାଯିବ ଯେ ତାଙ୍କ ହୃଦୟ କନ୍ଦର ବାତ୍ସଲ୍ୟ ରସରେ ପୂର୍ଣ୍ଣ ଥାଇ ତାଙ୍କୁ ବିହ୍ୱଳ କରୁଥିଲା । ଶ୍ରୀବିଶ୍ୱମ୍ଭର ଗୟାରୁ ପ୍ରତ୍ୟାଗମନ କଲା ଦିନରୁ କୃଷ୍ଣ ପ୍ରେମରେ ବିହ୍ୱଳ ହେଲେ । ହରି ସଂକୀର୍ତ୍ତନ ହେବା ମାତ୍ର ସେ ଛିନ୍ନମୂଳ ପାଦପବତ୍ ଭୂମିରେ ପଡ଼ି ମୂର୍ଚ୍ଛିତ ହେଉଥିଲେ । ଶଚୀଦେବୀ ପୁତ୍ରର ଏ ଦଶା ଦେଖି ଅତି ସବୁ ପାଶୋରି ଯାଉଥିଲେ । ତାଙ୍କ ମନରେ ବିଶେଷ କଷ୍ଟ ଏହି କି ଏପରି ପତନରେ ନିମାଇ କୋମଳ ଅଙ୍ଗରେ କି କଷ୍ଟ ହେଉ ନଥିବ । ତେଣୁ ସେ ଶ୍ରୀକୃଷ୍ଣଙ୍କ ଠାରେ ଏହି ପ୍ରାର୍ଥନା କରୁଥିଲେ । ହେ ଶ୍ରୀକୃଷ୍ଣ ! ମୋତେ ଏହି ବର ଦିଅନ୍ତୁ, ତୋର କୀର୍ତ୍ତନ କରି ନିମାଇ ଯେତେବେଳେ ଭୂମିରେ ପଡ଼େ ମୁଁ ତାହା ଯେପରି ଜାଣି ନ ପାରେଁ । ଯଥା—

କୃପା କର କୃଷ୍ଣ ମୋରେ ଦେହ ଏଇ ବର
ଯେ ସମସ୍ତ ଅଦ୍ଭୁତ ଖାନ୍ତେନ ବିଶ୍ୱମ୍ଭର
ମୁଇଁ ଯେନ ତାହା ନାହିଁ ଜାନୋ ସେ ସମୟ
ହେନ କୃପା କର ମୋରେ କୃଷ୍ଣ ମହାଶୟ ।

( ଚୈଃ ଭାଃ ମଧ୍ୟ ୮ମ ଅ)

କୀର୍ତ୍ତନ ଆବେଶରେ ପରମାନନ୍ଦରେ ପତନ, ସେଥିରେ ପ୍ରକୃତ ଦୁଃଖ ଲେଶ ନଥିଲେ ହେଁ ପୁତ୍ରବତ୍ସଳା ଜନନୀଙ୍କ ପ୍ରାଣରେ ତାହା ଅସହ୍ୟ ।

ଏହି ବାତ୍ସଲ୍ୟ ରସର ଭକ୍ତମାନେ ଶ୍ରୀକୃଷ୍ଣଙ୍କୁ ସର୍ବଦା ବାଳ୍ୟ ମନେ କରନ୍ତି । ସେଥିପାଇଁ ତାଡ଼ନ ଭର୍ତ୍ସନ କରନ୍ତି । ଏମନ୍ତ କି ଶ୍ରୀଭଗବାନଙ୍କୁ ବନ୍ଧନ ପର୍ଯ୍ୟନ୍ତ କରିଥାଆନ୍ତି । ଯଶୋଦା କର୍ତ୍ତୃକ ଶ୍ରୀକୃଷ୍ଣଙ୍କର ବନ୍ଧନକୁ ଲକ୍ଷ୍ୟ କରି ଶ୍ରୀକୃଷ୍ଣଙ୍କ ମୁଖରେ ଶ୍ରୀଲ କବିରାଜ ଗୋସ୍ୱାମୀ କହି ଅଛନ୍ତି ।—

ମାତା ମୋତେ ପୁତ୍ର ଭାବେ କରେନ ବନ୍ଧନ
ଅତିହୀନ ଜ୍ଞାନେ କରେ ଲାଳନ ପାଳନ ।

( ଚୈଃ ଚଃ ଆଦି ୪ ପରି )

ଆହା ! ବାତ୍ସଲ୍ୟ ଭାବର କି ଅଦ୍ଭୁତ ଶକ୍ତି । ଯାହାର ନାମ ଶ୍ରବଣ ମାତ୍ର କୋଟି ଭବବନ୍ଧନ ଛିନ୍ନ ହୁଏ ସେହି ଶ୍ରୀଭଗବାନଙ୍କୁ ବାତ୍ସଲ୍ୟ ପ୍ରେମର ବଶୀଭୂତ ଗୋପୀଗଣ ସାମାନ୍ୟ ରଜ୍ଜୁଦ୍ୱାରା ବନ୍ଧନ କରୁଅଛନ୍ତି । ଏ ରଜ୍ଜୁ ଛୋଟ ବା ସୂତାରେ ନିର୍ମିତ ହେଲେହେଁ ସ୍ନେହରସରେ ପୂର୍ଣ୍ଣ । ତାହା ନ ହେଲେ କି ଶ୍ରୀକୃଷ୍ଣ ସେଥିରେ ଆବଦ୍ଧ ହୋଇ ରହନ୍ତେ ?

ମଧୁର ରସ ଏହି ପାଞ୍ଚ ରସ ମଧ୍ୟରେ ସର୍ବୋତ୍କୃଷ୍ଟ । ଏ ରସର ପରିମାଣ କରିଯାଇପାରେ । ପ୍ରତ୍ୟେକ ରସର ଭକ୍ତ ଆପଣାକୁ ଶ୍ରେଷ୍ଠ ମନେ କରେ ଏବଂ ତାହା କରିବାର କଥା । କିନ୍ତୁ ନିରପେକ୍ଷ ହୋଇ ବିଚାର କରିବାକୁ ଗଲେ ମଧୁର ରସହିଁ ସର୍ବସାର । ତେଣୁ ଶ୍ରୀକୃଷ୍ଣ ଦାସ କବିରାଜ କହିଅଛନ୍ତି ।—

ତଟସ୍ଥ ହଇୟା ହୃଦେ ବିଚାର ଯଦି କରି
ସବ ରସ ହୈତେ ଶୃଙ୍ଗାରେ ଅଧିକ ମାଧୁରୀ ।

( ଚୈଃ ଚଃ ମଧ୍ୟ ୮ ପରି )

ଯେ ଯେପରି ଭାବରେ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି କୃଷ୍ଣ ସେହିରୂପ ଅନୁଗ୍ରହ କରନ୍ତି ; ଅତଏବ କାହାରିଠାରେ ଋଣୀ ରହନ୍ତି ନାହିଁ । କିନ୍ତୁ ଗୋପୀମାନଙ୍କଠାରେ ଶ୍ରୀକୃଷ୍ଣଙ୍କର ସେ ପ୍ରତିଜ୍ଞା ଭଙ୍ଗ ହେଲା । ଗୋପୀମାନେ ଦୁର୍ଜ୍ଜୟ ସଂସାରବନ୍ଧନ ଛେଦନ ପୂର୍ବକ ଏମନ୍ତ ଭାବରେ ଶ୍ରୀକୃଷ୍ଣଙ୍କୁ ମନପ୍ରାଣ ଅର୍ପଣ କରି ସେବା କଲେ ଯେ ଶ୍ରୀକୃଷ୍ଣ ଗୋପୀମାନଙ୍କ ଋଣ ପରିଶୋଧ କରିବାକୁ ଅକ୍ଷମ ହୋଇ ଚିରକାଳ ପାଇଁ ଋଣୀ ହୋଇ ରହିଲେ । ଯଥା ।—

କୃଷ୍ଣେର ପ୍ରତିଜ୍ଞା ଦୃଢ଼ ସର୍ବକାଳେ ଆଛେ
ଯେ ଯୈଛେ ଭଜେ କୃଷ୍ଣ ତାରେ ଭଜେ ତୈଛେ ।
ଏଇ ପ୍ରେମାର ଅନୁରୂପ ନା ପାରେ ଭଜିତେ
ଅତଏବ ଋଣୀ ହନ କହେ ଭାଗବତେ ।

[ ଚୈଃ ଚଃ ମଧ୍ୟ ]

ମଧୁର ରସର ପାତ୍ରୀଗଣ କେତେତ୍ତ ଉତ୍କୃଷ୍ଟ ଏହି ନିମ୍ନୋକ୍ତ ଉଦାହରଣଟି ତାହାର ଯଥେଷ୍ଟ ପ୍ରମାଣ ।

କେହି ଗାଳି ଖାଇବାକୁ ଭଲପାଏ ନାହିଁ କିନ୍ତୁ ସ୍ତୁତିରେ ସମସ୍ତେ ସନ୍ତୁଷ୍ଟ । ବେଦହିଁ ମୂଳଶାସ୍ତ୍ର ଓ ଶ୍ରୀଭଗବାନଙ୍କର ସ୍ତୁତିରେ ପୂର୍ଣ୍ଣ । ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ବେଦବାକ୍ୟ ଦ୍ୱାରା ଶ୍ରୀଭଗବାନଙ୍କର ସ୍ତୁତି କରିଅଛନ୍ତି, କିନ୍ତୁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ନିଜେ କହୁଅଛନ୍ତି, ମୋର ପ୍ରେୟସୀ ଗୋପୀଗଣ ମାନଙ୍କର ମୋତେ ଯେ ଦୁଇ ଗୁରୁପଦ ଗାଳି ଦିଅନ୍ତି ତାହା ମୋତେ ବେଦର ସ୍ତୁତିବାକ୍ୟଠାରୁ ଅଧିକତର ପ୍ରୀତିପ୍ରଦ ହୁଏ । ଯଥା—

ପ୍ରିୟା ଯଧି ମାନକରି କରୟେ ଭର୍ତ୍ସନ
ବେଦସ୍ତୁତି ହୈତେ ହରେ ସେହି ମୋର ମନ ।

( ଚୈଃ ଚଃ ଆଦି ୪ ପରି )

ଅହା କି ସୁନ୍ଦର ! କି ସୁନ୍ଦର ! ଗୋପୀଭାବ ଏମନ୍ତ ଉତ୍କୃଷ୍ଟ ହୋଇ ନ ଥିଲେ ଶ୍ରୀକୃଷ୍ଣ ତଦ୍ଭାବରେ ଭାବିତ ହୋଇ ଗୌରରୂପରେ ଜନ୍ମ ଗ୍ରହଣ କରି ନ ଥାନ୍ତେ ।



## ନବମ ପରିଚ୍ଛେଦ ।

### ବୈଷ୍ଣବଙ୍କ ଶ୍ରେଣୀ ବିଭାଗ ।

ବୈଷ୍ଣବଗଣ ଆଶ୍ରମାନୁସାରେ ଦୁଇଶ୍ରେଣୀରେ ବିଭକ୍ତ । ଗୃହସ୍ଥ ଓ ବୈରାଗୀ ।

ଯେଉଁମାନେ ଗୃହସ୍ଥ ହୋଇ ସ୍ତ୍ରୀପୁତ୍ରାଦି ପରିବାର ସହ ବାସ କରି ବୈଷ୍ଣବ ଧର୍ମ ଯାଜନ କରନ୍ତି ସେମାନଙ୍କୁ ଗୃହସ୍ଥ ବୈଷ୍ଣବ ବୋଲାଯାଏ । ଯେଉଁମାନେ ଗୃହ ପରିତ୍ୟାଗପୂର୍ବକ ବେଶାଶ୍ରୟ ( ଭେକ ଧାରଣ ) କରନ୍ତି ସେମାନଙ୍କୁ ବୈରାଗୀ ବୋଲାଯାଏ ।

ଏହି ପ୍ରଥମଶ୍ରେଣୀ ଗୃହସ୍ଥମାନଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ମହାପ୍ରଭୁଙ୍କ ଆଚରଣ ଓ ଶିକ୍ଷା ଅତି ସୁନ୍ଦର ଭାବରେ ଶ୍ରୀଚୈତନ୍ୟ ଭାଗବତରେ ଓ ଶ୍ରୀଚୈତନ୍ୟ ଚରିତାମୃତରେ ଆଲୋଚିତ ହୋଇଅଛି, ତନ୍ନ ଗ୍ରନ୍ଥୋକ୍ତ ସ୍ଥାନ ଉଦ୍ଧୃତ କଲେ ଗୃହସ୍ଥ ବୈଷ୍ଣବଙ୍କର କର୍ତ୍ତବ୍ୟ ସୁନ୍ଦର ରୂପେ ପ୍ରତିପନ୍ନ ହେବ ।

ମହାପ୍ରଭୁ ଗୃହସ୍ଥ ଧର୍ମ ଆଚରଣ କାଳରେ ଅତିଥି ସେବାର ଆଦର୍ଶ ଦର୍ଶାଇ ଅଛନ୍ତି । କୌଣସି ଅତିଥି ତାଙ୍କ ଗୃହରେ ଆସି ପ୍ରବେଶ କଲେ ସେ ତାଙ୍କୁ ଅତି ସମାଦର କରୁଥିଲେ । ବାକ୍ୟରେ ଓ କାର୍ଯ୍ୟରେ ଉଭୟ ପ୍ରକାରରେ ସେ ଅତିଥିଙ୍କୁ ଆପ୍ୟାୟିତ କରୁଥିଲେ । ତାଙ୍କର ସେହି ଅତିଥି ସେବା ସମ୍ବନ୍ଧରେ ଶ୍ରୀଲବୃନ୍ଦାବନ ଦାସ କହିଅଛନ୍ତି ।

ଗୃହସ୍ଥେରେ ମହାପ୍ରଭୁ ଶିଖାୟେନ୍ ଧର୍ମ ।
ଅତିଥିର ସେବା ଗୃହସ୍ଥେର ମୂଳକର୍ମ ॥

ଗୃହସ୍ଥ ହଇୟା ଯଦି ଅତିଥି ନା କରେ ।
ପଶୁ ପକ୍ଷୀ ହଇତେ ଅଧମ ବଲି ତାରେ ॥
( ଚୈଃ ଭାଃ ଅଦ ୧୨ ଶ )

ଯଦି ଦାରିଦ୍ର୍ୟ ବଶତଃ କେହି ଧନ କିମ୍ବା ଖାଦ୍ୟାଦି ଦ୍ୱାରା ଅତିଥି ସତ୍କାର କରି ନ ପାରନ୍ତି ତେବେ ବସିବାକୁ ଆସନ ଓ ମଧୁର ବାକ୍ୟ ଦ୍ୱାରା ଅତିଥିଙ୍କୁ ସନ୍ତୁଷ୍ଟ କରାଇବା ଉଚିତ । ଯଥା—

ଯାର ବା ନା ଥାକେ କିଛୁ ପୂର୍ବାଦୃଷ୍ଟ ଦୋଷେ ।
ସେଇ ତୃଣ ଜଳ ଭୂମି ଦିବେକ ସନ୍ତୋଷେ ॥
ସତ୍ୟ ବାକ୍ୟ କହିବେକ କରି ପରିହାର ।
ତଥାପି ଅତିଥ୍ୟ ଶୂନ୍ୟ ନାହି ଗୃହ ତାହାର ॥
ଅକୈତବେ ଦିବ ସୁଖେ ଯାର ଯେନ ଶକ୍ତି ।
ତାହା କରିଲେଇ ବଡ଼ ଅତିଥିରେ ଭକ୍ତି ॥
( ଚୈଃ ଭାଃ ଅଦ ୧୨ ଉକ୍ତି । )

ତେବେ ଗୃହସ୍ଥ ବୈଷ୍ଣବଙ୍କର ପକ୍ଷରେ ଧନ ଉପାର୍ଜ୍ଜନ ଆବଶ୍ୟକ; ନଚେତ ବନ୍ଧୁ କୁଟୁମ୍ବ ମାନଙ୍କର ଭରଣ ପୋଷଣ ସମାଧାନ ହୋଇ ନ ପାରେ କିନ୍ତୁ କି ଉପାୟରେ ଗୃହସ୍ଥ ବୈଷ୍ଣବଗଣ ଧନ ଉପାର୍ଜ୍ଜନ କରିବେ ମହାପ୍ରଭୁ ଏହାର ଉତ୍ତମ ଶିକ୍ଷା ଶ୍ରୀଗୋପୀନାଥ ପଟ୍ଟନାୟକଙ୍କୁ ଦେଇଅଛନ୍ତି ।

ଶ୍ରୀ ଗୋପୀନାଥ ପଟ୍ଟନାୟକ ପ୍ରସିଦ୍ଧ ଶ୍ରୀରାମାନନ୍ଦ ରାୟଙ୍କ କନିଷ୍ଠ ଭ୍ରାତା ଅଟନ୍ତି । ସେ ମହାରାଜା ପ୍ରତାପରୁଦ୍ରଙ୍କର କର୍ମଚାରୀ ଥାଇ କିଛି ରାଜଧନ ଅପବ୍ୟୟ କରିଥିଲେ । ସେଥିଯୋଗୁଁ ତାଙ୍କୁ କିଛି ଦଣ୍ଡ ଭୋଗ କରିବାକୁ ହୋଇଥିଲା । କିନ୍ତୁ ସେ ପରମଭକ୍ତ ଥିବାରୁ ମହାପ୍ରଭୁଙ୍କ କୃପାରୁ ସେ ଦଣ୍ଡରୁ ମୁକ୍ତ ହେଲେ ଏବଂ ତାଙ୍କର ବେତନ ଦୁଇଗୁଣରେ ବର୍ଦ୍ଧିତ ହେଲା । ଏହି ସାଂସାରିକ ସମୃଦ୍ଧି ମହାପ୍ରଭୁଙ୍କ କୃପାର ଫଳ ନୁହେଁ, କୃପାଭାସର ଫଳ, ସେଥିରେ ଗୋପୀନାଥ ମର୍ମାହତ ହୋଇ ମହାପ୍ରଭୁଙ୍କୁ ଜଣାଇଲେ "ପ୍ରଭୋ" ! ଆମ୍ଭେମାନେ ପାଞ୍ଚଭାଇ, ସେଥି ମଧ୍ୟରୁ ଆପଣ ଜ୍ୟେଷ୍ଠ ଭ୍ରାତା ଶ୍ରୀରାମାନନ୍ଦଙ୍କୁ ଏବଂ କନିଷ୍ଠ ଭ୍ରାତା ବାଣୀନାଥଙ୍କୁ ବନ୍ଧନରୁ ମୁକ୍ତ କଲେ;

ମୋ ପ୍ରତି ଅଗ୍ରହ କାହିଁକି ? ମହାପ୍ରଭୁ ତହିଁରେ ଉତ୍ତର କଲେ "ଗୋପୀନାଥ ! ଯଦି ତୁମ୍ଭେମାନେ ସମସ୍ତେ ନିର୍ବିଷୟୀ ହେବ ତେବେ ତୁମ୍ଭମାନଙ୍କର ଏ ବୃହତ୍ ପରିବାର ପ୍ରତିପାଳନ କରିବ କିଏ ? ତୁମ୍ଭଙ୍କୁ ମୋର ଏହି ଉପଦେଶ ଯେ ତୁମ୍ଭେ ଧର୍ମରେ ଧନ ଉପାର୍ଜ୍ଜନ କରି ତଦ୍ୱାରା କୁଟୁମ୍ବ ପୋଷଣ କର ଏବଂ ଅବଶିଷ୍ଟ ଧନ ଧର୍ମକର୍ମରେ ବ୍ୟୟ କର । ଅସତ୍ ଭାବରେ ଅର୍ଥ କରନାହିଁ କିମ୍ବା ଅସତ୍ କାର୍ଯ୍ୟରେ ବ୍ୟୟ କରନାହିଁ । ଏଥିରେ ଇହଲୋକ ଓ ପରଲୋକ ଦୁଇ ନଷ୍ଟ ହୁଏ । ଆହା ! ଅତି ଅଳ୍ପରେ ଗୃହସ୍ଥ ବୈଷ୍ଣବମାନଙ୍କ ପ୍ରତି କି ସୁନ୍ଦର ଉପଦେଶ ମହାପ୍ରଭୁ ରଖି ଗଲେ । ସତ୍ ଅର୍ଥ କର ଓ ସତ୍ ବ୍ୟୟ କର । ଅସତ୍ ଅର୍ଥ କରି ବହୁ ଆଡ଼ମ୍ବର ପୂର୍ବକ ବ୍ୟୟ କରିବା ଦ୍ୱାରା ଲୋକରେ ଖ୍ୟାତି ହୋଇ ପାରେ, କିନ୍ତୁ ପରମାର୍ଥ ଲାଭ ହେବ ନାହିଁ । ମହାପ୍ରଭୁଙ୍କର ଉକ୍ତି ଯଥା—

ପ୍ରଭୁ କହେ ସନ୍ନ୍ୟାସୀ ଯବେ ହବେ ପଞ୍ଚଜନ
କୁଟୁମ୍ବ ବାହୁଲ୍ୟ ତୋମାର କେ କରେ ଭରଣ ।
କିନ୍ତୁ ମୋର କରିଓ ଏକ ଅଜ୍ଞାର ପାଲନ
ବ୍ୟୟ ନା କରିଓ କିଛୁ ରାଜାର ମୂଲ ଧନ ।
ରାଜାର ମୂଲଧନ ଦିୟା ଯେ କିଛୁ ଲଭ୍ୟହୟ
ସେଇଧନ କରିଓ ନାନା ଧର୍ମ କର୍ମେ ବ୍ୟୟ ।
ଅସଦ୍‌ବ୍ୟୟ ନା କରିଓ ଯାତେ ଦୁଇଲୋକଯାୟ ।

(ଚୈଃ ଚଃ ଅନ୍ତ୍ୟ ୯)

ଅସତ୍ ଅର୍ଥ ଅସତ୍ ବ୍ୟୟ ମହାପ୍ରଭୁ ଏ ଦୁହିଁକୁ ବାରଣ କଲେ ଶ୍ରୀରଘୁନାଥ ଦାସ ଅତୁଳ ଐଶ୍ୱର୍ଯ୍ୟରେ ରହି ମଧ ସମସ୍ତ ବିଷୟସୁଖ ପରିତ୍ୟାଗ ପୂର୍ବକ ବୈରାଗୀ ହେବାକୁ ସମୁତ୍କଣ୍ଠିତ । ତାଙ୍କର ପିତା ଓ ଜ୍ୟେଷ୍ଠ ତାତ ପ୍ରହରୀ ନିଯୁକ୍ତ କରି ତାଙ୍କୁ ଏକ ପ୍ରକାର ଅବଦ୍ଧ କରି ରଖି ଅଛନ୍ତି ଏମନ୍ତ ସମୟରେ ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ପରେ ଶ୍ରୀବୃନ୍ଦାବନ ଗମନ ଅଭିଳାଷରେ ଶ୍ରୀପୁରୁଷୋତ୍ତମ ବାହାରି ଶାନ୍ତିପୁରରେ ପ୍ରବେଶ କରନ୍ତେ ରଘୁନାଥ ଦାସ ପିତାଙ୍କ ଅନୁମତି କ୍ରମେ ମହାପ୍ରଭୁଙ୍କ ଶ୍ରୀଚରଣ ଦର୍ଶନ ନିମିତ୍ତ ଶାନ୍ତିପୁରକୁ

ଗମନ କଲେ ଏବଂ ସେଠାରେ ନିଜର ଆନ୍ତରିକ ଦୁଃଖ ମହାପ୍ରଭୁଙ୍କଠାରେ ନିବେଦନ କରନ୍ତେ ମହାପ୍ରଭୁ ତାଙ୍କୁ ଉପଦେଶ ପୂର୍ବକ କହିଲେ "ରଘୁନାଥ? ତୁମ୍ଭେ ଏତେ ଅସ୍ଥିର ହୁଅ ନାହିଁ । ଏକାବେଳକେ କେହି ଶେଷସୀମାକୁ ଯାଇ ପାରେ ନାହିଁ । କ୍ରମେ କ୍ରମେ ଭବସିନ୍ଧୁ ପାର ହେବାକୁ ହୁଏ । ମର୍କଟ ବୈରାଗୀ ହେଲ ନାହିଁ ଅର୍ଥାତ୍ ମନରେ ସମ୍ପୂର୍ଣ୍ଣ ବୈରାଗ୍ୟ ଆସି ନାହିଁ ଅଥଚ ଦେଖାଇବା ପାଇଁ ଯେ କପଟ ବୈରାଗ୍ୟ ତାକୁ ମର୍କଟ ବୈରାଗ୍ୟ ବୋଲାଯାଏ । ଅନାସକ୍ତ ହୋଇ ବିଷୟ ଭୋଗ କର; ଅନ୍ତରେ ଶ୍ରୀକୃଷ୍ଣଙ୍କଠାରେ ନିଷ୍ଠା କର; ଏପରି କଲେ ଦୟାଳୁ ଶ୍ରୀକୃଷ୍ଣ ତୁମ୍ଭଙ୍କୁ ଶୀଘ୍ର ମହା ବିଷୟ ବିଷ ମଧ୍ୟରୁ ଉଦ୍ଧାର କରିବେ ।" ଯଥା—

ସ୍ଥିର ହୋଇ ଘରେ ଯାଅ ନା ହଅ ବାଉଲ
କ୍ରମେ କ୍ରମେ ପାଅ ଲୋକ ଭବସିନ୍ଧୁ କୂଳ,
ମର୍କଟ ବୈରାଗ୍ୟ ନା କର ଲୋକ ଦେଖାଇଆ
ଯଥା ଯୋଗ୍ୟ ବିଷୟ ଭୁଞ୍ଜ ଅନାସକ୍ତ ହୋଇଆ,
ଅନ୍ତରେ ନିଷ୍ଠା କର, ବାହ୍ୟେ ଲୋକ ବ୍ୟବହାର
ଅଚିରାତ୍ କୃଷ୍ଣ ତୋମାଯ କରିବେନ ଉଦ୍ଧାର ।

( ଚୈଃ ଚଃ ମଧ୍ୟ ୧୬ )

ପ୍ରକୃତରେ ବୈରାଗ୍ୟର ଆଦର୍ଶ ଶ୍ରୀରଘୁନାଥଙ୍କର ମର୍କଟ ବୈରାଗ୍ୟ ନ ଥିଲା । କେବଳ ଲୋକଶିକ୍ଷା ହେତୁ ମହାପ୍ରଭୁ ସେପରି କଥା ସେଠାରେ ବ୍ୟବହାର କରିଥିଲେ । ରଘୁନାଥ ଦାସଙ୍କୁ ଲକ୍ଷ୍ୟ କରି ମହାପ୍ରଭୁ ଜଗତକୁ ଏହି ପରମଶିକ୍ଷା ଦେଇ ଯାଇଅଛନ୍ତି । ଅନ୍ତର ନିଷ୍ଠା ହିଁ ମୂଳ ପ୍ରୟୋଜନ ।

ବୈରାଗୀ ନ ହୋଇ ଘରେ ରହିଲେ କି କୃଷ୍ଣ ମିଳନ୍ତି ନାହିଁ, ଶ୍ରୀଳ ରାମାନନ୍ଦରାୟ, ଶ୍ରୀଳଅଦ୍ୱୈତାଚାର୍ଯ୍ୟ, ପଣ୍ଡିତ ଶ୍ରୀନିବାସ, ପୁଣ୍ଡରୀକ ବିଦ୍ୟାନିଧି ଏମାନେ ସମସ୍ତେ ଗୃହସ୍ଥ ବୈଷ୍ଣବ । ଏହାଠାରୁ ଆଉ କି ଅଧିକତର ଉଦାହରଣ ଚାହିଁ । ଅନାସକ୍ତ ହୋଇ ବିଷୟ ଭୋଗ କରିବା ଗୃହସ୍ଥ ବୈଷ୍ଣବ ପକ୍ଷରେ ଏକାନ୍ତ କର୍ତ୍ତବ୍ୟ । ବସ୍ତ୍ର ଦାନ କଲେ କିମ୍ବା କୂପ ପୁଷ୍କରିଣୀ ଆଦି ଖନନ କଲେ କିମ୍ବା ଅର୍ଥର ସଦ୍‌ବ୍ୟବହାର କଲେ ମଧ୍ୟ

ଯଦି ଧନରେ କାହାର ଆସକ୍ତି ଥାଏ ତେବେ ତାହାକୁ ଶୁଦ୍ଧ ଗୃହସ୍ଥ ବୈଷ୍ଣବ ବୋଲାଯାଇ ନ ପାରେ । ଧନ ଅଯତ୍ନ ଉପସ୍ଥିତ ହେଉ କିନ୍ତୁ ତପର ମୋର ଧନ ବୃଦ୍ଧି ହେଉ ଏ ଗାଢ଼ଲିପ୍ସା ଯେପରି ନ ଥାଏ । ମହାପ୍ରଭୁ ଶ୍ରୀରଘୁନାଥ ଦାସ ଗୋସ୍ୱାମୀଙ୍କ ପିତା ଓ ଜ୍ୟେଷ୍ଠ ତାତଙ୍କ ସମ୍ବନ୍ଧରେ ଯେଉଁ ଉକ୍ତି ବ୍ୟବହାର କରିଅଛନ୍ତି ସମସ୍ତ ଧନଲୁବ୍ଧ ବ୍ୟକ୍ତିମାନଙ୍କ ପ୍ରତି ତାହା ପ୍ରଯୋଜ୍ୟ ।

ଶ୍ରୀରଘୁନାଥ ଦାସ ଯେତେବେଳେ ଗୃହରୁ ପଳାଇ ଆସି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମହାପ୍ରଭୁଙ୍କ ନିକଟରେ ପ୍ରଥମେ ପହଞ୍ଚିଲେ ମହାପ୍ରଭୁ ତାଙ୍କୁ ସ୍ନେହାଲିଙ୍ଗନ ପ୍ରଦାନ କରି ବହୁତ କୃପା କଲେ ଏବଂ କହିଲେ ବତ୍ସ ! ଶ୍ରୀକୃଷ୍ଣ କୃପାକରି ତୋତେ ବିଷୟ କୂପ ବିଷ୍ଠାଗର୍ତ୍ତରୁ ଉଦ୍ଧାର କଲେ । ତୋର ପିତା ଓ ଜ୍ୟେଷ୍ଠ ତାତ ଦୁହେଁ ବିଷୟ ବିଷ୍ଠାରେ କୃମି; ସେମାନେ ମହାକଷ୍ଟର ମୂଳ ଯେ ବିଷୟ ସମ୍ପତ୍ତି ତାହାକୁ ପରମସୁଖକର ବୋଲି ମନେକରନ୍ତି । ଯଦିଓ ସେମାନେ ଦେବବ୍ରାହ୍ମଣର ପୂଜା କରନ୍ତି, ଅଯଥା ବ୍ୟୟ କରନ୍ତି ନାହିଁ, ବ୍ରାହ୍ମଣମାନଙ୍କୁ ଧନଦାନ କରନ୍ତି ତଥାପି ସେମାନେ ଶୁଦ୍ଧ ବୈଷ୍ଣବ ନୁହନ୍ତି, ବିଷୟର ମୋହିନୀ ଶକ୍ତିରେ ସତତ ବଶୀଭୂତ । ବିଷୟ ଭୋଗହିଁ ଭବବନ୍ଧନର ମୂଳୀଭୂତ କାରଣ । ଯଥା:—

ଇହାର ବାପ ଜ୍ୟେଠା ବିଷୟ ବିଷ୍ଠା ଗର୍ତ୍ତର କୀଡ଼ା
ସୁଖ କରି ମାନେ ବିଷୟ ବିଷୟ ମହାପୀଡ଼ା ।
ଯଦ୍ୟପି ବ୍ରହ୍ମଣ୍ୟ କରେ ବ୍ରାହ୍ମଣେର ସହାୟ
ଶୁଦ୍ଧ ବୈଷ୍ଣବ ନହେ ବୈଷ୍ଣବେର ପ୍ରାୟ ।
ତଥାପି ବିଷୟ ସ୍ୱଭାବ କରେ ମହାଅନ୍ଧ
ସେଇ କର୍ମ କରାୟ ଯାତେ ହୟ ଭବ ବନ୍ଧ ।

[ ଚୈଃ ଚଃ ଅନ୍ତ୍ୟ ୬ଷ୍ଠ ]

ଏହି ସମସ୍ତ ମହାପ୍ରଭୁଙ୍କର ଆଚରଣ ଓ ଶିକ୍ଷାରୁ ଗୃହସ୍ଥ ବୈଷ୍ଣବଗଣ ସେମାନଙ୍କର କର୍ତ୍ତବ୍ୟ ଉତ୍ତମରୂପେ ଅବଧାରଣ କରିପାରିବେ । ଧନୈଷଣାଃ

ସେମାନେ ଯେପରି ସର୍ବଦା ନିଜନିଜ ଇଷ୍ଟଦେବଙ୍କୁ ସ୍ମରଣରଖି ସଂସାର କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି ।

ବୈରାଗୀଙ୍କ ଲକ୍ଷଣ :—

ବୈରାଗୀଙ୍କର ଲକ୍ଷଣମାନ ମହାପ୍ରଭୁ ଅତି ସଂକ୍ଷେପରେ ସୁନ୍ଦର ରୂପେ ପ୍ରକାଶ କରି ଅଛନ୍ତି । ଶ୍ରୀରଘୁନାଥ ଦାସ ଅତୁଳ ଐଶ୍ୱର୍ଯ୍ୟ ଓ ସୁନ୍ଦରୀ ଭାର୍ଯ୍ୟା ପରିତ୍ୟାଗ କରି ବୈରାଗୀ ଧର୍ମ ଅବଲମ୍ବନ କରିଅଛନ୍ତି; ଏବଂ ଶ୍ରୀମହାପ୍ରଭୁଙ୍କ ନିକଟରେ ବାସ କରୁଅଛନ୍ତି । ସେ ଅତି ସୁଶୀଳ ଓ ନମ୍ର । ମହାପ୍ରଭୁଙ୍କ ସମ୍ମୁଖରେ କଥା ପର୍ଯ୍ୟନ୍ତ କହିବାକୁ ଲଜ୍ଜିତ । ସ୍ୱରୂପଙ୍କ ଦ୍ୱାରା ମହାପ୍ରଭୁଙ୍କୁ ନିଜର କି କର୍ତ୍ତବ୍ୟ ପଚାରନ୍ତେ ମହାପ୍ରଭୁ କହିଲେ "ରଘୁନାଥ ! ମୁଁ ତ ସ୍ୱରୂପଙ୍କୁ ତୋର ଉପଦେଷ୍ଟା ନିରୂପିତ କରି ଦେଇଅଛି । ସାଧ୍ୟ ସାଧନ ବିଷୟରେ ସେ ଯାହା ଜାଣନ୍ତି ମୋତେ ତେତେ ଜଣାନାହିଁ । ତେବେ ମୋ ମୁଖରୁ କିଛି ଶୁଣିବାକୁ ଯଦି ତୋର ନିତାନ୍ତ ଅଭିଳାଷ, କହୁଛି ଶୁଣ । ଗ୍ରାମ୍ୟ କଥା ନ ଶୁଣିବା, ଗ୍ରାମ୍ୟ ବାର୍ତ୍ତା ଚର୍ଚ୍ଚା ନ କରିବା, ଉତ୍ତମ ଖାଦ୍ୟ ଭୋଜନରେ ଓ ଉତ୍ତମ ବସ୍ତ୍ର ପରିଧାନରେ ଲୋଭ ନ ରଖିବା, ନିଜେ ଅମାନୀ ହୋଇ ପରକୁ ମାନ ପ୍ରଦାନ କରି ସତତ ଶ୍ରୀରାଧାକୃଷ୍ଣ ନାମ ଗ୍ରହଣ କରିବା ଓ ମାନସିକରେ ସତତ ଶ୍ରୀରାଧାକୃଷ୍ଣଙ୍କର ସେବା କରିବା ଏହାହିଁ ବୈରାଗୀଙ୍କର କର୍ତ୍ତବ୍ୟ । ଯଥା—

ଗ୍ରାମ୍ୟ କଥା ନା ଶୁନିବେ ଗ୍ରାମ୍ୟ ବାର୍ତ୍ତା ନା କହିବେ
ଭାଲ ନା ଖାଇବେ ଆର ଭାଲ ନା ପରିବେ
ଅମାନୀମାନଦ କୃଷ୍ଣ ନାମ ସଦା ଲବେ ।
ବ୍ରଜେ ରାଧାକୃଷ୍ଣ ସେବାମାନସେ କରିବେ ।

[ ଚୈଃ ଚଃ ଅନ୍ତ୍ୟ ୬ଷ୍ଠ ]

ଆହା ! ସଂକ୍ଷେପରେ କି ମହତ୍ ଉପଦେଶ ।

ଶ୍ରୀରଘୁନାଥ ଦାସ ମହାପ୍ରଭୁଙ୍କ ନିକଟକୁ ଆସି ମହାପ୍ରଭୁଙ୍କ ସେବକ ଶ୍ରୀଗୋବିନ୍ଦଙ୍କ ଦତ୍ତପ୍ରସାଦାନ୍ନ ସେବନ କଲେ । ତତ୍ପରେ ଶ୍ରୀଜଗନ୍ନାଥଙ୍କ ଦେଉଳର ସିଂହଦ୍ୱାରରେ ପ୍ରତ୍ୟହ କିଛିକ୍ଷଣ ଠିଆ ହୋଇ ଭକ୍ତଦତ୍ତ ମହାପ୍ରସାଦରେ

ଉଦର ପୋଷଣ କରିବାକୁ ଲାଗିଲେ । ମହାପ୍ରଭୁ ଏହା ଶୁଣି ପ୍ରୀତ ହୋଇ କହିଥିଲେ , ରଘୁନାଥ ଉଚିତ ପଥ ଅବଲମ୍ବନ କରିଅଛି । ସତତ ଶ୍ରୀହରି ନାମ ସଂକୀର୍ତ୍ତନକରି ଭିକ୍ଷା ମାଗି ଖାଇ ଉଦର ପୋଷଣ କରିବା ବୈରାଗୀ ମାନଙ୍କ ପକ୍ଷରେ ଉଚିତ । ବୈରାଗୀ ହୋଇ ପରାପେକ୍ଷା କରିବା ଉଚିତ ନୁହେ ଓ ଜିହ୍ୱା ଲାଳସାରେ ନାନା ଉପାଦେୟ ଖାଦ୍ୟରେ ଲୋଭ କରିବା ଉଚିତ ନୁହେ । ଶିଶ୍ନୋଦର ପରାୟଣ ବୈରାଗୀ କଦାପି ଶ୍ରୀକୃଷ୍ଣଙ୍କୁ ପାଇ ନ ପାରେ, ଯଥା:—

ବୈରାଗୀର ଧର୍ମ ସଦା ନାମ ସଂକୀର୍ତ୍ତନ
ମାଗିଯା ଖାଇଯା କରେ ଜୀବନ ରକ୍ଷଣ ।
ବୈରାଗୀ ହଇଯା ଯେବା କରେ ପରାପେକ୍ଷା
କାର୍ଯ୍ୟ ସିଦ୍ଧି ନହେ କୃଷ୍ଣ କରେନ ଉପେକ୍ଷା ।
ବୈରାଗୀ ହଇଯା କରେ ଜିହ୍ୱାର ଲାଳସ
ପରମାର୍ଥ ଯାଏ ଆର ହୟ ରସେ ବଶ ।
ବୈରାଗୀର କୃତ୍ୟ ସଦା ନାମ ସଂକୀର୍ତ୍ତନ
ଶାକପତ୍ର ଫଳ ମୂଳେ ଉଦର ଭରଣ ।
ଜିହ୍ୱାର ଲାଳସେ ଯେଇ ଇତି ଉତି ଧାୟ
ଶିଶ୍ନୋଦର ପରାୟଣ କୃଷ୍ଣ ନାହି ପାୟ ।

[ ଚୈଃ ଚଃ ଅନ୍ତ୍ୟ ୬ଷ୍ଠ ]

ଅର୍ଥଲୋଲୁପତ ବୈରାଗୀ ମାନଙ୍କ ପକ୍ଷରେ ଏକାନ୍ତ ନିଷିଦ୍ଧ । ତଦୁପରି ଆହୁରି ଅଧିକ ଶାସନ ଏହି ଯେ ସେମାନେ ଗୃହସ୍ଥ ଭକ୍ତ ମାନଙ୍କଠାରୁ ଭିକ୍ଷା କରିବେ, ବିଷୟାସକ୍ତ ବ୍ୟକ୍ତିଠାରୁ ଯେପରି ଭିକ୍ଷା ପର୍ଯ୍ୟନ୍ତ ନ ନିଅନ୍ତି । ଶ୍ରୀ ରଘୁନାଥ ଦାସ ବୈରାଗ୍ୟ ଅବଲମ୍ବନ ପରେ ତାଙ୍କର ପିତା ଚାରିଶତ ମୁଦ୍ରା ଲୋକହସ୍ତରେ ତାଙ୍କଠାକୁ ପଠାଇଥିଲେ । ରଘୁନାଥ ଦାସ ସେ ଅର୍ଥ ଗ୍ରହଣ କଲେ ନାହିଁ । ବହୁ ଅନୁରୋଧ ପରେ ଆଠପଣ ମାତ୍ର କୌଡ଼ି ଗ୍ରହଣ କଲେ ଏବଂ ତଦ୍ୱାରା ମହାପ୍ରଭୁଙ୍କୁ ମାସିକ ଦୁଇଦିନ ଭିକ୍ଷା ପ୍ରଦାନ କରିବାକୁ ଲାଗିଲେ । କିଛିଦିନ ପରେ ମନେ ବିଚାର କଲେ ,

ଏ ବିଷୟୀର ସମ୍ପତ୍ତିରେ ମୁଁ ଯେ ମହାପ୍ରଭୁଙ୍କୁ ଭିକ୍ଷାର ନିମନ୍ତ୍ରଣ କରେଁ, ମହାପ୍ରଭୁ ମୋର ଅନୁରୋଧରେ ଏହା ଗ୍ରହଣ କରନ୍ତି ସତ୍ୟ କିନ୍ତୁ ଏଥିରେ ତାଙ୍କର ମନ ପ୍ରସନ୍ନ ହୁଏ ନାହିଁ । ଏ ଦ୍ରବ୍ୟ ଗ୍ରହଣରେ ମୋର ଚିତ୍ତ ମଧ ନିର୍ମଳ ହୁଏନାହିଁ, ଗ୍ଳାନି ଜାତହୁଏ; ଏ ନିମନ୍ତ୍ରଣରେ କେବଳ ପ୍ରତିଷ୍ଠା ସାର, ଏଥିରେ ପରମାର୍ଥତଃ କିଛି ଲାଭ ନାହିଁ, ଏହା ଭାବି ସେ ନିମନ୍ତ୍ରଣ ପରିତ୍ୟାଗ କଲେ । ମହାପ୍ରଭୁ ଏଥିରେ ସନ୍ତୁଷ୍ଟ ହୋଇ କହିଥିଲେ ।—

ବିଷୟୀର ଅନ୍ନ ଖାଇଲେ ମଳିନ ହୁଏ ମନ
ମଳିନ ମନହେଲେ ନହେ କୃଷ୍ଣେର ସ୍ମରଣ ।
ବିଷୟୀର ଅନ୍ନ ହୁଏ ରାଜସ ନିମନ୍ତ୍ରଣ
ଦାତା ଭୋକ୍ତା ଦୋହିଁର ମଳିନ ହୁଏ ମନ ।
(ଚୈ ଚଃ ଅନ୍ତ୍ୟ ଷଷ୍ଠ)

ଏବାନନ୍ଦି ଶ୍ରୀହରିନାମଗ୍ରହଣ ଓ ଶ୍ରୀରାଧାକୃଷ୍ଣଙ୍କ ଲୀଳା ସ୍ମରଣହିଁ ବୈରାଗୀମାନଙ୍କର କର୍ତ୍ତବ୍ୟ । ଶ୍ରୀରଘୁନାଥ ଦାସହିଁ ବୈରାଗ୍ୟର ଚୂଡ଼ାନ୍ତ ଉଦାହରଣ ଦେଖାଇ ଯାଇ ଅଛନ୍ତି । ତାଙ୍କ ସମ୍ବନ୍ଧରେ ଶ୍ରୀକୃଷ୍ଣଦାସ କବିରାଜ ଲେଖିଅଛନ୍ତି ।—

ଅନନ୍ତ ଗୁଣ ରଘୁନାଥେର କେ କରିବେ ଲେଖା
ରଘୁନାଥେର ନିୟମ ଯେନ ପାଷାଣେର ରେଖା ।
ସାଢ଼େ ସାତପ୍ରହର ଯାୟ ଯାହାର ସ୍ମରଣେ
ଆହାର ନିଦ୍ରା ଚାରିଦଣ୍ଡ ସେ ଓ ନହେ କୋନଦିନେ ।
ବୈରାଗ୍ୟେର କଥା ତାଁର ଅଦ୍ଭୁତ କଥନ
ଆଜନ୍ମ ନାଦିଲ ଜିହ୍ୱାୟ ରସେର ସ୍ପର୍ଶନ ।
ଛିଣ୍ଡା କାନି କାଁଥା ବିନା ନାପରେ ବସନ ।
(ଚୈଃ ଚଃ ଅନ୍ତ୍ୟ ଷଷ୍ଠ)

ଏତ ଗଲା ଶ୍ରୀରଘୁନାଥ ଦାସଙ୍କ ଦ୍ୱାରା ମହାପ୍ରଭୁଙ୍କର ଲୋକଙ୍କୁ ବୈରାଗ୍ୟ ଶିକ୍ଷା । ଏବେ ସେ ନିଜେ ନିଜ ଉଦାହରଣଦ୍ୱାରା କି ଶିକ୍ଷା ଦେଇଯାଇଅଛନ୍ତି ଦେଖାଯାଉ ।

ମହାରାଜା ପ୍ରତାପରୁଦ୍ର ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କ ସଙ୍ଗେ ମିଳିବା ପାଇଁ ଉତ୍କଣ୍ଠିତ । ସେ ଉତ୍କଳରେ ତ୍ରିବେଣୀ ଠାରୁ ଦକ୍ଷିଣରେ ରାଜମହେନ୍ଦ୍ରୀ ପର୍ଯ୍ୟନ୍ତ ସମଗ୍ର ଦେଶର ମହାରାଜା । ସମସ୍ତ ଭାରତ ବର୍ଷ ସେତେବେଳେ ତାଙ୍କ ପ୍ରତାପରେ କମ୍ପିତ; ତାଙ୍କ ରାଜ୍ୟମଧ୍ୟରେ ଜଣେ ସନ୍ନ୍ୟାସୀ ବାସ କରୁଅଛନ୍ତି । ତାଙ୍କୁ ଦର୍ଶନ କରିବାପାଇଁ ମହାରାଜା ଏତେ ବ୍ୟାକୁଳ କାହିଁକି ? ନା, ମହାରାଜା ସେତେବେଳେ ଉତ୍ତମରୂପେ ବୁଝିଥିଲେ ଶ୍ରୀକୃଷ୍ଣ ଚୈତନ୍ୟ ଜଣେ ସାମାନ୍ୟ ସନ୍ନ୍ୟାସୀ ନୁହନ୍ତି । ସେ କୋଟି ବ୍ରହ୍ମାଣ୍ଡର କର୍ତ୍ତା ସ୍ୱୟଂ ଭଗବାନ । ତାଙ୍କୁ ବଳପ୍ରକାଶ ପୂର୍ବକ ଯାଇ ଅଣି ତାଙ୍କର ଦର୍ଶନ ଲାଭ କରିବା ତାଙ୍କ ( ମହାରାଜାଙ୍କ ) ପକ୍ଷରେ ଅସମ୍ଭବ । ତାଙ୍କ ଦେବଦୁର୍ଲ୍ଲଭ ଦର୍ଶନ ଲାଭ କେବଳ ତାଙ୍କ-କୃପାସାପେକ୍ଷ । ଏଣୁ ସେ ( ମହାରାଜା ) ନିଜ ସଭାପଣ୍ଡିତ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କୁ ମହାପ୍ରଭୁଙ୍କ ଦର୍ଶନ ଲାଭ କରାଇଦେବାକୁ ଅନୁରୋଧ କରିଥିଲେ । ସାର୍ବଭୌମ ଭଟ୍ଟାଚାର୍ଯ୍ୟ ମହାରାଜାଙ୍କର ଏହି ପ୍ରାର୍ଥନା ମହାପ୍ରଭୁଙ୍କଠାରେ ନିବେଦନ କରନ୍ତେ ମହାପ୍ରଭୁ କହିଥିଲେ "ସାର୍ବଭୌମ ! ତୁମ୍ଭପରି ମହାପଣ୍ଡିତ ପକ୍ଷରେ ଏପରି କଥା କହିବା ଭଲ ଦିଶୁଛି କି ? ମୁଁ ସନ୍ନ୍ୟାସୀ, ସ୍ତ୍ରୀ ଦର୍ଶନ କିମ୍ବା ରାଜଦର୍ଶନ କି ମୋ ପକ୍ଷରେ କୌଣସିରୂପେ ବିଧେୟ ? ଯଥା ।—

ସାର୍ବଭୌମ କହ କେନ ଅଯୋଗ୍ୟ ବଚନ
ସନ୍ନ୍ୟାସୀ ବିରକ୍ତ ଆମାର ରାଜଦରଶନ ।
ସ୍ତ୍ରୀ ଦରଶନ ସମ ବିଷେର ଭକ୍ଷଣ ।

( ଚୈଃ ଚଃ ମଧ୍ୟ ୧୧ପରି )

ସାର୍ବଭୌମ ସେଥିରେ କହିଲେ "ପ୍ରଭୋ ! ଆପଣ ଯାହା କହିଲେ ତାହା ସତ୍ୟ କିନ୍ତୁ ମହାରାଜା ପ୍ରତାପରୁଦ୍ର କେବଳ ରାଜା ନୁହନ୍ତି ? ସେ ସେ ଶ୍ରୀଜଗନ୍ନାଥ ଦେବଙ୍କର ଏକ ପ୍ରଧାନ ସେବକମଧ୍ୟରେ ଗଣ୍ୟ । ସେ ଭାବରେ ଦେଖିବାକୁ ଗଲେ ସେ ତ ବର୍ଜ୍ଜନୀୟ ନୁହନ୍ତି । ଏଥିର ଉତ୍ତରରେ ମହାପ୍ରଭୁ କହିଲେ ତାହାହେଲେ ମଧ୍ୟ ରାଜା ରାଜସର୍ପ ସଦୃଶ । ଚିତ୍ରିତ କାଷ୍ଠନାରୀଙ୍କୁ ସ୍ପର୍ଶ କଲେ ଯେରୂପ ଚିତ୍ତର ବିକାର ଜାତହୁଏ ତଦ୍ରୂପ ରାଜଦର୍ଶନରେ ବିଷୟୀ ସଂସର୍ଗ ଜନିତ କୁଫଳ ଜାତହୁଏ ।

ବୃଦ୍ଧ କହେ ତଥାପି ରାଜା କାଳ ସର୍ପାକାର
କାଷ୍ଠନାରୀ ସ୍ପର୍ଶେ ଯୈଛେ ଉପଜେ ବିକାର ।
(ଚିଃ ଚଃ ମଧ୍ୟ ୧୧ ପରି)

ମହାରାଜାଙ୍କ ହୃଦୟରେ ପ୍ରଗାଢ଼ ଭକ୍ତି ଜନ୍ମିଅଛି ଏହା ଜାଣି ମଧ୍ୟ ଲୋକଶିକ୍ଷା ନିମିତ୍ତ ମହାପ୍ରଭୁ ଏହିରୂପ କାଠିନ୍ୟ ଦର୍ଶାଇଥିଲେ, ଏବଂ ଏତିକରେ ସେ ପରୀକ୍ଷା ଶେଷ ହୋଇଥିଲା ଏମନ୍ତ ନୁହେ । ମହାରାଜାଙ୍କ ମିଳନାର୍ଥେ ମହାପ୍ରଭୁଙ୍କ ପ୍ରିୟ ପାର୍ଷଦମାନଙ୍କୁ ବହୁବାର କଷ୍ଟ ସ୍ୱୀକାର କରିବାକୁ ହୋଇଥିଲା । ଶ୍ରୀ ସାର୍ବଭୌମ, ଶ୍ରୀରାମାନନ୍ଦ, ଶ୍ରୀ ପରମାନନ୍ଦ, ପୁରୀ ଓ ଶ୍ରୀମନ୍ ନିତ୍ୟାନନ୍ଦ ସମସ୍ତଙ୍କୁ ଏଥିପାଇଁ ବ୍ୟସ୍ତ ହେବାକୁ ପଡ଼ିଥିଲା ।

ଶ୍ରୀଳ ରାମାନନ୍ଦ ମହାରାଜାଙ୍କ ମିଳନ ବିଷୟରେ ନିବେଦନ କରି କହିଥିଲେ "ପ୍ରଭୋ ! ମହାରାଜା ପ୍ରତାପରୁଦ୍ରଙ୍କୁ କୃପା କରି ଥରେ ମାତ୍ର ଶ୍ରୀଚରଣକମଳ ପ୍ରଦାନ କରନ୍ତୁ ।" ମହାପ୍ରଭୁ କହିଲେ "ରାମାନନ୍ଦ ! କଅାଁଥା ଗୃହଅତୁ ବଗୃହ୍ନ କରି କହୁ ଦେଖି ? ସନ୍ନ୍ୟାସୀ ପକ୍ଷରେ ରାଜସଂସର୍ଗ ଉଚିତ କି ? ଯେଥିରେ ଭିକ୍ଷୁକର ଯେ ଇହଲୋକ ପରଲୋକ ଉଭୟ ନଷ୍ଟ ହେବ । ଲୋକମାନେ ମୋତେ ପରିହାସ କରିବେ ।" ତହିଁରେ ରାମାନନ୍ଦ କହିଲେ "ପ୍ରଭୋ ! ଆପଣ ସ୍ୱତନ୍ତ୍ର, ଆପଣଙ୍କର ପୁଣି ଭୟ କାହାକୁ ?" ମହାପ୍ରଭୁ କହିଲେ "ରାମାନନ୍ଦ ! ତୁମ୍ଭେ କଣ କହୁଅଛ । ମୁଁ ଏକେ ମନୁଷ୍ୟ, ତହିଁରେ ପୁଣି ଆଶ୍ରମରେ ସନ୍ନ୍ୟାସୀ, କାୟମନୋବାକ୍ୟରେ ଲୌକିକ ବ୍ୟବହାରକୁ ଭୟ କରେଁ, କାରଣ ଧୋବଳ ଲୁଗାରେ କଳା ଦାଗ ପରି ସନ୍ନ୍ୟାସୀଙ୍କର ଅଳ୍ପଛିଦ୍ର ଲୋକଚକ୍ଷୁରେ ଉଚ୍ଚ ହୋଇ ଦୃଶ୍ୟମାନ ହୁଏ । ଯଥା—

"ଶୁକ୍ଳ ବସ୍ତ୍ରେ ମସିବିନ୍ଦୁ ଯୈଛେ ନା ଲୁକାୟ
ସନ୍ନ୍ୟାସୀର ଅଳ୍ପଛିଦ୍ର ସର୍ବଲୋକେ ଗାୟ ।
(ଚୈଃ ଚଃ ମଧ୍ୟ ୧୨ ପରି)

ଏହା ଶୁଣି ରାମାନନ୍ଦ କହିଲେ "ପ୍ରଭୋ ! ଆପଣ ପତିତପାବନ, ଅନେକ ପାପୀଙ୍କୁ ଉଦ୍ଧାର କରିଅଛନ୍ତି ଓ କରୁଅଛନ୍ତି । ମହାରାଜା ପ୍ରତା-

ରୁଦ୍ରଙ୍କ ପରି ଏ କଠୋରଚିତ୍ତ କାହିଁକି ? ମହାରାଜା ଶ୍ରୀଜଗନ୍ନାଥଙ୍କର ସେବକ ଏବଂ ଭବଦୀୟ ଶ୍ରୀଚରଣ କମଳରେ ଏକାନ୍ତ ଅନୁରାଗୀ ।”

ମହାପ୍ରଭୁ ଏହାଶୁଣି କହିଲେ “ ବିଶୁଦ୍ଧଦୁଗ୍ଧପୂର୍ଣ୍ଣ କଳସରେ ବିନ୍ଦୁଏ ମାତ୍ର ସୁରା ପକାଇଲେ ଯେମନ୍ତ ତାହା ଅପବିତ୍ର ହୁଏ ଓ ଆଉ ଦେବଯୋଗ୍ୟ ହୁଏ ନାହିଁ, ତଦ୍ରୂପ ଏକା ରାଜୋପାଧି ପ୍ରତାପରୁଦ୍ରଙ୍କୁ ସନ୍ଦର୍ଶନର ଅଯୋଗ୍ୟ କରିଅଛି ।” ଯଥା—

ପ୍ରଭୁକହେ ପୂର୍ଣ୍ଣ ଯୈଛେ ଦୁଗ୍ଧେର କଲସ
ସୁରାବିନ୍ଦୁ ପାତେ କେହ ନା କରେ ପରଶ ।
ଯଦ୍ୟପି ପ୍ରତାପରୁଦ୍ର ସର୍ବ୍ବଗୁଣବାନ
ତାହାରେ ମଲିନ କୈଲ ଏକ ରାଜନାମ ।

( ଚୈ: ଚ: ମଧ୍ୟ ୧୨ )

ପୁଣି ଏକସମୟରେ ମହାପ୍ରଭୁ ଆବିଷ୍ଟ ଭାବରେ ରଥଅଗରେ ନୃତ୍ୟ କରୁ କରୁ ମହାରାଜା ପ୍ରତାପରୁଦ୍ରଙ୍କ ସମ୍ମୁଖରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ମହାରାଜା ମହାପ୍ରଭୁଙ୍କର ପତନ ଦେଖି ସସମ୍ଭ୍ରମରେ ତାହାଙ୍କୁ ଧରିପକାଇଲେ ମହାପ୍ରଭୁଙ୍କର ବାହ୍ୟଜ୍ଞାନ ଉଦୟ ହୁଅନ୍ତେ ସେ ଲୋକ ଶିକ୍ଷା ନିମିତ୍ତ ବାହ୍ୟକରେ ଆତ୍ମଧିକ୍କାର ପୂର୍ବକ କହିଲେ ଛିଛି ମୋର ବିଷୟୀ ଲୋକସ୍ପର୍ଶ ହେଲା । ଶ୍ରୀପାଦ ନିତ୍ୟାନନ୍ଦ ମଧ୍ୟ ଆବିଷ୍ଟଥିବାହେତୁ ଟିକିଏ ସାବଧାନ ହୋଇ ପାରିଲେ ନାହିଁ । ଯଥା—

ଏଇମତ ନୃତ୍ୟ ପ୍ରଭୁ କରିତେ ଭ୍ରମିତେ
ପ୍ରତାପରୁଦ୍ରେର ଆଗେ ଲାଗିଲା ପଡ଼ିତେ ।
ସମ୍ଭ୍ରମେ ପ୍ରତାପରୁଦ୍ର ପ୍ରଭୁକେ ଧରିଲ ।
ତାହାକେ ଦେଖିତେ ପ୍ରଭୁର ବାହ୍ୟ ହଇଲ ।
ରାଜାଦେଖି ମହାପ୍ରଭୁ କରେନ ଧିକ୍କାର ।
ଛିଛି ବିଷୟୀର ସ୍ପର୍ଶ ହଇଲ ଆମାର ।
ଆବେଶେତେ ନିତ୍ୟାନନ୍ଦ ହୈଲା ଅସାବଧାନ
କାଶୀଶ୍ୱର ଗୋବିନ୍ଦ ଆଛିଲ ଅନ୍ୟସ୍ଥାନ ।

ଯଦ୍ୟପି ରାଜାର ଦେଖି ହାଡ଼ର ସେବନେ,
ପ୍ରସନ୍ନ ହଞ୍ଚାଛେ ତାରେ ମିଳିବାର ମନେ
ତଥାପି ଆପନଗଣ କରିତେ ସାବଧାନ
ବାହ୍ୟେ କିଛୁ ରୋଷାଭାସ କୈଲ୍ଲ ଭଗବାନ ।

( ଚୈଃ ଚ ମଧ୍ୟ ୧୩ )

ଅହା ! ବୈରାଗୀମାନଙ୍କ ପ୍ରତି ବିଷୟୀ ସଂସର୍ଗ ବିଷୟରେ କ ମହତ୍ତ୍ୱ ଅନୁଶାସନ ମହାପ୍ରଭୁ ନିଜ ଅଚରଣଦ୍ୱାରା ଦେଖାଇ ଯାଇ ନାହାନ୍ତି । ବୈରାଗୀମାନଙ୍କର ବିଷୟ ଭୋଗତ ଦୂରର କଥା । ବିଷୟୀ ଲୋକର ସଂସର୍ଗକୁ ଅପିବା ଏକାବେଳକେ ନିଷିଦ୍ଧ, ତେବେ ନିଜ ଶକ୍ତିରେ ବିଷୟୀକୁ ଭକ୍ତରେ ପରିଣତ କରି ତାହାର ସଂସର୍ଗ କରିବାକୁ ମନାନାହିଁ ।

ଶ୍ରୀଜଗଦାନନ୍ଦ ମହାପ୍ରଭୁଙ୍କୁ ସାମାନ୍ୟ ସୁଖ ଭୋଗପାଇଁ କେତେ କେତେ ଯତ୍ନ କର ନ ଥିଲେ, ଓ ସେଥିଯୋଗୁଁ ମହାପ୍ରଭୁଙ୍କ ସଙ୍ଗେ ତାଙ୍କର କେତେ ପ୍ରେମକଳହ ହୋଇ ନ ଥିଲା, ତଥାପି ମହାପ୍ରଭୁ ଜଗଦାନନ୍ଦଙ୍କ ପ୍ରସ୍ତୁତ କରିଥିବା ତେଲେଇ ଓ ତକିଆ ବ୍ୟବହାର କରିବାକୁ ସ୍ୱୀକାର କରୁନଥିଲେ ସେ ପ୍ରେମ କଳହର ଛବି ଅଙ୍କନ କରିବାକୁ ମୋର ଶକ୍ତି ନାହିଁ । ସେ ପ୍ରେମ ଦିବର୍ତ୍ତି ଗୋଲୋକରେ ମଧ୍ୟ ବିରଳ, ତାହାର ସେହି ଏକମାତ୍ର ତୁଳନା ଦ୍ୱିତୀୟ ନାହିଁ ।

ଭୋଗ ବିଳାସିତ ବୈରାଗୀମାନଙ୍କ ପକ୍ଷରେ ନିନ୍ଦନୀୟ । ସେଥି ମଧ୍ୟରେ ପୁଣି ସ୍ତ୍ରୀ ସଂସର୍ଗ ଏକବାରେ ବର୍ଜ୍ଜନୀୟ । ମହାପ୍ରଭୁ ଏଥିର ଚରମ ଆଦର୍ଶ ରଖି ଯାଇ ଅଛନ୍ତି । ଶ୍ରୀଭଗବାନ ଆଚାର୍ଯ୍ୟ ଥରେ ମହାପ୍ରଭୁଙ୍କୁ ଭିକ୍ଷା ନିମନ୍ତେ ନିମନ୍ତ୍ରଣ କରିଥିଲେ । ମହାପ୍ରଭୁ ଭିକ୍ଷା କରିବାକୁ ଯାଇ ଦେଖିଲେ ଦ୍ରବ୍ୟ ସୁବାସିତ ସରୁଅନ୍ନ ଶ୍ରୀକୃଷ୍ଣଙ୍କୁ ଅର୍ପିତ ହୋଇଅଛି । ଅନ୍ନ ଦେଖି ମହାପ୍ରଭୁ ସୁଖୀ ହୋଇ ପଚାରିଲେ, ଆଚାର୍ଯ୍ୟ ! ଏମନ୍ତ ସୁନ୍ଦରସୁବାସିତ ସରୁ ଅନ୍ନ କେଉଁଠାରୁ ପାଇଲ ? ଭଗବାନ ଆଚାର୍ଯ୍ୟ କହିଲେ ଏ ସରୁଚାଉଳ ମାଧବୀ ଦାସୀଙ୍କ ଠାରୁ ଆଣାଇ ଅଛି ।" ମହାପ୍ରଭୁ ପଚାରିଲେ କିଏ ଯାଇ ସେ ଚାଉଳ ତାଙ୍କଠାରୁ ମାଗି ଆଣିଲା । ଆଚାର୍ଯ୍ୟ କହିଲେ ମୁଁ ଛୋଟ ହରିଦାସଙ୍କୁ ଚାଉଳ

ମାରି ତାଙ୍କୁ ପଠାଇଥିଲ । ସେ ମାଠ ଆଣି ଅଛି । ମହାପ୍ରଭୁ ପ୍ରସାଦ ସେବନାନନ୍ତର ନିଜ କୁଟୀରକୁ ଫେରି ଆସି ଗୋବିନ୍ଦଙ୍କୁ କହିଲେ ! ଗୋବିନ୍ଦ ଆଜିଠାରୁ କାର୍ତ୍ତନୀୟା ଛୋଟ ହରିଦାସକୁ ଏଠାକୁ ଆସିବାକୁ ବାରଣ କରିବ । ଜ କାହଣରୁ ମହାପ୍ରଭୁ ଯେ ହରିଦାସ ପ୍ରତି ଏପରି କଠୋର ଆଜ୍ଞା ପ୍ରଦାନ କରିଲ ତାହା କେହ ବୁଝିପାରିଲେ ନାହିଁ । ଏ ଆଜ୍ଞା ଶ୍ରବଣ କରି ହରିଦାସଙ୍କ ମସ୍ତକରେ ବଜ୍ର ପତନ ହେଲା । ସେ ମହାପ୍ରଭୁଙ୍କୁ କୀର୍ତ୍ତନୀୟା, ସତତ ମଧୁର କୀର୍ତ୍ତନ କରନ୍ତି ଓ ମହାପ୍ରଭୁ ତାହା ଶୁଣି ପ୍ରୀତି ଲାଭ କରନ୍ତି । ହଠାତ୍ ମହାପ୍ରଭୁଙ୍କର ଏରୂପ ଆଜ୍ଞା କାହିଁକି ହେଲା ଯେ ତାହା ବୁଝି ନପାରି ତନଦିନ ଉପବାସରେ ଅତିବାହିତ କଲେ । କେହ ଏଥିର କାରଣ ମହାପ୍ରଭୁଙ୍କୁ ପଚାରିବାକୁ ସାହସ କଲେ ନାହିଁ । ସମସ୍ତଙ୍କ ଅନୁରୋଧରେ ମହାପ୍ରଭୁଙ୍କର ଅନ୍ତରଙ୍ଗ ସ୍ୱରୂପଗୋସ୍ୱାମୀ ସାହସରେ ନିର୍ଭରକରି ପଚାରିଲେ "ପ୍ରଭୋ ! ଛୋଟ ହରିଦାସ କେଉଁ ଆଚରଣରେ କି ଅପରାଧ କରିଅଛି ଯେ ଆପଣ ତା ପ୍ରତି ଏ କଠୋର ଆଦେଶ ପ୍ରଦାନ କରିଅଛନ୍ତି । ସେ ଯେ ଆଜକୁ ତନଦିନ ହେବ ଜଳଗ୍ରହଣ କରିନାହିଁ ।"

ମହାପ୍ରଭୁ କହିଲେ "ସ୍ୱରୂପ ! ବୈରାଗୀ ପକ୍ଷରେ ସ୍ତ୍ରୀ ସମ୍ଭାଷଣ ଏକବାରେ ନିଷିଦ୍ଧ । ଯେଉଁ ବୈରାଗୀ ସ୍ତ୍ରୀ ସମ୍ଭାଷଣ କରେ ମୁଁ ତାହାର ମୁଖ ପର୍ଯ୍ୟନ୍ତ ଦେଖିବାକୁ ଇଚ୍ଛେ ନାହିଁ । ମର୍କଟ ବୈରାଗ୍ୟ କଦାପି ଭଲ ନୁହେଁ । ଯଥା :-

ପ୍ରଭୁ କହେ ବୈରାଗୀକରେ ପ୍ରକୃତି ସମ୍ଭାଷଣ
ଦେଖିତେ ନା ପାରି ଆମି ତାହାର ବଦନ ।
ଦୁର୍ବାର ଇନ୍ଦ୍ରିୟକରେ ବିଷୟ ଗ୍ରହଣ
ଦାରବୀ ପ୍ରକୃତି ହରେ ମୁନିଜନେର ମନ ।
କ୍ଷୁଦ୍ର ଜୀବ ସବ ମର୍କଟ ବୈରାଗ୍ୟ କରିଞା
ଇନ୍ଦ୍ରିୟ ଚରାଞା ବୁଲେ ପ୍ରକୃତି ସମ୍ଭାଷିଞା ।

( ଚୈଃ ଚଃ ଅନ୍ତ୍ୟ ୨ )

ମହାପ୍ରଭୁଙ୍କର ବିରକ୍ତି ବ୍ୟଞ୍ଜକ ବାକ୍ୟାବଳି ଶ୍ରବଣ କରି ଓ ତାଙ୍କର ଭାବଭଙ୍ଗୀ ଦେଖି ସମସ୍ତେ ନୀରବ ହେଲେ । ସମସ୍ତେ ବୁଝିଲେ ଛୋଟ ହରି-

ଦାସ ଯେ ମାଧବୀ ମହାନ୍ତିଙ୍କ ଗୃହରୁ ସରୁ ତୁରାଗତ ଚାଉଳ ମାଗି ଆଣିଥିଲେ ତାହାଙ୍କୁ ଲକ୍ଷ୍ୟ କରି ମହାପ୍ରଭୁ ଏହା କହିଅଛନ୍ତି । ତେବେ ମହାପ୍ରଭୁଙ୍କର ପ୍ରକୃତ ଅଭିସନ୍ଧି କାରଣ ଶ୍ରୀଲ କବିରାଜ ମହାଶୟ କିଛି ସ୍ପଷ୍ଟ କରି ବୁଝାଇ ଦେଇ ନାହାନ୍ତି । ମୋର କ୍ଷୁଦ୍ର ବୁଦ୍ଧିରେ କିଛି ଅନୁମାନ କରି ଲେଖିବା ଧୃଷ୍ଟତା ମାତ୍ର । ତେବେ ମାଧବୀ ଦାସୀ ଯେତେବେଳେ ବୃଦ୍ଧା ଓ ପରମ ବୈଷ୍ଣବୀ ବୈଷ୍ଣବାଗ୍ରଗଣ୍ୟ ଶିଖି ମାହାନ୍ତିଙ୍କର ଭଗିନୀ ଓ ମହାପ୍ରଭୁ ଯେ ସାଢ଼େ ତିନିଜଣ ପ୍ରଧାନ ଭକ୍ତ ବୋଲି ଗଣନା କରନ୍ତି ସେଥିମଧ୍ୟରେ ସେ ଜଣେ । ( ସ୍ୱରୂପ, ରାମାନନ୍ଦ, ଶିଖିମାହାନ୍ତି ଓ ମାଧବୀ ଦାସୀ ଏହି ସାଢ଼େ ତିନିଜଣ ଓ ମାଧବୀ ସ୍ତ୍ରୀ ବୋଲି ଅର୍ଦ୍ଧ ମଧ୍ୟରେ ଗଣ୍ୟ ) ଏରୂପ ସ୍ଥଳେ କେବଳ ତାଙ୍କଠାରୁ ଚାଉଳ ଆଣିବା ଯୋଗୁଁ ଯେ ମହାପ୍ରଭୁ ହରିଦାସଙ୍କୁ ବର୍ଜ୍ଜନ କରିଥିଲେ ଏହା ଅନୁମାନ କରାଯାଏ ନାହିଁ । ଜୀବଶିକ୍ଷା ପାଇଁ ଅବତୀର୍ଣ୍ଣ ଶ୍ରୀମନ୍ ମହା-ପ୍ରଭୁଙ୍କର ଏଥିରେ ବିଶେଷ କିଛି ଉଦ୍ଦେଶ୍ୟ ଥିଲା, ସେଥିର ଫଳ ମଧ୍ୟ ଶ୍ରୀ-ଚରିତାମୃତରେ କବିରାଜ ଗୋସ୍ୱାମୀ ଉଲ୍ଲେଖ କରିଅଛନ୍ତି । ଶ୍ରୀ ପରମାନନ୍ଦ ପୁରୀ ଗୋସ୍ୱାମୀ ପର୍ଯ୍ୟନ୍ତ ଅନୁରୋଧ କଲେ ମଧ ମହାପ୍ରଭୁଙ୍କର ମନ ଯେତେ-ବେଳେ ଛୋଟ ହରିଦାସଙ୍କ ପକ୍ଷରେ ତରଳ ହେଲା ନାହିଁ ସେତେବେଳେ ସମସ୍ତ ଭକ୍ତଗଣଙ୍କ ମନରେ ଅବୈଧ ସ୍ତ୍ରୀ ସଂସର୍ଗ ପ୍ରତି ଭୟ ଜନ୍ମିଲା । ଯଥା ।

ଦେଖି ତ୍ରାସ ଉପଜିଲ ସବ ଭକ୍ତଗଣେ
ସ୍ୱପ୍ନେଓ ଛାଡ଼ିଲ ସବ ସ୍ତ୍ରୀ ସମ୍ଭାଷଣେ ।

( ଚୈଃ ଚଃ ଅନ୍ତ୍ୟ ୨ପରି )

ବୈଷ୍ଣବ ପକ୍ଷରେ ସ୍ତ୍ରୀ ସମ୍ଭାଷଣ ଯେ କେତେଦୂର ଗର୍ହିତ ତାହା ମହା-ପ୍ରଭୁଙ୍କର ଏହି ଶିକ୍ଷା ଶାସନହିଁ ଯଥେଷ୍ଟ ପ୍ରମାଣ । ଏପରି ଉଦାହରଣ ଆଉ ନାହିଁ ତାହାର ଅନ୍ୟଥା କରିବା ଏକାବେଳକେ ମହାପ୍ରଭୁଙ୍କର ଶିକ୍ଷାର ବିପ-ରୀତ ଓ ତାହା ମହାପ୍ରଭୁଙ୍କର କଦାପି ଅନୁମୋଦିତ ନୁହେ । ବଡ଼ ଦୁଃଖର ବିଷୟ ଆଜି କାଲି କେତେକ କାମୀ ବ୍ୟକ୍ତି ନିଜ ବୁଦ୍ଧିବଳଦ୍ୱାରା ଭ୍ରାନ୍ତମତ ପ୍ରଚାର କରି ସରଳପ୍ରାଣ ବ୍ୟକ୍ତିମାନଙ୍କୁ ଅବୈଧ ସ୍ତ୍ରୀ ସଂସର୍ଗରେ ପ୍ରବର୍ତ୍ତିତ ଅଛନ୍ତି ଓ ତାହା ମହାଜନସମ୍ମତ ବୋଲି ଶାସ୍ତ୍ରର କୂଟଅର୍ଥ ଦ୍ୱାରା ବୁଝାଇ

ଦେଉଅଛନ୍ତି । ସାଧାରଣ ଲୋକ ଯେ ବାହ୍ୟଜ୍ଞାନ ହେତୁ ବ୍ରଜର ନନ୍ଦନ କୃଷ୍ଣ ପ୍ରେମ ପ୍ରାପ୍ତି ଅର୍ଥ ସହଜ ମଣି କୁପଥକୁ ସାଦରେ ଗ୍ରହଣ କରୁଅଛନ୍ତି । ଧନ୍ୟ ମାୟା । ହେତୁରୂପେ ଯେ ତାଙ୍କ କାର୍ଯ୍ୟ ସିଦ୍ଧ କରୁଅଛନ୍ତି ।

ଉପରେତ ଗଲା ଅପର ଦ୍ରିଭ ଅନୁଶାସନ । ନିଜ ଦୃଷ୍ଟାନ୍ତରେ ମହାପ୍ରଭୁ କ କହିଅଛନ୍ତି ଦେଖାଯାଉ ।

ଦିନକରେ ମହାପ୍ରଭୁ ଯମେଶ୍ୱର ଟୋଟାକୁ ( ଟୋଟା ଗୋପୀନାଥ ) ଯାଉଅଛନ୍ତି । ପଥରେ ଶୁଣିଲେ ଜଣେ ଅତି ସୁମଧୁର ସ୍ୱରରେ ଗୁର୍ଜ୍ଜରୀ ରାଗରେ ଗୀତ ଗୋବିନ୍ଦ ପଦ ଗାୟନ କରୁଅଛି । ମହାପ୍ରଭୁ ସେ ମଧୁର ଗୀତ ଶ୍ରବଣ କରି ଭାବ ବିହ୍ୱଳ ହୋଇ ଦଉଡ଼ିଲେ । ଇଚ୍ଛା, ସେ ଗାୟକକୁ ପ୍ରେମାଲିଙ୍ଗନ ପ୍ରଦାନ କରିବେ । ବାହ୍ୟଜ୍ଞାନଶୂନ୍ୟ, ଅତଏବ ପଥରେ ସିହୁଁ କଣ୍ଟାର ବାଡ଼ ଥିଲେ ମଧ୍ୟ ତାହା ଅତିକ୍ରମ କରି ଅଗ୍ରସର ହେବାକୁ ଲାଗିଲେ । ସେବକ ଶ୍ରୀଗୋବିନ୍ଦଦାସ ସଙ୍ଗରେ ଥିଲେ । ସେ ଦେଖିଲେ ବଡ ବିଷମ, ମହାପ୍ରଭୁଙ୍କର ତ ବାହ୍ୟଜ୍ଞାନ ନାହିଁ । କିନ୍ତୁ ଏ ଯେ ଦେବଦାସୀର ଗୀତ । ମହାପ୍ରଭୁ ଏହାକୁ ଆଲିଙ୍ଗନ କଲେ, ପରେ ବାହ୍ୟଜ୍ଞାନ ଲାଭାନ୍ତର ହୁଏତ ଏକ ବିଭ୍ରାଟ ଉପସ୍ଥିତ ହେବ । ଏହା ଭାବି ଗୋବିନ୍ଦ ଧାଇଁଯାଇ ମହାପ୍ରଭୁଙ୍କୁ କୁଣ୍ଢାଇ ପକାଇ କହିଲେ " ପ୍ରଭୋ ! ଏ ଯେ ସ୍ତ୍ରୀ ଲୋକର କଣ୍ଠ ସ୍ୱର । ଆପଣ କଣ କରିବାକୁ ଯାଉଅଛନ୍ତି ।" ସ୍ତ୍ରୀ ଏହି ଶବ୍ଦ ଶୁଣିବା ମାତ୍ର ମହାପ୍ରଭୁଙ୍କର ବାହ୍ୟଜ୍ଞାନ ଉଦୟ ହେଲା ଏବଂ ସେ ସେଠାରୁ ପ୍ରତ୍ୟାବୃତ ହେଲେ ଓ କହିଲେ ଗୋବିନ୍ଦ ! ଆଜି ତୁ ମୋର ଜୀବନ ରକ୍ଷା କଲୁ । ସ୍ତ୍ରୀ ସ୍ପର୍ଶ ହୋଇଥିଲେ ମୁଁ ଆଉ ଜୀବନ ରଖି ପାରି ନ ଥାନ୍ତି । ତୋର ଏ ଋଣ ମୁଁ ସୁଝି ପାରିବି ନାହିଁ । ଯଥା —

ପ୍ରଭୁ କହେ ଗୋବିନ୍ଦ ଆଜ ରାଖିଲେ ଜୀବନ
ସ୍ତ୍ରୀ ପରଶ ହୈଲେ ହୈତ ଆମାର ମରଣ ।
ଏ ଋଣ ଶୋଧିତେ ଆମି ନାରିବ ତୋମାର ।

( ଚୈଃ ଚଃ ଅନ୍ତ୍ୟ ୧୩ ପରି )

ଏ ରୂପ ଉକ୍ତି ଶିକ୍ଷା ଅଛି। ଆମ୍ଭମାନେ ଯଦି ମହାପ୍ରଭୁଙ୍କର ପ୍ରତ୍ୟକ୍ଷ ଆଜ୍ଞାକୁ ଅବହେଳା କରି ନିଜ ଇନ୍ଦ୍ରିୟ ପରିତର୍ପଣରେ ପ୍ରବୃତ୍ତ ହେଉଁ ତାହାର ଫଳ ଆମ୍ଭମାନଙ୍କୁ ଭୋଗ କରିବାକୁ ହେବ ।

ବୈରାଗୀଙ୍କ ସମ୍ବନ୍ଧରେ ଏରୂପ କଠୋର ନିୟମ ଥିଲେହେଁ ବୈରାଗୀ ହେବାର ଉଚ୍ଚଫଳକୁ ଦୃଷ୍ଟି କରି ବୈରାଗ୍ୟାବଲମ୍ବନକାରୀମାନଙ୍କ ପକ୍ଷରେ ଉତ୍ସାହ ଏ ବିଷୟ ଶାସ୍ତ୍ରକାରଗଣ ରଖି ଯାଇ ଅଛନ୍ତି । ସେଥିରେ ନିଜର ଓ କୁଳର ମଙ୍ଗଳ ସାଧିତ ହୁଏ । ମହାପ୍ରଭୁଙ୍କ ଅନ୍ତରଙ୍ଗ ଶ୍ରୀଦାସଗୋସ୍ୱାମୀଙ୍କ ସନ୍ନ୍ୟାସାବଲମ୍ବନ ସମ୍ବନ୍ଧରେ ଶ୍ରୀବୃନ୍ଦାବନ ଦାସ ଲେଖିଅଛନ୍ତି ।

ଗୋଷ୍ଠୀତେ ପୁରୁଷ ଯାର କରୟେ ସନ୍ନ୍ୟାସ
ଷାଠି କୋଟି କୁଳେ ହୟ ଶ୍ରୀବୈକୁଣ୍ଠେ ବାସ ।

(ଚୈ ଭା ଅନ୍ତ ୬ ଅ)

ଅଧିକାରୀ ଭେଦରେ ମନୁଷ୍ୟ ଗୃହସ୍ଥ ବୈଷ୍ଣବ କିମ୍ବା ବୈରାଗୀ ହୋଇ ପାରନ୍ତି । ମହାପ୍ରଭୁ ଏ ଦୁଇଟିର ବାଟ ଶିକ୍ଷା ଦେଇଯାଇ ଅଛନ୍ତି । କାହାକୁ କହିଅଛନ୍ତି ତୁମ୍ଭେ ଘରେ ରହି କୃଷ୍ଣଭଜନ କର । କାହାକୁ କହିଅଛନ୍ତି ତୁମ୍ଭେ ବୈରାଗ୍ୟାବଲମ୍ବନ କର । ଦୁଇ ପଥହିଁ ଉତ୍କୃଷ୍ଟ । ଯାହାକୁ ଯାହା ଉପଯୋଗୀ ।

ତେବେ ଗୃହସ୍ଥ ହୋଇ ବୈଷ୍ଣବଧର୍ମ ଆଚରଣ କରିବା ସାଧାରଣ ପକ୍ଷରେ ସହଜସାଧ୍ୟ । ଭୋଗଦ୍ୱାରା ଦୁର୍ବାର ଇନ୍ଦ୍ରିୟଗଣଙ୍କ ପ୍ରାବଲ୍ୟ କ୍ରମ କ୍ରମେ ହ୍ରାସ ହୋଇ ଯାଏ । ପଦେ ପଦେ ପଦସ୍ଖଳନ ହେବାର ଭୟ ସେତେ ନ ଥାଏ । ମହାତ୍ମା ରାମକୃଷ୍ଣ ପରମହଂସ ଦେବ ଗୃହସ୍ଥାଶ୍ରମୀର ଧର୍ମାଚରଣକୁ କିଲ୍ଲା ଭିତରେ ରହି ଯୁଦ୍ଧ କରିବା ସଙ୍ଗେ ତୁଳନା କରି ଅଛନ୍ତି । ମର୍ମ ନ ବୁଝି ହଠାତ୍ ବୈରାଗ୍ୟାବଲମ୍ବନ କଲେ, କିମ୍ବା ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ବୈରାଗ୍ୟାବଲମ୍ବନ କଲେ ଶେଷରେ କଠିନ ବୈରାଗ୍ୟ ପାଳନ କରିବା ଦୁଃସାଧ୍ୟ ହୋଇପଡ଼େ । ଏଣୁ ଅନେକ ସ୍ଥଳରେ ପତନ ଘଟିଥାଏ । ତେବେ ସୁପ୍ରସିଦ୍ଧ ବୈରାଗୀ ମହାପୁରୁଷମାନଙ୍କର କଥା ସ୍ୱତନ୍ତ୍ର ।

## ଦଶମ ପରିଚ୍ଛେଦ ।

### ସାଧୁସଙ୍ଗ ।

ସାଧୁସଙ୍ଗରୁହିଁ କୃଷ୍ଣଭକ୍ତି ଜନ୍ମେ । ଶ୍ରୀକୃଷ୍ଣ କୃପାକରି ଅନ୍ତର୍ଯ୍ୟାମୀ ସ୍ୱରୂପରେ କାହାରି କାହାରି ହୃଦୟରେ ଭକ୍ତି ଉଦୟ କରନ୍ତି ଏହା ସତ୍ୟ କିନ୍ତୁ ଏରୂପ କୃଷ୍ଣ କୃପାରୁ ହଠାତ୍ ଭକ୍ତିଲାଭ ହେବା ବ୍ୟକ୍ତିଙ୍କ ସଂଖ୍ୟା ଅତି ଅଳ୍ପ । କୃଷ୍ଣଭକ୍ତି ଜାତ ହେବାର ପ୍ରଧାନ ଉପାୟ ସାଧୁସଙ୍ଗ । ଶ୍ରୀସନାତନ ଗୋସ୍ୱାମୀଙ୍କୁ ଶିକ୍ଷା ଦେବା କାଳରେ ମହାପ୍ରଭୁ ପୁନଃ ପୁନଃ ଏହି ସାଧୁସଙ୍ଗର ମହିମା କୀର୍ତ୍ତନ କରିଅଛନ୍ତି ଯଥା—

> କୋନ ଭାଗ୍ୟେ କାରୋ ସଂସାର କ୍ଷୟୋନ୍ମୁଖ ହୟ
> ସାଧୁସଙ୍ଗେ ତବେ କୃଷ୍ଣେ ରତି ଉପଜୟ ।
> ( ଚୈଃ ଚ ମଧ୍ୟ ୨୨ଶ ପର )

ମହାପ୍ରଭୁ ପୁନର୍ବାର ଦୃଢ଼ତାସହ ଶ୍ରୀସନାତନଙ୍କୁ ବୁଝାଇ ଅଛନ୍ତି "ସନାତନ୍! ସାଧୁସଙ୍ଗହିଁ କୃଷ୍ଣ ଭକ୍ତି ଜନନର ମୂଳହେତୁ" । ଯଥା—

> କୃଷ୍ଣଭକ୍ତି ଜନ୍ମ ମୂଳ ସାଧୁସଙ୍ଗ ।

ମହତ୍ କୃପା ବ୍ୟତିରେକେ କୌଣସି କର୍ମଦ୍ୱାରା ଭକ୍ତିଜାତ ହୁଏ ନାହିଁ । କୃଷ୍ଣଭକ୍ତି ଜାତ ହେବାତ ଦୂରର କଥା । ମହତ କୃପାବ୍ୟତୀତ କେବଳ ଦାନ, ବ୍ରତ, ତପ, ହୋମାଦିଦ୍ୱାରା କେହି ସଂସାରବନ୍ଧନରୁ ମୁକ୍ତ ହୋଇ ନ ପାରେ ।

> ମହତ୍ କୃପା ବିନେ କୋନକର୍ମେ ଭକ୍ତି ନୟ
> କୃଷ୍ଣଭକ୍ତି ଦୂରେ ରହୁ ସଂସାର ନା ଯାୟ କ୍ଷୟ ।
> ( ଚୈଃ ଚଃ ମଧ୍ୟ ୨୨ ଶ ପର )

ଏଥିପାଇଁ ଶିକ୍ଷାଦାତା ଶ୍ରୀକୃଷ୍ଣଚୈତନ୍ୟ ସାଧୁସଙ୍ଗ ଉପରେ ବିଶେଷ ଜୋର ଦେଇ ବାରମ୍ବାର ସେହି କଥା ଶ୍ରୀସନାତନଙ୍କୁ ଶିକ୍ଷା ଦେଇଅଛନ୍ତି ।

ଏହା ସ୍ୱୟଂ ଭଗବାନଙ୍କର ଉକ୍ତି, ଏହାକୁ ମିଥ୍ୟା କିମ୍ବା ଅତ୍ୟୁକ୍ତି ବୋଲି-ଯାଇ ନ ପାରେ । ସାଧୁସଙ୍ଗ କରିବାମାତ୍ର ସକଳ ସିଦ୍ଧିହୁଏ । କୃଷ୍ଣଭକ୍ତି ଓ କୃଷ୍ଣପ୍ରେମର ପଟବାପର । ଯଦି ସାଧୁସଙ୍ଗରୁ ଏ ମାନ ଲଭହେଲ ଅତ ନ ଦେଖିଲା କଅଣ, ମହାପ୍ରଭୁଙ୍କର ଶ୍ରୀମୁଖର ଉକ୍ତି ଶ୍ରବଣ କରନ୍ତୁ ।—

ସାଧୁସଙ୍ଗ ସାଧୁସଙ୍ଗ ସର୍ବଶାସ୍ତ୍ରେ କୟ
ଲବମାତ୍ର ସାଧୁସଙ୍ଗ ସର୍ବସିଦ୍ଧି ହୟ ।

( ଚୈଃ ଚଃ ମଧ୍ୟ ୨୨ ପରି )

ଲବମାତ୍ର ସାଧୁସଙ୍ଗରେ ଅସୀମ ଫଳ । ଅଧିକ ସାଧୁ ସଙ୍ଗବର ଯେ କି ଫଳ ତାହା ଅକଥନୀୟ । ମହାମୁନି ନାରଦ ଏଥିର ଉତ୍ତମ ପ୍ରମାଣ ଓ ତାହା ସେ ନିଜେ ଶ୍ରୀମଦ୍ଭାଗବତରେ ଉତ୍ତମରୂପେ ବର୍ଣ୍ଣନ କରିଅଛନ୍ତି । ଭକ୍ତ କିରୂପ କ୍ରମରେ କୃଷ୍ଣପ୍ରେମ ଲାଭ କରେ ତାହା ମହାପ୍ରଭୁ ଶିକ୍ଷାଦେଇ ଯାଇ ଅଛନ୍ତି । ସେ କ୍ରମ ବୁଝାଇବାରତ ମୋର ଶକ୍ତି ନାହିଁ । ତେଣୁ ମୁଁ ମହାପ୍ରଭୁଙ୍କର ଶ୍ରୀମୁଖର ଉକ୍ତିମାନ ଅବିକଳ ଉଦ୍ଧୃତ କଲି । ଏଥିରୁ ସାଧୁ ସଙ୍ଗର ମହିମା ଉତ୍ତମରୂପେ ବୁଝା ଯାଇ ପାରିବ । ଯଥା—

କୌଣ ଭାଗ୍ୟେ କୌଣ ଜୀବେର ଶ୍ରଦ୍ଧା ଯଦି ହୟ
ତବେସେଇ ଜୀବ ସାଧୁ ସଙ୍ଗ କରୟ ।
ସାଧୁସଙ୍ଗ ହୈତେ ହୟ ଶ୍ରବଣ କୀର୍ତ୍ତନ
ସାଧନ ଭକ୍ତ୍ୟେ ହୟ ସର୍ବାନର୍ଥ ନିବର୍ତ୍ତନ ।
ଅନର୍ଥ ନିବୃତ୍ତି ହୈଲେ ଭକ୍ତ୍ୟ ନିଷ୍ଠା ହୟ
ନିଷ୍ଠା ହୈତେ ଶ୍ରବଣାଦ୍ୟେ ରୁଚି ଉପଜୟ ।
ରୁଚିହୈତେ ହୟ ତବେ ଆସକ୍ତି ପ୍ରଚୁର
ଆସକ୍ତି ହୈତେ ଚିତ୍ତେ ଜନ୍ମେ କୃଷ୍ଣେ ରତ୍ୟଙ୍କୁର ।
ସେଇ ରତି ଗାଢ଼ହୈଲେ ଧରେ ପ୍ରେମ ନାମ
ସେଇ ପ୍ରେମା ପ୍ରୟୋଜନ ସର୍ବାନନ୍ଦ ଧାମ ।

( ଚୈଃ ଚଃ ମଧ୍ୟ ୨୩ ଶ ପରି )

ଏ ସମସ୍ତ ଶ୍ରୀକବିରାଜ ଗୋସ୍ୱାମୀଙ୍କ ଗ୍ରନ୍ଥରୁ ନିଆଯାଇଅଛି । ଶ୍ରୀଲବୃନ୍ଦାବନ ଦାସ ସାଧୁଙ୍କର ମାହାତ୍ମ୍ୟ ସମ୍ବନ୍ଧରେ କିଅଣ ବର୍ଣ୍ଣିଅଛନ୍ତି ତାହାର ସହ-ସାମାନ୍ୟ ଅବତାରଣା କରିଯାଉ ।

ଶ୍ରୀମୁରାରିଗୁପ୍ତ ମହାପ୍ରଭୁଙ୍କର ଅନ୍ତରଙ୍ଗ । ଏକଦିନ ସେ ମହାପ୍ରଭୁଙ୍କ ନିକଟକୁ ଯାଇ ତାଙ୍କୁ ପ୍ରଥମେ ପ୍ରଣାମ କଲେ । ପଶ୍ଚାତରେ ପ୍ରଭୁ ଶ୍ରୀନିତ୍ୟାନନ୍ଦଙ୍କୁ ପ୍ରଣାମ କଲେ । ମହାପ୍ରଭୁ କହିଲେ "ମୁରାରି ? ତୁମ୍ଭେ ଯେମା ଲୋକଙ୍କୁ ଧର୍ମ ଶିକ୍ଷା ଦେବ, ତୁମ୍ଭର ଏ ବ୍ୟତିକ୍ରମ କାହିଁକି"? ମୁରାରି କହିଲେ "ପ୍ରଭୋ ? ମୋର ସ୍ୱାତନ୍ତ୍ର୍ୟ କିଛି ନାହିଁ, ଆପଣ ଅନ୍ତର୍ଗତରେ ରହି ଯାହା କରାଉଅଛନ୍ତି ମୁଁ ତାହା କରିଅଛି ।" ମହାପ୍ରଭୁ ଭକ୍ତଠାରେ ନିରୁତ୍ତର ହେଲେ ଏବଂ କହିଲେ ଆଜ୍ଞା ତେବେ ଆଜ ଘରକୁ ଯାଅ; କାଲି ଯଥାର୍ଥ ତତ୍ତ୍ୱ ବୁଝି ପାରିବ ।

ମୁରାରି ଗୃହକୁ ଫେରିଯାଇ ସେହି ରାତ୍ରିରେ ଦେଖିଲେ ପ୍ରଭୁ ନିତ୍ୟାନନ୍ଦ ସିଂହାସନରେ ଶୟନ କରିଅଛନ୍ତି, ମସ୍ତକରେ ନାଗଫଣା ଶୋଭା ପାଉଅଛି, ଶ୍ରୀକରରେ ହଳ ମୂଷଳ ଧାରଣ କରିଅଛନ୍ତି ଏବଂ ତାଙ୍କ ବକ୍ଷଃସ୍ଥଳରେ ଶ୍ରୀବିଶ୍ୱମ୍ଭର ଛତ୍ରଧାରଣ କରି ରହିଅଛନ୍ତି ଏବଂ ମୁରାରିଙ୍କୁ ଦେଖି ହସି ହସି କହୁଅଛନ୍ତି "ଏବେ ବୁଝିଲ କି କେ ଜ୍ୟେଷ୍ଠ ଓ କିଏ କନିଷ୍ଠ"? ସ୍ୱପ୍ନ ଭଙ୍ଗରେ ମୁରାରି ସମସ୍ତ ବୁଝି ପାରିଲେ ଏବଂ ମହାପ୍ରଭୁଙ୍କ ନିକଟକୁ ଯାଇ ପ୍ରଥମେ ଶ୍ରୀମନ୍ ନିତ୍ୟାନନ୍ଦଙ୍କୁ ପ୍ରଣାମ କଲେ ଏବଂ ପରେ ମହାପ୍ରଭୁଙ୍କୁ ପ୍ରଣାମ କଲେ । ମହାପ୍ରଭୁ ପଚାରିଲେ "ଆଜି ଏ କିଅଣ" ? ମୁରାରି ଉତ୍ତର ଦେଲେ "ପ୍ରଭୋ ! ଆପଣ ଯାହା ମୋ ମନରେ ଉଦୟ କରାଉଅଛନ୍ତି ମୁଁ ସେହିପରି କରୁଅଛି । ତୃଣ ଖଣ୍ଡର ନିଜେ ଗମନ କରିବାର ଶକ୍ତି ନାହିଁ । ପବନ ତାକୁ ଯେଉଁ ଦିଗରେ ଚଳାଏ ସେ ତଦ୍ରୂପ ଗମିତ ହୁଏ" । ମହାପ୍ରଭୁ ଏଥିରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କହିଲେ "ମୁରାରି ! ତୁ ଶ୍ରୀନିତ୍ୟାନନ୍ଦ ତତ୍ତ୍ୱ ଉତ୍ତମ ରୂପେ ବୁଝିପାରୁ । ତୋର ଏହି ଗୁଣଦ୍ୱାରା ମୁଁ ତୋଠାରେ ଚିରକାଳ ପାଇଁ କ୍ରୀତ ହେଲି"। ମହାପ୍ରଭୁଙ୍କର ଏହି କରୁଣା ବାକ୍ୟରେ ମୁରାରି ପ୍ରେମରେ ବିହ୍ୱଳ ହେଲେ ଏବଂ ଗୃହକୁ ଫେରିଯାଇ ଭୋଜନ କରିବାକୁ ବସିଲେ । ପ୍ରେମ ବିହ୍ୱଳ ମୁରାରି ଅନ୍ନ ଶ୍ରୀମହାପ୍ରଭୁଙ୍କୁ ନିବେଦନ କରି

ବାକୁ ଯାଇ ଖାଅ ଖାଅ ବୋଲି କହି ଗୁଣ୍ଡାକୁ ଗୁଣ୍ଡା ଭୂମିଉପରେ ନିକ୍ଷେପ କଲେ । ତତ୍ପରଦିବସ ପ୍ରାତଃକାଳରେ ମହାପ୍ରଭୁ ଶ୍ରୀମୁରାରି ଗୁପ୍ତଙ୍କ ଗୃହରେ ଆସି ଉପସ୍ଥିତ । ମୁରାରି ଦ୍ୱାରରୁ ମହାପ୍ରଭୁଙ୍କୁ ଦେଖି ପଚାରିଲେ "ପ୍ରଭୁ ? ଆଜ ସକାଳୁ ଯେ ଶୁଭାଗମନ କରି ଅଛନ୍ତି ।" ମହାପ୍ରଭୁ ଗମ୍ଭୀର ଭାବରେ କହିଲେ "ମୁରାରି ! ମୋହର ଉଦରରେ ଅଜୀର୍ଣ୍ଣ ହୋଇଥିବାରୁ ଚିକିତ୍ସା ନିମିତ୍ତ ସକାଶେ ତୁମ୍ଭ ନିକଟକୁ ଆସି ଅଛି ।" ମୁରାରି ମହାପ୍ରଭୁଙ୍କର ବାକ୍ୟର ମର୍ମ ବୁଝି ନ ପାରି ସରଳ ଭାବରେ ପଚାରିଲେ "ପ୍ରଭୋ ! କାଲି କି ଅପଥ୍ୟ ଭୋଜନ କରିଥିଲେ କି ?" ମହାପ୍ରଭୁ ସେତେବେଳେ ବିରକ୍ତି ବ୍ୟଞ୍ଜକ ସ୍ୱରରେ କହିଲେ "ମୁରାରି ! ମୋର ଅଜୀର୍ଣ୍ଣର କାରଣ ତୁ କିଛି ଜାଣୁନାହିଁ ? କାଲି ରାତିରେ ଖାଅ ଖାଅ ବୋଲି ଯେ ମୋତେ ଘୃତର ଖାଇବାକୁ ଦେଲୁ ସେ କଥା କି ତୋ ମନେ ନାହିଁ ? ତୋହର ଯଦି ମନେ ନାହିଁ ତୋହର ପତ୍ନୀକୁ ପଚାର, ସେ ଦେବତା ସବୁ ଜାଣିଅଛି; ଏ ଅଜୀର୍ଣ୍ଣର ଅନ୍ୟ ଔଷଧ ଆବଶ୍ୟକ ନାହିଁ । ତୋର ଅନ୍ନରେ ଅଜୀର୍ଣ୍ଣ ଏବଂ ତୋର ଜଳପାନ କଲେ ଏହାର ଉପଶମ ହେବ । ଏହା କହି ନିକଟସ୍ଥ ଜଳ ପାତ୍ରରୁ ଜଳପାନ କରିବାକୁ ଲାଗିଲେ । ଏ ଅପାର କୃପା ଦର୍ଶନ କରି ମୁରାରି ପ୍ରେମରେ ମୂର୍ଚ୍ଛିତ ହେଲେ ଏବଂ ତାଙ୍କର ଗୋଷ୍ଠୀସକଳ ପ୍ରେମରେ କ୍ରନ୍ଦନ କରିବାକୁ ଲାଗିଲେ । ଶ୍ରୀଲବୃନ୍ଦାବନ ଦାସ ଏହି କଥା ବର୍ଣ୍ଣନ କାଳରେ କହି ଅଛନ୍ତି, ମୁରାରି ଗୁପ୍ତଙ୍କର ଦାସଗଣ ଯେଉଁ ପ୍ରସାଦ ଲାଭ କଲେ ତାହା ଭଟ୍ଟାଚାର୍ଯ୍ୟ ପଣ୍ଡିତ ମାନଙ୍କ ଭାଗ୍ୟରେ ଦୁର୍ଲ୍ଲଭ । ବୈଷ୍ଣବଙ୍କର କୃପାର ଫଳ ଅସୀମ । ଯଥା—

ମୁରାରି ଗୁପ୍ତର ଦାସେ ଯେ ପ୍ରସାଦ ପାଇଲ
ସେଇ ନବଦ୍ୱୀପସ୍ଥ ଭଟ୍ଟାଚାର୍ଯ୍ୟ ନା ଦେଖିଲ ।
ବିଦ୍ୟାଧନ ପ୍ରତିଷ୍ଠାୟ କିଛୁଇ ନାକରେ
ବୈଷ୍ଣବେର ପ୍ରସାଦେ ସେ ଭକ୍ତି-ଫଳ ଧରେ ।

( ଚୈ: ଭା: ମଧ୍ୟ ୨୦ ଅ: )

ସାଧୁ କୃପାରୁ ଯେ କି ମହତ ଫଳ ଉତ୍ପନ୍ନ ହୁଏ ଶ୍ରୀଲ ଈଶ୍ୱର ପୁରୀ ଗୋସାଇଁ ତାହାର ଏକ ଉତ୍ତମ ଉଦାହରଣ । ଶ୍ରୀଈଶ୍ୱର ପୁରୀଙ୍କର ଅଧିକ

'ପରଚେସ୍ତର ଅବଶ୍ୟକ ନାହିଁ, ତାଙ୍କ ସମ୍ବନ୍ଧରେ ଏତିକି ମାତ୍ର କହିଲେ ଯଥେଷ୍ଟ ଯେ ସେ ବ୍ୟବହାରରେ ପତିତପାବନାବତାର ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କର ଗୁରୁ ଏବଂ ମହାପ୍ରେମିକ ଶ୍ରୀମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ ।

ଏହି ମହାନୁଭବ ଶ୍ରୀଲ ମାଧବେନ୍ଦ୍ର ପୁରୀ ଇହଧାମ ପରିତ୍ୟାଗ ପୂର୍ବକ ଶ୍ରୀବ୍ରଜଧାମ ପ୍ରାପ୍ତ କାଳରେ ହା କୃଷ୍ଣ ହା ଗୋବିନ୍ଦ ବୋଲି କ୍ରନ୍ଦନ କରନ୍ତେ ତାଙ୍କର ଏକ ଶିଷ୍ୟ ଶ୍ରୀରାମଚନ୍ଦ୍ର ପୁରୀ ତାଙ୍କୁ କହିଲେ "ଆପଣ ପୂର୍ଣ୍ଣ ବ୍ରହ୍ମାନନ୍ଦ ଏହା ମନେ କରନ୍ତୁ । ନିଜେ ଚିତ୍‌ବ୍ରହ୍ମ ହୋଇ କ୍ରନ୍ଦନ କରୁଛନ୍ତି କାହିଁକି ?" ଗୁରୁଦେବ ଶିଷ୍ୟର ଏରୂପ ମର୍ଯ୍ୟାଦା-ହାନି ବାକ୍ୟରେ ବିରକ୍ତ ହୋଇ କହିଲେ "ମୁଁ କୃଷ୍ଣ ବିରହରେ ବ୍ୟାକୁଳ । ଏ ମୂର୍ଖ ମୋତେ ବ୍ରହ୍ମ ଉପଦେଶ ଦେବାକୁ ଆସିଅଛି । ତୁ ମୋ ଆଗରୁ ଦୂର ହୋଇଯା, ତୋତେ ଦେଖି ପ୍ରାଣ ବିସର୍ଜ୍ଜନ କଲେ ମୋର ଅସଦ୍‌ଗତି ହେବ" । କିନ୍ତୁ ଶ୍ରୀଲ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କର ଏହି ନିର୍ଯ୍ୟାଣ କାଳରେ ଶ୍ରୀଲ ଈଶ୍ୱର ପୁରୀ ତାଙ୍କର ବିଶେଷ ରୂପେ ସେବା କରୁଥିଲେ, ଏମନ୍ତ କି ସ୍ୱହସ୍ତରେ ମଳ ମୂତ୍ରାଦି ମାର୍ଜ୍ଜନ କରୁଥିଲେ, ଏବଂ ସତତ ଶ୍ରୀଗୁରୁଦେବଙ୍କ ନିକଟରେ ରହି ତାଙ୍କୁ ଶ୍ରୀକୃଷ୍ଣ ନାମ ଶୁଣାଉଥିଲେ, ଏବଂ ସେହି ଯୋଗୁଁ ସେ ଗୁରୁଦେବଙ୍କର ବିଶେଷ ଅନୁଗ୍ରହ-ଭାଜନ ହୋଇଥିଲେ । ଶ୍ରୀଲ କବିରାଜ ଗୋସ୍ୱାମୀ ସେମାନଙ୍କ ସମ୍ବନ୍ଧରେ କହି ଅଛନ୍ତି ।—

'ସେଇ ହୈତେ ଈଶ୍ୱର ପୁରୀ ପ୍ରେମେର ସାଗର
ରାମଚନ୍ଦ୍ର ପୁରୀ ହୈଲ ସର୍ବ ନିନ୍ଦାକର ।
ମହଦାନୁଗ୍ରହ ନିଗ୍ରହେର ସାକ୍ଷୀ ଦୁଇ ଜନ
ଏଇ ଦୁଇଦ୍ୱାରା ଶିଖାଇଲ ଜଗଜ୍ଜନ ।

( ଚୈ: ଚ: ଅନ୍ତ୍ୟ ୮ ପରି )

ଶ୍ରୀଲ କବିରାଜ ମହାଶୟ ଆଉ ଏକ ମହାପୁରୁଷଙ୍କ ଜୀବନରେ ସାଧୁ ସେବାର ଉତ୍କୃଷ୍ଟ ଫଳ ଉତ୍ତମରୂପେ ଅଳ୍ପାକ୍ଷରରେ ଦେଖାଇ ଅଛନ୍ତି । ସାଧୁ ସେବା ବିପରୀ ହେବାକୁ ହୁଏ ତାହାର ଆଦର୍ଶ ହେଉ ମଧ୍ୟ,ତ୍ରିଭ

କାଳିଦାସ । ସେ ପ୍ରସିଦ୍ଧ ରଘୁନାଥ ଦାସଙ୍କର ଖୁଡୁତା, ଜାତିରେ କାୟସ୍ଥ । ବୈଷ୍ଣବ ଉଚ୍ଛିଷ୍ଟ ସେବା କରିବା ତାଙ୍କର ବ୍ରତ ଯଥା ।—

ବୈଷ୍ଣବର ଉଚ୍ଛିଷ୍ଟ ଖାଇତେ ତେହ୍ନ ହୈଲ ବୁଢ଼ା
ଗୌଡ଼ ଦେଶେ ହୟ ଯତ ବୈଷ୍ଣବେର ଗଣ
ସବାର ଉଚ୍ଛିଷ୍ଟ ତେହିଁ କରିଲ ଭୋଜନ ।

( ଚୈ ଚଃ ଅନ୍ତ୍ୟ ୧୬ ପର )

ସେ ଉତ୍ତମ ଖାଦ୍ୟଦ୍ରବ୍ୟମାନ ନେଇ ବୈଷ୍ଣବଙ୍କଠାରେ ଉପସ୍ଥିତ ହେଉଥିଲେ ଏବଂ ସେମାନଙ୍କୁ ତାହା ଭୋଜନ କରାଇ ଭୁକ୍ତାବଶିଷ୍ଟ ( ଅଧର ମୃତ ) ନିଜେ ସେବନ କରୁଥିଲେ; କୌଣସି ବୈଷ୍ଣବ ଉଚ୍ଛିଷ୍ଟ ଦେବାକୁ ଅସ୍ୱୀକୃତ ହେଲେ ସେ ଲୁଚି ରହୁଥିଲେ ଏବଂ ଭୋଜନାନ୍ତେ ବୈଷ୍ଣବ ପତ୍ର ବାହାରେ ପକାଇଦେଲେ ସେ ପତ୍ର ଲେହନ କରି ତାଙ୍କ ଉଚ୍ଛିଷ୍ଟ ଭୋଜନ କରୁଥିଲେ । ବୈଷ୍ଣବଙ୍କ ପ୍ରତି ସେ ଜାତିବୁଦ୍ଧି ରଖୁ ନ ଥିଲେ । ଗୃହସ୍ଥ ବୈଷ୍ଣବ ନୀଚ ଜାତି ହେଲେ ମଧ୍ୟ ସେ ତାଙ୍କ ଉଚ୍ଛିଷ୍ଟ ପରମାଦରରେ ସେବନ କରୁଥିଲେ । ସେଥି ପ୍ରତି ତାଙ୍କର ଲେଶ ମାତ୍ର ଘୃଣା ନ ଥିଲା । ଝଡୁଠାକୁର ଜାତିରେ ଭୂଇଁମାଳି ( ବାଉରି ) । ଥରେ କାଳିଦାସ ଉତ୍କୃଷ୍ଟ ଫଳ ଆମ୍ବ ଭେଟି ନେଇ ତାଙ୍କୁ ଦର୍ଶନ କରିବାକୁ ଗଲେ । କେତେକ କ୍ଷଣ କୃଷ୍ଣ କଥାଳାପ ପରେ କାଳିଦାସ ଝଡୁଠାକୁରଙ୍କର ପଦଧୂଳି ପ୍ରାର୍ଥନା କଲେ । ବିନୟୀ ଭକ୍ତ ଝଡୁଠାକୁର ସେଥିରେ ଲଜ୍ଜିତ ହୋଇ କହିଲେ ମୁଁ ନୀଚଜାତି, ଆପଣଙ୍କୁ ପଦଧୂଳି ଦେବାକୁ ମୁଁ କି ଭାଜନ ! ଏହି ପ୍ରକାର ବିନୟ ବଚନରେ କାଳିଦାସଙ୍କୁ ନିବୃତ୍ତ କରାଇଲେ । କାଳିଦାସ କିଛିକାଳ ଇଷ୍ଟାଳାପ କରି ଫେରି ଆସିଲେ ଓ ଆସି ଅଳ୍ପ ଦୂରରେ ଏକସ୍ଥାନରେ ଲୁଚି ରହିଲେ । କାଳିଦାସ ଆସିବା ପରେ ଝଡୁଠାକୁର ସେ ଆମ୍ବ ଧୌତ କରି ଶ୍ରୀକୃଷ୍ଣଙ୍କୁ ଅର୍ପଣ କଲେ ଓ ପ୍ରେମରେ ପ୍ରସାଦ ସେବନ କଲେ । ତାଙ୍କ ପରେ ତାଙ୍କ ସ୍ତ୍ରୀ ସେ ପ୍ରସାଦ ସେବନ କଲେ । ପତି ପତ୍ନୀ ଉଭୟ ପ୍ରସାଦ ସେବନାନନ୍ତର ତାଙ୍କ ସ୍ତ୍ରୀ ଟାକୁଆ ଓ ଗୋଡ଼ା ନେଇ ଏକ ଉଚ୍ଛିଷ୍ଟଗର୍ତ୍ତରେ ନିକ୍ଷେପ କଲେ । କାଳିଦାସ ଗୋପନରେ ସେହି ଟାକୁଆ

ଓ ଚୋପା ଚୁଷିବାକୁ ଲାଗିଲେ । ଚୁଷିବା ମାତ୍ରେକ ବୈଷ୍ଣବାଧରାମୃତର ଅସୀମ ଫଳ ପ୍ରଭାବରେ ତାଙ୍କ ଦେହରେ ଅଷ୍ଟ ସାତ୍ତ୍ୱିକ-ଭାବର ବିକାର ମାନ ଦେଖି ଲକ୍ଷିତ ହେଲା ଯଥା ।—

ଦେଇ ଖୋଲା ଆଁଠି ବୈଷ୍ଣବାବଶେଷ କାଳିଦାସ
ଚୁଷିତେ ଚୁଷିତେ ହୟ ପ୍ରେମେ ସେ ଉନ୍ମାଦ ।
( ଚୈ: ଚ: ଅନ୍ତ୍ୟ ୧୬ )

ଅହୋ ବୈଷ୍ଣବଙ୍କ ପ୍ରତି କି ସୁଦୃଢ଼ ବିଶ୍ୱାସ ! ଏମନ୍ତ ବୈଷ୍ଣବ ଘୋର ପୃଥିବୀର ଇତିହାସରେ ଅତି ବିରଳ । ତାଙ୍କର ଏହି ସଦ୍‌ଗୁଣରେ ମହାପ୍ରଭୁ ତାଙ୍କ ପ୍ରତି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କୃପାର ପରାକାଷ୍ଠା ପ୍ରଦର୍ଶନ କରିଥିଲେ ।

ମହାପ୍ରଭୁ ଯେତେବେଳେ ଶ୍ରୀଜଗନ୍ନାଥ ଦର୍ଶନ କରିବାକୁ ଯାଆନ୍ତି, ଗୋବିନ୍ଦ ଜଳ କରଙ୍ଗ ନେଇ ତାଙ୍କ ସଙ୍ଗେ ଯାଆନ୍ତି । ସିଂହଦ୍ୱାରର ଉତ୍ତର ପାର୍ଶ୍ୱରେ ବାଇଶପାବଚ୍ଛ ତଳେ ଗୋଟିଏ ଗର୍ତ୍ତ ଥିଲା । ସେଠାରେ ମହାପ୍ରଭୁ ପାଦଧୌତ କରି ଶ୍ରୀଜଗନ୍ନାଥ ଦର୍ଶନ କରିବାକୁ ଯାଉଥିଲେ, ଏବଂ ଗୋବିନ୍ଦଙ୍କୁ ଏହି ଆଜ୍ଞା କରିଥିଲେ ଯେ କି କୌଣସି ଲୋକ ତାଙ୍କର ପାଦ ଧୌତ ଜଳ ନେଇ ନ ପାରେ । ପ୍ରାଣୀମାତ୍ର ସେ ପାଦ ଧୌତ ଜଳ ଗ୍ରହଣ କରି ପାରୁ ନ ଥିଲେ । କେବଳ କେହି କେହି ଅନ୍ତରଙ୍ଗ ଭକ୍ତ କୌଶଳ କରି ମହାପ୍ରଭୁଙ୍କ ଅଜ୍ଞାତରେ କିଛି ନେଇ ପାରୁଥିଲେ । କାଳିଦାସ ପୁରୁଷୋତ୍ତମକୁ ଯାଇଥିବା କାଳରେ ଏକଦିନ ଆସି ମହାପ୍ରଭୁ ସେଠାରେ ପାଦଧୌତ କରିବା କାଳରେ ହସ୍ତପ୍ରସାରଣ ପୂର୍ବକ ପାଦୋଦକର ପ୍ରାର୍ଥୀ ହେଲେ । ସର୍ବଜ୍ଞ ଭଗବାନ କାଳିଦାସଙ୍କର ବୈଷ୍ଣବସେବା-ଫଳ ଗୁଣ ଗ୍ରହଣ କରି ସ୍ୱୀୟ ପାଦଧୌତ ଜଳ ସେବନ କରିବାକୁ ଅନୁମତି ଦେଲେ । ମହାପ୍ରଭୁ ତୃତୀୟରେ ତାଙ୍କୁ ବାରଣ କରି କହିଲେ ।—

ଅତଃପର ଆର ନା କରିହ ପୁନର୍ବାର
ଏତାବତା ବାଞ୍ଛା ପୂର୍ଣ୍ଣ କରିଲ ତୋମାର ।
( ଚୈ: ଚ: ଅନ୍ତ୍ୟ ୧୬ )

ଏତକରେ ମହାପ୍ରଭୁଙ୍କର କାଳିଦାସଙ୍କପ୍ରତି କୃପା ଶେଷ ହୋଇ ନଥିଲା । ମହାପ୍ରଭୁ ଶ୍ରୀଜଗନ୍ନାଥ ଦର୍ଶନାନନ୍ତର ନିଜ କୁଟୀରକୁ ଆସି ପ୍ରସାଦ ସେବନ କଲେ । କାଳିଦାସ ସମସ୍ତ ଜାଣି ବହିର୍ଦ୍ୱାରରେ ପ୍ରତୀକ୍ଷା କରିଥିଲେ । ତାହାଙ୍କୁ ଅଧରାମୃତ ଦେବାକୁ ଭଗବାନ ଶ୍ରୀଗୌରଚନ୍ଦ୍ର ଗୋବିନ୍ଦଙ୍କୁ ଇଙ୍ଗିତ କଲେ । ଏହିରୂପେ ବୈଷ୍ଣବ ସେବା ଯୋଗୁଁ କାଳିଦାସ ଅନ୍ୟର ଦୁର୍ଲ୍ଲଭ ମହାପ୍ରଭୁଙ୍କର ମହାକୃପା ପ୍ରାପ୍ତହେଲେ । ଏହାକୁ ଲକ୍ଷ୍ୟ କରି ଶ୍ରୀଲ କବିରାଜ ଗୋସ୍ୱାମୀ କହିଅଛନ୍ତି ।—

ବୈଷ୍ଣବେର ଶେଷ ଭକ୍ଷଣେର ଏତେକ ମହିମା
କାଳିଦାସେ ପାଓୟାଇଲ ପ୍ରଭୁର କୃପା ସୀମା ।

(ଚୈଃ ଚଃ ଅନ୍ତ୍ୟ ୧୬)

ଶ୍ରୀ କବିରାଜ ଗୋସ୍ୱାମୀ ଏଠାରେ ଭକ୍ତି ମହିମା ଓ ସାଧୁସଙ୍ଗର ମହିମା କୀର୍ତ୍ତନ କରି ନିମ୍ନୋକ୍ତଭାବରେ କହିଅଛନ୍ତି ।—

ଭକ୍ତ ପଦଧୂଳି ଆର ଭକ୍ତ ପଦ ଜଳ
ଭକ୍ତ ଭୁକ୍ତ ଶେଷ ଏଇ ତିନ ମହାବଳ ।
ଏଇ ତିନ ସେବା ହୈତେ କୃଷ୍ଣପ୍ରେମ ହୟ
ପୁନଃ ପୁନଃ ସର୍ବ୍ବ ଶାସ୍ତ୍ରେ ଫୁକାରିୟା କୟ ।

(ଚୈଃ ଚଃ ଅନ୍ତ୍ୟ ୧୬ ପଃ)

ହାୟ ! କେବେ ବୈଷ୍ଣବଙ୍କ ପ୍ରତି ମୋର ଦୃଢ଼ ବିଶ୍ୱାସ ଜାତ ହେବ ? କେବେ ମୁଁ ସାଧୁ ସେବାରେ ବ୍ରତୀ ହୋଇ ସାଧୁମାନଙ୍କର ଚରଣ ଧୂଳି, ଚରଣୋଦକ ଓ ଅଧରାମୃତ ପୂର୍ଣ୍ଣ ବିଶ୍ୱାସସହ ସେବନ କରିବି ? ସାଧୁ ସଙ୍ଗରୁ ଯେପରି ଉତ୍କୃଷ୍ଟ ଫଳ ଜାତ ହୁଏ ଅସାଧୁ ସଙ୍ଗରୁ ତତୋଧିକ ମନ୍ଦଫଳ ଫଳେ । ଅସାଧୁ ସଙ୍ଗହିଁ ସର୍ବ ଅନର୍ଥର ମୂଳ । ସଙ୍ଗ ଦୋଷରେ କେତେ ଲୋକଙ୍କର ଯେ ପତନ ହୋଇଅଛି ତାହାର ସୀମା ନାହିଁ । ଜଳରେ ତୈଳ-ବିନ୍ଦୁ ନିକ୍ଷେପ କଲେ ତାହା ଯେପରି ଚତୁର୍ଦ୍ଦିଗକୁ ପ୍ରସାରିତ ହୁଏ, ଅସାଧୁ-ମାନଙ୍କ ସହ ଆଳାପ କରିବା, ତାଙ୍କ ସହ ଭୋଜନ କରିବା, ଏବଂ ସେମାନଙ୍କ ଗାତ୍ର ସ୍ପର୍ଶ କରିବା ଦ୍ୱାରା ପାପରାଶି ସେହିରୂପେ ସମସ୍ତ ଅଙ୍ଗରେ ଖେଳି ଉଠନ୍ତି

ମିଳନ କରିଦିଏ । ମହାପ୍ରଭୁ ଏଥିପାଇଁ ଅସାଧୁ ସଙ୍ଗକୁ ସ୍ଥାନେ ସ୍ଥାନେ ବାରଣ କରି ଯାଇଅଛନ୍ତି । ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କ ସେବକ କମଳାକାନ୍ତ ଏକ ସମୟରେ ଶ୍ରୀମହାରାଜା ପ୍ରତାପରୁଦ୍ରଙ୍କୁ ଆଚାର୍ଯ୍ୟଙ୍କ ମହିମା ବର୍ଣ୍ଣନ ପୂର୍ବକ ଏକ ପତ୍ର ଲେଖିଥିଲେ ଓ ସେଥିରେ ଆଚାର୍ଯ୍ୟ ମହାପ୍ରଭୁଙ୍କର ଅର୍ଥକରଣ ବିଷୟ ଉଲ୍ଲେଖ କରି କିଛି ଅର୍ଥଭିକ୍ଷା କରିଥିଲେ । ଲୋକ ଶିକ୍ଷାର ଗୁରୁ ଶ୍ରୀଗୌରଚନ୍ଦ୍ର ଲୋକ ଶିକ୍ଷା ନିମିତ୍ତ ଶ୍ରୀକମଳାକାନ୍ତଙ୍କୁ ଭର୍ତ୍ସନା ପୂର୍ବକ କହିଥିଲେ ।

ବିଷୟୀର ଅନ୍ନ ଖାଇଲେ ଦୁଷ୍ଟ ହୟ ମନ
ମନ ଦୁଷ୍ଟ ହୋଇଲେ ନହେ କୃଷ୍ଣେର ସ୍ମରଣ ।

(ଚୈଃ ଚଃ ଅନ୍ତ)

ହରିନଦୀ ଗ୍ରାମର ଏକ ଅଭକ୍ତ ବ୍ରାହ୍ମଣ ଠାକୁରଶ୍ରୀହରିଦାସଙ୍କୁ ଉଚ୍ଚ ହରି ସଂକୀର୍ତ୍ତନ ନିମିତ୍ତ ଅବମାନିତ କରିଥିଲେ । ତାହାଙ୍କୁ ଲକ୍ଷ୍ୟ କରି ଶ୍ରୀବୃନ୍ଦାବନ ଦାସ କହିଅଛନ୍ତି ଯେ ବ୍ରାହ୍ମଣ ହେଉ ପଛା, ଯଦି ସେ ଅଭକ୍ତ ତେବେ ତାହାର ସଙ୍ଗ ସର୍ବତୋଭାବେ ବର୍ଜ୍ଜନୀୟ । ଯଥା—

ବ୍ରାହ୍ମଣ ହଇଯା ଯଦି ଅବୈଷ୍ଣବ ହୟ
ତବେ ତାର ଆଲାପେଓ ପୁଣ୍ୟ ଯାୟ କ୍ଷୟ ।

(ଚୈଃ ଭାଃ ୧୪ ଅ)

ସାଂସାରିକ କାର୍ଯ୍ୟ ନିର୍ବାହ ପାଇଁ ଯେତେଦୂର ଆବଶ୍ୟକ ଅଭକ୍ତମାନଙ୍କ ସଙ୍ଗେ ସେତିକି ସମ୍ପର୍କ ରଖିବ । ତାହା ଛଡା ଅଭକ୍ତ ସଙ୍ଗେ ପ୍ରଣୟ କରିବା କଦାପି ଉଚିତ ନୁହେଁ । ଅସାଧୁ ବ୍ୟକ୍ତିର ସଂସର୍ଗ କଲେ ପତନ ଅବଶ୍ୟମ୍ଭାବୀ । ଅନେକ ସ୍ଥଳରେ ଆମ୍ଭେମାନେ ଅସତ୍ ସଙ୍ଗର କୁଫଳକୁ ଦୃଷ୍ଟି ନ କରି ଅସାଧୁମାନଙ୍କ ସଙ୍ଗ କରିଥାଉଁ, ଏବଂ ମନେ କରୁ-ଏଥିରେ ଆମ୍ଭର କିଛି କ୍ଷତି ହେଉନାହିଁ । ଆମ୍ଭେ ବେଶ ସତର୍କ ଭାବରେ ଅଛୁଁ । କିନ୍ତୁ ପ୍ରକୃତରେ ଶେଷରେ ତାହା ଆମ୍ଭମାନଙ୍କୁ ଏତେ ତଳକୁ ନେଇଯାଏ ଯେ ସେଠାରୁ ପୁନରୁଦ୍ଧାର ଏକାବେଳକେ ଅସମ୍ଭବ ହୋଇ ଉଠେ । ଏହାର ଶତ ଶତ ସହସ୍ର ସହସ୍ର ଉଦାହରଣ ନିତ୍ୟ ଆମ୍ଭମାନଙ୍କ ଆଖି ଆଗରେ ଘଟୁଥିଲେହେଁ ଆମ୍ଭେମାନେ ଅନ୍ଧବତ୍ ଆଚରଣ କରୁଅଛୁଁ ।

---

## ଏକାଦଶ ପରିଚ୍ଛେଦ ।

### ଶ୍ରୀଗୁରୁତତ୍ତ୍ୱ ।

ଶ୍ରୀଗୁରୁ ହିଁ କର୍ଣ୍ଣଧାର । କର୍ଣ୍ଣଧାର ବିନା ତରଣୀ ଯେପରି ନଦୀ ବା ସାଗରର ଅପର ପାରକୁ ନିଜେ ଯାଇ ପାରେ ନାହିଁ, ସେହିରୂପ ଗୁରୁପାଦପଦ୍ମ ଆଶ୍ରୟ ବ୍ୟତିରେକେ କେହି କେବେ ସଂସାର-ସାଗର-ପରପାରକୁ ଯାଇପାରେ ନାହିଁ । ଶ୍ରୀଭଗବାନ କୋଟି ଜଗତର ଗୁରୁ, ତାଙ୍କର ଗୁରୁ କେହି ନାହାନ୍ତି । ତଥାପି ଅବତାର ହେବା କାଳରେ ସେ ଲୌକିକ-ଶିକ୍ଷା ପାଇଁ ଗୁରୁଉପଦେଶ ଗ୍ରହଣ କରନ୍ତି । ଶ୍ରୀବିଶ୍ୱମ୍ଭର ଶ୍ରୀମନ୍ ଗୟା କ୍ଷେତ୍ରକୁ ଯାଇ ଶ୍ରୀପାଦ ଈଶ୍ୱର ପୁରୀଙ୍କୁ ଗୁରୁରୂପେ ଗ୍ରହଣ କରି ତାଙ୍କଠାରୁ ମନ୍ତ୍ର ଗ୍ରହଣ କରିଥିଲେ । ଆପେ ଆଚରଣ କରି ଧର୍ମଶିକ୍ଷା ଦେବାକୁ ତାଙ୍କର ଧରାକୁ ଆଗମନ । ସେ ଯଦି ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ ନ କରି ଆଦର୍ଶ ନ ଦେଖାନ୍ତେ ଉଚ୍ଛୃଙ୍ଖଳତା ସମାଜରେ ପ୍ରବେଶ କରନ୍ତା । ଶ୍ରୀଲୋଚନ ଦାସ ମହାପ୍ରଭୁଙ୍କ ଗୁର୍ବାଶ୍ରୟ ବିଷୟରେ କହିଅଛନ୍ତି ।

ଦେବପୂଜା ପିତୃପୂଜା କରିଲ ତଥାୟ
ବିଷ୍ଣୁପଦ ଦେଖିବାରେ ଚଳିଲ ତ୍ୱରାୟ ।
ଯାଇତେ ଦେଖିଲ ପଥେ ଏକ ନ୍ୟାସୀବର
ମହାଭାଗବତ ନାମ ପୁରୀ ଯେ ଈଶ୍ୱର ।
ପ୍ରଣାମ କରିଲା ତାରେ ବୋଲି ବିଶ୍ୱମ୍ଭର
ବଡ଼ଭାଗ୍ୟ ଦେଖିଲ ଯେ ଚରଣ ଯୁଗଳ ।
ଚରଣେ ପଡ଼ିୟା କାନ୍ଦେ ବଚନ କାତର
କରୁଣ ଅରୁଣ ଆଖି କରେ ଛଳ ଛଳ ।
କେମନେ ତରିବ ଏଇ ସଂସାର ସାଗରେ
କୃଷ୍ଣପଦାମ୍ବୁଜ ଭକ୍ତି ଦେହ ବା ଆମାରେ ।

କୃଷ୍ଣଦୀକ୍ଷା ଗୁରୁ ଦେହ ଅଙ୍କାରଣ ଦେଖି
ପୁରାଣେ ଏ ସବ ବାକ୍ୟ ସାଧୁମୁଖେ ସାକ୍ଷୀ।
ଶୀଛନ ସ୍ୱନାସ୍ତା ବାଣୀ ପୁଷ୍ଟ ଯେ ଈଶ୍ୱର।
କୃତେ କହିଲ ତାରେ ମହାମନ୍ତ୍ରବର

( ଚୈଃ ମଃ ଅଦଖଣ୍ଡ )

ଗୁରୁ ଅଶ୍ରୟ ଯେ ନିତାନ୍ତ ଆବଶ୍ୟକ, ଏଥି ସମ୍ବନ୍ଧେ ଏହାଠାରୁ ଅଧିକତର ପ୍ରମାଣ କ'ଣ ହୋଇପାରେ ? ଗୁରୁ ପ୍ରଧାନତଃ ଦୁଇପ୍ରକାର। ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ। ଦୀକ୍ଷାଗୁରୁ ଏକରୁ ଅଧିକ ହୋଇପାରନ୍ତି ନାହିଁ। ଶିକ୍ଷାଗୁରୁ ଏକ କିମ୍ବା ଅଧିକ ହୋଇ ପାରନ୍ତି। କୌଣସି କୌଣସି ସ୍ଥଳରେ ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ ଏକ ହେବାର ସୁବିଧା ମଧ୍ୟ ଘଟିଥାଏ, କିନ୍ତୁ ତାହା ଅତି ବିରଳ। ଅଧିକାଂଶ ସ୍ଥଳରେ ଶିକ୍ଷା ଗୁରୁ ଦୀକ୍ଷାଗୁରୁଙ୍କ ଠାରୁ ଭିନ୍ନ। ଶ୍ରୀଗୁରୁ ଶ୍ରୀକୃଷ୍ଣଚୈତନ୍ୟଙ୍କର ଦାସ ହେଲେହେଁ ତାଙ୍କୁ ଶ୍ରୀଚୈତନ୍ୟଙ୍କର ପ୍ରକାଶ ସ୍ୱରୂପ ଜାଣିବାକୁ ହେବ। ଯଥା—

ଯଦ୍ୟପି ଆମର ଗୁରୁ ଚୈତନ୍ୟେର ଦାସ
ତଥାପି ଜାନିଯେ ଆମି ତାଁହାର ପ୍ରକାଶ।
ଗୁରୁ କୃଷ୍ଣରୂପ ହନ ଶାସ୍ତ୍ରେର ପ୍ରମାଣେ
ଗୁରୁ ରୂପେ କୃଷ୍ଣ କୃପା କରେନ ଭକ୍ତଗଣେ।

( ଚୈଃ ଚଃ ଅଦ ୧ମ ପରି )

ଏହାର ପ୍ରମାଣ ସ୍ୱରୂପ ଶ୍ରୀଲ କବିରାଜ ଗୋସ୍ୱାମୀ "ଆଚାର୍ଯ୍ୟ ମାଂ ବିଜାନୀୟାତ୍" ଏହି ଶ୍ରୀମଦ୍ଭାଗବତର ଶ୍ଳୋକ ଉଦ୍ଧୃତ କରିଅଛନ୍ତି। ତତ୍ପରେ ସେ କହୁଅଛନ୍ତି।—

"ଶିକ୍ଷାଗୁରୁକେତ ଜାନ କୃଷ୍ଣେର ସ୍ୱରୂପ,
ଅନ୍ତର୍ଯ୍ୟାମୀ ଭକ୍ତ ଶ୍ରେଷ୍ଠ ଏଇ ଦୁଇ ରୂପ।

( ଚୈଃ ଚଃ ଅଦ ୧ମ ପରି )

ଅତଏବ ଗୁରୁଙ୍କୁ ଶ୍ରୀକୃଷ୍ଣଙ୍କର ପ୍ରକାଶ ସ୍ୱରୂପ ଜାଣି ପୂଜାକରିବା ଉଚିତ। ମର୍ତ୍ତ୍ୟଜନ ବୋଲି ଚିନ୍ତା କରି ଅବମାନନା କରିବା କଦାପି ଉଚିତ ନୁହେଁ।

ଏ ଦୁଇ ପ୍ରକାର ଗୁରୁ ଛଡ଼ା ଆଉ ଏକ ପ୍ରକାର ଗୁରୁ ଶାସ୍ତ୍ର ନିର୍ଦ୍ଦେଶିତ । ଅର୍ଥାତ୍ ଯାହାଠାରୁ ଶ୍ରୀଭଗବଚ୍ଚରଣାରବିନ୍ଦ ପ୍ରାପ୍ତି ସମ୍ବନ୍ଧରେ ବିନ୍ଦୁମାତ୍ର ଶିକ୍ଷା କରାଯାଏ ସେ ମଧ୍ୟ ଗୁରୁ । ତାହାଙ୍କୁ ମାନ୍ୟ କରିବା ଉଚିତ । ଶ୍ରୀମଦ୍ ଭାଗବତରେ ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ରହିଅଛି । ମହାପ୍ରଭୁ ମଧ୍ୟ ଏହି ମର୍ମରେ ଶିକ୍ଷା ଦେଇ ଥିବାର ଶ୍ରୀଚୈତନ୍ୟ ଚରିତାମୃତରେ ପ୍ରମାଣ ଦିଆଅଛି । ଶ୍ରୀ ନବଦ୍ୱୀପରୁ ଭକ୍ତଗଣ ଶ୍ରୀ ଜଗନ୍ନାଥ ଦର୍ଶନ ଓ ମହାପ୍ରଭୁଙ୍କ ସହ ମିଳନ ପାଇଁ ପ୍ରାୟ ପ୍ରତିବର୍ଷ ଶ୍ରୀପୁରୁଷୋତ୍ତମକୁ ଆସୁଥିଲେ । ଏକ ବର୍ଷ ସେ ଗୌଡ଼ୀୟ ଭକ୍ତମାନଙ୍କ ସଙ୍ଗେ ଇଷ୍ଟାଳାପ କରୁଁ କରୁଁ ମହାପ୍ରଭୁ ଖଣ୍ଡ ମୁକୁନ୍ଦଦାସଙ୍କୁ ପଚାରିଲେ "ମୁକୁନ୍ଦ ? ପ୍ରକୃତ କହତ ତୁମ୍ଭେ ପିତା ଏବଂ ରଘୁନନ୍ଦନ ତୁମ୍ଭର ପୁତ୍ର କି ସେ ପିତା ତୁମ୍ଭେ ତାର ପୁତ୍ର ।" ନିଜ ପୁତ୍ରର ଏପରି ପ୍ରଶଂସା ମହାପ୍ରଭୁଙ୍କ ଶ୍ରୀମୁଖରୁ ଶୁଣି ହର୍ଷୋତ୍ଫୁଲ୍ଲ ହୋଇ ମୁକୁନ୍ଦ ଉତ୍ତର କଲେ "ପ୍ରଭୋ ! ମୁଁ ମନେ କରେଁ ରଘୁନନ୍ଦନଙ୍କୁ ମୋର ପିତା ଏବଂ ମୁଁ ତାର ପୁତ୍ର, କାରଣ ଯାହାଠାରୁ କୃଷ୍ଣ ଭକ୍ତିର ଉଦୟ ହୁଏ ସେ ପିତୃସ୍ଥାନୀୟ । ରଘୁନନ୍ଦନ ଯୋଗୁଁ ଆମ୍ଭ ବଂଶର ସମସ୍ତଙ୍କର କୃଷ୍ଣଭକ୍ତି ଅତଏବ ସେ ପିତା ଏବଂ ମୁଁ ତାର ପୁତ୍ର" । ମହାପ୍ରଭୁ ଯାହା ଶୁଣିବେ ବୋଲି ପ୍ରଶ୍ନ କରିଥିଲେ, ଠିକ୍ ସେହିରୂପ ଉତ୍ତର ପାଇ ଅତିବ ହୃଷ୍ଟ ହେଲେ ଏବଂ କହିଲେ 'ଏହା ପ୍ରକୃତ କଥା, ଯାହାଠାରୁ କୃଷ୍ଣଭକ୍ତି ଜାତହୁଏ ସେ ଗୁରୁ" ଯଥା—

ଶୁନ ହର୍ଷେ କହେ ପ୍ରଭୁ କହିଲେ ନିଶ୍ଚୟ
ଯାହା ହୈତେ କୃଷ୍ଣ ଭକ୍ତି ସେହି ଗୁରୁ ହୟ ।

[ ଚୈ ଚ ମଧ୍ୟ )

ଯେଉଁ ରଘୁନନ୍ଦନର ବାଲ୍ୟକାଳ ସେବାରେ ପ୍ରେମ ଭୂପୀ ଶ୍ରୀକୃଷ୍ଣ ପ୍ରୀତ ହୋଇ ସାକ୍ଷାତ୍ ଭାବରେ ଶ୍ରୀକର-କମଳରେ ନାଡୁ ଗ୍ରହଣ କରି ଭକ୍ଷଣ କରିଥିଲେ ତାହାଙ୍କ ସମ୍ବନ୍ଧରେ ମହାପ୍ରଭୁ ପ୍ରେମ ଗଦ୍‌ଗଦ୍ ହୋଇ ଏହି କଥାର ଉତ୍ଥାପନ କରିଥିଲେ । ଉତ୍ତର ଶୁଣି ସେମାନେ ଅତିଶୟ ପ୍ରୀତ ହେଲେ । ଧନ୍ୟ ପିତା, ଧନ୍ୟ ପୁତ୍ର ଓ ଧନ୍ୟ ତୁମ୍ଭମାନଙ୍କର ବଂଶ । ଏଣୁ ସେପରି ଖଣ୍ଡ ନରହରି ସରକାର ପ୍ରମୁଖ ଏହି ବଂଶକୁ ମହାପ୍ରଭୁ [illegible]

ଅଦ୍ୟାପି ଧନ୍ୟ କରି ରଖିଅଛନ୍ତି । କେବଳ ବ୍ରାହ୍ମଣ ଜନ୍ମା ସନ୍ନ୍ୟାସୀ ସେ ଗୁରୁ ହୋଇ ପାରିବେ ଅନ୍ୟ କେହି ହୋଇ ପାରିବେ ନାହିଁ । ଏମନ୍ତ ନୁହେଁ' ଯେ ଭଗବତ୍ ତତ୍ତ୍ୱ ଉତ୍ତମରୂପେ ଜାଣନ୍ତି ସେ ବ୍ରାହ୍ମଣ ହୁଅନ୍ତୁ ବା ଶୂଦ୍ର ହୁଅନ୍ତୁ, ସନ୍ନ୍ୟାସୀ ହୁଅନ୍ତୁ ବା ଗୃହସ୍ଥ ହୁଅନ୍ତୁ ଗୁରୁ ହେବାର ଉପଯୁକ୍ତ ପାତ୍ର' । ଏଥି ସମ୍ବନ୍ଧରେ ଶ୍ରୀମହାପ୍ରଭୁଙ୍କର ଶ୍ରୀମୁଖ ବାଣୀହିଁ ପ୍ରମାଣ । ସେ ବିଦ୍ୟାନଗରରେ ଶ୍ରୀଳ ରାମାନନ୍ଦଙ୍କ ସହ ସାକ୍ଷାତ୍ କରି ତାଙ୍କଠାରୁ କୃଷ୍ଣତତ୍ତ୍ୱ ଶ୍ରବଣ କରିବାର ଇଚ୍ଛା ପ୍ରକାଶ କଲେ । ବିନୟର ଆଦର୍ଶ ରାୟ ରାମାନନ୍ଦ ସେଥିରେ ବଡ଼ ଲଜ୍ଜିତ ହୋଇ ଉତ୍ତର ଦାନରେ ସକ୍ଷମ ହେଲେ ନାହିଁ । ମହାପ୍ରଭୁ ତାଙ୍କର ଅଭିପ୍ରାୟ ବୁଝି କହିଲେ "ରାମାନନ୍ଦ ! ତୁମ୍ଭେ ମନେ କରୁ ଅଛ ମୁଁ ଗୃହସ୍ଥ ଓ ଶୂଦ୍ର, ଏ ସନ୍ନ୍ୟାସୀଙ୍କୁ କୃଷ୍ଣ ତତ୍ତ୍ୱ ଶୁଣାଇବାର ମୁଁ କି ଉପଯୁକ୍ତ ?" କିନ୍ତୁ ରାମାନନ୍ଦ ! ତୁମ୍ଭେ ସେ ଭାବନା ମନରୁ ତ୍ୟାଗ କର । ପଣ୍ଡିତ ଶ୍ରୀସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କଠାରୁ ତୁମ୍ଭର ଅଶେଷ ଗୁଣ ଶ୍ରବଣ କରି ତୁମ୍ଭଠାରୁ ଶ୍ରୀରାଧାକୃଷ୍ଣ ତତ୍ତ୍ୱ ଶ୍ରବଣ କରିବା ନିମିତ୍ତ ଏତେ ପଥ ଆସି ଅଛି । ତୁମ୍ଭେ କି ମୋର ସେ ଉତ୍କଣ୍ଠା ନିବାରଣ କରିବ ନାହିଁ ? ତୁମ୍ଭେ ଶୂଦ୍ର ଜନ୍ମା ଗୃହସ୍ଥ ବୋଲି କୁଣ୍ଠିତ ହୁଅନାହିଁ । ଯେ କୃଷ୍ଣ ତତ୍ତ୍ୱ ବେତ୍ତା ସେ ଶୂଦ୍ର ହେଉ ବା ଗୃହସ୍ଥ ହେଉ ସେ ଗୁରୁ ହେବାର ଉପଯୁକ୍ତ ।" ଯଥା :—

କିବା ବିପ୍ର କିବା ନ୍ୟାସୀ ଶୂଦ୍ର କେନେ ନୟ
ଯେଇ କୃଷ୍ଣ ତତ୍ତ୍ୱବେତ୍ତା ସେଇ ଗୁରୁ ହୟ ।
( ଚୈ, ଚ ମଧ୍ୟ ୮ ପରି )

ଶୂଦ୍ର ଓ ଗୃହସ୍ଥମାନେ ଗୁରୁ ହେବାର ଅନେକ ପ୍ରମାଣ ରହିଅଛି । ଭକ୍ତି ରତ୍ନାକର ଗ୍ରନ୍ଥରେ ଏହାର ବିସ୍ତୃତ ପ୍ରମାଣ ମିଳେ; ଠାକୁର ଶ୍ରୀ ନରହରି ସରକାର ବୈଦ୍ୟ, ଠାକୁର ଶ୍ରୀନରୋତ୍ତମ କାୟସ୍ଥ, ପ୍ରଭୁ ଶ୍ରୀଶ୍ୟାମାନନ୍ଦ ସଦ୍‌ଗୋପ, ପ୍ରଭୁ ଶ୍ରୀରସିକାନନ୍ଦ କରଣ, ଏମାନେ ସମସ୍ତେ ଗୃହସ୍ଥାଶ୍ରମୀ ; କିନ୍ତୁ ଏମାନଙ୍କର ଶତ ଶତ ବ୍ରାହ୍ମଣ ଶିଷ୍ୟ ଥିବାର ଉତ୍ତମ ପ୍ରମାଣ ରହିଅଛି । ଅଦ୍ୟାବଧି ସେମାନଙ୍କ ବଂଶଧର ମାନେ ବ୍ରାହ୍ମଣମାନଙ୍କୁ ମନ୍ତ୍ର ପ୍ରଦାନ କରୁଅଛନ୍ତି ।

ଗୁରୁ ସହିତ ଶିଷ୍ୟର ସମ୍ବନ୍ଧ ନିତ୍ୟ । ଗୁରୁ କର୍ଣ୍ଣଧାର ରୂପରେ ଶିଷ୍ୟକୁ ଭବସାଗରରୁ ପାର କରାନ୍ତି । ଅତଏବ ଗୁରୁଙ୍କୁ ସର୍ବତୋଭାବେ ସମ୍ମାନ କରିବା ଶିଷ୍ୟର କର୍ତ୍ତବ୍ୟ । ଗୁରୁଦ୍ରୋହୀର କୌଣସି ସ୍ଥାନ ରହେ ନାହିଁ । ଶ୍ରୀକୃଷ୍ଣଙ୍କଠାରେ ଅପରାଧ ହେଲେ ତାଙ୍କ ନାମ ଦ୍ୱାରା ସେ ଅପରାଧ ଖଣ୍ଡନ ହୁଏ । ବୈଷ୍ଣବ ଅପରାଧ ହେଲେ ଶ୍ରୀ ଗୁରୁଦେବ କୃପାକରି ତାହା ଖଣ୍ଡନ କରାଇ ପାରନ୍ତି । କିନ୍ତୁ ଗୁରୁଙ୍କ ଠାରେ ଅପରାଧ ହେଲେ ଅପର କେହି ତାହା ଖଣ୍ଡନ କରାଇ ପାରନ୍ତି ନାହିଁ, ଅତଏବ ଗୁରୁଙ୍କ ଠାରେ ଅଣୁମାତ୍ର କପଟ ବୁଦ୍ଧି ରଖିବା ଉଚିତ ନୁହେଁ; ଦେହ, ମନ, ପ୍ରାଣ ସମସ୍ତ ତାଙ୍କ ପାଦ ପଦ୍ମରେ ଅର୍ପଣ କରିବା କର୍ତ୍ତବ୍ୟ । ଗୁରୁ ଆଜ୍ଞାରେ ଅକରଣୀୟ କାର୍ଯ୍ୟମାନ ମଧ୍ୟ କରଣୀୟ । ଶିକ୍ଷା ଦାତା ମହାପ୍ରଭୁ ନିଜ ଆଚରଣରେ ତାହା ଶିକ୍ଷା ଦେଇ ଅଛନ୍ତି ।

ଶ୍ରୀ ଗୋବିନ୍ଦ ଦାସ ଶ୍ରୀ ଈଶ୍ୱର ପୁରୀଙ୍କର ଶିଷ୍ୟ । ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ପୂର୍ବକ ଶ୍ରୀ ପୁରୁଷୋତ୍ତମରେ ବାସ କରୁ ଅଛନ୍ତି, ଗୋବିନ୍ଦ ଆସି ତାଙ୍କଠାରେ ଉପସ୍ଥିତ ହେଲେ ଏବଂ ମହାପ୍ରଭୁଙ୍କ ଶ୍ରୀଚରଣରେ ପ୍ରଣାମ ପୂର୍ବକ କହିଲେ “ପ୍ରଭୋ ! ମୁଁ ଶ୍ରୀଲ ଈଶ୍ୱର ପୁରୀଙ୍କ ସେବକ, ମୋର ନାମ ଗୋବିନ୍ଦ । ପୁରୀ ଗୋସ୍ୱାମୀ ସିଦ୍ଧି ପ୍ରାପ୍ତି କାଳରେ ମୋତେ ଆଦେଶ କରି ଅଛନ୍ତି, ତୁମ୍ଭେ ଯାଇ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ସେବା କରିବ” । ମହାପ୍ରଭୁ କହିଲେ ଗୋବିନ୍ଦ । ପୁରୀ ଗୋସ୍ୱାମୀ ମୋତେ ବଡ଼ ସ୍ନେହ କରନ୍ତି, ତେଣୁ ତୁମ୍ଭଙ୍କୁ ଏଠାକୁ ପଠାଇ ଅଛନ୍ତି ।” ଏହା କହି ଗୋବିନ୍ଦଙ୍କୁ ପ୍ରେମାଲିଙ୍ଗନ ଦାନ କଲେ । ସାର୍ବଭୌମ ଭଟ୍ଟାଚାର୍ଯ୍ୟ ସେଠାରେ ଉପସ୍ଥିତ ଥିଲେ । ମହାପ୍ରଭୁ ତାଙ୍କୁ ପଚାରିଲେ “ଭଟ୍ଟାଚାର୍ଯ୍ୟ ! ଏ ମୋର ଶ୍ରୀଗୁରୁଦେବଙ୍କର କିଙ୍କର ତେଣୁ ମାନ୍ୟ ପାତ୍ର । ତାହାଙ୍କୁ ମୁଁ ଆପଣା ସେବାରେ କିପରି ନିଯୁକ୍ତ କରିବି । ଏଣେ ଶ୍ରୀଗୁରୁଙ୍କର ଆଜ୍ଞା ଅବା ଲଙ୍ଘନ କରିବି କିପରି ? ଅତଏବ ଉଭୟ ସଙ୍କଟ ସ୍ଥଳରେ କି ସୁମୀମାଂସା ତାହା ଆପଣ ନିର୍ଦ୍ଧାରଣ ପୂର୍ବକ କହିବା ହେଉନ୍ତୁ ।” ପଣ୍ଡିତ ପ୍ରବର ସାର୍ବଭୌମ ତତ୍କ୍ଷଣାତ୍ ସୁଯୁକ୍ତି ପ୍ରଦର୍ଶନ ପୂର୍ବକ କହିଲେ “ପ୍ରଭୋ ! ମହାବୀର ପରଶୁରାମ ପିତାଙ୍କ ଆଦେଶରେ ଜନନୀର ଶିରଚ୍ଛେଦ କରିଥିଲେ ।

ଦଶରଥ ମହିଷୀ କୌଶଲ୍ୟା ଶ୍ରୀରାମଚନ୍ଦ୍ରଙ୍କ ବନଗମନରେ ଦୁଃଖ ବିହ୍ୱଳା-ହୋଇ ତାଙ୍କୁ ବନଗମନରୁ ବିରତ ହେବାକୁ କହନ୍ତେ ସେ କହିଲେ ମାତଃ ! ପିତାଙ୍କ ଆଜ୍ଞା ପ୍ରତିପାଳନରେ ମୋର ଏବଂ ତୁମ୍ଭର ଉଭୟଙ୍କର ମଙ୍ଗଳ ହେବ ।" ଏହିରୂପେ ପ୍ରବୋଧ ଦେଇ ପିତାଜ୍ଞା ପାଳନ କରିଥିଲେ । ଅତଏବ ଶ୍ରୀଗୁରୁଙ୍କର ଆଦେଶହିଁ ପ୍ରତିପାଳନୀୟ । ଏଥିରେ ଦ୍ୱିଧା କରିବାର କିଛିମାତ୍ର କାରଣ ନାହିଁ ॥ ଏହା ଶୁଣି ମହାପ୍ରଭୁ ତଦନ୍ତ ସମ୍ମତ ହୋଇ ଶ୍ରୀ ଗୋବିନ୍ଦଙ୍କୁ ନିଜ ସେବାରେ ନିଯୁକ୍ତ କଲେ । ଯଥା ।

"ପ୍ରଭୁ କହେ ଗୁରୁର ଆଜ୍ଞା ହୟ ବଳବାନ
ଗୁରୁ ଆଜ୍ଞା ନା ଲଙ୍ଘିବେ ଶାସ୍ତ୍ରେର ପ୍ରମାଣ ।
ତବେ ମହାପ୍ରଭୁ ତାରେ କୈଲ ଅଙ୍ଗୀକାର
ଆପନା ଶ୍ରୀଅଙ୍ଗ ସେବାୟ ଦିଲ ଅଧିକାର ।

( ଚୈ: ଚ: ମଧ୍ୟ ୧୦ ପରିଚ୍ଛେଦ )

ମହାପ୍ରଭୁଙ୍କର ଏହି ସମସ୍ତ ବାକ୍ୟ ଓ ଆଚରଣରୁ ଗୁରୁ ଯେ କେତେଦୂର ମାନ୍ୟ ବ୍ୟକ୍ତି ଏବଂ ତାଙ୍କ ପ୍ରତି କିରୂପ ବ୍ୟବହାର କରିବା ଉଚିତ ତାହା ଉତ୍ତମ ବୁଝା ଯାଉଅଛି, ଏବଂ ଗୁରୁପଦାଶ୍ରୟ ଯେ ଏକାନ୍ତ କର୍ତ୍ତବ୍ୟ ତାହାମଧ୍ୟ ଏଥିରେ ସ୍ଥିରୀକୃତ ହୋଇ ଅଛି ।



## ଦ୍ୱାଦଶ ପରିଚ୍ଛେଦ ।

### ଶ୍ରୀହରିନାମର ମାହାତ୍ମ୍ୟ ।

ଏ କଳିଯୁଗରେ ହରିନାମହିଁ ସାର । ଯୁଗଧର୍ମର ପ୍ରବର୍ତ୍ତକ, ପ୍ରେମ ବୃଷ୍ଟିକାରୀ ଶ୍ରୀମନ୍ ମହାପ୍ରଭୁ, ଏହା ଉତ୍ତମରୂପେ ସ୍ଥାପନ କରି ଯାଇ-ଅଛନ୍ତି । ଶ୍ରୀଧାମ କାଶୀରେ ପ୍ରକାଶାନନ୍ଦ ସରସ୍ୱତୀ ବୋଲି ଏକ ବୈଦାନ୍ତିକ ମହାପଣ୍ଡିତ ବାସ କରୁଥିଲେ । ତାଙ୍କର ଦଶହଜାର ଶିଷ୍ୟ ଥିଲେ । ସେମାନେ ଗୁରୁଶିଷ୍ୟ ସମସ୍ତେ ମହାପ୍ରଭୁ ହରିନାମ ସଂକୀର୍ତ୍ତନ କରୁଥିବାର ଶ୍ରବଣ କରି ତାଙ୍କୁ ବିଶେଷ ନିନ୍ଦା କରିବାକୁ ଲାଗିଲେ । କହିଲେ ଏ ଜଣେ ମୂର୍ଖ ସନ୍ନ୍ୟାସୀ, ବେଦାନ୍ତ ପଠନ କରି ନିଜ ଧର୍ମର ମର୍ମ୍ମ କିଛି ନ ବୁଝି ଭାବକ ହୋଇ ଭାବକମାନଙ୍କସଙ୍ଗେ ନାଚ ଗାଇ ବୁଲୁଅଛି । ସେ ସମୟରେ ମହାପ୍ରଭୁଙ୍କର ପ୍ରିୟଭକ୍ତ ଶ୍ରୀ ତପନ ମିଶ୍ର ଓ ଶ୍ରୀ ଚନ୍ଦ୍ରଶେଖର ଯେହି କାଶୀ ଧାମରେ ବାସ କରୁଥିଲେ । ସନ୍ନ୍ୟାସୀ ପ୍ରକାଶାନନ୍ଦ ଓ ତାଙ୍କ ଶିଷ୍ୟମାନଙ୍କର ଏହି ମର୍ମ୍ମଭେଦୀ ବାଣୀ ତାଙ୍କମାନଙ୍କର ଅସହ୍ୟ ହେଲା । ସେମାନେ ଭାବିଲେ ଏ ପଣ୍ଡିତ ଓ ଏହାଙ୍କର ଶିଷ୍ୟ ଏମାନେ ଯଦି ମହାପ୍ରଭୁଙ୍କ ତତ୍ତ୍ୱ ଅବଗତ ନ ହୁଅନ୍ତି, ଓ ମହାପ୍ରଭୁଙ୍କର ପ୍ରବର୍ତ୍ତିତ ବୈଷ୍ଣବ ଧର୍ମର ସାର ବସ୍ତୁ ଉପଲବ୍ଧି ନ କରନ୍ତି, ତେବେ ଅମ୍ଭେମାନେ ଅଉ ଏ କାଶୀଧାମରେ ବାସ କରି ରହିପାରିବା ନାହିଁ । ଏମାନଙ୍କ ମୁଖରୁ ସତତ ମହାପ୍ରଭୁଙ୍କର ନିନ୍ଦା ଶୁଣି, ଅମ୍ଭମାନଙ୍କ ହୃଦୟ ବିଦୀର୍ଣ୍ଣ ହେଉଅଛି । ବିଶେଷତଃ ପରୋପକାର କରିବା ବୈଷ୍ଣବମାନଙ୍କର ବ୍ରତ । ତପନ ମିଶ୍ର ଓ ଚନ୍ଦ୍ରଶେଖରତ ବୈଷ୍ଣବାଗ୍ରଣୀ, ସେମାନଙ୍କମନରେ ଏମାନଙ୍କ ଉଦ୍ଧାର ଚିନ୍ତା ଉଦିତ ହେବା ସ୍ୱାଭାବିକ । ତେଣୁ ସେମାନେ ମହାପ୍ରଭୁଙ୍କୁ ନିଜ ମନୋବେଦନା ନିବେଦନ

କଲେ । ସର୍ବଜୀବର ହିତକାରୀ ମହାପ୍ରଭୁଙ୍କର ଏ ନିଜଜନମାନଙ୍କ ମର୍ମବେଦନା ଖଣ୍ଡନ କରିବାର ବାସନା ହେଲା, ଏବଂ ତାଙ୍କ ପ୍ରେରଣାରେ ଏକ ବିପ୍ରବର ଆସି ମହାପ୍ରଭୁଙ୍କୁ ନିବେଦନ କଲେ "ମୁଁ କାଶୀବାସୀ ସମସ୍ତ ସନ୍ନ୍ୟାସୀ-ମାନଙ୍କୁ ନିମନ୍ତ୍ରଣ କରିଅଛି । ଯଦି ଆପଣ ଅନୁଗ୍ରହପୂର୍ବକ ଯାଆନ୍ତି ତାହାହେଲେ ମୋର ସମସ୍ତ-ବାସନା ପୂର୍ଣ୍ଣ ହେବ" । ସନ୍ନ୍ୟାସୀ-ମାନଙ୍କୁ କରୁଣା କରିବା ମାନସରେ ମହାପ୍ରଭୁ ସେ ନିମନ୍ତ୍ରଣ ଅଙ୍ଗୀକାର କଲେ ଏବଂ ପର ଦିବସ ନିରୂପିତ ସମୟରେ ନିମନ୍ତ୍ରଣ ସଭାରେ ଉପସ୍ଥିତ ହେଲେ । ମହାପ୍ରଭୁ ସତତ ଆପଣାକୁ ତୃଣାଧମ ମନେ କରୁଥିଲେ, ତେଣୁ ସମସ୍ତଙ୍କର ବସିବାର ସ୍ଥାନରେ ନ ବସି ଏକ ନିମ୍ନ ସ୍ଥାନରେ ଉପବେଶନ କଲେ । ମହାପ୍ରଭୁ ସନ୍ନ୍ୟାସୀ-ମାନଙ୍କର ଉଦ୍ଧାର ନିମିତ୍ତ ସେଠାକୁ ଯାଇ-ଥିଲେ ଓ ପଣ୍ଡିତାଭିମାନୀ ସନ୍ନ୍ୟାସୀମାନଙ୍କର ଗର୍ବହରଣ କରିବାପାଇଁ ସ୍ୱୀୟ ଐଶ୍ୱର୍ଯ୍ୟ ପ୍ରକଟନ କରିଥିଲେ । କୋଟି ସୂର୍ଯ୍ୟସମ ତାଙ୍କର ଶ୍ରୀଅଙ୍ଗ-ତେଜ ଦର୍ଶନରେ ପ୍ରକାଶାନନ୍ଦ ପ୍ରମୁଖ ସମସ୍ତ ସନ୍ନ୍ୟାସୀ ବିମୁଗ୍ଧ ହୋଇଥିଲେ ଏବଂ ପ୍ରକାଶାନନ୍ଦ ଉଠି ଆସି ତାଙ୍କୁ ମହାସମ୍ମାନପୂର୍ବକ ନୀଚ ସ୍ଥାନରୁ ସଭାମଧ୍ୟକୁ ନେଇଗଲେ । ପ୍ରକାଶାନନ୍ଦ ବିନୀତଭାବରେ କହିଲେ "ଶ୍ରୀପାଦ ! ଆପଣ ବହୁଦିନରୁ ଏହି ଗ୍ରାମରେ ରହି ଅଛନ୍ତି, ଅମ୍ଭମାନଙ୍କୁ ଦିନେ ସୁଦ୍ଧା ଦର୍ଶନ ଦିଅନ୍ତି ନାହିଁ କାହିଁକି ? ଏବଂ ଆପଣ ସନ୍ନ୍ୟାସୀ ହୋଇ ଭାବୁକମାନଙ୍କ ସଙ୍ଗେ ନାଚି ଗାଇ ବୁଲୁଅଛନ୍ତି, ଏ ଅବା କିରୂପ କଥା । ବେଦାନ୍ତ ପଠନ ଓ ଧ୍ୟାନ ସିନା ସନ୍ନ୍ୟାସୀର କର୍ମ । ତାହା ନ କରି ହରିନାମ ଉଚ୍ଚାରଣ ପୂର୍ବକ ନାଚିବା ଓ ଗାଇବା ଏହା କି ଉଚିତ ? ଶୁଣିଣ ମହାପ୍ରଭୁ ଭଙ୍ଗୀକରି କହିଲେ, "ଶ୍ରୀପାଦ ! ମୋର ଗୁରୁଦେବ ମୋତେ ମୂର୍ଖ ଦେଖି କହିଲେ 'ତୋର ବେଦାନ୍ତରେ ଅଧିକାର ନାହିଁ । ତୁ ସତତ କୃଷ୍ଣନାମ ଜପକର, କୃଷ୍ଣନାମ ସକଳ ମନ୍ତ୍ରର ସାର, ସେଥିରୁ ତୋର ସଂସାର ମୋଚନ ହେବ ଓ ଶ୍ରୀକୃଷ୍ଣଚରଣାରବିନ୍ଦ ଲାଭ ହେବ । ନାମବିନା କଳିକାଳରେ ଆଉ ଉତ୍କୃଷ୍ଟ ଧର୍ମ ନାହିଁ, ଏହା କହି ସେ ମୋତେ ହରିନାମର ମାହାତ୍ମ୍ୟ-ସୂଚକ ଗୋଟିଏ ଶ୍ଳୋକ ଶିଖାଇଦେଲେ । ଯଥା—

ମୁଣ୍ଡ ତୁମି ନାହିଁ ତବ ବେଦାନ୍ତାଧିକାର
କୃଷ୍ଣମନ୍ତ୍ର ଜପ ସଦା ଏଇ ମନ୍ତ୍ର ସାର ।
କୃଷ୍ଣନାମହୈତେ ହବେ ସଂସାର ମୋଚନ,
କୃଷ୍ଣନାମ ହୈତେ ପାବେ କୃଷ୍ଣେର ଚରଣ ।
ନାମବିନୁ କଲିକାଲେ ନାହି ଅନ୍ୟ ଧର୍ମ,
ସର୍ବମନ୍ତ୍ର ସାର ନାମ ଏଇ ଶାସ୍ତ୍ରମର୍ମ ।

[ ଚୈଃ ଚଃ ଆଦ ୭ମ ପରିଚ୍ଛେଦ )

ଏହିରୂପ କଥା ଉତ୍ଥାପନ ପୂର୍ବକ ମହାପ୍ରଭୁ ହରିନାମର–ସାରବତ୍ତା ସନ୍ନ୍ୟାସୀଗଣଙ୍କୁ ଉପଲବ୍ଧି କରାଇଥିଲେ । ମହା ବୈଦାନ୍ତିକ ପଣ୍ଡିତ ପ୍ରକାଶାନନ୍ଦ ଦଶସହସ୍ର ଶିଷ୍ୟ ସହ ମହାପ୍ରଭୁଙ୍କ ପଦ ତଳରେ ପ୍ରଣତହୋଇ ତାଙ୍କ ମତାବଲମ୍ବୀ ହୋଇଥିଲେ । ତାଙ୍କରଚିତ ଶ୍ରୀଚୈତନ୍ୟ ଚନ୍ଦ୍ରାମୃତ ତାହାର ଉତ୍ତମ ସାକ୍ଷୀ ପ୍ରଦାନ କରୁଅଛି । ଶ୍ରୀଲ କୃଷ୍ଣଦାସ କବିରାଜତ ଏହି ସିଦ୍ଧାନ୍ତ କଲେ ଠାକୁର ଶ୍ରୀଲ ବୃନ୍ଦାବନ ଦାସ ହରିନାମ ମାହାତ୍ମ୍ୟ ସମ୍ବନ୍ଧରେ କି ସିଦ୍ଧାନ୍ତ କରିଅଛନ୍ତି ଦେଖାଯାଉ ।

ମହାପ୍ରଭୁ ସନ୍ନ୍ୟାସ ଗ୍ରହଣପୂର୍ବରୁ ଏକସମୟରେ ପୂର୍ବବଙ୍ଗର ଉଦ୍ଧାର ନିମିତ୍ତ ମହାପଣ୍ଡିତ ସାଜି ସେଠାକୁ ପାଠ ପଢ଼ାଇବାକୁ ଯାଇଥିଲେ । ସେହି ସମୟରେ ପୂର୍ବବର୍ଣ୍ଣିତ, କାଶୀର ତପନ ମିଶ୍ର ସେଠାରେ ବାସ କରୁଥିଲେ । ତାଙ୍କର ଗୃହ ପୂର୍ବେ ପୂର୍ବବଙ୍ଗରେ ଥିଲା । ସେ ପରମଭକ୍ତ, ସାଧ୍ୟ ସାଧନ ତତ୍ତ୍ୱ ନିରୂପଣ କରି ନପାରି ବଡ଼ ଚିନ୍ତିତ ହୋଇଥିଲେ । ଏମନ୍ତ କେହି ଧର୍ମ ଶାସ୍ତ୍ରବେତ୍ତା ସେ ଦେଖି ପାରୁନଥିଲେ ଯାହାଠାରେ ଯାଇ ଉକ୍ତ ତତ୍ତ୍ୱ ସ୍ଥିର କରିବେ । ବଡ଼ ଚିନ୍ତାନ୍ୱିତ ହୋଇ ଶ୍ରୀଭଗବାନଙ୍କୁ ଏକାନ୍ତ ମନରେ ସାଧ୍ୟସାଧନ ତତ୍ତ୍ୱ ନିଶ୍ଚୟୀକରଣ ନିମନ୍ତେ ନିବେଦନ କରୁଥିଲେ । ଦିନକରେ ସେ ଶୋଇଅଛନ୍ତି, ସ୍ୱପ୍ନରେ ଦେଖିଲେ ଏକ ଦେବମୂର୍ତ୍ତି ସମ୍ମୁଖରେ ବିରାଜମାନ ହୋଇ କହୁଅଛନ୍ତି "ଦ୍ୱିଜବର ! ତୁମ୍ଭେ ଆଉ ଚିନ୍ତା କର ନାହିଁ, ନିମାଇ ପଣ୍ଡିତଙ୍କ ନିକଟକୁ ଯାଅ ସେ ସାଧ୍ୟସାଧନର ତତ୍ତ୍ୱ ନିରୂପଣ କରି ବୁଝାଇ ଦେବେ । ସେ ମନୁଷ୍ୟ ନୁହନ୍ତି, ନରରୂପୀ

ଜାଗନ୍ତୁଣ ।" ସ୍ୱପ୍ନଭଙ୍ଗ ପରେ ତପନ ମିଶ୍ର ପ୍ରେମ ବହ୍ୱଳ ହୋଇ ତତ୍‌କ୍ଷଣାତ୍ ନିମାଇ ପଣ୍ଡିତଙ୍କ ନିକଟକୁ ଗମନ କଲେ, ଏବଂ ଶିଷ୍ୟଗଣ ପରିବେଷ୍ଟିତ ପରମମନୋହର ବେଶଧାରୀ ପଣ୍ଡିତଙ୍କ ଶ୍ରୀଚରଣରେ ପ୍ରଣତ ହେଲେ । ନିମାଇ ପଣ୍ଡିତ ତପନ ମିଶ୍ରଙ୍କୁ ନିକଟରେ ବସାଇ ସୁମଧୁର ବାକ୍ୟରେ କୁଶଳ ପ୍ରଶ୍ନ କଲେ । ତପନ ମିଶ୍ର କହିଲେ "ପ୍ରଭୋ ! ମୁଁ ସାଧ୍ୟସାଧନର ତତ୍ତ୍ୱ ବୁଝିବା ପାଇଁ ଆପଣଙ୍କ ନିକଟକୁ ଆସିଅଛି । ଶ୍ରୀମୁଖରୁ ସେ ତତ୍ତ୍ୱମାନ ଆଜ୍ଞାହେଉ ।" ନିମାଇ ପଣ୍ଡିତ କହିଲେ ବିପ୍ରବର ! ତୁମ୍ଭେ ଯେ ଶ୍ରୀକୃଷ୍ଣ ଭଜନ କରିବାକୁ ବସିଅଛ ଓ ସାଧ୍ୟସାଧନ ତତ୍ତ୍ୱ ପଚାରିବାକୁ ଆସିଅଛ ଏ ଅତି ଉତ୍ତମକଥା । ଶାସ୍ତ୍ରକର୍ତ୍ତାଗଣ ଚାରିଯୁଗରେ ଭିନ୍ନ ଭିନ୍ନ ଯୁଗଧର୍ମ ସ୍ଥାପନ କରିଅଛନ୍ତି । ସେଥି ମଧ୍ୟରେ କଳି ଯୁଗରେ ହରିନାମ ସଂକୀର୍ତ୍ତନହିଁ ଯୁଗଧର୍ମ । କଳି ଯୁଗରେ ତପ ଯଜ୍ଞ ଏ ସକଳରେ ଜୀବର ଅଧିକାର ନାହିଁ । କୁଟି ନାଟି ପରିହାର ପୂର୍ବକ ଏକାନ୍ତ ମନରେ ହରିନାମ ସଂକୀର୍ତ୍ତନ କରିବା କଳିର ଯୁଗଧର୍ମ ଓ ଏହି ନାମରୁ ସମସ୍ତ ମିଳିପାରିବ । ଯଥା—

ଅତଏବ କଳିଯୁଗେ ନାମ ଯଜ୍ଞ ସାର,
ଆର କୋନ ଧର୍ମକୈଲେ ନାହିଁ ପାୟ ପାର ।
ରାତ୍ରି ଦିନ ନାମଲୟ ଖାଇତେ ଶୁଇତେ,
ତାହାର ମହିମା ବେଦେ ନାହିଁ ପାରେ କହିତେ ।
ଶୁନ ମିଶ୍ର କଳିଯୁଗେ ନାହିଁ ତପ ଯଜ୍ଞ,
ଯେଇ ଜନ ଭଜେ କୃଷ୍ଣ ତାର ମହାଭାଗ୍ୟ ।
ଅତଏବ ଗୃହେ ତୁମି କୃଷ୍ଣ ଭଜ ଗିୟା,
କୁଟି ନାଟି ପରିହରି ଏକାନ୍ତ ହଇୟା,
ସାଧ୍ୟ ସାଧନ ତତ୍ତ୍ୱ ଯେ କିଛୁ ସକଲ,
ହରିନାମ ସଙ୍କୀର୍ତ୍ତନେ ମିଲିବେ ସକଲ ।

( ଚୈଃ ଭାଃ ଆଦି ୧୬ଶେ )

ଏହି ପରି ଶିକ୍ଷା ଦେଇ ମହାପ୍ରଭୁ ତପନ ମିଶ୍ରଙ୍କୁ କହିଲେ "ତୁମ୍ଭେ ଯାଇ ଶ୍ରୀ କାଶୀଧାମରେ ବାସକର, ଏକ ସମୟରେ ତୁମ୍ଭ ସହିତ ମୋର

ସାକ୍ଷାତ୍ ହେବ । ସେତେବେଳେ ମୁଁ ତୁମ୍ଭଙ୍କୁ ଏ ସବୁ ତତ୍ତ୍ୱ ଅଦ୍ଭୁତ ଭଳି-ରୂପେ ବୁଝାଇବି ।

"ପ୍ରଭୁ କୃଷ୍ଣ ହୋଇଣ ସାଧ୍ୟ ସାଧନ କହିଲ
ନାମ ସଂକୀର୍ତ୍ତନ କରି ଉପଦେଶ ଦେଲ ।

( ଚୈଃ ଚଃ ଅଃ ୧୭ ପରିଚ୍ଛେଦ )

ଶ୍ରୀଳ ଲୋଚନ ଦାସ ମଧ୍ୟ ସେହି ସିଦ୍ଧାନ୍ତ ସ୍ଥିର କରି ରଖି ଯାଇ ଅଛନ୍ତି । ଦ୍ୱାପର ଯୁଗରେ ଶ୍ରୀମାନ୍ ଉଦ୍ଧବ ଯାଇ ମହାମୁନି ନାରଦଙ୍କ ନିକ-ଟରେ ଉପସ୍ଥିତ ହେଲେ ; କଳିଯୁଗର ଲୋକମାନଙ୍କର ଉଦ୍ଧାର ହେବାର କି ଉପାୟ ତାହା ପଚାରିଲେ । ଶ୍ରୀମନ୍ ନାରଦ ଉତ୍ତର କଲେ " ହେ ଭକ୍ତବର ଉଦ୍ଧବ ! ତୁମ୍ଭେ ଅତି ଉତ୍ତମ ପ୍ରଶ୍ନ ଉତ୍ଥାପନ କରି ଅଛ । ମୋ ମନରେ ମଧ୍ୟ ପୂର୍ବେ ଏହିପରି ସନ୍ଦେହ ଜାତ ହୋଇଥିଲା କିନ୍ତୁ ମୁଁ ନିଜେ ଶ୍ରୀକୃଷ୍ଣଙ୍କଠାରୁ ଦ୍ୱାରକାରେ ଯାଇ ବୁଝି ଅଛି, କଳିଯୁଗରେ ହରି ନାମହିଁ ସାର । ସତ୍ୟାଦି ତିନିଯୁଗରେ ଯୁଗଧର୍ମ ଧ୍ୟାନାଦି ଓ ତାହା ଅତି କଠିନ । କିନ୍ତୁ କଳିରେ ଜୀବ ଅତି ଦୁର୍ବଳ, ତେଣୁ ଅତି ସରଳ ପଥ ସେମାନଙ୍କ ପାଇଁ ସ୍ଥିର ହୋଇଅଛି । କଳିରେ ହରିନାମ କୀର୍ତ୍ତନ ଦ୍ୱାରା ସର୍ବ ସାଧ୍ୟ ହେବ । ଯଥା—

ଏଖନେ ଜାନିଲ ମୁଁ ଯେ କଲିଯୁଗ ଧନ୍ୟ
କଲିଲୋକ ବଇ ଧନ୍ୟ ନାହିଁ ଆର ଅନ୍ୟ ।
ସତ୍ୟଆଦି ଯୁଗ ଧର୍ମ୍ମ ଅଶୁରି କଠିନ
କଲିଯୁଗ ଧର୍ମ୍ମ ହରିନାମ ସଙ୍କୀର୍ତ୍ତନ ।
ନାମ ଗୁଣ ସଙ୍କୀର୍ତ୍ତନେ ମୁକ୍ତବନ୍ଧ ହଇଁଯା
ନୃତ୍ୟ ଗୀତେ ବୁଲେ ଯମ ଭୟ ଏଡ଼ାଇଯାଁ ।

( ଚୈଃ ମଃ ସୂତ୍ରଖଣ୍ଡ )

ଶ୍ରୀମନ୍ ମହାପ୍ରଭୁ ନିଜେ କହି ଅଛନ୍ତି, ମୋର ସଂକୀର୍ତ୍ତନ ଧର୍ମ ସର୍ବ-ଧର୍ମର ସାର ଏବଂ ବିଶେଷତଃ କଳିଯୁଗରେ ଏହି ହରି ସଂକୀର୍ତ୍ତନହିଁ ଉକ୍ତ ଅଛି । ଯଥା—

"ସବ ଧର୍ମ ସାର ମୋର ସଙ୍କୀର୍ତ୍ତନ ଧର୍ମ
ବିଶେଷ ଜାଣିବେ କଳିଯୁଗେର ଏଇ କର୍ମ ।"
ପ୍ରଥମ ଯେ ବେଦ ହୈତେ ପ୍ରକାଶ ଇହାର
ଶିବ ହୈଇ ପଞ୍ଚମୁଖେ ଗାୟ ଅନିବାର ।
ନାରଦ ବୀଣାୟ ଗାଇ ବୁଲୟେ ନାଚିୟା
ଶୁକସନକାଦି ଭକ୍ତ ବୁଲୟେ ଗାଇୟା ।
( ଚୈଃ ମଃ ମଧ୍ୟଖଣ୍ଡ )

ଏହି ହରିନାମ ସଙ୍କୀର୍ତ୍ତନ ଯେ ଉତ୍କୃଷ୍ଟତମ ତାହାର କାରଣ ଏହିକି କଳିଯୁଗରେ ନାମ ରୂପରେ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହୋଇ ଅଛନ୍ତି । ସେଥିପାଇଁ "ହରେର୍ନାମ ହରେର୍ନାମ" ଶ୍ଳୋକ ଉଦ୍ଧୃତ ପୂର୍ବକ ତାହାର ଅର୍ଥ ବୁଝାଇବାକୁ ଯାଇ ଶ୍ରୀଳ କବିରାଜ ଗୋସ୍ୱାମୀ ଲେଖିଅଛନ୍ତି ।—

କଳିକାଳେ ନାମରୂପେ କୃଷ୍ଣ ଅବତାର,
ନାମ ହୈତେ ହୟ ସର୍ବ ଜଗତ ନିସ୍ତାର ।
ଦାର୍ଢ୍ୟ ଲାଗି ହରେର୍ନାମ ଉକ୍ତି ତିନ ବାର,
ଜଗତଲୋକ ବୁଝାଇତେ ପୁନରେବକାର ।
କେବଲ ଶବ୍ଦ ପୁନରପି ନିଶ୍ଚୟ କାରଣ,
ଜ୍ଞାନ, ଯୋଗ, ତପ କର୍ମ ଆଦି ନିବାରଣ ।
ଅନ୍ୟଥା ଯେ ମାନେ ତାର ନାହିକ ନିସ୍ତାର,
ନାହିଁ ନାହିଁ ନାହିଁ ତିନ ଉକ୍ତି ଏବକାର ।
( ଚୈଃ ଚଃ ଆଦି ୧୭ ପରିଚ୍ଛେଦ )

ଏହାଠାରୁ ହରିନାମ ମାହାତ୍ମ୍ୟର ଅଧିକତର ପ୍ରମାଣ ଆଉ କି ହୋଇ ପାରେ । କବିରାଜ ଗୋସ୍ୱାମୀ ଯେ ଅତି ସରଳ ଭାଷାରେ ଉପରୋକ୍ତ ହରିନାମ ମାହାତ୍ମ୍ୟ ବୁଝାଇ ରଖି ଯାଇ ଅଛନ୍ତି । ଏହାକୁ ଯେ ଅନ୍ୟଥା କରିବ ତାହାର ନିସ୍ତାର ନାହିଁ, ନିସ୍ତାର ନାହିଁ, ନିସ୍ତାର ନାହିଁ । ଶ୍ରୀଳ କବିରାଜ ଗୋସ୍ୱାମୀଙ୍କ ପରି ନିରଭିମାନୀ ବ୍ୟକ୍ତି କି ଏପରି ଦୃଢ଼ବାଣୀ ସହଜରେ ପ୍ରୟୋଗ କରିଥାନ୍ତେ । ହରିନାମ ମାହାତ୍ମ୍ୟର ସତ୍ୟତା ତାଙ୍କ ମନରେ

ଦ୍ରବୀଭୂତ ହୋଇ ଥିବାରୁ ଯେ ତାହା ବ୍ୟାଖ୍ୟା କରିବାକୁ ଯାଇ ହୃଦୟର ପୂର୍ଣ୍ଣ ଆବେଗରେ ଏହା ଲେଖି ଅଛନ୍ତି । ବୃହତ୍ ନାରଦୀୟ ପୁରାଣାନ୍ତର୍ଗତ ସେହି "ହରେର୍ନାମ ହରେର୍ନାମ" ଶ୍ଳୋକ ଉଦ୍ଧୃତ କରି ଶ୍ରୀବାସ ମନ୍ଦିରରେ ମହାପ୍ରଭୁ ଭକ୍ତଗଣଙ୍କୁ ଯେ ଉପଦେଶ ଦେଇଥିଲେ ତାହା ଶ୍ରୀ ଲୋଚନ ଦାସଙ୍କ ଚୈତନ୍ୟ ମଙ୍ଗଳରୁ ଶୁଣାଯାଉ ।

ନାମରୂପୀ ନାମେ ଏକ ଅନାଦି ପୁରୁଷ,
କଳି ମୂର୍ତ୍ତିମନ୍ତ ଅଛେ ନା ଜାଣେ ମୂରୁଖ ।
ନାମରୂପୀ ଭଗବାନ ଜାନିବେ କେବଳ,
ସନ୍ଦେହ ଘୁଞ୍ଚାଇତେ ବ୍ୟାସ ବଲେ ତିନ ବୋଲ ।
ତିନବାର ବଇ ଅର୍ଥ ଅଛେ ଏକବାର,
ଦୁରାଶୟ ପାପୀ ଜୀବ ଜନ ବୁଝାବାର ।

ହରିନାମ ମନ୍ତ୍ରେ ହୟ କୈବଲ୍ୟ ତାହାର,
କେବଳ କୈବଲ୍ୟ ଅର୍ଥ ଜାନିବେ ବିସ୍ତର ।
ନାମ ମାତ୍ର ନାମାଭାସ ସ୍ପଷ୍ଟାର୍ଥ ଇହାର,
କୈବଲ୍ୟ ସେ ମୁଖ୍ୟ ହୟ ଶାସ୍ତ୍ର ପରଚାର ।
ନାମାଭାସେ ମୋକ୍ଷ ହୟ ସତ୍ୟ ଶାସ୍ତ୍ର ବାଣୀ,
ନାମୋଦୟେ ପ୍ରେମାନନ୍ଦ ପୁରାଣେ ବାଖାଣି ।

ଇହା ବଇ ଆନ ଦେବମାନେ ଯେଇ ଜନ,
ତାର ଗତି ନାହିଁ ତିନ ବାର ଏ ବଚନ ।
ଗୋ ଗୋପୀ ଗୋପାଳ ସଙ୍ଗେ ଧ୍ୟାନ ହରିନାମ,
ଜାନିବେ ଏ ସବ ଅର୍ଥ ବେଦେର ପ୍ରଧାନ ।

( ଚୈଃ ମଃ ମଧ୍ୟ )

ଏହି ହରି ନାମର ଆଭାସରୁ ମୁକ୍ତି ଏବଂ ପ୍ରକୃତ ନାମୋଦୟ ହେଲେ ପ୍ରେମାନନ୍ଦ ଲାଭ ହୁଏ । ଏହା ନିଜେ ମହାପ୍ରଭୁ ନିଜ ପ୍ରିୟ ପାର୍ଷଦଭକ୍ତ-ମାନଙ୍କୁ ବୁଝାଇ ଭବବ୍ୟାଧି ଜୀବର ପନ୍ଥା ନିର୍ଣ୍ଣୟ କରିଯାଇଅଛନ୍ତି ।

ନାମ ପ୍ରେମ ପ୍ରଚାର କରିବା ମହାପ୍ରଭୁଙ୍କ ଅବତାରର ଏକ ହେତୁ । ତେଣୁ ସେ ସ୍ଥାନେ ସ୍ଥାନେ ଏହି ହରି ନାମର ମାହାତ୍ମ୍ୟ ବୁଝାଇ ଯାଇଅଛନ୍ତି ତଦ୍ଭିନ୍ନ ପାର୍ଷଦଗଣ ମଧ୍ୟ ବାରମ୍ବାର ଏହି ପ୍ରଶ୍ନ ଉତ୍ଥାପନ କରି ମହାପ୍ରଭୁଙ୍କ ଶ୍ରୀମୁଖରେ ତାହାର ସିଦ୍ଧାନ୍ତ ମୀମାଂସା କରାଇ ରଖି ଅଛନ୍ତି । ଏକ ଦିନରେ ଚତୁର ଶ୍ରୀବାସ ପଣ୍ଡିତ ପଚାରିଲେ " ପ୍ରଭୋ ! କଳିଯୁଗରେ ହରିନାମ ସଂକୀର୍ତ୍ତନର ପୂର୍ଣ୍ଣ ଫଳ ଉଦୟ ହୁଏ । ଅନ୍ୟାନ୍ୟ ଯୁଗରେ ତାହା ହୁଏ ନାହିଁ । ଏହାର କାରଣ କଅଣ, ଆପଣ ବୁଝାଇ ଦିଅନ୍ତୁ" । ମହାପ୍ରଭୁ କହିଲେ "ଶ୍ରୀବାସ ! ଅତି ଉତ୍ତମ କଥା ପଚାରିଅଛ । କହୁଛି ଶୁଣ । ସତ୍ୟଯୁଗର ଯୁଗଧର୍ମ ଧ୍ୟାନ, ତ୍ରେତାର ଧର୍ମ ଯଜ୍ଞ, ଦ୍ୱାପରର ଧର୍ମ କୃଷ୍ଣାରାଧନା, କିନ୍ତୁ କଳି ଯୁଗର ମନୁଷ୍ୟ ଅତି ଦୁର୍ବଳ । ଏମାନଙ୍କ ପକ୍ଷରେ ଉପରୋକ୍ତ ଏ ତିନି ମଧ୍ୟରୁ କୌଣସି ଉପଯୋଗୀ ନୁହେଁ । ତେଣୁ ଭଗବାନ କଳିଯୁଗର ଦୁର୍ବଳଚେତା ଲୋକମାନଙ୍କ ପ୍ରତି ଅଶେଷ କରୁଣା ପ୍ରଦର୍ଶନ ପୂର୍ବକ ନାମ ରୂପରେ ଅବତୀର୍ଣ୍ଣ ।" ଯଥା ।—

କଳି ଯୁଗେ ଶକ୍ତି କେହୋ ନହେ ଏଇ କର୍ମ ।
ଅପନେ ଠାକୁର ନାମରୂପୀ ଭଗବାନ,
କଳିଯୁଗେ ସର୍ବଶକ୍ତିମନ୍ତ ହରିନାମ ।
ସତ୍ୟ ଆଦି ତିନି ଯୁଗେ ଯତ ସବ ଜନ,
ଧ୍ୟାନ ଯଜ୍ଞାର୍ଚ୍ଚନାଦିଏ ସେବେ ନାରାୟଣ ।
ପାପ କଳିଯୁଗେ ଲୋକ ଦୁରନ୍ତ ଚରିତ,
ଏଇତ କାରଣେ ଦୟା ଭେଲ ଉପସ୍ଥିତ ।

( ଚୈ: ମ: ମଧ୍ୟ )

ଶ୍ରୀ ଭଗବାନ ଗୌରଚନ୍ଦ୍ର ଧରାରେ ଅବତୀର୍ଣ୍ଣ ହେବାଁ ପୂର୍ବରୁ ମଧ୍ୟ ଏକଥା ସ୍ୱର୍ଗାଦିରେ ପ୍ରଚାର ହୋଇଥିଲା । ଶ୍ରୀମନ୍ ନାରଦ ଭାବୀକଳିଯୁଗର ଦୁରବସ୍ଥାଭାବ ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହୁଅନ୍ତେ ବିଷ୍ଣୁ ତାଙ୍କୁ କହିଲେ "ନାରଦ ! କଳି ଜୀବ ପାଇଁ କାତର ହୁଅନାହିଁ, ମୁଁ ତାର ଅତି ସୁଗମ ପନ୍ଥା ଠିକ୍ କରି ରଖି ଅଛି । କଳିରେ ଗୌରାଙ୍ଗ ରୂପରେ ଅବତୀର୍ଣ୍ଣ ହୋଇ ହରି

ନାମ ରୂପ ଯୁଗଧର୍ମ ପ୍ରଚାର କରିବ । ତଦ୍ଦ୍ୱାରା କଳିର ଅତି ଦୁର୍ବଳ ଜୀବ ଅତି ସହଜରେ ଦୁସ୍ତର ସଂସାର ସାଗରରୁ ଉତ୍ତୀର୍ଣ୍ଣ ହୋଇ ଦୁର୍ଲଭ କୃଷ୍ଣ ପ୍ରେମ ଲାଭ କରିବେ । ସ୍ୱୟଂ ବିଷ୍ଣୁଙ୍କ ମୁଖରୁ ଏହି ସୁସମ୍ବାଦ ପାଇ ମହାମୁନି ନାରଦ ପରମ ଉଲ୍ଲାସରେ ତାହା ମହା ଯୋଗେଶ୍ୱର ଶିବ ଓ ପରମ ବୈଷ୍ଣବୀ ଦୁର୍ଗାଙ୍କ ଠାରେ ପ୍ରକାଶ କଲେ ଏବଂ ସେଠାରୁ ଆସି ବେଦକର୍ତ୍ତା ବ୍ରହ୍ମାଙ୍କୁ ମଧ୍ୟ ଜଣାଇଲେ ଓ ସେମାନଙ୍କୁ ସମସ୍ତଙ୍କୁ କଳିରେ ଅବତୀର୍ଣ୍ଣହେବାକୁ ଅନୁରୋଧ କଲେ । ବ୍ରହ୍ମାଙ୍କ ଠାରେ ମହାମୁନି ଯାହା ବ୍ୟକ୍ତ କରିଥିଲେ, ଲୋଚନ ଦାସଙ୍କ ଭାଷାରେ ତହିଁରୁ କେତେକ ପଦ ନିମ୍ନରେ ଉଦ୍ଧୃତ କଲି । ଯଥା ।—

( ଶ୍ରୀ ବିଷ୍ଣୁଙ୍କର ଉକ୍ତି )

କଳି ଲୋକ ନିସ୍ତାରିବ, ନିଜ ଭକ୍ତି ପ୍ରକାଶିବ
ଅବତାର କରିବ ମୋ ତଥା
ଦାନ ବ୍ରତ, ତପ, ଧର୍ମ ଆଉ ଯତ ଯତ କର୍ମ
ସବୁ ଆରୋପିବ ହରିନାମେ,
କଳି ମହାଦୋଷ ଲେଖ ଏକ ମହାଗୁଣ ଦେଖ
ମୁକ୍ତି ବନ୍ଧ ହେବେ ସଂକୀର୍ତ୍ତନେ ।
ଘୋଷଣାବଳହରୁମି ଶିବ ବ୍ରହ୍ମା ଆଦି ଭୂମି
ସଭେ ଜନମହ କଳି ପାଞ୍ଚା
କରୁଣା ବିଗ୍ରହ ଆମି ଜନମ ଲଭିବ ଭୂମି
ଯୁଗ ଅନୁସାରେ ଗୌରହରି

( ଚୈଃ ମଃ ସୂତ୍ର )

ହରି ନାମର ମହିମା ଅପାର ଓ ଅବର୍ଣ୍ଣନୀୟ । ପୂର୍ତ୍ତିସ୍ତବରେ ନାମୋଦୟରୁ ଦୂରର କଥା; ନାମାଭାସରେ ସର୍ବ ପାପ ବିନଷ୍ଟ ହୁଏ ଓ ସଂସାରର କ୍ଷୟ ହୁଏ ଏବଂ ମୁକ୍ତି ପର୍ଯ୍ୟନ୍ତ ଲାଭ ହୁଏ । ଶ୍ରୀହରି ଓ ତାଙ୍କ ନାମ ଅଭିନ୍ନ ହରିନାମ ପୂର୍ଣ୍ଣ ଶକ୍ତି ମନ୍ତ୍ର । ତାହା ଉଚ୍ଚାରଣ କଲେ କୃଷ୍ଣ ପ୍ରେମ ଲାଭହୁଏ । ଏହି ସମସ୍ତ ଜାଣି ଐକାନ୍ତିକ ଭାବେ ଶ୍ରୀକୃଷ୍ଣଙ୍କ ରୂପଗୁଣ ଚିନ୍ତାକରି ନାମ

ଚୂହ୍ନଣ କରିବାକୁ ପୂର୍ଣ୍ଣ ଭାବରେ ନାମ ଗ୍ରହଣ ବୋଲାଯାଏ । ତାହା ନଜାଣି କୌଣସି ପ୍ରକାର ହରି ନାମ ମୁଖରେ ଉଚ୍ଚାରିତ ହେବାକୁ ନାମାଭାସ ବୋଲ ଯାଏ । ଯେମନ୍ତ ଅଜାମିଳ ମହା ପାପୀ ଥିଲେ କିନ୍ତୁ ତାଙ୍କର ରକ୍ଷିତା ସ୍ତ୍ରୀ ଗର୍ଭରୁ ଯେଉଁ ପୁତ୍ରମାନେ ଜାତ ହୋଇଥିଲେ, ସେଥି ମଧ୍ୟରୁ ଜଣଙ୍କର ନାମ ନାରାୟଣ ଥିଲା । ସେ ମୃତ୍ୟୁ ସମୟରେ ଯମଦୂତମାନଙ୍କ ଆଗମନ ଅନୁଭବ କରି ଭୟବିହ୍ୱଳ ହୋଇ "ନାରାୟଣ ନାରାୟଣ" ବୋଲି ନିଜ ପୁତ୍ରକୁ ପୁନଃ ପୁନଃ ଡାକିବାକୁ ଲାଗିଲେ । ପ୍ରକୃତରେ ସେ ଭଗବାନ ନାରାୟଣଙ୍କୁ ଡାକୁ ନଥିଲେ । ତଥାପି ତାଙ୍କ ନାମ ଉଚ୍ଚାରଣ କରିବାରୁ ବିଷ୍ଣୁଦୂତମାନେ ଆସି ଉପସ୍ଥିତ ହେଲେ । ଏହା ଦେଖି ଅଜାମିଳଙ୍କର ଜ୍ଞାନ ଉଦୟ ହେଲା ଏବଂ ସେ ଭଗବଦ୍ ଭଜନରେ ରତ ହେଲେ ଓ ଯମଦୂତଙ୍କ ହସ୍ତରୁ ରକ୍ଷା ପାଇଲେ । ଅତଏବ ଏହି ରୂପେ ନାମାଭାସର ଫଳ ତାଙ୍କଠାରେ ପ୍ରତିଫଳିତ ହେଲା ।

ମହାପ୍ରଭୁ ଶ୍ରୀହରି ଦାସଙ୍କୁ ଭଙ୍ଗି କରି ପଚାରିଲେ, "ହରି ଦାସ ! କଳି କାଳରେ ଯବନ ଅପାର ଓ ସେମାନେ ଗୋ ବ୍ରାହ୍ମଣ ହିଂସା କରନ୍ତି ଏମାନଙ୍କର ନିସ୍ତାରର ଉପାୟ କଣ ?" ଚତୁର ହରିଦାସ ମହାପ୍ରଭୁଙ୍କର ପ୍ରଶ୍ନଭଙ୍ଗୀ ବୁଝିପାରି ଉତ୍ତର କଲେ" ପ୍ରଭୋ ! ଯବନମାନଙ୍କ ପାଇଁ ଆପଣଙ୍କର ଚିନ୍ତାକରିବା ଆବଶ୍ୟକ ନାହିଁ । ସେମାନଙ୍କର ମୁକ୍ତିର ପଥ ଠିକ୍ ହୋଇଅଛି । ସେମାନେ ଯେ ହାରାମ, ଶବ୍ଦ ବ୍ୟବହାର କରନ୍ତି ସେଥିରେ ନାମାଭାସର ଫଳ ଲାଭ ହୁଏ । କାରଣ ହା ଶବ୍ଦ ପ୍ରେମ ବାଚକ ଏବଂ ରାମ ଶବ୍ଦ ଭଗବତ୍ ନାମ ବାଚକ ଅତଏବ ହାରାମ ଉଚ୍ଚାରଣ ହେତୁ ସେମାନେ ମୁକ୍ତ ହେବେ । ଅଜାମିଳ ନାମାଭାସରୁ ମୁକ୍ତ ହେବାର ସାକ୍ଷୀ । ଯଥା ।—

ନାମାଭାସ ହୈତେ ହୟ ସର୍ବ ପାପକ୍ଷୟ
ନାମାଭାସ ହୈତେ ହୟ ସଂସାରେର କ୍ଷୟ
ନାମାଭାସେ ମୁକ୍ତ ହୟ ସର୍ବ ଶାସ୍ତ୍ରେ ଦେଖି
ଶ୍ରୀଭାଗବତେ ତାହା ଅଜାମିଳ ସାକ୍ଷୀ ।

( ଚୈଃ ଚଃ ଅନ୍ତ୍ୟ ୩ୟ ପଦ )

ଏହା କହି ଶାସ୍ତ୍ରଜ୍ଞ ଶ୍ରୀହରି ଦାସ ଶ୍ରୀମଦ୍ ଭାଗବତର ଶ୍ଳୋକାବଳୀ ପାଠ କରିବାକୁ ଲାଗିଲେ । ମହାପ୍ରଭୁ ତାଙ୍କ ଅଭ୍ର ବୋତ ଉତ୍ତର ପାଇ ପରମ ସନ୍ତୁଷ୍ଟ ହେଲେ । ଶ୍ରୀହରିଙ୍କର ନାମ ଶ୍ରୀହରିଙ୍କ ଠାରୁ ଭିନ୍ନ ନୁହେଁ । ସେହି ହେତୁ ନାମ, ନାମୀ ଅଭେଦ । ମହାପ୍ରଭୁ ଶ୍ରୀକାଶୀ ଧାମରେ ବାସ କରୁଥିବା ସମୟରେ ଏକ ମହାରାଷ୍ଟ୍ରୀୟ ବ୍ରାହ୍ମଣ ଆସି ମହାପ୍ରଭୁଙ୍କୁ କହିଲେ "ପ୍ରଭୋ ! ମୁଁ ଏଠାକାର ମହାପଣ୍ଡିତ ଶ୍ରୀ ପ୍ରକାଶାନନ୍ଦ ସରସ୍ୱତୀଙ୍କ ନିକଟକୁ ଯାଇଥିଲି । ତାଙ୍କ ଠାରେ କଥା ପ୍ରସଙ୍ଗରେ ଆପଣଙ୍କ ନାମ ପ୍ରକାଶ କରନ୍ତେ ସେ ଆପଣଙ୍କର ବହୁତ ନିନ୍ଦା କଲେ । ତାଙ୍କ କଥାରୁ ବୋଧହେଲା ଯେ ଆପଣଙ୍କର ନାମ ଶୁଣି ଅଛନ୍ତି କିନ୍ତୁ କି ଆଶ୍ଚର୍ଯ୍ୟ ଯେ ଆପଣଙ୍କ ନାମ ବାରମ୍ବାର କହିବାକୁ ଯାଇ ସମସ୍ତ ନାମ ଉଚ୍ଚାରଣ କରି ପାରିଲେ ନାହିଁ । କେବଳ ଚୈତନ୍ୟ ଚୈତନ୍ୟ କହିଲେ, କୃଷ୍ଣ ଚୈତନ୍ୟ ତାଙ୍କ ମୁଖରେ ଆସିଲା ନାହିଁ । ଏହାର କାରଣ ମୁଁ କିଛି ବୁଝିପାରୁ ନାହିଁ । ଆପଣଙ୍କୁ ଦେଖିବା ମାତ୍ର ମୋ ମୁଖରୁ ସ୍ୱତଃ କୃଷ୍ଣ ଓ ହରି ଆସୁଅଛି । ସେ ଚେଷ୍ଟାକରି ମଧ୍ୟ କୃଷ୍ଣନାମ ଉଚ୍ଚାରଣ କରିପାରିଲେ ନାହିଁ କାହିଁକି ? ମହାପ୍ରଭୁ କହିଲେ ସେ ମାୟାବାଦୀ, ଅତଏବ କୃଷ୍ଣାପରାଧୀ; ସତତ ବ୍ରହ୍ମ, ଆତ୍ମା, ଚୈତନ୍ୟ ଏହି ଶବ୍ଦମାନ ବ୍ୟବହାର କରନ୍ତି । ତାଙ୍କ ମୁଖରୁ କୃଷ୍ଣନାମ ଆସିବ କାହୁଁ ? କୃଷ୍ଣନାମ ଓ କୃଷ୍ଣସ୍ୱରୂପ ଏଥିରେତ ଭିନ୍ନ ନାହିଁ । କୃଷ୍ଣନାମ ଯେ ଚିଦାନନ୍ଦମୟ । ସେଥିରେ ଅପର ପ୍ରାକୃତ ଜୀବ ତୁଲ୍ୟ ନାମ, ନାମୀ ଭେଦ ନାହିଁ ।

ଯଥା ।—

ନାମ ବିଗ୍ରହ ସ୍ୱରୂପ ତିନ ଏକରୂପ ।
ତିନେ ଭେଦ ନାହିଁ ତିନ ଚିଦାନନ୍ଦରୂପ ।
ଦେହ ଦେହୀ ନାମ ନାମୀ କୃଷ୍ଣେ ନାହିଁ ଭେଦ,
ଜୀବେରଧର୍ମ ନାମ ଦେହ ସ୍ୱରୂପ ବିଭେଦ ।
ଅତଏବ କୃଷ୍ଣେର ନାମ ଦେହ ବିଳାସ,
ପ୍ରାକୃତେନ୍ଦ୍ରିୟ ଗ୍ରାହ୍ୟ ନହେ, ହୟ ସ୍ୱପ୍ରକାଶ ।

କୃଷ୍ଣନାମ କୃଷ୍ଣଗୁଣ କୃଷ୍ଣଲୀଳା ବୃନ୍ଦ,
କୃଷ୍ଣେର ସ୍ୱରୂପ ସବ ହୟ ଚିଦାନନ୍ଦ ।

( ଚୈଃ ଚଃ ମଧ୍ୟ ୧୭ ପରି )

ନାମର ଯେ କି ଅସୀମ ଶକ୍ତି ତାହା ମହାପ୍ରଭୁ କୁଲୀନ ଗ୍ରାମ ନିବାସୀ ମହାଭାଗ୍ୟବାନ ସତ୍ୟରାଜ ଖାନ ଓ ରାମାନନ୍ଦଙ୍କୁ ମଧ୍ୟ ବୁଝାଇ ଥିଲେ । ଯଥା ।—

ପ୍ରଭୁ କହେ ଯାର ମୁଖେ ଶୁନି ଏକବାର,
କୃଷ୍ଣନାମ, ସେଇପୂଜ୍ୟ ଶ୍ରେଷ୍ଠ ସବାକାର ।
ଏକ କୃଷ୍ଣ ନାମେ କରେ ସର୍ବପାପ କ୍ଷୟ,
ନବବିଧ ଭକ୍ତି ପୂର୍ଣ୍ଣ-ନାମ ହୈତେ ହୟ ।

( ଚୈଃ ଚଃ ମଧ୍ୟ ୧୫ ପରି )

ହରିନାମ ଗ୍ରହଣରେ ଯେଉଁ ଫଳ ଲାଭହୁଏ ଯଜ୍ଞାଦିର ଫଳ ତାହାଠାରେ ଅତି ତୁଚ୍ଛ । କୋଟି ଅଶ୍ୱମେଧ ଯଜ୍ଞମଧ ଏକ କୃଷ୍ଣ ନାମର ତୁଲ୍ୟ ନୁହେ । ଯେଉଁମାନେ ଏରୂପ ସମତା ଜ୍ଞାନ କରିବେ ସେମାନେ ପାପର ଭାଗୀ ହେବେ । ଶ୍ରୀଳ କୃଷ୍ଣଦାସ କବିରାଜଙ୍କର ଉକ୍ତି ଏଥିର ପ୍ରମାଣ । ଯଥା—

ସଂକୀର୍ତ୍ତନ ପ୍ରବର୍ତ୍ତକ ଶ୍ରୀକୃଷ୍ଣ ଚୈତନ୍ୟ
ସଂକୀର୍ତ୍ତନ ଯଜ୍ଞେ ତାରେ ଭଜେ ସେଇ ଧନ୍ୟ ।
ସେଇତ ସୁମେଧା ଆର କୁବୁଦ୍ଧି ସଂସାର,
ସର୍ବ ଯଜ୍ଞ ହୈତେ କୃଷ୍ଣ ନାମଯଜ୍ଞସାର,
କୋଟୀ ଅଶ୍ୱମେଧ ଏକ କୃଷ୍ଣନାମ ସମ
ଯେଇ କହେ ସେ ପାଷଣ୍ଡୀ ଦଣ୍ଡେତାରେ ଯମ ।

( ଚୈଃ ଚଃ ଆଦି ୩ ପରି )

ଶ୍ରୀକୃଷ୍ଣ ନାମ ଗ୍ରହଣରୁ ଯେ ଆନନ୍ଦ ଜାତ ହୁଏ, ବ୍ରହ୍ମାନନ୍ଦ ତାହାଠାରେ ତୁଚ୍ଛ । ମହାପ୍ରଭୁ ପ୍ରକାଶାନନ୍ଦପ୍ରମୁଖ କାଶୀର ସନ୍ନ୍ୟାସୀମାନଙ୍କୁ ଅନୁଗ୍ରହ କରିବାକୁ ଯାଇ ହରିନାମର ଏହି ମାହାତ୍ମ୍ୟ ବୁଝାଇଥିଲେ । ଯଥା—

କୃଷ୍ଣନାମେ ଯେ ଆନନ୍ଦ ସିନ୍ଧୁ ଆସ୍ୱାଦନ,
ବ୍ରହ୍ମାନନ୍ଦ ତାର ଆଗେ ଖାତୋଦକ ସମ ।
( ଚୈ ଚଃ ଅନ୍ତ, ୭ ପର )

ହରିନାମ ସଂକୀର୍ତ୍ତନ କରି ଯେଉଁମାନେ ଶ୍ରୀହରିର ଆରାଧନା କରନ୍ତି ସେମାନେହିଁ ଧନ୍ୟ । କଳିରେ ହରିଚରଣାରବିନ୍ଦ ଲାଭ କରିବାର ଅନ୍ୟ ଉପାୟ ନାହିଁ । ମହାପ୍ରଭୁଙ୍କ ଦର୍ଶନାଭିଳାଷୀ ହୋଇ ଯେତେବେଳେ ଗୌଡୀୟ ଭକ୍ତଗଣ ମହାନନ୍ଦରେ ସଂକୀର୍ତ୍ତନ କରି କରି ପୁରୀ ବଡ଼-ଦାଣ୍ଡରେ ଯାଉଥିଲେ ମହାରାଜା ପ୍ରତାପରୁଦ୍ର ନିଜ ଅଟ୍ଟାଳିକା ଉପରୁ ସେ ଅଦୃଷ୍ଟପୂର୍ବ ମହା ସଂକୀର୍ତ୍ତନ ଦେଖି ଚମତ୍କୃତ ହେଲେ, ଏବଂ ପଣ୍ଡିତ ସାର୍ବଭୌମଙ୍କୁ ସମ୍ବୋଧନ ପୂର୍ବକ କହିଲେ "ଭଟ୍ଟାଚାର୍ଯ୍ୟ ! ଏମନ୍ତ ଅଲୌକିକ ନୃତ୍ୟ, ସୁଧାମଧୁର ହରିଧ୍ୱନି ଏବଂ ଅଦ୍ଭୁତ ପ୍ରେମଭାବ କେବେ ଦେଖା ନ ଥିଲି । ଏ ଯେ ଅତୀବ ଚମତ୍କାର" । ସାର୍ବଭୌମ ଉତ୍ତର କଲେ "ମହାରାଜ ! ଏ ପ୍ରେମ ସଂକୀର୍ତ୍ତନ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କର ପ୍ରଥମ ସୃଷ୍ଟି । ନାମ ସଂକୀର୍ତ୍ତନ ଦ୍ୱାରା ଶ୍ରୀହରିଙ୍କର ଆରାଧନା ସର୍ବୋତ୍କୃଷ୍ଟ ଏବଂ ଯେଉଁମାନେ ଏରୂପ ଆଚରଣ କରନ୍ତି ସେମାନେହିଁ ଧନ୍ୟ । ଯଥା—

ସଂକୀର୍ତ୍ତନ ଯଜ୍ଞେ ତାର କରେ ଆରାଧନ,
ସେଇତ ସୁମେଧା, ଆର କଳିହତ ଜନ ।
( ଚୈ, ଚ ମଧ୍ୟ ୧୧ ପର )

କଳିଯୁଗରେ ହରିନାମହିଁ ସାର ଓ ନାମ କୀର୍ତ୍ତନଠାରୁ କୃଷ୍ଣ ପ୍ରେମ ପାଇବାର ଅନ୍ୟ ସୁଗମ ପଥ ନାହିଁ; ତେଣୁ ଯୁଗଧର୍ମ ପ୍ରବର୍ତ୍ତକ ମହାପ୍ରଭୁ ଷ୍ଟାନେ୨ ହରିନାମ କୀର୍ତ୍ତନ କରିବାକୁ ଲୋକମାନଙ୍କୁ ଉପଦେଶ ଦେଇ ଯାଇ ଅଛନ୍ତି, ସତ୍ୟରାଜ ଖାନ୍ ଶ୍ରୀପୁରୁଷୋତ୍ତମରେ ମହାପ୍ରଭୁଙ୍କୁ ପଚାରିଲେ "ପ୍ରଭୋ ! ଅମ୍ଭମାନଙ୍କର କି କର୍ତ୍ତବ୍ୟ ଶ୍ରୀମୁଖରେ ଆଜ୍ଞା କରନ୍ତୁ ।" ମହାପ୍ରଭୁ କହିଲେ "ତୁମ୍ଭେମାନେ କୃଷ୍ଣଙ୍କ ସେବା କର, ବୈଷ୍ଣବଙ୍କର ସେବା କର ଏବଂ ନିରନ୍ତର କୃଷ୍ଣନାମ ସଙ୍କୀର୍ତ୍ତନ କର" । ଯଥା—

ପ୍ରଭୁ କହେନ କୃଷ୍ଣସେବା ବୈଷ୍ଣବ ସେବନ,
ନିରନ୍ତର କର କୃଷ୍ଣନାମ ସଂକୀର୍ତ୍ତନ ।

( ଚୈଃ ଚଃ ମଧ୍ୟ ୧୫ ପରି )

ମହାପ୍ରଭୁ ସନ୍ନ୍ୟାସାବଲମ୍ବନ ପୂର୍ବକ ବୃନ୍ଦାବନକୁ ଯାଉଥିଲେ, ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ତାଙ୍କୁ ଭୁଲାଇ ଶାନ୍ତିପୁରକୁ ନେଇଗଲେ । ମହାପ୍ରଭୁ ସେଠାରେ କେତେକ ଦିନ ରହି ଶ୍ରୀପୁରୁଷୋତ୍ତମକୁ ଯାତ୍ରା କଲେ । ଗମନ କାଳରେ ସେ ତାଙ୍କ ବିରହରେ କାତର ପ୍ରାଣ ଭକ୍ତମାନଙ୍କୁ ନାନାରୂପେ ପ୍ରବୋଧ ଦେଇ କହିଲେ " ତୁମ୍ଭେମାନେ ନିରନ୍ତର ଶ୍ରୀହରିନାମ ସଂକୀର୍ତ୍ତନ କର, ନାମ କୀର୍ତ୍ତନ ଓ ଭକ୍ତ ସେବା ଏହି ଦୁଇ ଆଚରଣ କଲେ ଜୀବଗଣ ଅନାୟାସରେ ଭବ-ସାଗରରୁ ଉତ୍ତୀର୍ଣ୍ଣ ହେବେ । ଯଥା—

ହରିନାମ ଭକ୍ତସେବା କରିହ ଯାପନ,
ଏଇଧର୍ମ କହିଲେନ ତରେ ସର୍ବଜନ,

( ଚୈଃ ମଃ ମଧ୍ୟ ଖଣ୍ଡ )

ହରିନାମ ମାହାତ୍ମ୍ୟ ସମ୍ବନ୍ଧରେ ଏହାଠାରୁ ଅଧିକତର ଉତ୍କୃଷ୍ଟ ପ୍ରମାଣ କ'ଣ ହୋଇ ପାରେ । ତେବେ ଏ ପ୍ରଶ୍ନ ଉଠିପାରେ ଯେ ଅନେକେତ ହରି-ନାମ ଗ୍ରହଣ କରୁଛନ୍ତି, କାହିଁ ସାତ୍ତ୍ୱିକଭାବ ତରଙ୍ଗତ ସେମାନଙ୍କ ଅଙ୍ଗରେ ପ୍ରକାଶ ପାଉନାହିଁ । ସେମାନେ ଯେ ହରିନାମ ଗ୍ରହଣ ଦ୍ୱାରା କୃଷ୍ଣପ୍ରେମ ଲାଭ କରିଅଛନ୍ତି ଏହାର ପ୍ରମାଣ କ'ଣ । ଭକ୍ତଚରିତ୍ର ବୁଝିବା ସହଜ ନୁହେ । ବାହ୍ୟାକୃତିରୁ ସବୁତ ଅନ୍ତରର ଭାବ ଜଣାଯାଏ ନାହିଁ । ହରିନାମ ଗ୍ରହଣ ମାତ୍ର ନାମର ଫଳ ଅବଶ୍ୟ ମିଳେ, ତେବେ କୃଷ୍ଣପ୍ରେମ ଲାଭ ନିମନ୍ତେ ନିରପ-ରାଧରେ ହିଁ ନାମ ନେବାର ଆବଶ୍ୟକ, ନିରପରାଧରେ ନାମ ନେବା କିଛି ସହଜ କଥା ନୁହେଁ, ହରିନାମ ଗ୍ରହଣରେ ଦଶବିଧ ନାମାପରାଧ ବର୍ଜ୍ଜନ କରି ନାମ ଗ୍ରହଣ କରିବା ବିଧେୟ । ଯେଉଁରୂପ କଲେ ଅତିଶୀଘ୍ର ନାମର କୃପା ହୁଏ ଏବଂ ନାମକୃପାରୁ କୃଷ୍ଣପ୍ରେମ ଜାତ ହୁଏ । ଶ୍ରୀଲ ସନାତନ ଗୋସ୍ୱାମୀଙ୍କ ଏ ବିଷୟରେ ମହାପ୍ରଭୁ ଶିକ୍ଷା ଦେଇ ଯାଇଅଛନ୍ତି । ଯଥା—

ଭଜନେର ମଧ୍ୟେ ସର୍ବଶ୍ରେଷ୍ଠ ନବବିଧ ଭକ୍ତି,
କୃଷ୍ଣପ୍ରେମ କୃଷ୍ଣଦିତେ ଧରେ ମହାଶକ୍ତି,
ତାରମଧ୍ୟେ ସର୍ବଶ୍ରେଷ୍ଠ ନାମ ସଂକୀର୍ତ୍ତନ,
ନିରପରାଧେ ନାମ ଲୈଲେ ପାୟ ପ୍ରେମଧନ ।
(ଚୈଃ ଚଃ ଅନ୍ତ୍ୟ ୪ ପରି)

ଅତଏବ ଆମ୍ଭମାନଙ୍କର ଅପରାଧ ଶୂନ୍ୟ ହୋଇ ହରିନାମଗ୍ରହଣ କରିବା ଲାଗି ଯତ୍ନଶୀଳ ହେବା ବିଧେୟ ।



## ତ୍ରୟୋଦଶ ପରିଚ୍ଛେଦ ।

### ହରିନାମ ଗ୍ରହଣର ଫଳ ।

ହରିନାମ ଗ୍ରହଣର ଫଳ ଅସୀମ । ହରିନାମ ଗ୍ରହଣ କଲେ ଜୀବ ସଂସାର ବନ୍ଧନରୁ ମୁକ୍ତ ହୋଇ ମୁନିଜନଦୁର୍ଲ୍ଲଭ କୃଷ୍ଣପ୍ରେମ ଲାଭ କରେ । ଶ୍ରୀଳ ସନାତନ ଗୋସ୍ୱାମୀଙ୍କୁ କାଶୀଧାମରେ ମହାପ୍ରଭୁ ସ୍ୱୟଂ ଏହି ଶିକ୍ଷା ଦେଇ ଯାଇଅଛନ୍ତି । ଯଥା ।—

ନିରନ୍ତର କର କୃଷ୍ଣନାମ ସଂକୀର୍ତ୍ତନ ।
ହେଳାଏ ମୁକ୍ତି ପାବେ, ପାବେ କୃଷ୍ଣପ୍ରେମଧନ ।
( ଚୈଃ ଚଃ ମଧ୍ୟ )

ମହାପ୍ରଭୁ କଣ କହୁ ଅଛନ୍ତି ମନୋଯୋଗପୂର୍ବକ ଶୁଣାଯାଉ । ନିରନ୍ତର କୃଷ୍ଣ ନାମ ସଂକୀର୍ତ୍ତନ କର; ହେଳାରେ ମୁକ୍ତି ଲାଭ କରିବ । ମୁନିମାନେ ଯେଉଁ ମୁକ୍ତି ଲାଭ ପାଇଁ କଷ୍ଟସାଧ୍ୟ ତପ ଆଚରଣ କରନ୍ତି ହରିନାମ ସଂକୀର୍ତ୍ତନ କଲେ ସେ ମୁକ୍ତି କରଗତ ହେବ ଏବଂ ତତୋଧିକ ଫଳ କୃଷ୍ଣପ୍ରେମ ଲାଭ କରିବ । ଏହା ଶ୍ରୀଭଗବାନଙ୍କର ଶ୍ରୀମୁଖର ଉକ୍ତି । ଏହାଠାରୁ ଶ୍ରୀହରିନାମର ଅପାର ଫଳ ସମ୍ବନ୍ଧରେ ଆଉ କି ଅଧିକ ପ୍ରମାଣ ଆବଶ୍ୟକ ।

ସୁବୁଦ୍ଧିରାୟ ଗୌଡ଼ର ଅଧିକାରୀ ଥିଲେ ଏବଂ ସୈୟଦ ହୁସେନ୍ ତାଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ହୁସେନଙ୍କ ଉପରେ ଏକ ଦୀର୍ଘିକା ଖୋଳାଇବାର ଭାର ଥିଲା କିନ୍ତୁ ସେ କର୍ତ୍ତବ୍ୟରେ କିଛି ତ୍ରୁଟି କରିଥିବାରୁ ସୁବୁଦ୍ଧିରାୟ ଏକଦିନ ତାଙ୍କୁ ଚାବୁକ ପ୍ରହାର କରିଥିଲେ ।

ଭାଗ୍ୟଚକ୍ର ନିତ୍ୟ ପରିବର୍ତ୍ତନଶୀଳ । କାଳକ୍ରମେ ସେହି ସୈୟଦ ହୁସେନ ଗୌଡ଼ ସିଂହାସନରେ ଆରୋହଣ କଲେ । ସୁବୁଦ୍ଧି ରାୟଙ୍କ ଅଧୀନରେ ପୂର୍ବେ କର୍ମ କରୁଥିବାରୁ ପ୍ରଭୁଭକ୍ତ ଗୁଣଜ୍ଞ ହୁସେନ ସୁବୁଦ୍ଧି ରାୟଙ୍କୁ ବହୁ ସମାଦର ପ୍ରଦର୍ଶନ ପୂର୍ବକ ଉଚ୍ଚପଦ ପ୍ରଦାନ କଲେ । ଦିନକରେ ବେଗମ୍ ନିଜ ସ୍ୱାମୀଙ୍କ ପିଠିରେ ଏକ ଦାଗ ଦେଖି ପଚାରିଲେ "ଏ କି ଚିହ୍ନ?" ସୈୟଦ ହୁସେନ କହିଲେ "ମୁଁ ପୂର୍ବେ ସୁବୁଦ୍ଧି ରାୟଙ୍କ ଅଧୀନରେ କର୍ମ କରୁଥିଲି ! ମୋର ପ୍ରକୃତ କିଛି ଦୋଷ ଦେଖି ସୁବୁଦ୍ଧି ରାୟ ମୋ ପୃଷ୍ଠଦେଶରେ ଚାବୁକ ଦ୍ୱାରା ଆଘାତ କରିଥିଲେ । ଏ ତାହାର ଚିହ୍ନ ।" ଏହା ଶୁଣି ବେଗମଙ୍କ ଦେହରେ ତାହା ଅସହ୍ୟ ହେଲା । ସେ ହିଂସାର ବଶବର୍ତ୍ତିନୀ ହୋଇ କହିଲେ, ଏମନ୍ତ କଥା, ଯେ ଭବଦୀୟ ଅଙ୍ଗରେ ଏମନ୍ତ ନିର୍ଘାତ ପ୍ରହାର କରିଅଛି ତାହାର ଉଚିତ ଶାସ୍ତି ପ୍ରାଣଦଣ୍ଡ । ତାକୁ ପୁନର୍ବାର କର୍ମ ଦେଇଅଛ ? ଏହିଦଣ୍ଡେ ସେ ନରାଧମର ପ୍ରାଣ ସଂହାର କର । ଗୌଡ଼େଶ୍ୱର ବେଗମଙ୍କୁ ଅନେକ ପ୍ରକାର ବୁଝାଇ କହିଲେ "ଦେଖ, ସେ ମୋର ପୋଷ୍ଟା, ଅତଏବ ପିତା ସ୍ୱରୂପ । ତାଙ୍କ ପ୍ରତି କୁବ୍ୟବହାର କରିବା ମୋର କଦାପି ଉଚିତ ନୁହେଁ ।" ସେ କଥା ଦ୍ୱେଷାନ୍ୱିତା ବେଗମଙ୍କର କାନକୁ ଯିବ କାହିଁକି । ସେ ଅବଶେଷରେ ନାରୀମାନଙ୍କର ପ୍ରଧାନ ଅସ୍ତ୍ର ପ୍ରୟୋଗ କଲେ । ତାଙ୍କୁ ମାନିନୀ ଦେଖି ସୈୟଦ ହୁସେନ ତାଙ୍କ ମାନଭଙ୍ଗର ଯତ୍ନ କରନ୍ତେ ବେଗମ କହିଲେ "ଯଦି ନିତାନ୍ତ ସେ ପାମରର ପ୍ରାଣ ନ ନେବ ତେବେ କରୋଆ ପାଣି ତା ମୁଖରେ ଦେଇ ତାହାର ଜାତି ଧ୍ୱଂସ କର ।" ସୈୟଦ ହୁସେନ ସେଥିରେ କହିଲେ, ସୁବୁଦ୍ଧି ରାୟ ଉତ୍ତମ ହିନ୍ଦୁ, କରୋଆ ପାଣି ତା ମୁଖରେ ଦେଲେ ସେ କି ଆଉ ପ୍ରାଣ ରଖିବ ? କିନ୍ତୁ ପତ୍ନୀଙ୍କର ସମସ୍ତ ଯୁକ୍ତି ବ୍ୟର୍ଥ ହେଲା । ପତ୍ନୀଙ୍କ ଅନୁରୋଧରେ ସୁବୁଦ୍ଧି ରାୟଙ୍କ ମୁଖରେ କରୋଆ ପାଣି ପକାଇବାକୁ ଭୃତ୍ୟଗଣଙ୍କୁ ଆଦେଶ ଦେଲେ । ଉକ୍ତ ଅସଜ୍ଜ କାର୍ଯ୍ୟରେ ପତିତ ହୁଅନ୍ତେ ସୁବୁଦ୍ଧି ରାୟ କାତର ହୋଇ ପ୍ରାୟଶ୍ଚିତ୍ତର ବିଧାନ ନିମନ୍ତେ କାଶୀଧାମକୁ ଗମନ କଲେ ଓ ସେଠାରେ ଶାସ୍ତ୍ରଜ୍ଞ ବଡ଼ ବଡ଼ ପଣ୍ଡିତମାନଙ୍କୁ ନିଜ ପାପର ପ୍ରାୟଶ୍ଚିତ ବିଧି ପଚାରିଲେ । ସେମାନେ କହିଲେ

"ଏତ ଗୁରୁତର ପାପ, ଏଥିରେତ ଅନ୍ୟ ପ୍ରାୟଶ୍ଚିତ୍ତ ଦେଖାଯାଉନାହିଁ । ତପ୍ତ ଘୃତ ପାନକରି ପ୍ରାଣବିସର୍ଜ୍ଜନ କରିବାହିଁ ଏହି ପାପର ଉଚିତ ପ୍ରାୟଶ୍ଚିତ ।" କେହି କେହି କହିଲେ "ଏତ ଏତେ ଗୁରୁତର ପାପନୁହେଁ, ଏହା କମିକି ଏତେବଡ଼ ଜୀବ ପ୍ରାୟଶ୍ଚିତ୍ତ କାହିଁକି ? ପ୍ରାଣକୁ ବିସର୍ଜ୍ଜନ କରିବାଟା ସହଜ କଥା ନୁହେଁ ।" ସୁବୁଦ୍ଧି ରାୟ ପ୍ରକୃତ ପ୍ରାୟଶ୍ଚିତ୍ତ କି ହୋଇପାରେ ଏହା ବୁଝିବାପାଇଁ ଟିକିଏ ଇତସ୍ତତଃ କରୁଥାଆନ୍ତି ଏମନ୍ତ ସମୟରେ ତାଙ୍କ ସୌଭାଗ୍ୟ ଫଳେ ମହାପ୍ରଭୁ ଆସି ସେଠାରେ ଉପସ୍ଥିତ ହେଲେ । ସୁବୁଦ୍ଧି ରାୟ ତାଙ୍କ ଆଗମନବାର୍ତ୍ତା ଶ୍ରବଣ କରି ତାଙ୍କ ନିକଟକୁ ଯାଇ ଶ୍ରୀଚରଣ କମଳରେ ପ୍ରଣତ ହେଲେ ଏବଂ ଆପଣାର ସମସ୍ତ ବୃତ୍ତାନ୍ତ ନିବେଦନ କଲେ । ତାହା ଶୁଣି ମହାପ୍ରଭୁ କହିଲେ "ସୁବୁଦ୍ଧି ରାୟ ! ତୁମ୍ଭେ ଯେ ତପ୍ତ ଘୃତ ପାନରେ ପ୍ରାଣ ବିନାଶ କରିବ ନାହିଁ ଏହା ସୁବୁଦ୍ଧିର କାର୍ଯ୍ୟ; ତୁମ୍ଭେ ବୃଥା ଚିନ୍ତା କରନାହିଁ । ଏଠାରୁ ଶ୍ରୀବୃନ୍ଦାବନକୁ ଗମନକର ଏବଂ ସେଠାରେ ରହି ସତତ କୃଷ୍ଣନାମ ସଂକୀର୍ତ୍ତନ କର । ଏକ ନାମାଭାସରେ ତୁମ୍ଭର ସମସ୍ତ ପାପ ଦୂରୀଭୂତ ହେବ ଏବଂ ଆଉ ନାମ ଗ୍ରହଣ କଲେ ତୁମ୍ଭେ ଶ୍ରୀକୃଷ୍ଣ ଚରଣାରବିନ୍ଦ ପ୍ରାପ୍ତ ହେବ । ଯଥା—

ଏକ ନାମାଭାସେ ତୋମାର ପାପ ଦୋଷ ଯାବେ,
ଆର ନାମ ଲଇତେ କୃଷ୍ଣ ଚରଣ ପାଇବେ ।
(ଚୈଃ ଚଃ ମଧ୍ୟ)

ମହାପ୍ରଭୁ ସୁବୁଦ୍ଧି ରାୟଙ୍କ ସହ ପରିହାସ କରୁନଥିଲେ, କିମ୍ବା ଛଳନା କରି ଦୁର୍ବୋଧ ବାକ୍ୟ କହି ନ ଥିଲେ । ଏ ସ୍ୱୟଂ ଭଗବାନଙ୍କର ଶ୍ରୀମୁଖର ଉପଦେଶ, ମର୍ମ ବୁଝିନପାରି ଏ ମହାବାକ୍ୟର ଅବହେଳା କରିବା ଆମ୍ଭମାନଙ୍କର ଉଚିତ ନୁହେଁ ।

ହରିନାମର ମାହାତ୍ମ୍ୟ ଠାକୁର ଶ୍ରୀହରିଦାସଙ୍କ ଦ୍ୱାରା ମହାପ୍ରଭୁ ଜଗତରେ ପ୍ରକାଶ କରାଇ ଅଛନ୍ତି । ସେ ନିତ୍ୟ ତିନିଲକ୍ଷ ହରିନାମ ଗ୍ରହଣ କରୁଥିଲେ । ହରିନାମ ମାହାତ୍ମ୍ୟ ଉତ୍ତମରୂପେ ଜାଣେ ଏରୂପ ବ୍ୟକ୍ତି ତାଙ୍କଠାରୁ ଏ ଜଗତରେ କେହି ନାହିଁ । ସେହି ଠାକୁର ଶ୍ରୀହରିଦାସ ନାମମାହାତ୍ମ୍ୟ ସମ୍ବନ୍ଧରେ କଣ କହିଅଛନ୍ତି ଆଲୋଚନା କରାଯାଉ ।

ହିରଣ୍ୟ ଓ ଗୋବର୍ଦ୍ଧନ ସପ୍ତଗ୍ରାମର ଜମିଦାର । ଶ୍ରୀ ବଳରାମ ଆଚାର୍ଯ୍ୟ ସେମାନଙ୍କର ପୁରୋହିତ । ଏକଦା ବଳରାମ ଅନୁରୋଧପୂର୍ବକ ଠାକୁର ଶ୍ରୀହରିଦାସଙ୍କୁ ଉକ୍ତ ଜମିଦାରଙ୍କ ସଭାକୁ ନେଇଗଲେ । ସେଠାରେ ହରି-ନାମର ମହିମା ସମ୍ବନ୍ଧରେ କଥା ଉଠିଲା । କେହି କହିଲେ ହରିନାମରେ ପାପକ୍ଷୟ ହୁଏ, କେହି କେହି କହିଲେ ନାମଦ୍ୱାରା ଲୋକଙ୍କର ମୁକ୍ତିହୁଏ । ଏହି ସମସ୍ତ ଉକ୍ତିଦ୍ୱାରା ନାମ ମାହାତ୍ମ୍ୟର ଖର୍ବ ହେବାରୁ ହରିଦାସଙ୍କୁ ତାହା କଷ୍ଟଜନକ ବୋଧହେଲା । ସେ ତହିଁ କହିଲେ ପାପ ଦୂର ହେବା ତଥା ମୁକ୍ତି ଲାଭ କରିବା ହରିନାମର ପ୍ରକୃତ ଫଳ ନୁହେ । ସେ ସମସ୍ତ ନାମା-ଭାସର ଫଳ । ନାମର ଫଳ ଶ୍ରୀକୃଷ୍ଣଚରଣାରବିନ୍ଦରେ ପ୍ରେମ ଲାଭ । ଯଥା :—

ହରିଦାସ କହେ ନାମେର ଏ ଦୁଇ ଫଳ ନୟ,
ନାମେର ଫଳେ କୃଷ୍ଣପଦେ ପ୍ରେମ ଉପଜୟ ।
( ଚୈ: ଚ: ଅନ୍ତ୍ୟ ୩ ପରି )

ମହାପ୍ରଭୁ ନିଜେ ହରିନାମର ମାହାତ୍ମ୍ୟ ଅନେକସ୍ଥଳରେ ବ୍ୟକ୍ତ କରି ଯାଇ ଅଛନ୍ତି । ସେ ସ୍ୱରୂପ ଓ ରାୟ ରାମାନନ୍ଦଙ୍କ ସଙ୍ଗେ କଥୋପକଥନ କାଳରେ ହରିନାମର ମହାତ୍ମ୍ୟ ଓ ହରିନାମର ଫଳ ସମ୍ବନ୍ଧରେ ଯାହା କହିଅଛନ୍ତି ତାହା ଅତି ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇ ରହିଅଛି । ଶ୍ରୀ କବିରାଜଙ୍କ ସରଳ ଭାଷାରେ ତାହା ଚରୂପେ ଅଙ୍କିତ ହୋଇଅଛି ଦେଖନ୍ତୁ ।

ହର୍ଷେ ପ୍ରଭୁ କହେ ଶୁନ ସ୍ୱରୂପ ରାମରାୟ
ନାମସଂକୀର୍ତ୍ତନ କଲୌ ପରମ ଉପାୟ ।
ସଂକୀର୍ତ୍ତନ ଯଜ୍ଞେ କଲୌ କୃଷ୍ଣ ଆରାଧନ,
ସେଇତ ସୁମେଧା ପାୟ କୃଷ୍ଣେର ଚରଣ ।
ନାମ ସଂକୀର୍ତ୍ତନେ ହୟ ସର୍ବାନର୍ଥ ନାଶ,
ସର୍ବ ଶୁଭୋଦୟ କୃଷ୍ଣେ ପ୍ରେମେର ଉଲ୍ଲାସ ।
ସଂକୀର୍ତ୍ତନ ହୈତେ ପାପସଂସାର ନାଶନ,
ଚିତ୍ତଶୁଦ୍ଧି ସର୍ବଭକ୍ତି ସାଧନ ଉଦ୍‌ଗମ ।

କୃଷ୍ଣ ପ୍ରେମୋଦ୍‌ଗମ ପ୍ରେମାମୃତ ଆସ୍ୱାଦନ
କୃଷ୍ଣ ପ୍ରାପ୍ତି ସେବାମୃତ ସମୁଦ୍ର ମଜ୍ଜନ ।

କଳିର ପରିତ୍ରାଣାବତାର ଶ୍ରୀମନ୍ ମହାପ୍ରଭୁ ନିଜେହିଁ ଶ୍ରୀମୁଖରେ ଏହା ବାରମ୍ବାର ବୁଝାଇ ଦେଇଗଲେ । ଏହାଠାରୁ ଆଉ ଅଧିକତର ପ୍ରମାଣ କି ହୋଇ ପାରେ ? ଶ୍ରୀ ଗୌରଚନ୍ଦ୍ର ନିଜେ ମଧ୍ୟ ନିଜନାମଉଚ୍ଚାରଣ-କାରୀଙ୍କଠାରେ କେତେ ଥର ବନ୍ଧା ପଡ଼ି ଅଛନ୍ତି । ସେ ପରମ ସ୍ୱତନ୍ତ୍ର ହେଲେ ମଧ ଭକ୍ତାଧୀନ, ଅତଏବ ଭକ୍ତମାନେ ତାଙ୍କ ଉପଦେଶକ୍ରମେ ଯେତେବେଳେ ତାଙ୍କ ନାମଧରି ଆତୁରରେ ଡାକି ଅଛନ୍ତି ନାମ ନାମୀ ଅଭିନ୍ନ ଭଗବାନ ସେହି ନାମ ଦ୍ୱାରା ଆବଦ୍ଧ ହୋଇ ସ୍ୱାତନ୍ତ୍ର୍ୟ ହରାଇ ଅଛନ୍ତି । ଶ୍ରୀଲ ଲୋଚନଦାସ ଏହାର ଏକ ଉଜ୍ଜ୍ୱଳ ଉଦାହରଣ ତାଙ୍କ କୃତ ଚୈତନ୍ୟ ମଙ୍ଗଳରେ ଉଲ୍ଲେଖ କରି ଅଛନ୍ତି । ମହାପ୍ରଭୁ ସ୍ୱଜନବର୍ଗଙ୍କୁ ଛାଡ଼ି କାଟୋ-ୟାକୁ ଯାଇ ସେଠାରେ ସନ୍ନ୍ୟାସ ଗ୍ରହଣାନନ୍ତର ସେ ବୃନ୍ଦାବନକୁ ଯାଉଅଛନ୍ତି ଏଣେ ତାଙ୍କ ବିରହାଗ୍ନିରେ ଦଗ୍ଧୀଭୂତ ତାଙ୍କ ସ୍ୱଜନବର୍ଗ ଆତୁର ହୋଇ ଭାବିଲେ ବର୍ତ୍ତମାନ ଆମ୍ଭମାନଙ୍କର ତ ଅନ୍ୟ କିଛି ଉପାୟ ନାହିଁ; ସେ ନିଜେ ବହୁବାର ଉପଦେଶ କରି ଅଛନ୍ତି ମୋ ଠାରୁ ମୋ ନାମ ବଡ଼, ଅତଏବ ତାଙ୍କ ନାମହିଁ ଆମ୍ଭମାନଙ୍କର ବର୍ତ୍ତମାନ ଏକମାତ୍ର ଆଶ୍ରୟ ସ୍ଥଳ । ଏହା ଭାବି ଆତୁର ପ୍ରାଣରେ ସେମାନେ ତାଙ୍କ ନାମ ନେବାକୁ ଲାଗିଲେ । ସେ ଆକ-ର୍ଷଣରେ ମହାପ୍ରଭୁଙ୍କର ବୃନ୍ଦାବନ ଯିବାର ଗତି ସ୍ଥଗିତ ହେଲା । ସେ ଶାନ୍ତି-ପୁରକୁ ଫେରି ଆସି ନିଜ ଜନମାନଙ୍କୁ ଦର୍ଶନ ଦାନକଲେ । ଯଥା ।—

ତାରେ ଅଧିକ ଦୟାଳୁ ତାର ବଡ ନାମ,
ନାମ ହେତେ ତାରେ ପାଇ ଏଇ ମୋକ୍ଷ କାମ ।
ତାର ବାକ୍ୟ ଅଛେ ପୂର୍ବେ ମୋ ସଭାର ତରେ
ନାମ ଦେଇ ଲୟ ସେଇ ପାଇବ ଆମାରେ ।
ଏତ ଚିନ୍ତି ନାମ ଲଇତେ ବସିଲ ସଭାଇ
ଶଚୀ ବିଷ୍ଣୁପ୍ରିୟା ଆର ଯତ ଯତ ଯେଇ ।
କି ବାଳକ ବୃଦ୍ଧ ଯୁବା ଯୁବକ ଯୁବତୀ

ନାମ ଲୌଟଉ ବଢ଼ିଲ ଗୌରାଙ୍ଗ କର ଗଣ୍ଡ ।
ନାମ ପାଶେ ବାନ୍ଧିଲ ଗୌରାଙ୍ଗ ମତ୍ତସିଂହ
ଦାଣ୍ଡାଇଲେ ମହାପ୍ରଭୁ ଚିତ୍ତ ହେଲ ଭଙ୍ଗ ।
( ଚୈଃ ମଃ ମଧ୍ୟ

ମନୁଷ୍ୟ ତ ଦୂରର କଥା, ପକ୍ଷୀ ଯଦି ଶ୍ରୀ ଗୌର ନାମ ଗ୍ରହଣ କରନ୍ତି ସେମାନେ ମଧ୍ୟ ନାମ କୃପାରୁ ଶ୍ରୀ ଗୌରାଙ୍ଗଙ୍କର ଧାମ ପ୍ରାପ୍ତ ହେବେ । ଶ୍ରୀ ବୃନ୍ଦାବନ ଦାସଙ୍କର ଉକ୍ତି ଏହାର ପ୍ରମାଣ । ଯଥା ।—

ସନ୍ନ୍ୟାସୀଓ ଯଦି ନାହିଁ ମାନେ ଗୌରଚନ୍ଦ୍ର
ଜାନିହ ସେ ଖଳ ଜନ ଜନ୍ମ ଜନ୍ମ ଅନ୍ଧ ।
ପକ୍ଷୀମାତ୍ର ଯଦି ବଲେ ଚୈତନ୍ୟେର ନାମ
ସେଇ ସତ୍ୟ ଯାଇବେକ ଚୈତନ୍ୟେର ଧାମ ।
( ଚୈଃ ଭାଃ ମଧ୍ୟ ୧୦ ଶ ଅ )

ଏଠାରେ କାହାର ମନରେ ଏପରି ପ୍ରଶ୍ନ ଉଠି ପାରେ ଯେ ପକ୍ଷୀର ସ୍ୱାଭାବିକ ଜ୍ଞାନ ଛଡ଼ା ସେରୂପ ନାମ ଗ୍ରହଣର ଜ୍ଞାନ କେଉଁଠାରୁ ଆସିବ । ଅଥବା ନାମୋଚ୍ଚାରଣ ଶକ୍ତି ତାହାର କେଉଁଠାରୁ ଆସିବ । କିନ୍ତୁ ବନ ପଥରେ ମହାପ୍ରଭୁ ବୃନ୍ଦାବନକୁ ଯିବା କାଳରେ ପଶୁପକ୍ଷୀମାନଙ୍କର ଯେଉଁ ଦଶା ଘଟିଥିଲା ତାହା ଯେ ପାଠ କରିବ ତାହାର ମନରେ ଏ ସନ୍ଦେହ ରହିବ ନାହିଁ । ସେତେବେଳେ ସେ ବନ ପଶୁପକ୍ଷୀମାନଙ୍କ ମୁଖରେ ହରି ବୋଲୁଥିଲେ ଏବଂ ତାଙ୍କ କୃପାରୁ ବନର ହିଂସ୍ର ପଶୁଗଣ ନିଜ ହିଂସାଭାବ ପରିତ୍ୟାଗ କରି ହରି ହରି ବୋଲି ନୟନରୁ ଅଶ୍ରୁ ବୁହାଇ ମହାପ୍ରଭୁଙ୍କ ଆଗେ ଆଗେ ନୃତ୍ୟ କରି ଦଉଡ଼ୁଥିଲେ । ହାୟ ! କରୁଣାସାଗର ଶ୍ରୀ ଗୌରଚନ୍ଦ୍ର ! ତୁମ୍ଭେ ପଶୁପକ୍ଷୀଙ୍କର ମନରେ ଏତେ ପ୍ରେମ ଆଣିଲ, କିନ୍ତୁ ମୋ ପରି ଅଧମର ମନ ଫେରାଇବାକୁ କି ତୁମ୍ଭର ଶକ୍ତି ହେଲା ନାହିଁ ? ମୋର ମନ ଯେ ପଶୁର ମନଠାରୁ ହୀନ ଏହା ମୁଁ ଉତ୍ତମରୂପେ ଅନୁଭବ କରୁଅଛି । କିନ୍ତୁ ଦେଖ, ଏଥିରେ ଯେପରି ତୁମ୍ଭର କଳଙ୍କ ନ ହୁଏ । ଶ୍ରୀ ଭଗବାନଙ୍କ ନାମହିଁ ସାର । ସେବେ ତାଙ୍କର ଭିନ୍ନ ଭିନ୍ନ ନାମର ଫଳରେ

ମଧ୍ୟ ଦେବଲୀଳା ଥିବାର ଶାସ୍ତ୍ରରୁ ପ୍ରମାଣ ମିଳେ । ଏ ଗୂଢ଼ତତ୍ତ୍ୱର ରହସ୍ୟର ମୀମାଂସା କରିବାର ମୋର ଅଧିକାର ନାହିଁ । ମହାନୁଭବ ଶ୍ରୀଳ କୃଷ୍ଣଦାସ କବିରାଜ ଯାହା କହି ଯାଇ ଅଛନ୍ତି ମୁଁ ତାହା ପୁନରାବୃତ୍ତି କରୁଅଛି ମାତ୍ର ।

ଏକଦା ଠାକୁର ଶ୍ରୀହରିଦାସଙ୍କର ଐକାନ୍ତିକ ଭାବରେ ତିନି ଲକ୍ଷ ହରି ନାମ ଗ୍ରହଣ ଦେଖି ମାୟାଦେବୀ ଚମତ୍କୃତା ହେଲେ ଏବଂ ଦିବ୍ୟ ନାରୀବେଶ ଧାରଣ କରି ତାଙ୍କୁ ପରୀକ୍ଷା କରିବା ନିମନ୍ତେ ତାଙ୍କ ଗୁମ୍ଫା ନିକଟରେ ଉପସ୍ଥିତ ହେଲେ । ମୋହିନୀବେଶଧାରିଣୀ ମାୟାଙ୍କ ଅଙ୍ଗ ଜ୍ୟୋତିର ଗୁମ୍ଫା ନିକଟ ସ୍ଥାନସକଳ ପୀତ ବର୍ଣ୍ଣ ଧାରଣ କଲା ଏବଂ ତାଙ୍କ ଅଙ୍ଗଗନ୍ଧରେ ବନ ଆମୋଦିତ ହେଲା, ସେହି ଅପରୂପ ରୂପଲାବଣ୍ୟ-ବତୀ ନାରୀ ଗୁମ୍ଫା ନିକଟରେ ପ୍ରବେଶ କରି ତୁଳସୀଙ୍କୁ ପରିକ୍ରମା କଲେ ଏବଂ ଗୁମ୍ଫାଦ୍ୱାରକୁ ଯାଇ କୃତାଞ୍ଜଳିପୁଟରେ ଠାକୁର ହରିଦାସଙ୍କୁ ନିବେଦନ କଲେ "ମହାତ୍ମନ୍ ! ମୁଁ ଭବାଦୃଶ ରୂପଯୌବନ ଦର୍ଶନରେ ଓ ଗୁଣ ଶ୍ରବଣରେ ବିମୁଗ୍ଧ ହୋଇ ଆପଣଙ୍କ ଆଶ୍ରୟ ନେବାକୁ ଆସିଅଛି, ଆପଣ ପରମ ଦୟାଳୁ, ଏ ଯୁବତୀର ଅଭିପ୍ରାୟ ଅବଶ୍ୟ ସଫଳ କରିବେ ।" ଏହା କହି ନାରୀଜନୋଚିତ ନାନା ହାବଭାବ ପ୍ରକାଶ କରିବାକୁ ଲାଗିଲେ; ହରିଦାସ ନିର୍ବିକାର ପୁରୁଷ ଏବଂ ମହାଗମ୍ଭୀର, ସେ ନାରୀର ମନୋଗତ ଭାବ ବୁଝି ସୁଧା ମଧୁର ବାକ୍ୟରେ ତାଙ୍କୁ କହିଲେ "ମୁଁ ନାମ ଯଜ୍ଞ ଆରମ୍ଭ କରିଅଛି, ସଂଖ୍ୟା ପୂର୍ଣ୍ଣ-ହେଲେ ତୁମ୍ଭଙ୍କୁ ଅଙ୍ଗୀକାର କରିବି । ସଂଖ୍ୟା ନାମ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ତୁମ୍ଭେ ନିକଟରେ ବସି ନାମ ଶ୍ରବଣ କର । ଏହିରୂପେ ତିନିଦିନ ସେ ମାୟା-ଦେବୀ ନାମ ଶ୍ରବଣ କରିବାକୁ ଲାଗିଲେ ଓ ତିନି ଦିନ ଅତିବାହିତ ହେଲା, ତିନିଦିନ ପରେ ମାୟାଦେବୀ କହିଲେ "ମହାଶୟ ! ଏତେ ଦିବସ ଅତୀତ ହୋଇଗଲା, ମୋହର ଆଶା ସଫଳ ହେବାର କିଛି ମୁଁ ତ ଦେଖୁନାହିଁ । ଠାକୁର ହରିଦାସ କହିଲେ, ମୁଁ କି କରିବି ? ମୁଁ ଯେ ନିୟମ କରିଅଛି ତାହା ତ ଭଙ୍ଗ ନ ଘଟେ ସେତେବେଳେ ମାୟା ତାଙ୍କ ଚରଣତଳେ ପ୍ରଣାମ ପୂର୍ବକ କହିଲେ "ମୁଁ ମାୟା । ଆପଣଙ୍କୁ ପରୀକ୍ଷା କରିବା ନିମିତ୍ତ ଆସିଥିଲି । ବ୍ରହ୍ମାଦି ସମସ୍ତ ଜୀବଙ୍କୁ ମୋର ମୋହିନୀ ଶକ୍ତିରେ ମୁଁ ମୁଗ୍ଧ କରିବାକୁ ସକ୍ଷମ

ହେଲ ତେନ୍ତୁ ଆପଣଙ୍କଠାରେ ମୋର ଯେ ଶକ୍ତି ପରାସ୍ତ ହେଲା, ଆପଣ ମହାନୁଭବ, ଆପଣଙ୍କ ଦୁର୍ଲ୍ଲଭ ଦର୍ଶନ ଲାଭକରି ଓ ଆପଣଙ୍କ ଶ୍ରୀମୁଖରୁ ସୁଧା-ମଧୁର ଶ୍ରୀକୃଷ୍ଣନାମ ଶ୍ରବଣ କରି ମୋର ଚିତ୍ତ ବିଶୁଦ୍ଧ ହୋଇଅଛି, ମୋତେ ବର୍ତ୍ତମାନ କୃଷ୍ଣନାମ ପ୍ରଦାନ କରି ଚରିତାର୍ଥ କରନ୍ତୁ । ପୂର୍ବେ ମୁଁ ଶିବଙ୍କଠାରୁ ଶ୍ରୀରାମନାମ ଗ୍ରହଣ କରିଅଛି, କିନ୍ତୁ ଆପଣଙ୍କ ସଙ୍ଗପ୍ରଭାବରୁ ମୋର କୃଷ୍ଣନାମ ନେବାର ଅଭିଳାଷ ଜନ୍ମିଅଛି । ଶ୍ରୀରାମ ନାମରୁ ମୁକ୍ତି ଲାଭହୁଏ କିନ୍ତୁ କୃଷ୍ଣ-ନାମ ପ୍ରେମ ଦାନ କରେ, ଯଥା :—

ମୁକ୍ତି ହେତୁ ତାରକ ବ୍ରହ୍ମ ହୟ ରାମନାମ,
କୃଷ୍ଣନାମ ପାରକ କରେ ପ୍ରେମଦାନ ।

( ଚୈଃ ଚଃ ଅନ୍ତ୍ୟ ୩ ପରି )

ଏହିରୂପେ ପତିତପାବନ ଶ୍ରୀଗୌରନିତ୍ୟାନନ୍ଦ ନାମ ଯେ ଅଧିକତର ଫଳଦାୟୀ ଏହା ଶ୍ରୀ ଚୈତନ୍ୟଚରିତାମୃତରେ ଉଲ୍ଲିଖିତ ହୋଇଅଛି, ଅଭୂତ ଦୟାଳୁ ଶ୍ରୀଗୌରନିତ୍ୟାନନ୍ଦ ଅପରାଧୀର ଅପରାଧ ବିଚାର ନ କରି ତାଙ୍କନାମ ଗ୍ରହଣକାରୀ ମହାପାପୀମାନଙ୍କୁ ଉଦ୍ଧାର କରନ୍ତି । ଭଗବାନଙ୍କ ସ୍ୱରୂପତ ସହଜରେ ଉପଲବ୍ଧି ହୁଏ ନା, ବିଗ୍ରହଙ୍କର ପୂଜା ସର୍ବଦା ଦର୍ଶନ ମିଳି ନ ପାରେ କିନ୍ତୁ ତାଙ୍କନାମ ସତତ ବର୍ତ୍ତମାନ, ଆମ୍ଭେମାନେ ଐକାନ୍ତିକ ଭାବରେ ନାମାଶ୍ରୟ କଲେ ନାମରୁ ଅଭିନ୍ନ ଭଗବାନ ଆମ୍ଭମାନଙ୍କର ଅବଶ୍ୟ ବଶୀଭୂତ ହେବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

୬୪ ଅଙ୍ଗ ଭକ୍ତିସାଧନ ମଧ୍ୟରେ ନାମସଙ୍କୀର୍ତ୍ତନହିଁ ସର୍ବଶ୍ରେଷ୍ଠ ଶ୍ରୀଲ ସନାତନ ଗୋସ୍ୱାମୀ ବୃହଦ୍ ଭାଗବତାମୃତରେ ଏହା ଉତ୍ତମରୂପେ ଦର୍ଶାଇ ଅଛନ୍ତି ।



## ଚତୁର୍ଦ୍ଦଶ ପରିଚ୍ଛେଦ ।

### ବିଗ୍ରହତତ୍ତ୍ୱ ।

ଶ୍ରୀଭଗବାନଙ୍କର ନାମ, ବିଗ୍ରହ ଓ ସ୍ୱରୂପ ତିନିହେଁ ଏକ। ଏଥିରେ ଭିନ୍ନାଭିନ୍ନ ନାହିଁ, । ପୂର୍ବ ଅଧ୍ୟାୟରେ ହରିନାମ ମାହାତ୍ମ୍ୟ ବର୍ଣ୍ଣନ କାଳରେ କୁହାଯାଇଅଛି ନାମ ବିଗ୍ରହ ଓ ସ୍ୱରୂପ, ଏହା ଏକ। ଯଥା—

ନାମ ବିଗ୍ରହ ସ୍ୱରୂପ ତିନ ଏକରୂପ
ତିନେ ଭେଦନାହିଁ ତିନ ଚିଦାନନ୍ଦରୂପ,

( ଚିଃ ଚଃ ମଧ୍ୟ )

ଏ ଉକ୍ତି ଅନ୍ୟ କାହାର ନୁହେ, ସ୍ୱୟଂ ମହାପ୍ରଭୁଙ୍କର । ସେ ପୁଣି ଜଗନ୍ନାଥ ବିଗ୍ରହ ସମ୍ବନ୍ଧରେ କ'ଣ କହିଯାଇଅଛନ୍ତି ତାହା ଆଲୋଚନା କରାଯାଉ ।

ବଙ୍ଗଦେଶୀୟ ଭକ୍ତଗଣ ଶ୍ରୀପୁରୁଷୋତ୍ତମରେ ମହାପ୍ରଭୁଙ୍କଠାରୁ ବିଦାୟ ନେବା କାଳରେ ସେ ଭକ୍ତମାନଙ୍କୁ ଏକେ ଏକେ କେତେକ ସଦୁପଦେଶ ପ୍ରଦାନ କରିଥିଲେ, ଯେଉଁସମୟରେ ଭକ୍ତପ୍ରବର ଶ୍ରୀସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ଭ୍ରାତା ଶ୍ରୀବିଦ୍ୟାବାଚସ୍ପତି ମହାଶୟଙ୍କୁ କହିଥିଲେ "କୃଷ୍ଣ ବର୍ତ୍ତମାନ ଦାରୁ ଓ ଜଳ ରୂପରେ ପ୍ରକଟ ହୋଇ ଅଛନ୍ତି, ଦାରୁବ୍ରହ୍ମରୂପରେ ଏହି ଶ୍ରୀପୁରୁଷୋ-ତ୍ତମରେ ବିଦ୍ୟମାନଥାଇ ଲୋକଙ୍କୁ ଦର୍ଶନ ଦାନ କରୁଅଛନ୍ତି ଓ ମହା-ପ୍ରସାଦ ବିତରଣ କରୁଅଛନ୍ତି । ଜଳ ବ୍ରହ୍ମରୂପରେ ପତିତପାବନୀ ଗଙ୍ଗା ବଙ୍ଗ-ଦେଶରେ ବର୍ତ୍ତମାନ, ସେଥିରେ ଅବଗାହନ ଓ ତାଙ୍କ ଜଳପାନ କରି ଅନେକାନେକ ପାପୀଜନ ଉଦ୍ଧାର ହେଉ ଅଛନ୍ତି । ଯଥା—

"ଦାରୁଜଳରୂପେ କୃଷ୍ଣ ପ୍ରକଟ ସଂପ୍ରତି,
ଦରଶନେ ସ୍ନାନ କରେ ଜୀବେର ମୁକତି,
ଦାରୁବ୍ରହ୍ମରୂପେ ସାକ୍ଷାତ୍ ଶ୍ରୀପୁରୁଷୋତ୍ତମ,
ଭାଗୀରଥୀ ସାକ୍ଷାତ୍ ହନ ଜଳବ୍ରହ୍ମ ସମ,
ସାର୍ବଭୌମ କର ଦାରୁବ୍ରହ୍ମ ଆରାଧନ,
ବାଚସ୍ପତି କର ଜଳବ୍ରହ୍ମେର ସେବନ।
( ଚୈଃ ଚଃ ମଧ୍ୟ ୧୬ ପରି )

ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଓ ସ୍ୱରୂପରେ ଯେ କିଛି ଭିନ୍ନ ନାହିଁ ଏହା ମଧ୍ୟ ମହାପ୍ରଭୁଙ୍କର ଅନେକ କଥାରୁ ପ୍ରମାଣ ମିଳୁଅଛି ।

ଏକଦିନ ମହାପ୍ରଭୁ ପ୍ରେମବିହ୍ୱଳ ହୋଇ ଶ୍ରୀ ଜଗନ୍ନାଥ ଦର୍ଶନ କରିବାକୁ ଯାଇ ଅଛନ୍ତି, ସିଂହଦ୍ୱାରସ୍ଥ ଦଳେଇଙ୍କୁ ( ଦ୍ୱାରୀଙ୍କୁ ) ଦେଖି କହିଲେ "ମୋର ପ୍ରାଣନାଥ ଶ୍ରୀକୃଷ୍ଣ କେଉଁଠାରେ ଅଛନ୍ତି ମୋତେ ଟିକିଏ ଦେଖାଇ ଦେଇ ପାରିବ ? " ଏହାକହି ଭଗବାନ ଦଳେଇର କରଧାରଣ କଲେ । ଦଳେଇ କହିଲେ " ଆସନ୍ତୁ, ମୁଁ ଆପଣଙ୍କୁ ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କୁ ଦର୍ଶନ କରାଇ ଦେବି ।" ଏହାକହି ମହାପ୍ରଭୁଙ୍କ ଜଗମୋହନ ମଧ୍ୟକୁ ହସ୍ତ ଧାରଣପୂର୍ବକ ନେଇଗଲେ ଏବଂ ଜଗନ୍ନାଥ ଦେବଙ୍କୁ ଦେଖାଇ ଦେଇ କହିଲେ " ଏହି ଆପଣଙ୍କର ପ୍ରାଣନାଥ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରନ୍ତୁ ।" ମହାପ୍ରଭୁ ଶ୍ରୀଗରୁଡଙ୍କ ପଛରେ ଦଣ୍ଡାୟମାନ ହୋଇ ଦର୍ଶନ କରିବାକୁ ଲାଗିଲେ, ଦେଖିଲେ ଶ୍ରୀ ଜଗନ୍ନାଥ ତ୍ରିଭଙ୍ଗ ରୂପରେ କରରେ ମୁରଲୀ ଧରି ଦଣ୍ଡାୟମାନ ହୋଇ ଅଛନ୍ତି । ଏହାପରେ ଶ୍ରୀଜଗନ୍ନାଥଙ୍କ ଭୋଗ ଲାଗିଲା ଓ ଭୋଗ ଅବକାଶ ହେଲା । ଅବକାଶ ସମାପନାନ୍ତେ ଶ୍ରୀ ଜଗନ୍ନାଥଙ୍କ ସେବକ-ଗଣ ମହାପ୍ରଭୁଙ୍କୁ ପ୍ରସାଦମାଳା ଅର୍ପଣ କରି କିଛି ମହାପ୍ରସାଦ ମହାପ୍ରଭୁଙ୍କ ହସ୍ତରେ ଦେଲେ । ସେ ମହାପ୍ରସାଦର ଗନ୍ଧରେ ଚତୁର୍ଦ୍ଦିଗ ଆମୋଦିତ । ମହାପ୍ରଭୁ ସେ ମହାପ୍ରସାଦରୁ ଟିକିଏ ମାତ୍ର ଜିହ୍ୱାରେ ଦେଇ ଅବଶିଷ୍ଟ ମହାପ୍ରସାଦକୁ ନିଜ ସେବକ ଗୋବିନ୍ଦଙ୍କ ବସ୍ତ୍ରରେ ବାନ୍ଧିବାକୁ ଦେଲେ । ମହାପ୍ରସାଦ ପାଇ ମହାପ୍ରଭୁଙ୍କ ଅଙ୍ଗରେ ଅଷ୍ଟ ସାତ୍ତ୍ୱିକ ଭାବ ଉଦିତ ହେଲା ।

ସର୍ବାଙ୍ଗ ପୁଲକିତ ହୋଇ ନେତ୍ରରୁ ଅଶ୍ରୁଧାର ବହିବାକୁ ଲାଗିଲା । ସେ ପ୍ରକାର କରି କହିବାକୁ ଲାଗିଲେ, ଅହୋ ! କି ସୁସ୍ୱାଦୁ, ଏ ପଦାର୍ଥରୁ ଏଡ଼େ ସ୍ୱାଦୁ କେଉଁଠାରୁ ଆସିଲା ? ଏଥିରେ ଯେ ଶ୍ରୀକୃଷ୍ଣଙ୍କର ଅଧରସୁଧା ସଞ୍ଚାରିତ ହୋଇ ଅଛି । ତେଣୁ ଏ ଏଡ଼େ ସୁସ୍ୱାଦୁ ଓ ସୁଗନ୍ଧି ହୋଇ ଅଛି । ଏହା କହି ସୁକୃତଲଭ୍ୟ ଫେଲାମୃତ ଏହି କଥା ଉଚ୍ଚାରଣ କରି କରି ଅଗ୍ରସର ହେଲେ । ଶ୍ରୀ ଜଗନ୍ନାଥଙ୍କ ସେବକ ପଚାରିଲେ, "ଆପଣ ଯାହା କହୁଅଛନ୍ତି ତାହାର ଅର୍ଥ କଣ ?" ମହାପ୍ରଭୁ କହିଲେ ଏହି ଯେ କୃଷ୍ଣ ଅଧରାମୃତ ଆପଣ ମୋତେ ଦେଲେ ଏହା ବ୍ରହ୍ମାଦିଙ୍କର ଦୁର୍ଲଭ । ଏହାଠାରେ ଅମୃତ ଅତି ତୁଚ୍ଛ । ଶ୍ରୀକୃଷ୍ଣଙ୍କର ଭୁକ୍ତାବଶେଷର ନାମ ଫେଲା ଏବଂ ଯେ ତାହାର ଲବମାତ୍ର ପାଏ ସେ ମହାଭାଗ୍ୟବାନ । ଅତଏବ ମହା ସୁକୃତବାନ୍ ପୁରୁଷହିଁ ଏହି ଫେଲାମୃତ ପାଇବାର ଯୋଗ୍ୟ । ଅପର ତାହା ପାଇ ନପାରେ । ସୁକୃତ ମାନେ କୃଷ୍ଣକୃପା ହେତୁ ପୁଣ୍ୟ ଏବଂ ଯାହାର ଏମନ୍ତ ପୁଣ୍ୟର ଉଦୟ ହୁଏ ସେ ଫେଲା ପାଇବାର ଯୋଗ୍ୟ । ଯଥା ।—

ପ୍ରଭୁ କହେ ଏଇ ଯେ ଦେଲେ କୃଷ୍ଣାଧରାମୃତ,
ବ୍ରହ୍ମାଦି ଦୁର୍ଲଭ ଏଇ ନିନ୍ଦୟ ଅମୃତ ।
କୃଷ୍ଣେର ଯେ ଭୁକ୍ତଶେଷ ତାର ଫେଲା ନାମ
ତାର ଏକ ଲବ ଯେ ପାୟ ସେଇ ଭାଗ୍ୟବାନ୍ ।
ସାମାନ୍ୟ ଭାଗ୍ୟ ହୈତେ ତାର ପ୍ରାପ୍ତି ନାହିଁ ହୟ
କୃଷ୍ଣେର ଯାଁତେ ପୂର୍ଣ୍ଣ କୃପା ସେଇ ତାହା ପାୟ ।

( ଚୈଃ ଚଃ ଅନ୍ତ୍ୟ ୧୬ ପରି )

ଅତଏବ ମହାପ୍ରଭୁଙ୍କର ଏହି ସମସ୍ତ ବାକ୍ୟ ଓ ବ୍ୟବହାରରୁ ସ୍ପଷ୍ଟ ପ୍ରମାଣ ଯେ ଭଗବାନଙ୍କ ବିଗ୍ରହ ଓ ଦ୍ରବ୍ୟରେ ଭେଦନାହିଁ । ମହାପ୍ରଭୁ ଯେଉଁ ଫେଲାମୃତ ଗୋବିନ୍ଦ ଦ୍ୱାରା ବନ୍ଧାଇ ନେଇଥିଲେ ତାହା ରାୟ ରାମାନନ୍ଦ, ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଓ ସ୍ୱରୂପ ଆଦି ପ୍ରିୟ ପାର୍ଷଦବର୍ଗଙ୍କୁ ବିତରଣ କରିଦେଲେ । ମହାପ୍ରସାଦର ସୌରଭ ଓ ମଧୁରତା ଆସ୍ୱାଦନ କରି ସମସ୍ତେ ବିସ୍ମିତ ହେଲେ । ମହାପ୍ରଭୁ କହିଲେ ଏତ ସୁଡ଼, କର୍ପୂର,

ମରିଚ, ଏଲାଇଚ, ଲବଙ୍ଗ ପ୍ରଭୃତି ପ୍ରାକୃତ ଦ୍ରବ୍ୟରେ ନିର୍ମିତ; ସେଥିରେ ଏ ଅପୂର୍ବ ସ୍ୱାଦୁ ଓ ଅପୂର୍ବ ସୁଗନ୍ଧ କେଉଁଠାରୁ ଆସିଲା ? ଆସ୍ୱାଦନ ଦୂରେ ଥାଉ, ଏହାର ଗନ୍ଧ ପ୍ରାଣ ଆକୁଳ କରୁଅଛି, ଅନ୍ୟ ସମସ୍ତ ବିଷୟରୁ ଏହା ଚିତ୍ତକୁ ଆକର୍ଷଣ କରି ନିଜଠାରେ ନିଯୁକ୍ତ କରାଉଅଛି । ରାମାନନ୍ଦ ! ଏହାର କାରଣ ଏହି କି ସେଥିରେ ଲୋକର ଉତର ରାଗ ଉଦ୍ଗାରଣକାରୀ କୃଷ୍ଣାଧର ସ୍ପର୍ଶ ହୋଇଅଛି । ଏହା ସେହି ଅଧରାମୃତଧାରିତ୍ୱ ଗୁଣ । କେଉଁ ସୁକୃତି ଫଳରୁ ଏହା ଲାଭ ହୋଇଅଛି ; ତୁମ୍ଭେମାନେ ମହାଭକ୍ତିସହ ଏହା ଆସ୍ୱାଦନ କର । ମହାପ୍ରଭୁଙ୍କର ଏହି ବଚନସୁଧା ପାନକରି ସମସ୍ତେ ପରମାନନ୍ଦରେ ସେହି ଫେଳାମୃତ ସେବନ କଲେ ଏବଂ ସେବନମାତ୍ରକେ ସମସ୍ତେ ପ୍ରେମରେ ମତ୍ତ ହେଲେ । ଯଥା ।—

ପ୍ରଭୁକହେ ଏଇ ସବ୍ ହୟ ପ୍ରାକୃତ ଦ୍ରବ୍ୟ,
ଐକ୍ଷବ କର୍ପୂର ମରିଚ ଏଲାଇଚ ଲବଙ୍ଗ ଗବ୍ୟ ।
ରସବାସ ଗୁଡ଼ତ୍ୱକ ଆଦି ଯତ ସବ
ପ୍ରାକୃତ ବସ୍ତୁର ସ୍ୱାଦ ସବାର ଅନୁଭବ ।
ସେଇ ଦ୍ରବ୍ୟର ଏତ ସ୍ୱାଦ ଗନ୍ଧ ଲୋକାତୀତ,
ଆସ୍ୱାଦ କରିୟା ଦେଖ ସବାର ପ୍ରତୀତ ।
ଆସ୍ୱାଦ ଦୂରେ ରହୁକ୍ ଗନ୍ଧେ ମାତେ ମନ,
ଆପନା ବିନା ଅନ୍ୟ ମାଧୁର୍ଯ୍ୟ କରାୟ ବିସ୍ମରଣ ।
ତାତେ ଏଇ ଦ୍ରବ୍ୟେ କୃଷ୍ଣାଧର ସ୍ପର୍ଶ ହୈଲ,
ଅଧରେର ଗୁଣ ସବ୍ ଏହାତେ ସଞ୍ଚରିଲ ।
ଅଲୌକିକ ଗନ୍ଧ ସ୍ୱାଦ ଅନ୍ୟ ବିସ୍ମରଣ,
ମହା ମାଦକ ହୟ ଏଇ କୃଷ୍ଣାଧରେର ଗୁଣ ।
ଅନେକ ସୁକୃତେ ଏହାର ହଞାଛେ ସୁପ୍ରାପ୍ତି,
ସବେ ଏଇ ଆସ୍ୱାଦକର କରି ମହା ଭକ୍ତି ।
ହରିଧ୍ୱନି କରି ସବେ କୈଲ ଆସ୍ୱାଦନ,
ଆସ୍ୱାଦିତେ ପ୍ରେମେ ମତ୍ତ ହୈଲ ସବାର ମନ ।

( ଚୈଃ ଚଃ ଅନ୍ତ୍ୟ ୧୬ ପର )

ଶ୍ରୀ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ଶ୍ରୀ ବୃନ୍ଦାବନରେ ଭ୍ରମଣ କାଳରେ ଶ୍ରୀ ଗୋବର୍ଦ୍ଧନ ପର୍ବତ ନିକଟରେ ପହଞ୍ଚିଲେ ଏବଂ ଗିରିରାଜଙ୍କୁ ପରିକ୍ରମା ପୂର୍ବକ ଗୋବିନ୍ଦକୁଣ୍ଡ ନିକଟରେ ବିଶ୍ରାମ କଲେ । ତାଙ୍କର କ୍ଷୁଧା ଜାଣି ଧୀର ଭଗବାନ ଶ୍ରୀକୃଷ୍ଣ ଗୋପବାଳକ ବେଶରେ ଏକ ଦୁଧଭଣ୍ଡ ଘେନି ଉପସ୍ଥିତ ହେଲେ ଏବଂ କହିଲେ "ଗୋସାଇଁ ! କାହାକୁ ମନେ ମନେ ଧ୍ୟାନକରି ବସିଅଛ । ମାଗି ଖାଉ ନାହିଁ ? ଏହି ଦୁଧ ନିଅ ପାନକର ।" ବାଳକର ଏରୂପ ହୃଦସ୍ପୃହାସ୍ପ ବଚନରେ ଗୋସ୍ୱାମୀଙ୍କର ଧ୍ୟାନ ଭଙ୍ଗ ହେଲା । ସେ ଦେଖିଲେ ଗୋଟିଏ ଅତି ସୁନ୍ଦର ବାଳକ ଦୁଧ ଘେନି ତାଙ୍କଠାରେ ଉପସ୍ଥିତ । ବାଳକର ସୁଧାମଧୁରବଚନ ଶ୍ରବଣ କରି ସେ କ୍ଷୁଧା ତୃଷା ଭୁଲିଗଲେ । ପୁରୀ ଗୋସ୍ୱାମୀ ପଚାରିଲେ " ତୁମ୍ଭେ କିଏ ? ତୁମ୍ଭର ଘର କେଉଁଠାରେ ? ମୁଁ ଉପବାସରେ ରହିଅଛି ଏହା ତୁମ୍ଭେ କିପରି ଜାଣିଲ ?" ବାଳକ ଉତ୍ତର କଲେ " ମୁଁ ଜାତିରେ ଗୋପାଳ, ମୋର ନିବାସ ଏହି ଗ୍ରାମରେ । ଅମ୍ଭ ଏ ଗ୍ରାମରେ କେହି ଉପବାସ ରହନ୍ତି ନାହିଁ । କେହି କେହି ମାଗି ଖାଇବା ଦ୍ୱାରା ଉଦର ପୋଷଣ କରନ୍ତି ଓ ଯେ ନ ମାଗେ ମୁଁ ତାକୁ ଆହାର ଯୋଗାଏଁ । ଅମ୍ଭ ଗ୍ରାମର ସ୍ତ୍ରୀଗଣ ଜଳ ନେବାକୁ ଆସିଥିଲେ । ସେମାନେ ଆପଣଙ୍କୁ ଦେଖିଗଲେ ଏବଂ ଦେଖିଯାଇ ମୋ ହାତରେ ଏ ଦୁଧ ଦେଇ ଆପଣଙ୍କ ନିକଟ ପଠାଇ ଅଛନ୍ତି । ଗୋ-ଦୋହନ ଉଚ୍ଛୁର ହୋଇ ଯାଉଅଛି, ମୁଁ ଯାଉଅଛି, ପରେ ଆସି ଏ ଭଣ୍ଡ ନେଇଯିବି । ପୁରୀ ଗୋସ୍ୱାମୀ ଦୁଗ୍ଧପାନକରି ତାହାର ସ୍ୱାଦୁରେ ଚମତ୍କୃତ ହେଲେ । ସେ ବାଳକ ଭଣ୍ଡ ନେବାକୁ ଆସିବ ଏହା ମନେକରି ତାହାର ଅପେକ୍ଷା କରିଥାନ୍ତି ଓ ହରିନାମ ଜପ କରୁଥାନ୍ତି । ନାମାନନ୍ଦରେ ତାଙ୍କୁ ନିଦ୍ରା ହେଉନଥାଏ ଶେଷରାତ୍ରରେ କିଞ୍ଚିତ ତନ୍ଦ୍ରା ଉପସ୍ଥିତ ହେଲା, ଏବଂ ସେହି ତନ୍ଦ୍ରାକାଳରେ ସେ ସ୍ୱପ୍ନରେ ଦେଖିଲେ, ସେହି ବାଳକ ଉପସ୍ଥିତ ହୋଇ ତାଙ୍କ ହସ୍ତଧାରଣ ପୂର୍ବକ ଏକ କୁଞ୍ଜ ସମୀପକୁ ନେଇଗଲେ ଏବଂ ଅଙ୍ଗୁଳି ନିର୍ଦ୍ଦେଶପୂର୍ବକ କୁଞ୍ଜକୁ ଦେଖାଇ ଦେଇ କହିଲେ "ମୁଁ ଏହି କୁଞ୍ଜରେ ବାସ କରେଁ, ଶୀତ,ବୃଷ୍ଟି ଓ ଅର୍କରେ ମୋର ମହାଦୁଃଖ ହେଉଅଛି । ଗ୍ରାମସ୍ଥ

ଲୋକମାନଙ୍କୁ ଆଣି ମୋତେ ଏ କୁଞ୍ଜରୁ ବାହାର କରିନେଇ ପର୍ବତ ଉପରେ ଭଲସ୍ଥାନରେ ରଖ ଏବଂ ବହୁ ଶୀତଳଜଳରେ ମୋତେ ସ୍ନାନ କରାଇ ଦିଅ । ମୁଁ ବହୁଦିନରୁ ତୁମ୍ଭ ଆଗମନ ପଥକୁ ଚାହିଁ ରହିଅଛି, ମୋହର ନାମ ଗୋପାଳ, ମୁଁ ଗୋବର୍ଦ୍ଧନଧାରୀ ଏବଂ ମହାନୁଭବ ବଜ୍ରନାଭଙ୍କ ଦ୍ୱାରା ସ୍ଥାପିତ । ମ୍ଳେଚ୍ଛଭୟରେ ମୋର ସେବକମାନେ ମୋତେ ଏହି ଅରଣ୍ୟରେ ଲୁଚାଇ ପଳାଇଗଲେ । ସେହିଦିନଠାରୁ ମୁଁ ଏହି ଅରଣ୍ୟ ମଧ୍ୟରେ ପଡ଼ି ରହିଅଛି ।" ଏହିକଥା କହିବା ପରେ ପୁରୀ ଗୋସ୍ୱାମୀଙ୍କର ତନ୍ଦ୍ରାଭଙ୍ଗହେଲା, ସେ ଭାବିଲେ ହାୟ ! ଗୋପବାଳକବେଶରେ ସ୍ୱୟଂ ଶ୍ରୀକୃଷ୍ଣ ମୋତେ ଦୁଧ ଦେଇଗଲେ, ମୁଁ ତାଙ୍କୁ ଚିହ୍ନିପାରିଲିନାହିଁ । ଏହିପରି କହୁଁ କହୁଁ ପ୍ରେମରେ ମୂର୍ଚ୍ଛିତ ହେଲେ । ପରଦିବସ ଗ୍ରାମକୁ ଯାଇ ଗ୍ରାମସ୍ଥ ସମସ୍ତ ଲୋକଙ୍କୁ କହିଲେ "ଗୋବର୍ଦ୍ଧନଧାରୀ ଶ୍ରୀକୃଷ୍ଣ ଏହି ଗ୍ରାମର ଈଶ୍ୱର । ସେ ବନ ମଧ୍ୟରେ ଲୁକ୍କାୟିତ, ଆପଣମାନେ କୁଠାର ଓ କୋଦାଳ ପ୍ରଭୃତି ଅସ୍ତ୍ର ଘେନି ମୋ ସଙ୍ଗେ ଆସନ୍ତୁ ତାଙ୍କୁ ବାହାର କରିବା । ମହାନୁଭବ ପୁରୀ ଗୋସ୍ୱାମୀଙ୍କ କଥାରେ କାହାରି ଅବିଶ୍ୱାସ ହେଲାନାହିଁ, ସମସ୍ତେ ଯାଇ ଜଙ୍ଗଲ କାଟି ଦେଖିଲେ ପ୍ରକାଣ୍ଡ ବିଗ୍ରହ ଏକ ସୁନ୍ଦର ଗୋପାଳ ମୂର୍ତ୍ତି ମାଟି ଓ ପତ୍ରରେ ଆବୃତ ହୋଇ ରହିଅଛନ୍ତି । ବହୁ ବଳିଷ୍ଠ ଲୋକ ସମବେତ ହୋଇ ସେ ବିଗ୍ରହଙ୍କୁ ଉଠାଇ ନେଇ ପର୍ବତ ଉପରେ ସ୍ଥାପନ କଲେ । ଗ୍ରାମସ୍ଥ ବ୍ରାହ୍ମଣଗଣ ନବ ନବ ଘଟରେ ଜଳ ଆନୟନ କଲେ । ଗୋପାଳ ବିଗ୍ରହ ପ୍ରକାଶିତ ହେବାର ଶୁଣି ଲୋକମାନେ ସ୍ୱତଃ ପ୍ରବୃତ୍ତ ହୋଇ ଦୁଗ୍ଧ, ଦହି, ଘିଅ ପ୍ରଭୃତି ନାନା ସାମଗ୍ରୀ ଆଣିବାକୁ ଲାଗିଲେ । ମହାସମାରୋହରେ ପୁରୀ ଗୋସ୍ୱାମୀ ସେ ବିଗ୍ରହଙ୍କର ଅଭିଷେକ କଲେ । ତତ୍ପରେ ସେ ଦେଶବାସୀମାନଙ୍କ ଉଦ୍ୟୋଗରେ ଏକ ଅନ୍ନକୂଟ ପ୍ରସ୍ତୁତ ହେଲା । ଅନ୍ନ, ବ୍ୟଞ୍ଜନ, ପିଠା, ରୁଟି ଆଦି ରାଶି ରାଶି ପରିମାଣରେ ପ୍ରସ୍ତୁତ କରି ଏକ ସ୍ଥାନରେ ଜମାକଲେ, ଏହିରୂପେ ଅନ୍ନକୂଟ ପ୍ରସ୍ତୁତ ହୁଅନ୍ତେ ପୁରୀ ଗୋସ୍ୱାମୀ ତାହା ଗୋପାଳଙ୍କୁ ନିବେଦନ କଲେ, ଗୋପାଳ ବହୁଦିନରୁ କିଛି ଖାଇ ନ ଥିଲେ, ସେ ଭକ୍ତବତ୍ସଳ

ସମସ୍ତ ପଦାର୍ଥମାନଙ୍କରେ ଭୋଜନ କଲେ । ଯେ ମହନ୍ତ ତାହା ଭୋଜନ କଲେହେଁ ତାଙ୍କ ହସ୍ତ ସ୍ପର୍ଶରେ ଯେ ସମସ୍ତ ପୂର୍ବପରି ଥିବାର ସାଧାରଣ ଲୋକଙ୍କୁ ପ୍ରତୀୟମାନ ହେଲା । କିନ୍ତୁ ଗୋପାଳ ଯେ ସ୍ୱୟଂ ଏହା ଭୋଜନ କଲେ ଏହା ପୁରୀ ଗୋସ୍ୱାମୀ କେବଳ ଦେଖି ପାରିଲେ ।

ଯଦ୍ୟପି ଗୋପାଳ ସବ୍ ଅନ୍ନବ୍ୟଞ୍ଜନ ଖାଇଲ,
ତାର ହସ୍ତ ସ୍ପର୍ଶେ ପୁନଃ ତେମନ ହଇଲ ।
ଏହା ଅନୁଭବ କୈଲ ମାଧବ ଗୋସାଇଁ,
ତାଁର ଠାଇଁ ଗୋପାଳେର ଲୁକା କିଛୁ ନାଇ ।

ବିଗ୍ରହ ପୁଣି ଅନେକ ପ୍ରକାର । ଧାତୁ ବିଗ୍ରହ, ମଣି ବିଗ୍ରହ (ପ୍ରସ୍ତର), କାଷ୍ଠ ବିଗ୍ରହ, ମୃଣ୍ମୟ ବିଗ୍ରହ ଇତ୍ୟାଦି । ଚିତ୍ର ଅଲେଖ୍ୟ ଶାଳଗ୍ରାମ ଓ ଗୋବର୍ଦ୍ଧନ ଶିଳା ପ୍ରଭୃତି ଭଗବାନ୍ ବିଗ୍ରହ ରୂପେ ପୂଜିତ ହେବାର ବିଧି ଅଛି । ବିଗ୍ରହମାନଙ୍କୁ ଷୋଡଶୋପଚାର ଅଥବା ପଞ୍ଚୋପଚାରରେ ପୂଜା କରାଯାଏ । କିନ୍ତୁ ଯେତେ ଉପଚାରରେ ପୂଜା କର, ଯେତେ ଆଡମ୍ବର କର ସାତ୍ତ୍ୱିକ ଭାବରେ ପୂଜାନ୍ତେ ଭଗବାନ ସାଦରେ ଗ୍ରହଣ କରନ୍ତି, ବିବିଧ ଉପଚାରରେ ନାନା ଆଡମ୍ବରରେ ପୂଜାକଲେ ମଧ୍ୟ ପୂଜକଙ୍କର ହୃଦୟ ଯଦି ସାତ୍ତ୍ୱିକ ଭାବରେ ବିଭାବିତ ନୁହେଁ, ଅନ୍ତର୍ଯ୍ୟାମୀ ଭଗବାନ ତାହା ଗ୍ରହଣ କରନ୍ତି ନାହିଁ । ବିଗ୍ରହସେବା କିରୂପ ସାତ୍ତ୍ୱିକ ଭାବରେ କରିବା ଉଚିତ ଶ୍ରୀଲ କବିରାଜ ଗୋସ୍ୱାମୀ ଏହାର ଦିଗ୍ ଦର୍ଶନ କରାଇ ଅଛନ୍ତି । ମହାପ୍ରଭୁ ଶ୍ରୀ ପୁରୁଷୋତ୍ତମରେ ବାସ କରୁଥିବା କାଳରେ ଶ୍ରୀ ଶଙ୍କରାନନ୍ଦ ସରସ୍ୱତୀ ଶ୍ରୀ ବୃନ୍ଦାବନରୁ ଆସିଲେ ଏବଂ ଶ୍ରୀ ବୃନ୍ଦାବନରୁ ଆଣିଥିବା ଗୋବର୍ଦ୍ଧନ ଶିଳା ଏବଂ ଗୁଞ୍ଜାମାଳା ମହାପ୍ରଭୁଙ୍କୁ ପ୍ରଦାନ କଲେ । ଏ ଦୁଇ ଅପୂର୍ବ ବସ୍ତୁ ପାଇ ମହାପ୍ରଭୁ ପରମ ସନ୍ତୁଷ୍ଟ ହେଲେ । ମହାପ୍ରଭୁ ଶ୍ରୀକୃଷ୍ଣ ସ୍ମରଣ କାଳରେ ସେହି ଗୁଞ୍ଜାମାଳା ଗଳାରେ ପରିଧାନ କରନ୍ତି ଏବଂ ସେହି ଗୋବର୍ଦ୍ଧନ ଶିଳାକୁ ହୃଦୟରେ ଓ ନେତ୍ରରେ ଧାରଣ କରନ୍ତି, କେତେବେଳେ ନାସିକା ପାଖକୁ ନେଇ ଶ୍ରୀ ଅଙ୍ଗର ଗନ୍ଧ ଆଘ୍ରାଣ କରନ୍ତି, କେତେବେଳେ ଅବା ଶିର ଉପରେ ନେଇ ରଖନ୍ତି । ମହାପ୍ରଭୁଙ୍କ ନିଜ ନେତ୍ରଜଳପୂତ ବାରିଧାରାରେ ଶ୍ରୀ ଗୋବର୍ଦ୍ଧନ ଶିଳାର କଳେବର ସିକ୍ତ ହୋଇଯାଏ, ଏହିପରି ଭାବରେ ସେ

ଶିଳା ଓ ଗୁଞ୍ଜାମାଳାକୁ ମହାପ୍ରଭୁ ତିନିବର୍ଷ ପୂଜା କଲେ । ତତ୍ପରେ ନିଜପ୍ରିୟ ଶ୍ରୀ ରଘୁନାଥ ଦାସଙ୍କୁ ସେମାନ ଅର୍ପଣ କଲେ ଏବଂ କହିଲେ "ରଘୁନାଥ ! ଏ ଶିଳା ଶ୍ରୀକୃଷ୍ଣଙ୍କର ବିଗ୍ରହ, ତୁମ୍ଭେ ଆଗ୍ରହ ସହକାରେ ଏହାଙ୍କର ସାତ୍ତ୍ୱିକ ପୂଜା କର । ଅଚିରାତ୍ ଶ୍ରୀକୃଷ୍ଣପ୍ରେମ ଲାଭ ହେବ । ଏକ ଘଟି ଜଳ ଏବଂ କେତେକ ତୁଳସୀ ମଞ୍ଜରୀ ଦ୍ୱାରା ଏହାଙ୍କର ସାତ୍ତ୍ୱିକ ପୂଜା ହୋଇ ପାରେ । ଦୁଇ ଧାଡ଼ିରେ ଦୁଇପତ୍ର ମଧ୍ୟରେ କୋମଳ ମଞ୍ଜରୀ ଏହିରୂପେ ଆଠଗୋଟି ତୁଳସୀ ମଞ୍ଜରୀ ଦେଇ ଶ୍ରଦ୍ଧାସହ ପୂଜା କରିବ ।" ମହାପ୍ରଭୁଙ୍କ ଶ୍ରୀହସ୍ତରୁ ଶ୍ରୀ ଗୋବର୍ଦ୍ଧନ ଶିଳା ଓ ଗୁଞ୍ଜାମାଳା ପାଇ ଶ୍ରୀ ରଘୁନାଥ ଦାସ ପରମାନନ୍ଦ ଲାଭକଲେ ଏବଂ ମହାପ୍ରଭୁଙ୍କ ଆଦେଶ ମତେ ପୂଜା କରିବାକୁ ଲାଗିଲେ ପୂଜା କାଳରେ ଶ୍ରୀ ରଘୁନାଥ ଦାସ ପ୍ରେମରେ ବିହ୍ୱଳ ହୁଅନ୍ତି । ଏହି ଦାସ ଗୋସ୍ୱାମୀଙ୍କର ସାତ୍ତ୍ୱିକ ଶ୍ରୀ ଗୋବର୍ଦ୍ଧନ ଶିଳାର ପୂଜାକୁ ଲକ୍ଷ୍ୟକରି ଶ୍ରୀଳ କବିରାଜ ଗୋସ୍ୱାମୀ କହିଅଛନ୍ତି ।

ଜଳତୁଳସୀର ସେବାୟ ତାର ଯତ ସୁଖୋଦୟ,
ଷୋଡଶୋପଚାର ପୂଜାୟ ତତ ସୁଖ ନୟ ।

( ଚୈ: ଚ: ଅନ୍ତ୍ୟ ୬ ପରି )

ଶ୍ରୀ ବିଗ୍ରହତତ୍ତ୍ୱ ସମ୍ବନ୍ଧରେ ସତ୍ୟବାଦୀରେ ସାକ୍ଷୀଗୋପାଳ ଏବଂ ରେମୁଣାରେ କ୍ଷୀରଚୋରା ଗୋପୀନାଥ ଜ୍ୱଳନ୍ତ ଉଦାହରଣ । ଶତଶତ କୋଶ ପଥରୁ ସ୍ୱୟଂ ସାକ୍ଷୀ ଗୋପାଳ ଭକ୍ତାନୁରୋଧରେ ଚାଲିଆସି ସାକ୍ଷ୍ୟଦେଇଥିଲେ ଏବଂ କ୍ଷୀରଚୋରା ଗୋପୀନାଥ ପୁରୀ ଗୋସ୍ୱାମୀଙ୍କ ପାଇଁ କ୍ଷୀର ଚୋରିକରି ରଖିଥିଲେ । ଏହି ସମସ୍ତ ବିଷୟ ପୂର୍ବ ଅଧ୍ୟାୟମାନଙ୍କରେ ଆଲୋଚିତ ହୋଇଥିବାରୁ ସବିଶେଷରେ ଆଉ ଏଠାରେ ଉଲ୍ଲେଖ କଲି ନାହିଁ । କିନ୍ତୁ ଏହି ବିଗ୍ରହ ମାନଙ୍କ ବିଷୟରେ ବର୍ଣ୍ଣିତ ଘଟଣାମାନ ବିଗ୍ରହ ଯେ ସ୍ୱରୂପଙ୍କଠାରୁ ଭିନ୍ନ ନୁହନ୍ତି ତାହା ଉତ୍ତମରୂପେ ପ୍ରମାଣ କରାଉ ଅଛନ୍ତି । ହାୟ ! ଏମନ୍ତ ଉଦାହରଣ ଥାଇଁ ଆମ୍ଭ ବିଗ୍ରହ ମାନଙ୍କରେ ଆମ୍ଭମାନଙ୍କର ପୂର୍ଣ୍ଣ ବିଶ୍ୱାସ ହେଉନାହିଁ । ଅମ୍ଭେମାନେ ବିଗ୍ରହ ମାନଙ୍କୁ କାଠ ପଥର ବୋଲି ମଣି ଅନାଦର କରୁଅଛୁ ।



# ଶ୍ରୀକୃଷ୍ଣତତ୍ତ୍ୱ ।

## ପଞ୍ଚଦଶ ପରିଚ୍ଛେଦ ।

ଶ୍ରୀକୃଷ୍ଣତତ୍ତ୍ୱ ନିରୂପଣ କରିବା ଅତି କଠିନ ବିଷୟ । ଏଥିପାଇଁ ଶତ ଶତ ସହସ୍ର ସହସ୍ର ଶାସ୍ତ୍ର ପ୍ରଣୀତ ହୋଇ ଅଛି । ତଥାପି ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଶାସ୍ତ୍ରଜ୍ଞ ଗୋସ୍ୱାମୀଗଣ ଶାସ୍ତ୍ରସିନ୍ଧୁ ମନ୍ଥନ କରି ଯେଉଁ ସିଦ୍ଧାନ୍ତରତ୍ନ ଉଦ୍ଧାର କରି ରଖିଯାଇ ଅଛନ୍ତି ସେଥିର ଦିଗ୍‌ଦର୍ଶନ ସ୍ୱରୂପ ଧାଡ଼ିଏ ଦୁଇଧାଡ଼ି ମୁଁ ଏଥିରେ ଉଲ୍ଲେଖ କରୁଅଛି ମାତ୍ର । ଶ୍ରୀକୃଷ୍ଣତତ୍ତ୍ୱ ବିସ୍ତୃତ ପୂର୍ବକ ଲେଖିବା ମୋର ଶକ୍ତିର ବହିର୍ଭୂତ । ଶ୍ରୀଳ କବିରାଜ ଗୋସ୍ୱାମୀ ଲେଖି ଅଛନ୍ତି । "ସର୍ବ ଅବତାରୀ କୃଷ୍ଣ ସ୍ୱୟଂ ଭଗବାନ" ।

( ଚୈ: ଚ: ଅ: )

ଏହି ଏକଥାଡ଼ିରେ ଶ୍ରୀକୃଷ୍ଣତତ୍ତ୍ୱର ସମସ୍ତ ସୂଚନା କରୁଅଛି ଅର୍ଥାତ୍ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ଏବଂ ଅବତାରୀ ଓ ଅନ୍ୟସମସ୍ତେ ନୃସିଂହ, ବାମନ ରାମ, ବାସୁଦେବାଦି ତାଙ୍କର ଅବତାର ।

ବ୍ରହ୍ମା ବତ୍ସାବାଳକ ଚୋରି କଲାପରେ ଶ୍ରୀକୃଷ୍ଣ ନିଜ ଶ୍ରୀ ଅଙ୍ଗରୁ ବତ୍ସବାଳକାଦି ନିର୍ମାଣ କରି ବର୍ଷେକାଳ ଅତିବାହିତ କଲେ । ତତ୍ପରେ ବ୍ରହ୍ମା ଆପଣାର ଭ୍ରମ ବୁଝିପାରି ଶ୍ରୀ କୃଷ୍ଣଙ୍କୁ ମୂଳ ନାରାୟଣ ବୋଲି ସ୍ଥିର କରି ସ୍ତୁତି କରିଥିଲେ । ସେ ସେତେବେଳେ ଦେଖାଇ ଥିଲେ କାରଣାବ୍ଧିଶାୟୀ, ଗର୍ଭୋଦକଶାୟୀ, ଓ କ୍ଷୀରୋଦକଶାୟୀ, ପୁରୁଷମାନେ ନାରାୟଣଙ୍କ ଅଂଶ ଏବଂ ସେହି ନାରାୟଣ ଶ୍ରୀକୃଷ୍ଣଙ୍କର ବିଳାସମୂର୍ତ୍ତି । ଯଥା—

ସେଇ ତିନେର ଦିଓ ଭୂମି ପରମାଶ୍ରୟ
ଭୂମି ମୂଲ ନାରାୟଣ ଇଥେ କି ସଂଶୟ ।
ସେଇ ତିନେର ଅଂଶୀ ପରବ୍ୟୋମ ନାରାୟଣ
ତେଁହ ତୋମାର ବିଲାସ ତୁମି ମୂଲ ନାରାୟଣ ।
( ଚୈଃ ଆଦି ୨ୟ ପରି )

ଅନ୍ୟତ୍ର ମଧ୍ୟ ଶ୍ରୀକୃଷ୍ଣଦାସ କବିରାଜ କହିଅଛନ୍ତି ।

ଅବତାର ସବ-ପୁରୁଷେର କଳା ଅଂଶ,
କୃଷ୍ଣ-ସ୍ୱୟଂ ଭଗବାନ ସର୍ବ-ଅବତଂଶ ।
( ଚୈଃ ଚଃ ଆଦି ୨ୟ ପରି )

"ଏକେଲା ଈଶ୍ୱର କୃଷ୍ଣ ଆର ସବ ଭୃତ୍ୟ
ଯାରେ ଯୈଛେ ନାଚାୟ ସେ ତୈଛେ କରେ ନୃତ୍ୟ ।"
( ଚୈଃ ଚଃ ଆଦି )

ମହାପ୍ରଭୁ ସ୍ୱୟଂ ଏହା ଶ୍ରୀ ସନାତନ ଗୋସ୍ୱାମୀଙ୍କୁ କାଶୀଧାମରେ ବୁଝାଇ ଅଛନ୍ତି । ଯଥା :—

"କୃଷ୍ଣେର ସ୍ୱରୂପ ବିଚାର ଶୁନ ସନାତନ
ଅଦ୍ୱୟ ଜ୍ଞାନତତ୍ତ୍ୱ ବ୍ରଜେ ବ୍ରଜେନ୍ଦ୍ର ନନ୍ଦନ ।
ସର୍ବ ଆଦି ସର୍ବ ଅଂଶୀ କିଶୋର ଶେଖର
ଚିଦାନନ୍ଦ ଦେହ ସର୍ବାଶ୍ରୟ ସର୍ବେଶ୍ୱର ।"
( ଚୈଃ ଚଃ ମଧ୍ୟ ୨୦ )

ଏହି କେତୋଟି ପଂକ୍ତି ବୁଝାଇବାକୁ ଗଲେ ଖଣ୍ଡିଏ ବୃହତ ପୁସ୍ତକ ହୋଇ ପଡିବ, ମୁଁ ତ ତାହାର ଲେଶମାତ୍ର ନିଜେ ବୁଝି ପାରିନାହିଁ ଅପରକୁ ବୁଝାଇବ କ'ଣ । କେବଳ କେତେକ ଅଂଶ ଉଦ୍ଧୃତ କରି-ଦେଇ ମୋର କାମ ଶେଷକରୁଛି । ବ୍ରଜରେ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ 'ଅନାଦି ମୂଳକାରଣ । ଅନ୍ୟ ସମସ୍ତଙ୍କର ସେ ଆଦି, ସେ ପରମେଶ୍ୱର, ସମସ୍ତଙ୍କର ଆଶ୍ରୟୀଭୂତ ଚିଦାନନ୍ଦ ବିଗ୍ରହ, ନିତ୍ୟକିଶୋର ରସିକଶେଖର କୃଷ୍ଣ ସ୍ୱୟଂ ଭଗବାନ ପରମେଶ୍ୱର । ତାଙ୍କଠାରୁ ବଡ଼ ଆଉ କେହି ନାହିଁ

କମ୍ଭା ତାଙ୍କର ସମାନ ଆଉ କେହି ନାହିଁ । ଏହାମଧ୍ୟ ଶ୍ରୀମହାପ୍ରଭୁ ସେହି ସନାତନ ଗୋସ୍ୱାମୀଙ୍କୁ ଶିକ୍ଷାଦେବା କାଳରେ ଶ୍ରୀମୁଖରେ କହିଅଛନ୍ତି । ଯଥା :-

"ପରମ ଈଶ୍ୱର କୃଷ୍ଣ ସ୍ୱୟଂ ଭଗବାନ
ତା'ରେ ବଡ଼ ତାରେ ସମ କେହି ନାହିଁ ଆନ"

( ଚୈଃଚ ମଧ୍ୟ )

ଶ୍ରୀକୃଷ୍ଣ ଯେ ଅବତାରୀ ଓ ସର୍ବ ଅବତାରର ମୂଳ ଏଥି ସମ୍ବନ୍ଧରେ ଶ୍ରୀଳ ଲୋଚନଦାସଙ୍କର ପଦମଧ୍ୟ ଉଦ୍ଧୃତ କରି ଦେଖାଯାଉ । ଯଥା—

"ବୃନ୍ଦାବନ ଚନ୍ଦ୍ର ଯୁଗ ଅବତାର ନହେ
ପୂର୍ଣ୍ଣ ପୂର୍ଣ୍ଣବ୍ରହ୍ମ କୃଷ୍ଣ ଭାଗବତେ କହେ ।"

( ଚୈଃ ମଃ ମଧ୍ୟ )

ଶ୍ରୀପ୍ରୟାଗ ଧାମରେ ମହାପ୍ରଭୁ ଭକ୍ତ ପଣ୍ଡିତ ଶ୍ରୀଳ ରଘୁପତି ଉପାଧ୍ୟାୟଙ୍କ ମୁଖରୁ ଯେଉଁ ଶ୍ରୀକୃଷ୍ଣତତ୍ତ୍ୱ ବାହାର କରାଇ ସ୍ୱୟଂ ଶ୍ରୋତା ହୋଇ ଶୁଣିଥିଲେ ତାହା ଅଳ୍ପାକ୍ଷରରେ ଶ୍ରୀକୃଷ୍ଣତତ୍ତ୍ୱ ସୁନ୍ଦରରୂପେ ପ୍ରକାଶ କରାଉଅଛି, ଯଥା—

"ପ୍ରଭୁକହେ ଉପାଧ୍ୟାୟ ଶ୍ରେଷ୍ଠମାନ କାୟ
ଶ୍ୟାମମେବଂ ପରଂ ରୂପଂ କହେ ଉପାଧ୍ୟାୟ ।
ଶ୍ୟାମରୂପେର ବାସସ୍ଥାନ ଶ୍ରେଷ୍ଠ ମାନ କାୟ ।
ପୁରୀ ମାଧୁପୁରୀ ବରା କହେ ଉପାଧ୍ୟାୟ
ବାଲ୍ୟ ପୌଗଣ୍ଡ କୈଶୋର ଶ୍ରେଷ୍ଠମାନ କାୟ
ବୟଃ କୈଶୋରକଂଧ୍ୟେୟଂ କହେ ଉପାଧ୍ୟାୟ ।
ରସଗଣ ମଧ୍ୟେ ତୁମି ଶ୍ରେଷ୍ଠ ମାନକାୟ
ଅଦ୍ୟ ଏବ ପରୋରସଃ କହେ ଉପାଧ୍ୟାୟ ।"

( ଚୈ ଚ ମଧ୍ୟ ୧୯ ପର )

ରସିକଶେଖର ଶ୍ରୀକୃଷ୍ଣଙ୍କର ଶ୍ୟାମସୁନ୍ଦର ନବକିଶୋର ନଟବରରୂପ ଯେ ସର୍ବୋତ୍କୃଷ୍ଟ ଏହି ଉପରୋକ୍ତ ପଦ୍ୟ ନଚୟ ତାହାର ପ୍ରମାଣ ଦେଉଅଛି । ମହାପ୍ରଭୁ ସନାତନ ଗୋସ୍ୱାମୀଙ୍କୁ ଶିକ୍ଷାଦେବା

କାଳରେ ଶ୍ରୀକୃଷ୍ଣ ମାଧୁର୍ଯ୍ୟ ସ୍ଫୂର୍ତ୍ତିହେତୁ ପ୍ରେମଗଦ୍‌ଗଦ ହୋଇ ଅଶ୍ରୁ ଗଙ୍ଗା ଦେଇ ନଦୀର ସୁମଧୁର ଭାବରେ ଯେଉଁ ଗୀତ ଗାଇବାକୁ ଆରମ୍ଭ କରି-ଥିଲେ ତହିଁରେ ଶ୍ରୀକୃଷ୍ଣଙ୍କର ପ୍ରକୃତ ସ୍ୱରୂପ ଅତି ସୁମଧୁର ଭାଷାରେ ବ୍ୟକ୍ତ କରା ଯାଇଅଛି । ନହେବ ବା କାହିଁକି ? ରାଧାଭାବ ବିଭାବିତ ସ୍ୱୟଂ ଶ୍ରୀକୃଷ୍ଣ ଭାବରେ ବିହ୍ୱଳ ହୋଇ ନିଜରୂପ ଆସ୍ୱାଦନ କରୁଅଛନ୍ତି । ଏହାଠାରୁ ଅଧିକତର ମଧୁର କଣ ହୋଇ ପାରେ । ସେ ଗୀତ ଯଥା—

କୃଷ୍ଣେର ଯତେକ ଖେଳା          ସର୍ବୋତ୍ତମ ନରଲୀଳା
ନରବପୁ ତାହାର ସ୍ୱରୂପ,
ଗୋପବେଶ ବେଣୁ-କର          ନବକିଶୋର ନଟବର
ନରଲୀଳାର ହୟ ଅନୁରୂପ ।
କୃଷ୍ଣେର ମଧୁରରୂପ ଶୁନ ସନାତନ ।
ଯେ ରୂପେର ଏକକଣ          ଡୁବାୟ ସବ ତ୍ରିଭୁବନ
ସର୍ବପ୍ରାଣୀ କରେ ଆକର୍ଷଣ ।
ଯୋଗମାୟା ଚିଚ୍ଛକ୍ତି          ବିଶୁଦ୍ଧ ସତ୍ତ୍ୱ ପରିଣତି
ତାରଶକ୍ତି ଲୋକେ ଦେଖାଇତେ,
ଏଇ ରୂପ ରତନ          ଭକ୍ତ ଗଣେର ଗୂଢ଼ଧନ
ପ୍ରକଟ କୈଲ ନିତ୍ୟ ଲୀଳା ହୈତେ
ରୂପ ଦେଖି ଆପନାର          କୃଷ୍ଣେର ହୟ ଚମତ୍କାର
ଆସ୍ୱାଦିତେ ମନେ ଉଠେ କାମ,
ସ୍ୱ ସୌଭାଗ୍ୟ ଯାର ନାମ          ସୌନ୍ଦର୍ଯ୍ୟାଦି ଗୁଣ ଗ୍ରାମ
ଏଇରୂପ ତାର ନିତ୍ୟଧାମ ।
ଭୂଷଣେର ଭୂଷଣ ଅଙ୍ଗ          ତାହେ ଲଳିତ ତ୍ରିଭଙ୍ଗ
ତାର ଉପର ଭ୍ରୂଧନୁ ନର୍ତ୍ତନ ।
ତେରଛେ ନେତ୍ରାନ୍ତ ବାଣ          ତାର ଦୃଢ଼ ସନ୍ଧାନ
ବିନ୍ଧେ ରାଧା ଗୋପୀଗଣ ମନ ।
ବ୍ରହ୍ମାଣ୍ଡୋପରି ପରବ୍ୟୋମ          ତାହାଁ ଯେ ସ୍ୱରୂପଗଣ

ତାପବାର ବଲେ ହରେ ମନ ।
ପତିବ୍ରତା ଶିରୋମଣି ଯାଠର ବଦେ ବେଦବାଣୀ
ଆକର୍ଷୟେ ସେଇ ଲକ୍ଷ୍ମୀଗଣ ।
ଚଢ଼ି ଗୋପୀ ମନୋରଥେ ମନ୍ମଥର ମନମଥେ
ନାମଧରେ ମଦନ ମୋହନ ।
ଜିନ ପଞ୍ଚଶର ଦର୍ପ ସ୍ୱୟଂ ନବ କନ୍ଦର୍ପ
ରାସକରେ ଲଞ୍ଚା ଗୋପୀଗଣ ।
ନିଜସମ ସଖାସଙ୍ଗେ ଗୋଗଣ ଚାରଣ ରଙ୍ଗେ ।
ବୃନ୍ଦାବନେ ସ୍ୱଚ୍ଛନ୍ଦେ ବିହାର ।
ଯାର ବେଣୁ ଧ୍ୱନି ଶୁନି ସ୍ଥାବର ଜଙ୍ଗମ ପ୍ରାଣୀ
ପୁଲକ କମ୍ପ ଅଶ୍ରୁ ବହେ ଧାର ।
ମୁକ୍ତାହାର ବକପାନ୍ତ ଇନ୍ଦ୍ରଧନୁ ପିଞ୍ଛତଥି
ପୀତାମ୍ବର ବିଜୁଳୀ ସଞ୍ଚାର ।
କୃଷ୍ଣ ନବ ଜଳଧର ଜଗତ ଶସ୍ୟ ଉପର
ବରିଷଯ୍ୟ ଲୀଳାମୃତ ଧାର ।
ମାଧୁର୍ଯ୍ୟ ଭଗବତ୍ତା ସାର ବ୍ରଜେ କୈଲ ପରଚାର
ତାହା ଶୁକ ବ୍ୟାସେର ନନ୍ଦନ ।
ସ୍ଥାନେ ସ୍ଥାନେ ଭାଗବତେ ବର୍ଣ୍ଣିଯାଛେ ନାନାମତେ
ତାହାଶୁଣି ନାଚେ ଭକ୍ତଗଣ ।
[ ଚୈଃ ଚଃ ମଧ୍ୟ ୨୧ ପରି ]

ଅତଏବ ଶ୍ରୀକୃଷ୍ଣହିଁ ଭଗବତ୍ତାରେ ସାର । ଅନ୍ୟସବୁ ଭଗବାନମାନେ ଏହାଙ୍କର ଅଂଶ ବା କଳା । ଶ୍ରୀଳ ଲୋଚନଦାସ ମଧ୍ୟ ସ୍ଥାନେ ସ୍ଥାନେ ଶ୍ରୀକୃଷ୍ଣଙ୍କର ତତ୍ତ୍ୱ ଉତ୍ତମରୂପେ ଅଳ୍ପାକ୍ଷରରେ ପ୍ରକାଶ କରି ଅଛନ୍ତି । ମହାପ୍ରଭୁ ତାଙ୍କର ପ୍ରିୟ ଭୃତ୍ୟ ମୁରାରିଗୁପ୍ତଙ୍କୁ କହିଅଛନ୍ତି " ମୁରାରି ! ପରମବ୍ରହ୍ମଙ୍କର ତନୁ ନବକୁନ୍ତଳ, ବର୍ଣ୍ଣ ଇନ୍ଦ୍ରନୀଳମଣିରେ ବର୍ଣ୍ଣ ତୁଲ୍ୟ । ସେ ତ୍ରିଭଙ୍ଗିମ ଠାଣିରେ ଛିଡ଼ାହୋଇ ବଂଶୀ କରରେ ଧରି 'ସର୍ବଚିତ୍ତ ଆକର୍ଷଣ କରନ୍ତି

ଏହି ରୂପକୁ ସତତ ମାନସରେ ଧ୍ୟାନକରି ଶ୍ରୀକୃଷ୍ଣଙ୍କୁ ଭଜନ କରିବ । ଯଥା—

"ଜ୍ଜଜବେ ପରମବ୍ରହ୍ମ ନରାକୃତି ତନୁ
ଇନ୍ଦ୍ରନୀଳ ବରଣ ତ୍ରିଭଙ୍ଗ କରେ ବେଣୁ ।"

ଅନ୍ୟତ୍ର ଏକସ୍ଥାନରେ ମହାପ୍ରଭୁ ସେହି ମୁରାରି ଗୁପ୍ତଙ୍କୁ କହୁଅଛନ୍ତି " ମୁରାରି ! ତୁମ୍ଭେ ନଟବର ଶେଖର ଶ୍ୟାମସୁନ୍ଦରଙ୍କୁ ଛାଡ଼ି ଅଧ୍ୟାତ୍ମମାର୍ଗରେ ରତଅଛ । ଇନ୍ଦ୍ରନୀଳମଣି କାନ୍ତିବିଶିଷ୍ଟ ପୀତାମ୍ବର ଶ୍ରୀକୃଷ୍ଣ ବନମାଳାରେ ଗଳ ଦେଶକୁ ଅଳଙ୍କୃତ କରି ସତତ ବେଣୁବାଦନ ପୂର୍ବକ ଗୋପୀମାନଙ୍କୁ ଆକର୍ଷଣ କରି ନାନା ରସକେଳିରେ ମତ୍ତ ଅଛନ୍ତି । ଗୋପୀମଣ୍ଡଳୀମଣ୍ଡିତ ଶ୍ରୀକୃଷ୍ଣହିଁ ପରମ ଭଜନୀୟ । ତାଙ୍କୁ ଛାଡ଼ି ଅଧ୍ୟାତ୍ମ ଚର୍ଚ୍ଚାରେ ମାତି କି ସୁଖ ଲଭ କରିବ ? ଯଥା—

" ନଟବର ଶେଖର ସୁନ୍ଦର ଶ୍ୟାମତନୁ
ଇନ୍ଦ୍ରନୀଳମଣି କାନ୍ତି କରେ ବର ବେଣୁ ।
ପୀତାମ୍ବର ଧର ବନମାଳା ଯାର ଗଳେ,
ସେ ଚୂଡ଼ଙ୍କେ ନାହିଁ ଭଜ ଗୋପୀଗଣ ମେଳେ ।

( ଚୈଃ ମଃ )

ଏହି ଗୋପୀଗଣ ବେଷ୍ଟିତ ବ୍ରଜମଣ୍ଡଳର ଅଧୀଶ୍ୱର ଶ୍ରୀକୃଷ୍ଣ ସମସ୍ତଙ୍କର ଆଦି । ତେଣୁ ଏହାଙ୍କର ନାମ ଅବତାରବଳୀବୀଜ । ବୈକୁଣ୍ଠପତି ଶ୍ରୀ ନାରାୟଣ ଏହାଙ୍କର ଅଂଶ, ଏହି ଶ୍ରୀକୃଷ୍ଣ ନବକିଶୋର ନଟବର ରୂପରେ ସତତ ଶ୍ରୀରାଧାଙ୍କ ସହି ଶ୍ରୀବୃନ୍ଦାବନରେ କ୍ରୀଡ଼ା କରୁଅଛନ୍ତି । ଏହି ମଧୁର ରସର ଲୀଳାକୁ ଲକ୍ଷ୍ୟକରି ମହାପ୍ରଭୁ ଶ୍ରୀ ସନାତନଙ୍କୁ କହି ଅଛନ୍ତି ।—

ବ୍ରଜେନ୍ଦ୍ର ନନ୍ଦନ କୃଷ୍ଣ ନାୟକ ଶିରୋମଣି ।
ନାୟିକାର ଶିରୋମଣି ରାଧାଠାକୁରାଣୀ । (ଚୈ ଚ ମଧ୍ୟ)

ଶ୍ରୀକୃଷ୍ଣ ନାୟକର ଶିରୋମଣି । ଏହି ନିମିତ୍ତ ସର୍ବପ୍ରକାର ମହତ ଗୁଣ ଏହାଙ୍କଠାରେ ବର୍ତ୍ତମାନ । ଅର୍ଥାତ୍ ଗୁଣମାନ ସମସ୍ତ ପୂର୍ଣ୍ଣମାତ୍ରାରେ ଏହାଙ୍କଠାରେ ବର୍ତ୍ତମାନ, (ଗୁଣ ସକଳ ନିମ୍ନରେ ଉଦ୍ଧୃତ)

ସମସ୍ତଙ୍କର ନେତା, ଶୋଭନାଙ୍ଗ, ସର୍ବସୁଲକ୍ଷଣଯୁକ୍ତ, ରୁଚିର, ତେଜୋ-ଯୁକ୍ତ, ବଳୀୟାନ, ତରୁଣବୟସ, ବିବିଧ ଭାଷାବିତ୍, ସତ୍ୟବାଦୀ, ପ୍ରିୟମ୍ବଦ, ସୁବକ୍ତା, ସୁପଣ୍ଡିତ, ବୁଦ୍ଧିମାନ, ପ୍ରତିଭାଶାଳୀ, ସୁରସିକ, ଚତୁର, ଦକ୍ଷ, କୃତଜ୍ଞ, ଦୃଢ଼ବ୍ରତ, ଦେଶକାଳପାତ୍ରଜ୍ଞ, ଶାସ୍ତ୍ରଚକ୍ଷୁ, ପବିତ୍ର, ଜିତେନ୍ଦ୍ରିୟ, ସ୍ଥିର, ଦାନ୍ତ, କ୍ଷମାଶୀଳ, ଗମ୍ଭୀର, ଧୃତିମାନ, ସାମ୍ୟପରାୟଣ, ବଦାନ୍ୟ, ଧାର୍ମିକ, ଶୂର, କରୁଣ, ମାନଦ, ସୁଶୀଳ, ବିନୟୀ, ଲଜ୍ଜାଶୀଳ, ଶରଣାଗତପାଳକ, ସୁଖୀ, ଭକ୍ତସୁହୃଦ୍, ପ୍ରେମବଶୀଭୂତ, ସମସ୍ତଙ୍କର କଲ୍ୟାଣକାରୀ, ମହାପ୍ରତାପୀ, କୀର୍ତ୍ତିମାନ, ଲୋକାନୁରକ୍ତ, ସାଧୁମାନଙ୍କର ଆଶ୍ରୟ, ନାରୀମନୋହାରୀ, ସର୍ବାରାଧ୍ୟ, ମହାସମୃଦ୍ଧିଶାଳୀ, ସର୍ବଶ୍ରେଷ୍ଠ, ଓ ଈଶ୍ୱର, ସ୍ୱରୂପାବସ୍ଥାରେ ସ୍ଥିତ, ସର୍ବଜ୍ଞ ( ଅନ୍ତର୍ଯ୍ୟାମୀ ), ନିତ୍ୟନୂତନ, ସଚ୍ଚିଦାନନ୍ଦ ବିଗ୍ରହ ଓ ସର୍ବସିଦ୍ଧି, ତାଙ୍କର ଅଯୁତ ।

ଅଚିନ୍ତ୍ୟନୀୟ ମହାଶକ୍ତିଶାଳୀ, କୋଟି ବ୍ରହ୍ମାଣ୍ଡବିଗ୍ରହ, ଅବତାରବଳୀ ବୀଜ, ନିହତଅରିଗତିଦାତା, ଆତ୍ମାରାମ ଯୋଗୀଙ୍କ ଚିତ୍ତାକର୍ଷଣକାରୀ, ଚମତ୍କାରଲୀଳା ତରଙ୍ଗବାରିଧି, ପ୍ରିୟମଣ୍ଡଳଙ୍କୁ ନିରୁପମ ମଧୁର ପ୍ରେମରେ ମଣ୍ଡିତକରି ରହିଅଛନ୍ତି । ମୁରଲୀରେ ତ୍ରିଜଗତ ଆକର୍ଷଣ କରି ଅସମୋର୍ଦ୍ଧ୍ୱ ରୂପକାନ୍ତିରେ ବିଶ୍ୱଚରାଚରଙ୍କୁ ବିମୋହିତ କରୁଅଛନ୍ତି ।

ପ୍ରଥମୋକ୍ତ ପଚାଶଗୁଣ ସାଧାରଣ ମନୁଷ୍ୟମାନଙ୍କ ମଧ୍ୟ କିଛି ଥାଇପାରେ ତତ୍ପରେ ଆଉ ଅଧିକ ପାଞ୍ଚଗୁଣ ଶିବାଦିଙ୍କଠାରେ ବର୍ତ୍ତମାନ, ତାହାଠାରୁ ପାଞ୍ଚଗୋଟି ଗୁଣ ଶ୍ରୀ ନାରାୟଣଙ୍କଠାରେ ବର୍ତ୍ତମାନ, କିନ୍ତୁ ଶେଷରେ ୪ଗୋଟି ଗୁଣ ଏହା କେବଳ ଶ୍ରୀକୃଷ୍ଣଙ୍କଠାରେ ବର୍ତ୍ତମାନ, ଏହା ଶ୍ରୀନାରାୟଣଙ୍କଠାରେ ମଧ୍ୟ ନାହିଁ ।

ଏହି ୬୪ଗୁଣ ବିଶିଷ୍ଟ ଶ୍ରୀକୃଷ୍ଣ ସତତ ବ୍ରଜମଣ୍ଡଳରେ ବାସକରନ୍ତି । ଏ ବ୍ରଜ ଛାଡ଼ି ଅନ୍ୟତ୍ର ଗମନ କରନ୍ତି ନାହିଁ । ମଥୁରା ଓ ଦ୍ୱାରକାକୁ ଯେ ଗମନ କରିଥିଲେ ସେ ବାସୁଦେବ, ସ୍ୱୟଂ ବ୍ରଜେନ୍ଦ୍ରନନ୍ଦନ ନୁହନ୍ତି, ତାହାଙ୍କର ଏକ ପ୍ରକାଶ ମୂର୍ତ୍ତି । ଯେତେବେଳେ ସେ ପ୍ରକାଶ ମୂର୍ତ୍ତି ମଥୁରାଗମନ କରନ୍ତି ସେତେବେଳେ ସ୍ୱୟଂ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଯୋଗମାୟାଙ୍କ ଅନ୍ତରରେ

ଅଲକ୍ଷିତ ଭାବରେ ବ୍ରଜରେ ରହିଥାଆନ୍ତି । ଶ୍ରୀରୂପଗୋସ୍ୱାମୀ ସମସ୍ତ ଶ୍ରୀକୃଷ୍ଣ ଲୀଳାଘେନ ଖଣ୍ଡିଏ ନାଟକ ରଚନା କରୁକରୁ ଶ୍ରୀବୃନ୍ଦାବନରୁ ଶ୍ରୀପୁରୁଷୋତ୍ତମକୁ ଯାତ୍ରାକଲେ । ପଥରେ ଓଡ଼ିଶାର ସତ୍ୟଭାମାପୁର ନାମକ ଗ୍ରାମରେ ପ୍ରବେଶ-କରାଇଅଛନ୍ତି, ଶ୍ରୀମତୀ ସତ୍ୟଭାମା ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ "ରୂପ ! ତୁମ୍ଭେ ମୋ ସମ୍ବନ୍ଧରେ ଭିନ୍ନ ନାଟକ ରଚନା କର, ମୋର କୃପାରୁ ବିଲକ୍ଷଣ ନାଟକ ରଚିତ ହେବ ।" ସ୍ୱପ୍ନଭଙ୍ଗପରେ ରୂପଗୋସ୍ୱାମୀ ମନେ-କଲେ ବ୍ରଜଲୀଳା ଓ ପୁରଲୀଳା ଏକତ୍ର କରି ନାଟକ କରୁଥିଲି କିନ୍ତୁ ବର୍ତ୍ତ-ମାନ ଦେବୀ ସତ୍ୟଭାମା ମୋତେ ପୃଥକ୍ ନାଟକ ରଚନା କରିବାର ଆଦେଶ କଲେ । ଅତଏବ ମୁଁ ତାହାକୁ ଦୁଇ ଭାଗରେ ବିଭକ୍ତକରି ଭିନ୍ନ ୨ ନାଟକ ରଚନା କରିବି । ଏହିକଥା ମନେକରି ସେ ପୁରୁଷୋତ୍ତମରେ ପହଞ୍ଚିଲେ । ମହାପ୍ରଭୁ ରୂପଙ୍କୁ ପାଇ ପରମାନନ୍ଦ ଲାଭକଲେ ଏବଂ ବିଶେଷ କୃପା ପ୍ରଦର୍ଶନ ପୂର୍ବକ ଶ୍ରୀ ଅଦ୍ୱୈତାଚାର୍ଯ୍ୟ ଓ ଶ୍ରୀମାନ ନିତ୍ୟାନନ୍ଦ ଦୁହିଙ୍କୁ ରୂପ-ପ୍ରତି କୃପା କରିବାର ଅନୁରୋଧ କଲେ ।

ମହାପ୍ରଭୁଙ୍କ ପ୍ରାପ୍ତ ପ୍ରତ୍ୟହ ଠାକୁର ଶ୍ରୀ ହରିଦାସଙ୍କୁ ଦର୍ଶନ ଦିଅନ୍ତି, ରୂପମଧ୍ୟ ସେହିଠାରେ ବାସ କରୁଥିଲେ । ଏକଦିନ ମହାପ୍ରଭୁ ଯାଇ ରୂପ ଗୋସ୍ୱାମୀଙ୍କୁ ଡାକି କହିଲେ " ରୂପ ! ତୁମ୍ଭେ ବ୍ରଜେନ୍ଦ୍ର ନନ୍ଦନ ଶ୍ରୀକୃଷ୍ଣଙ୍କୁ ବ୍ରଜରୁ ବାହାର କରନାହିଁ । ସେ ବ୍ରଜସ୍ଥିତ ପଦମାତ୍ର ଅନ୍ୟତ୍ର ଗମନ କରନ୍ତି ନାହିଁ । ଯଦୁବଂଶୀୟ ବସୁଦେବ ନନ୍ଦନ କୃଷ୍ଣ ଓ ବ୍ରଜ ମଣ୍ଡଳସ୍ଥ ନନ୍ଦନନ୍ଦନ ଶ୍ରୀକୃଷ୍ଣ ଏଥିରେ ପାର୍ଥକ୍ୟ ଅଛି । ଯଥା ।—

"କୃଷ୍ଣରେ ବାହିର ନାହିଁ କରିହ ବ୍ରଜହିତେ ।
ବ୍ରଜସ୍ଥିତ କୃଷ୍ଣ କଭୁ ନା ଯାନ କାହାଁ ତେ,
( ଚୈଃ ଚଃ ଅନ୍ତ୍ୟ ୧ମପରି )

ଶ୍ରୀରୂପ ଗୋସ୍ୱାମୀ ତେତେବେଳେ ଭାବିଲେ, ପୂର୍ବେ ଦେବୀ ଶ୍ରୀ ସତ୍ୟ-ଭାମା ମୋତେ ସ୍ୱପ୍ନରେ ଦୁଇ ନାଟକ ପୃଥକ୍ କରିବାକୁ ଆଦେଶ କରିଥିଲେ । ବର୍ତ୍ତମାନ ସ୍ୱୟଂ ମହାପ୍ରଭୁ ମଧ୍ୟ ସାକ୍ଷାତରେ ସେହି ଆଦେଶ କଲେଣି, ଅତଏବ ମୁଁ ବ୍ରଜଲୀଳା ଓ ପୁରଲୀଳାକୁ ପୃଥକ କରି ଦୁଇ ଭିନ୍ନ ନାଟକ ରଚନା

ଅଛନ୍ତି । ଶ୍ରୀମାନ ନାରାୟଣ ଅଂଶ, ଶ୍ରୀକୃଷ୍ଣ ମୂଳ, ପୁଣି ନନ୍ଦନନ୍ଦନ ଶ୍ରୀକୃଷ୍ଣ ଓ ବସୁଦେବ ନନ୍ଦନ ଶ୍ରୀକୃଷ୍ଣ ଏକ ନୁହନ୍ତି ଭିନ୍ନ ଅର୍ଥାତ୍ ମୂଳ ଏବଂ ତାଙ୍କର ପ୍ରକାଶ ଏହିରୂପ ଭିନ୍ନ । ଶ୍ରୀକୃଷ୍ଣ ବ୍ରଜ, ମଥୁରା ଓ ଦ୍ୱାରକାପୁରରେ ପୂର୍ଣ୍ଣତମ, ପୂର୍ଣ୍ଣତର ଓ ପୂର୍ଣ୍ଣ ଏହି ପ୍ରକାର ନାନା ତତ୍ତ୍ୱ ଶ୍ରୀଚୈତନ୍ୟଚରିତାମୃତ ମଧ୍ୟ ଲୀଳା ୨୦ ପରିଚ୍ଛେଦ ସନାତନ ଶିକ୍ଷାରେ ରହିଅଛି । ଏସବୁ ପ୍ରଥମେ ସାଧାରଣ କର୍ଣ୍ଣକୁ ଅଦ୍ଭୁତ ଲାଗିପାରେ । ସହଜରେ ଏହା କେହି ପ୍ରତ୍ୟୟ କରିବେ ନାହିଁ । କିନ୍ତୁ ଏମାନ ମୋର କପୋଳକଳ୍ପିତ ନୁହେ । ଗୋସ୍ୱାମୀଗଣ ବହୁଳ ପ୍ରମାଣ ସହ ଏହି ସିଦ୍ଧାନ୍ତ କରି ଆମମାନଙ୍କ ପାଇଁ ଲେଖିଯାଇ ଅଛନ୍ତି, ବୁଦ୍ଧି କିମ୍ବା ପାଣ୍ଡିତ୍ୟ ଦ୍ୱାରା ଈଶ୍ୱରତତ୍ତ୍ୱ କେହି ସ୍ଥିରକରି ପାରିବେ ନାହିଁ । ଭଗବତ୍ ତତ୍ତ୍ୱ ଜାଣିବାର ଏକମାତ୍ର କାରଣ ଭଗବତ୍ କୃପା । ଭଗବାନଙ୍କର କୃପାହେଲେ ମୂର୍ଖ ମଧ୍ୟ ଭଗବତ୍ ତତ୍ତ୍ୱ ଜାଣିପାରେ, ମହାପ୍ରଭୁ ସନ୍ନ୍ୟାସ ହୋଇ ଶ୍ରୀପୁରୁଷୋତ୍ତମରେ ଆସି ପହଞ୍ଚିଲେ ଏବଂ ଶ୍ରୀ ଜଗନ୍ନାଥ ଦେବଙ୍କୁ ଦର୍ଶନ କରିବାକୁ ଯାଇ ତାଙ୍କ ସମ୍ମୁଖରେ ମୂର୍ଚ୍ଛିତ ହୋଇ ପଡ଼ିଲେ, ସେତେବେଳେ ପଣ୍ଡିତ ପ୍ରବର ସାର୍ବଭୌମ ଭଟ୍ଟାଚାର୍ଯ୍ୟ ସେଠାରେ ଉପସ୍ଥିତ ଥିଲେ । ବହୁକ୍ଷଣ ପର୍ଯ୍ୟନ୍ତ ମହାପ୍ରଭୁଙ୍କର ଚୈତନ୍ୟ ନଥିବାରୁ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ତାଙ୍କୁ ନିଜ ଗୃହକୁ ନେଇ ଗଲେ, ଏହି ମୂର୍ଚ୍ଛାକାଳରେ ମହାପ୍ରଭୁଙ୍କର ଅଷ୍ଟସାତ୍ତ୍ୱିକ ଭାବ ଲକ୍ଷଣମାନଙ୍କରେ ଅବଲୋକନ କରି ମଧ୍ୟ ସାର୍ବଭୌମଙ୍କର ତାଙ୍କପ୍ରତି ଈଶ୍ୱର ଜ୍ଞାନ ହୋଇ ନ ଥିଲା । କାରଣ "ଦେଖିଲେ ନା ଦେଖେ ତାରେ ବହିର୍ମୁଖ ଜନ" ( ଚୈଃ ଚଃ ଅନ୍ତ୍ୟ ) । ସେ ମହାପ୍ରଭୁଙ୍କୁ ସାଧାରଣ ମନୁଷ୍ୟ ଓ ନବୀନ ସନ୍ନ୍ୟାସୀ ମନେ କରି ସ୍ନେହପରବଶ ହୋଇ ସ୍ୱୀୟ ଭଗ୍ନୀପତି ଶ୍ରୀ ଗୋପୀନାଥାଚାର୍ଯ୍ୟଙ୍କୁ ମହାପ୍ରଭୁଙ୍କର ସମସ୍ତ ପରିଚୟ ପଚାରିଲେ ଏବଂ ମହାପ୍ରଭୁଙ୍କର ଭାରତୀ ସମ୍ପ୍ରଦାୟରୁ ସନ୍ନ୍ୟାସଗ୍ରହଣ ଶୁଣି କହିଲେ, ଆହା ଏହାଙ୍କର ପୂର୍ଣ୍ଣ ଯୌବନାବସ୍ଥା, ଏହାଙ୍କର ସନ୍ନ୍ୟାସଧର୍ମ ରକ୍ଷା କିପରି ହେବ ? ଏହାଙ୍କୁ ମୁଁ ବେଦାନ୍ତ ଶ୍ରବଣ କରାଇବି ଏବଂ ବୈରାଗ୍ୟ ଅଦ୍ୱୈତ ମାର୍ଗରେ ପ୍ରବେଶ କରାଇବି । ଏବଂ ଯଦି ସ୍ୱୀକୃତ ହୁଅନ୍ତି ତେବେ ଯୋଗପଟ୍ଟଦେଇ

ଉତ୍ତମ ସମ୍ପ୍ରଦାୟରେ ପୁନଃ ସଂସ୍କାର କରାଇବ । ଏ ସମସ୍ତ ଗୋପୀନାଥ ଆଚାର୍ଯ୍ୟଙ୍କୁ ସହ୍ୟ ହେଲା ନାହିଁ କାରଣ ସେ ମହାପ୍ରଭୁ ଯେ ସ୍ୱୟଂ ଭଗବାନ ତାହା ଉତ୍ତମ ରୂପେ ଜାଣି ଥିଲେ । ତହୁଁ ଗୋପୀନାଥ ଆଚାର୍ଯ୍ୟ କହିଲେ "ଭଟ୍ଟାଚାର୍ଯ୍ୟେ ! ତୁମ୍ଭେ ଏହାଙ୍କ ମହିମା ଜାଣ ନାହିଁ, ଏ ଯେ ସ୍ୱୟଂ ଭଗବାନ ଶ୍ରୀଭଗବତ୍‌ଲକ୍ଷଣମାନ ଏହାଙ୍କଠାରେ ପୂର୍ଣ୍ଣରୂପେ ବିଦ୍ୟମାନ । ଗୋପୀ-ନାଥାଚାର୍ଯ୍ୟଙ୍କ ମୁଖରୁ ଏହିକଥା ଉଚ୍ଚାରିତ ହେବାମାତ୍ରକେ ସାର୍ବଭୌମଙ୍କ ଶିଷ୍ୟବୃନ୍ଦ ତାହାଙ୍କୁ ହାସ୍ୟରେ ଉଡ଼ାଇଦେଲେ , ଏବଂ ତାଙ୍କ ସହ ନାନାତର୍କ ଯୁକ୍ତି ଆରମ୍ଭ କଲେ ।"ଅନୁମାନ ଦ୍ୱାରାହିଁ ଈଶ୍ୱର ଜ୍ଞାନ ସିଦ୍ଧ ହୁଏ ।" ନାନା ବାକ୍‌ଜାଲ ବିସ୍ତାର ପୂର୍ବକ ଏହି ଶାସ୍ତ୍ରୀୟ ପ୍ରମାଣ ଅବୃତ୍ତି କରିବାକୁ ଲାଗିଲେ । ଗୋପୀନାଥ ତେତେବେଳେ ଦେଖିଲେ ଏ ଜ୍ଞାନ ମୂର୍ଖମାନଙ୍କୁ ପରାସ୍ତ କରିବାତ ସହଜ ନୁହେ । ସେ ତହୁଁ କହିଲେ, ଦେଖ ତୁମ୍ଭମାନଙ୍କ ହୃଦୟ ତର୍କଜାଳରେ ଆଚ୍ଛନ୍ନ । ତୁମ୍ଭେମାନେ ଈଶ୍ୱରତତ୍ତ୍ୱ କରୂପେ ଜାଣି ପାରିବ । ଈଶ୍ୱରତତ୍ତ୍ୱ କେବଳ ଈଶ୍ୱରଙ୍କର କୃପାଦ୍ୱାରା ଜଣା ଯାଏ । ଯଥା ।--

"ଈଶ୍ୱରର କୃପାଲେଶ ହୟତ ଯାହାରେ;
ସେଇତ ଈଶ୍ୱର ତତ୍ତ୍ୱ ଜାଣିବାରେ ପାରେ ।

( ଚୈଃ ଚଃ ମଧ )

ଏହିକଥା ମଧ ସେହି ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ଠାରେ ପ୍ରମାଣୀ-କୃତ ହୋଇଥିଲା । ମହାପ୍ରଭୁଙ୍କୁ ଶାସ୍ତ୍ରଶିକ୍ଷା ଦେବାକୁ ଯାଇ ପଣ୍ଡିତପ୍ରବର ଶେଷେ ତାଙ୍କ କୃପାଲାଭ କରି ତାଙ୍କ ତତ୍ତ୍ୱ ବୁଝିପାରିଥିଲେ । ତାହା ତାଙ୍କ ନିଜକୃତ ଶ୍ଳୋକରେ ଉତ୍ତମରୂପେ ପ୍ରକାଶିତ ହୋଇଅଛି ।

ଏହି ପଣ୍ଡିତ ପ୍ରବର ସାର୍ବଭୌମଙ୍କୁ ବୁଝାଇବାକୁ ଯାଇ ମହାପ୍ରଭୁ ନିରାକାର ବାଦ ଖଣ୍ଡନ ପୂର୍ବକ ସାକାର ବାଦ ସ୍ଥାପନ କରିଥିଲେ । କେତେକ ମତରେ ଈଶ୍ୱର ନିରାକାର ବୋଲି ସ୍ଥାପିତ ହୋଇଅଛି । ସାର୍ବଭୌମ ମହାପ୍ରଭୁଙ୍କୁ ବେଦାନ୍ତ ଶ୍ରବଣ କରାଇବାକୁ ଲାଗିଲେ । ସାତଦିନ କାଳ ମହାପ୍ରଭୁ ତାଙ୍କଠାରୁ ବେଦାନ୍ତ ଶ୍ରବଣ କରି ହିଁ କି ନା କରିମାତ୍ର ଉତ୍ତର ଦେଲେନାହିଁ । ସାର୍ବଭୌମ ଏଥିରେ ବର୍ତ୍ତିତ ହୋଇ ପ୍ରଶ୍ନକଲେ

"ଆପଣ ସପ୍ତଦିବସାବଧି ମୋଠାରୁ ବେଦାନ୍ତ ଶ୍ରବଣ କରୁଅଛନ୍ତି, କିନ୍ତୁ ବୁଝି ପାରୁ ଅଛନ୍ତି କି ନାହିଁ ମୁଁ କିଛି ଜାଣିପାରିଲି ନାହିଁ।" ମହାପ୍ରଭୁ କହିଲେ, ମୁଁ ମୂର୍ଖ, ଅଭ୍ୟାସତ ମୋର ନାହିଁ। ଆପଣ ଶୁଣିବାକୁ କହିଲେ ମୁଁ ଶୁଣୁଅଛି, କିନ୍ତୁ ଆପଣଙ୍କର ଅର୍ଥତ ମୁଁ ବୁଝି ପାରୁନାହିଁ। ସାର୍ବଭୌମ କହିଲେ ଏତ ବେଶ୍ କଥା, ଯଦି ଆପଣ ବୁଝିପାରୁ ନାହାନ୍ତି ତେବେ ବୁଝିବା ପାଇଁ ପଚାରୁ ନାହାନ୍ତି କାହିଁକି? ଆପଣତ ମୌନାବଲମ୍ବନ କରି ଶୁଣୁ ଅଛନ୍ତି, ଆପଣ ବୁଝିନପାରିଲେ ବୋଲି ମୁଁ ଜାଣିବି କପରି। ମହାପ୍ରଭୁ କହିଲେ "ପଣ୍ଡିତ ମହାଶୟ! ସୂତ୍ରର ଅର୍ଥତ ନିର୍ମଳ, କିନ୍ତୁ ଆପଣ ସେ ଭାଷ୍ୟ ମେଘରେ ତାହା ଆଚ୍ଛାଦନ କରୁ ଅଛନ୍ତି ସେଥିରୁ କିଛିମାତ୍ର ସୂତ୍ରର ପ୍ରକୃତ ଅର୍ଥ ଜଣା ପଡୁନାହିଁ, ଆପଣତ ମୁଖ୍ୟାର୍ଥ ପରିତ୍ୟାଗ ପୂର୍ବକ ଗୌଣାର୍ଥ କଳ୍ପ କରୁଅଛନ୍ତି, ମୁଁ ବୁଝିବି କିପରି? ଭଗବାନ ସର୍ବୈଶ୍ୱର୍ଯ୍ୟପୂର୍ଣ୍ଣ ସଚ୍ଚିଦାନନ୍ଦ ବିଗ୍ରହ। ତାଙ୍କୁ ଆପଣ ନିରାକାର ବୋଲି ସ୍ଥାପନ କରୁଅଛନ୍ତି। ଯଥାଃ—

"ସର୍ବୈଶ୍ୱର୍ଯ୍ୟ ପରିପୂର୍ଣ୍ଣ ସ୍ୱୟଂ ଭଗବାନ୍,
ତାରେ ନିରାକାର କରି କରହ ବ୍ୟାଖ୍ୟାନ।

( ଚୈ ଚ ମଧ୍ୟ )

ଭଗବାନ ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣ ଆନନ୍ଦମୟ ବିଗ୍ରହଧାରୀ ଅଟନ୍ତି। ଆପଣ ଘୁଞ୍ଚାଇ ମୁଖ୍ୟାର୍ଥ ଛାଡ଼ି ଲକ୍ଷଣା ଦ୍ୱାରା ତାଙ୍କୁ ନିରାକାର ବୋଲି ପ୍ରତିପାଦନ କରୁଅଛନ୍ତି ଯଥାଃ—

"ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣାନନ୍ଦ ବିଗ୍ରହ ଯାହାର,
ହେନ ଭଗବାନେ ତୁମି କହ ନିରାକାର।

ଈଶ୍ୱର ମାୟାଧୀଶ, ଜୀବ ମାୟାବଶ, ସେହି ମାୟାବଶ ଜୀବକୁ ଈଶ୍ୱରଙ୍କ ସହ ଅଭେଦ ବୋଲି ପ୍ରକାଶ କରୁ ଅଛନ୍ତି। ଯଥାଃ—

"ମାୟାଧୀଶ ମାୟାବଶ ଈଶ୍ୱରେ ଜୀବେ ଭେଦ,
ହେନ ଜୀବ ଈଶ୍ୱର ସହ କରହ ଅଭେଦ।

( ଚୈ ଚ ମଧ୍ୟ )

ଈଶ୍ୱରଙ୍କ ବିଗ୍ରହ ସଚ୍ଚିଦାନନ୍ଦମୟ । ଅତଏବ ସେହି ସଚ୍ଚିଦାନନ୍ଦ ବିଗ୍ରହଙ୍କୁ ସତ୍ତ୍ୱଗୁଣର ବିକାର ବୋଲି ସ୍ଥାପନ କରୁ ଅଛନ୍ତି । ଯେ ଭଗବାନଙ୍କ ଶ୍ରୀବିଗ୍ରହ ସ୍ୱୀକାର ନକରେ ସେ ପାଷଣ୍ଡ ମଧ୍ୟରେ ପରି ଗଣିତ । ଯଥାଃ—

“ଶ୍ରୀ ବିଗ୍ରହ ଯେ ନାମାନେ ସେଇତ ପାଷଣ୍ଡୀ,
ଅସ୍ପୃଶ୍ୟ ଅଦୃଶ୍ୟ ସେଇ ହୟ ଯମ ଦଣ୍ଡୀ ।

( ଚୈ ଚ ମଧ୍ୟ )

ଏହିରୂପ ଭଗବତ୍‌ତତ୍ତ୍ୱ ସ୍ଥାପନ କରନ୍ତେ ପଣ୍ଡିତ ପ୍ରବର ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଅବାକ୍ ହୋଇ ରହି ରହିଲେ । ତାଙ୍କ ମୁଖରୁ ବାକ୍ୟ ନିସୃତ ହେଲାନାହିଁ, ସେ ଆତ୍ମାରାମ ଶ୍ଳୋକ ବ୍ୟାଖ୍ୟା କରିବାକୁ ମହାପ୍ରଭୁଙ୍କୁ ଅନୁରୋଧ କଲେ । ମହାପ୍ରଭୁ କହିଲେ ଆଗେ ଆପଣ ସେ ଶ୍ଳୋକର ଅର୍ଥ କରନ୍ତୁ ପରେ ମୁଁ ତାହାର ଅର୍ଥ କରିବି । ଭଟ୍ଟାଚାର୍ଯ୍ୟ ଉକ୍ତ ଶ୍ଳୋକର ୯ ପ୍ରକାର ଅର୍ଥ କଲେ, ମହାପ୍ରଭୁ ସେତେବେଳେ ତାଙ୍କୁ ପ୍ରଶଂସା ପୂର୍ବକ କହିଲେ “ଆପଣ ସାକ୍ଷାତ୍ ବୃହସ୍ପତି, ନୋହେଲେ ଏହି ଶ୍ଳୋକର ଏରୂପ ନବବିଧ ଅର୍ଥ କେହି କରି ପାରନ୍ତେ ନାହିଁ ।” ତତ୍ପରେ ସେ ନବ ଅର୍ଥକୁ ଏକମାତ୍ର ସ୍ପର୍ଶ ନକରି ଅଷ୍ଟାଦଶ ପ୍ରକାର ଅର୍ଥ ନିଜେ ପ୍ରକାଶ କଲେ । ତାହା ଶୁଣି ଓ ମହାପ୍ରଭୁଙ୍କ କୃପା ଲାଭକରି ସାର୍ବଭୌମ ତାଙ୍କୁ ଭଗବାନ ଶ୍ରୀକୃଷ୍ଣ ବୋଲି ଜାଣିପାରିଲେ, ଏବଂ ମହାପ୍ରଭୁ ମଧ୍ୟ ପ୍ରଥମେ ତାଙ୍କୁ ଚତୁର୍ଭୁଜ ମୂର୍ତ୍ତି ଦର୍ଶନ କରାଇଲେ ଓ ପରେ ବଂଶୀବଦନ ଶ୍ୟାମସୁନ୍ଦରରୂପ ଦେଖାଇ ତାଙ୍କୁ ଅନୁଗ୍ରହ କଲେ ।

ଏହିରୂପେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଶ୍ରୀକୃଷ୍ଣ ଯେ ଷଡୈଶ୍ୱର୍ଯ୍ୟ ପୂର୍ଣ୍ଣ-ଭଗବାନ୍ ଏବଂ ସେ ଯେ ବର୍ତ୍ତମାନ ଶ୍ରୀକୃଷ୍ଣଚୈତନ୍ୟ ରୂପରେ ଧରାରେ ଅବତୀର୍ଣ୍ଣ ଏହିସବୁ ତତ୍ତ୍ୱ ବୁଝି ପାରିଲେ ।

ଶ୍ରୀକୃଷ୍ଣ ବିଗ୍ରହ ଯେ ସତ୍ୟ ଏହା ମହାପ୍ରଭୁ କାଶୀଧାମରେ ପଣ୍ଡିତ ପ୍ରବର ଶ୍ରୀ ପ୍ରକାଶାନନ୍ଦ ସରସ୍ୱତୀଙ୍କ ଠାରେ ପ୍ରତିପନ୍ନ କରାଇ ଦଶସହସ୍ର ଶିଷ୍ୟସହ ପ୍ରକାଶାନନ୍ଦଙ୍କୁ ଅନୁଗ୍ରହ କରିଥିଲେ । ଏବଂ ସେ ମାୟାବାଦୀ ସନ୍ନ୍ୟାସୀଗଣ ମହାପ୍ରଭୁଙ୍କ କୃପାରେ ମାୟାବାଦ ପରିତ୍ୟାଗ ପୂର୍ବକ ଶ୍ରୀକୃଷ୍ଣ

ଷଡୈଶ୍ୱର୍ଯ୍ୟ ପୂର୍ଣ୍ଣ ଭଗବାନ ଏହିମତ ଗ୍ରହଣ କରିଥିଲେ । ପ୍ରକାଶାନନ୍ଦଙ୍କ କୃତ ଶ୍ରୀ ଚୈତନ୍ୟଚନ୍ଦ୍ରାମୃତ ଏହାର ଉତ୍ତମ ସାକ୍ଷ୍ୟ ପ୍ରଦାନ କରୁଅଛି, ମହାପ୍ରଭୁ ସନ୍ନ୍ୟାସ ଗ୍ରହଣପରେ ଶ୍ରୀବୃନ୍ଦାବନକୁ ଯାଇ ପ୍ରତ୍ୟାଗମନ ସମୟରେ ଶ୍ରୀକାଶୀ-ଧାମରେ ଦୁଇମାସ ରହି ସନାତନ ଗୋସ୍ୱାମୀଙ୍କୁ ଶ୍ରୀକୃଷ୍ଣ ତତ୍ତ୍ୱାଦି ଶିକ୍ଷାଦେଲେ, ଏବଂ ଏହି ସମୟରେ ପ୍ରକାଶାନନ୍ଦଙ୍କୁ କୃପାପୂର୍ବକ ଉଦ୍ଧାର କଲେ । କିନ୍ତୁ ଏହାର ବହୁଦିନ ପୂର୍ବରୁ ମହାପ୍ରଭୁ ଯେତେବେଳେ ନଦୀୟାରେ ବିହାର କରୁଥିଲେ ତେତେବେଳେଁ କାଶୀଧାମର ପ୍ରକାଶାନନ୍ଦ ତାଙ୍କର (ମହାପ୍ରଭୁଙ୍କର) ଲକ୍ଷ୍ୟ ହୋଇଥିଲେ । ଏକଦିନ ମହାପ୍ରଭୁ ମୁରାରିଗୁପ୍ତଙ୍କ ଘରକୁ ଯାଇ ବରାହାବତାର ଆବେଶରେ ମୁରାରିଙ୍କୁ କେତେକ ତତ୍ତ୍ୱକଥା କହିଥିଲେ, ସେହି ସମୟରେ ସେ କହିଥିଲେ କାଶୀରେ ପ୍ରକାଶାନନ୍ଦ ନାମକ ଏକ ମୂର୍ଖ ପଣ୍ଡିତ ବାସ କରୁଅଛି । ସେ ମୋର ବିଗ୍ରହ ସ୍ୱୀକାର ନକରି ମୋର ଅଙ୍ଗକୁ ଖଣ୍ଡ୨ କରୁଅଛି, ସେହି ଅପରାଧରେ ତାହାର ଅଙ୍ଗରେ କୁଷ୍ଠ ଜାତ ହେଲେ ମଧ୍ୟ ସେ ତାହା ବୁଝିପାରୁ ନାହିଁ । ଯଥା;—

କାଶୀତେ ପଢ଼ାୟ ବେଟା ପ୍ରକାଶ ଅନନ୍ଦ
ସେଇବେଟା କରେ ମୋର ଅଙ୍ଗ ଖଣ୍ଡ ଖଣ୍ଡ ।
ବାଖାନୟେ ବେଦ ମୋର ବିଗ୍ରହ ନାଁ ମାନେ,
ସର୍ବ ଅଙ୍ଗେହୈଲ କୁଷ୍ଠ ତବୁ ନାହିଁ ଜାନେ ।
ସର୍ବ ଯଜ୍ଞ ମୟ ମୋର ଯେ ଅଙ୍ଗ ପବିତ୍ର
ଅଜ ଭବ ଆଦି ଗାୟ ଯାହାର ଚରିତ୍ର ।
ପୁଣ୍ୟ ପବିତ୍ର ପାୟ ଯେ ଅଙ୍ଗ ପରଶେ,
ତାହା ମିଥ୍ୟା ବଲେ ବେଟା କେମନ ସାହସେ ।

( ଚୈଃ ଭାଃ ମଧ୍ୟ ୩ )

ସେହି ମୁରାରିଗୁପ୍ତଙ୍କୁ ଅନ୍ୟ ଏକ ସମୟରେ ମଧ୍ୟ ସେହିରୂପ କଥା କହିଥିଲେ ଯଥା;—

ସନ୍ନ୍ୟାସୀ ପ୍ରକାଶାନନ୍ଦ ବସୟେ କାଶୀତେ
ମୋରେ ଖଣ୍ଡ ଖଣ୍ଡ କରେ ବେଟା ଭାଲମତେ ।

ପତାସ୍ତୁ ବେଦାନ୍ତ ମୋର ବିଗ୍ରହ ନାମାନେ
କୃଷ୍ଣ କହାଇଲ ଅଙ୍ଗେ ତବୁ ନାହିଁ ଜାନେ ।
ଅନନ୍ତ ବ୍ରହ୍ମାଣ୍ଡ ମୋର ଯେ ଅଙ୍ଗେତେ ବସେ
ତାହାନିଧ୍ୟାବଲେ ବେଟା କେମନ ସାହସେ,
ସତ୍ୟ କହ ମୁଦ୍ରିର ଅମାର ଭୁମି ଦାସ
ଯେ ନାମାନେ ମୋର ଅଙ୍ଗ ଯେ ଯାଏ ବିନାଶ ।

( ଚୈଃ ଭାଃ ମଧ୍ୟ ୨୦ )

ଯେଉଁ ପ୍ରକାଶାନନ୍ଦଙ୍କୁ ଲକ୍ଷ୍ୟକରି ନବଦ୍ୱୀପରେ ମହାପ୍ରଭୁ ଏରୂପ କଥାମାନ କହିଥିଲେ, କେତେକବର୍ଷ ପରେ ସନ୍ନ୍ୟାସୀ ହୋଇ ଶ୍ରୀପୁରୁଷୋତ୍ତମଠାରେ ବାସ କରି ଶ୍ରୀବୃନ୍ଦାବନକୁ ଯାଇ ସେଠାରୁ ଫେରିବା କାଳରେ ସେ ସେହି ମାୟାବାଦୀ ପଣ୍ଡିତ ପ୍ରବର ପ୍ରକାଶାନନ୍ଦଙ୍କୁ ଅଶେଷ କୃପାପୂର୍ବକ ଶ୍ରୀକୃଷ୍ଣଙ୍କର ବିଗ୍ରହ ଯେ ସତ୍ୟ ଓ ନିତ୍ୟ ଏହା ବେଦରୁ ବୁଝାଇ ଥିଲେ । ଯଥା—

ବୃହତ୍‌ବସ୍ତୁ ବ୍ରହ୍ମକହି ଶ୍ରୀଭଗବାନ୍
ଷଡ଼୍‌ବିଧ ଐଶ୍ୱର୍ଯ୍ୟ ପୂର୍ଣ୍ଣ ପରତତ୍ତ୍ୱ ଧାମ,

( ଚୈଃ ଚଃ ଅଦି ୭ ପରି )

ଏହିରୂପେ ମହାପ୍ରଭୁ ମହାପଣ୍ଡିତ ପ୍ରକାଶାନନ୍ଦଙ୍କୁ ବୁଝାଇ ଦେଇଥିଲେ ଯେ ଆପଣମାନେ ଈଶ୍ୱର ନିରାକାର ବୋଲି ଯେ ସ୍ଥାପନ କରୁ ଅଛନ୍ତି, ତାହା ବେଦର ମୁଖ୍ୟାର୍ଥ ନୁହେ, ଆପଣମାନେ ଶ୍ରୀମଚ୍ଛଙ୍କରାଚାର୍ଯ୍ୟଙ୍କ କଳ୍ପିତ ଭାଷ୍ୟାନୁସାରେ ଲକ୍ଷଣାଦ୍ୱାରା ଏରୂପ ଅର୍ଥ କରୁଅଛନ୍ତି, କିନ୍ତୁ ବେଦର ମୁଖ୍ୟାର୍ଥ ଶ୍ରୀଭଗବାନଙ୍କୁ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣବିଗ୍ରହ ବୋଲି ପ୍ରମାଣ କରୁଅଛି, ଏହି-କଥା ଶ୍ରୀପ୍ରକାଶାନନ୍ଦ ସରସ୍ୱତୀଙ୍କ ଏକ ଯୋଗ୍ୟଶିଷ୍ୟ ଓ ମହାପଣ୍ଡିତଙ୍କ ବାକ୍ୟରୁ ମଧ୍ୟ ପ୍ରମାଣୀକୃତ ହୋଇଅଛି, ସେ ମହାପ୍ରଭୁଙ୍କ ବେଦ ଓ ଉପନିଷଦ ବ୍ୟାଖ୍ୟାର ପ୍ରଶଂସା ପୂର୍ବକ କହିଥିଲେ, "ଶ୍ରୀକୃଷ୍ଣଚୈତନ୍ୟ ଯେ ବ୍ରହ୍ମଶବ୍ଦ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣଭଗବାନ ବୋଲି ବ୍ୟାଖ୍ୟା କଲେ ତାହା ଅତି ସତ୍ୟ, ତାଙ୍କୁ ନିର୍ବିଶେଷ ବୋଲି ସ୍ଥାପନକଲେ ପୂର୍ଣ୍ଣତାର ହାନି ହୁଏ । ପ୍ରକୃତରେ ଚିଦାନନ୍ଦ ଶ୍ରୀକୃଷ୍ଣବିଗ୍ରହକୁ ମାୟିକ ମନେ କରିବା ପାପ ଜନକ । ଯଥା—

"ଚିଦାନନ୍ଦ କୃଷ୍ଣ ବିଗ୍ରହ ମାୟିକ କରି ମାନି
ଏଇ ବଡ଼ ପାପ ସତ୍ୟ ଚୈତନ୍ୟେର ବାଣୀ"
( ଚୈ: ଚ: ମଧ୍ୟ )

ଅତଏବ ଏହି ସମସ୍ତ ପ୍ରମାଣରୁ ଏହା ଉତ୍ତମରୂପେ ପ୍ରତିପନ୍ନ ହୋଇଅଛି ଯେ ଶ୍ରୀକୃଷ୍ଣହିଁ ଆଦିପୁରୁଷ ଏବଂ ସର୍ବକାରଣର କାରଣ । ସେ ଅବତାରୀ ଓ ମତ୍ସ୍ୟକୂର୍ମାଦି ତାଙ୍କର ଅବତାର, ସେ ବ୍ରହ୍ମା ବିଷ୍ଣୁ ଶିବଙ୍କୁ ସୃଜନ ପାଳନ ଓ ସଂହାର କାର୍ଯ୍ୟରେ ନିଯୁକ୍ତ କରି ଅଛନ୍ତି, ଅନ୍ୟ ସକଳ ତାଙ୍କର ଆଜ୍ଞାନୁସରଣକାରୀ ମାତ୍ର ଅଛନ୍ତି, ଶ୍ରୀକୃଷ୍ଣଙ୍କର ଇଚ୍ଛାବ୍ୟତୀତ କିଛି ସିଦ୍ଧ ହୋଇ ନ ପାରେ । ଜୀବନ ମରଣ, ରକ୍ଷଣାବେକ୍ଷଣ ସବୁ ଶ୍ରୀକୃଷ୍ଣଙ୍କର ହାତ, ତାଙ୍କ ଛଡ଼ା କେହି ନାହିଁ । ଶ୍ରୀଲବୃନ୍ଦାବନଦାସଙ୍କର ଉକ୍ତି ଏହାର ପ୍ରମାଣ । ଯଥା—

ଜୀବନ ମରଣ କୃଷ୍ଣ ଇଚ୍ଛାଧୀନ ସେ ହୟ,
ବିଷ ବା ଅମୃତ ଭକ୍ଷିଲେ ଓ କିଛୁ ନୟ,
ଯେମତେ ଯାହାରେ କୃଷ୍ଣେ ନ ଚାହେ ମାରେ
ତାହା ବହି ଅବଶ୍ୟ କରିତେ ନ ପାରେ,
( ଚୈ: ଭା: ଅନ୍ତ୍ୟ ୨ )



# ଷୋଡ଼ଶ ପରିଚ୍ଛେଦ ।

## ଶ୍ରୀକୃଷ୍ଣ କୃପା

ଶ୍ରୀକୃଷ୍ଣତତ୍ତ୍ୱ ବୁଝିବା କିମ୍ବା କୃଷ୍ଣ ପ୍ରେମଲାଭ କରିବା ସାଧନ ସାପେକ୍ଷ ସତ୍ୟ କିନ୍ତୁ ଶ୍ରୀକୃଷ୍ଣଙ୍କର କୃପାବ୍ୟତିରେକେ କୋଟି ସାଧନରେ ସେ ତତ୍ତ୍ୱ ହୃଦୟଙ୍ଗମ କରିହେବ ନାହିଁ । ଶ୍ରୀକୃଷ୍ଣଙ୍କର କୃପା ହିଁ କୃଷ୍ଣପ୍ରେମ ଲାଭର ପ୍ରଧାନ କାରଣ, କିନ୍ତୁ ସେ କୃପା ଲାଭ ହେଲେ ଅଜ୍ଞଜନ ମଧ୍ୟ ଭକ୍ତିରସ ସିନ୍ଧୁ ପାରହୋଇ ପାରନ୍ତି । ମହାପ୍ରଭୁ ସ୍ୱୟଂ ଏହା ଶ୍ରୀରୂପଗୋସ୍ୱାମୀଙ୍କୁ ଶିକ୍ଷାକାଳରେ ଶ୍ରୀଧାମ ପ୍ରୟାଗଠାରେ କହିଥିଲେ ଯଥା—

ଭାବତେ ଭାବତେ କୃଷ୍ଣ ସ୍ଫୁରୟେ ଅନ୍ତରେ
କୃଷ୍ଣ କୃପାୟ ଅଜ୍ଞପାୟ ରସସିନ୍ଧୁ ପାରେ ।

( ଚୈଃ ଚଃ ମଧ୍ୟ ୨୦ )

ଅର୍ଥାତ୍ "ହେ ରୂପ ! ମୁଁ ଯେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ରସର ପ୍ରଧାନ ପ୍ରଣାଳୀମାନ ଏବଂ ସେହି ସାଧନ ଦ୍ୱାରା ଯେ ଯେ ଲାଭ ହୁଏ ତାହା ତୁମ୍ଭଙ୍କୁ କହିଲି, ଏହା ତୁମ୍ଭେ ମନେ ମନେ ସତତ ଚିନ୍ତାକର । ମୁଁ କେବଳ ଦିଗ୍‌ଦର୍ଶନ ସ୍ୱରୂପ ଦେଖାଇ ଦେଲି । ତୁମ୍ଭେ ସତତ ଉକ୍ତ ବିଷୟମାନ ଚିନ୍ତାକଲେ ତୁମ୍ଭ ହୃଦୟରେ ଶ୍ରୀକୃଷ୍ଣ ସ୍ଫୂର୍ତ୍ତି ହେବେ ଓ ତୁମ୍ଭେ ସର୍ବ ଶେଷରେ କୃଷ୍ଣଭକ୍ତି ଓ କୃଷ୍ଣ ପ୍ରେମ ବିଷୟମାନ ଜାଣି ପାରିବ, ଶ୍ରୀକୃଷ୍ଣଙ୍କୁ ଏକାନ୍ତ ଭାବରେ ଚିନ୍ତାକଲେ ଅଜ୍ଞ ଲୋକ ମଧ୍ୟ ଭକ୍ତିସିନ୍ଧୁରେ ସନ୍ତରଣ କରି ଅପର ପାରି ପର୍ଯ୍ୟନ୍ତ ଯାଇ ପାରେ । ତୁମ୍ଭେ ତ ଶ୍ରୀକୃଷ୍ଣଙ୍କର ପ୍ରିୟ ଭକ୍ତ ଓ ବନ୍ଧୁ ।"

ଶ୍ରୀକୃଷ୍ଣଙ୍କର କୃପା ହେଲେ ଭକ୍ତ ତାଙ୍କୁ ଚିହ୍ନିପାରେ । ନତୁବା ସ୍ୱୟଂ ଶ୍ରୀକୃଷ୍ଣ ଅପି ଉପସ୍ଥିତ ହେଲେ ମଧ୍ୟ ତାଙ୍କ କୃପା ବ୍ୟତୀତ ଲୋକ ତାଙ୍କୁ ଜାଣି ପାରେ ନାହିଁ । ସେ ବିଷୟରେ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କର ଦୃଷ୍ଟାନ୍ତ ଏହି । ଯଥା :—

ଭଟ୍ଟାଚାର୍ଯ୍ୟ କହେ ତୋମାର ସତ୍ୟ ବଚନ,
ଆଗେ ଯଦି କୃଷ୍ଣ ଦେନ, ସାକ୍ଷାତ୍ ଦର୍ଶନ ।
ପ୍ରେମବିନା କଭୁ ନହେ ତାର ସାକ୍ଷାତ୍‌କାର,
ଇହାର କୃପାତେ ହୟ ଦର୍ଶନ ଇହାର ।

(ଚୈଃ ଚଃ ମଧ୍ୟ)

ଏତଆନ୍ତି ସାର୍ବଭୌମ ଭଟ୍ଟାଚାର୍ଯ୍ୟ ବ୍ରହ୍ମାନନ୍ଦ ଭାରତୀଙ୍କ ପକ୍ଷ ସମର୍ଥନ କରି ମହାପ୍ରଭୁଙ୍କ ସମ୍ବନ୍ଧରେ ବ୍ୟବହାର କରୁଥିଲେ ଏବଂ ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଶ୍ରୀ ପୁରୁଷୋତ୍ତମରେ ଶ୍ରୀ ଗୁଣ୍ଡିଚାଯାତ୍ରା ସମୟରେ ୭ ମଣ୍ଡଳ ସଙ୍କୀର୍ତ୍ତନ ହେଉଥିଲା, ମହାପ୍ରଭୁ ଭ୍ରମଣ କରି ସମସ୍ତ ମଣ୍ଡଳର ସଂକୀର୍ତ୍ତନ ଦେଖୁଥିଲେ । ଏମନ୍ତ ସମୟରେ ମହାରାଜା ପ୍ରତାପରୁଦ୍ର ଦେଖି ପାଇଲେ ମହାପ୍ରଭୁ ଏକକାଳରେ ସାତ ମୂର୍ତ୍ତିଧରି ସେହି ସପ୍ତ ମଣ୍ଡଳସ୍ଥ ପ୍ରତ୍ୟେକ ମଣ୍ଡଳରେ ଉପସ୍ଥିତ ଅଛନ୍ତି । ମହାପ୍ରଭୁଙ୍କର ଏହି ମହଦୈଶ୍ୱର୍ଯ୍ୟ ଦର୍ଶନ କରି ମହାରାଜା ପରମାନନ୍ଦ ଲାଭ କରି ଶ୍ରୀଳ କାଶୀମିଶ୍ର ଓ ସାର୍ବଭୌମଙ୍କୁ ଉକ୍ତ ବିଷୟ ଜ୍ଞାପନ କଲେ । କାଶୀମିଶ୍ର କହିଲେ, ମହାରାଜା "ଆପଣଙ୍କର ପରମ ସୌଭାଗ୍ୟ ଯେ ଆପଣ ମହାପ୍ରଭୁଙ୍କର ଏହି ମହଦୈଶ୍ୱର୍ଯ୍ୟ ଦେଖି ପାରିଲେ । ମହାପ୍ରଭୁ ଏ ପର୍ଯ୍ୟନ୍ତ ଆପଣଙ୍କୁ ପ୍ରତ୍ୟକ୍ଷରେ କରୁଣା ପ୍ରକାଶ କରି ନ ଥିଲେହେଁ ପରୋକ୍ଷରେ ମହାକୃପା ପ୍ରକାଶ କରି ଅଛନ୍ତି । ଏହି ବିଷୟକୁ ଲକ୍ଷ୍ୟକରି ଶ୍ରୀଳ କୃଷ୍ଣଦାସ କବିରାଜ ଲେଖି ଅଛନ୍ତି । ଯଥା,—

"ଯା'ରେ କୃପା ତାଁର ସେ ତାଁରେ ଚିହ୍ନିତେ ପାରେ,
କୃପାବିନା ବ୍ରହ୍ମାଦିକ ଜାନିବାରେ ନାରେ ।

ଶ୍ରୀକୃଷ୍ଣ କୃପାରୁ ବିଷୟ ବାସନା କପର ଦୂରୀଭୂତ ହୋଇ ଯାଏ ଶ୍ରୀଳ ରଘୁନାଥ ଦାସ ତାହାର ଅତି ଉତ୍କୃଷ୍ଟ ଉଦାହରଣ । ସେ ତଦାନୀନ୍ତନ

ବିଂଶଲକ୍ଷ ମୁଦ୍ରା ଅଧିକ ଜମିଦାରୀ, ଇନ୍ଦ୍ରସମ ଐଶ୍ୱର୍ଯ୍ୟ ଓ ସୁନ୍ଦରୀ ଭାର୍ଯ୍ୟା ଏ ସମସ୍ତର ମମତା ପରିତ୍ୟାଗପୂର୍ବକ ବୈରାଗୀ ହୋଇ ମହାପ୍ରଭୁଙ୍କର ଚରଣାଶ୍ରୟ କରିଥିଲେ । ସେ ଯେତେବେଳେ ଥରକୁଥର ପଳାଇ ଯାଉଥିଲେ ଓ ତାଙ୍କ ପିତା ଓ ଜ୍ୟେଷ୍ଠ ତାତ ମନୁଷ୍ୟ ପଠାଇ ଧରି-ଆଣୁଥିଲେ ସେତେବେଳେ ତାଙ୍କ ଜନନୀ ନିଜ ସ୍ୱାମୀଙ୍କୁ କହୁଥିଲେ "ତୁମ୍ଭେ ପୁତ୍ରକୁ ବନ୍ଧନ କରି ରଖୁନାହଁ କାହିଁକି ?" ଜ୍ଞାନବାନପିତା ଗୋବର୍ଦ୍ଧନ କହୁଥିଲେ "ଇନ୍ଦ୍ରସମ ଐଶ୍ୱର୍ଯ୍ୟ ଓ ଅପ୍ସରାସମ ସ୍ତ୍ରୀ ଏମାନ ଯେତେବେଳେ ରଘୁନାଥର ମନକୁ ବାନ୍ଧିବାକୁ ସକ୍ଷମ ହେଲେ ନାହିଁ, ମୁଁ କି ସାମାନ୍ୟ ଦଉଡ଼ି ଦ୍ୱାରା ତାକୁ ବାନ୍ଧିପାରେ ? ତାକୁ ଯେ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କ କୃପା ହୋଇଛି । ସେ ତାର ସମସ୍ତ ସଂସାର ବନ୍ଧନ ଛିନ୍ନ କରି ଦେଲେଣି । ତାକୁ ଆଉ ବାନ୍ଧି ରଖିବ କିଏ ? ଯଥା ।—

ଚୈତନ୍ୟ ଚନ୍ଦ୍ରେର କୃପା ହଇୟାଛେ ଇହାରେ,
ଚୈତନ୍ୟ ପ୍ରଭୁର ବାଉଳ କେ ରାଖିତେ ପାରେ ।

( ଚୈଃ ଚଃ ଅନ୍ତ୍ୟ ୬ )

ଶ୍ରୀକୃଷ୍ଣଙ୍କର କୃପା ହେଲେ ଅଚ୍ଛେଦ୍ୟ ବିଷୟବନ୍ଧନ ଏହିରୂପେ ଛିନ୍ନ ହୋଇଯାଏ ।

ଶ୍ରୀକୃଷ୍ଣ ଯାହାକୁ କୃପା କରନ୍ତି ଗୁରୁ ରୂପରେ ଉପସ୍ଥିତ ହୋଇ ତାହାକୁ ଶିକ୍ଷା ଦିଅନ୍ତି ନତୁବା ଅନ୍ତର୍ଯ୍ୟାମୀରୂପରେ ହୃଦରେ ରହି ଶିକ୍ଷା ଦିଅନ୍ତି । ଅନେକ ସମୟରେ ଭକ୍ତ ଚିତ୍ତମଧ୍ୟରେ ଭଗବତ୍ ତତ୍ତ୍ୱ ଜାଣିବାକୁ ଇଚ୍ଛା କଲେ, ଶ୍ରୀକୃଷ୍ଣ ତାକୁ କୃପାକର ସଦ୍‌ଗୁରୁ ମିଳାଇ ଦିଅନ୍ତି ଏବଂ ଅନ୍ତରରେ ନିଜ ତତ୍ତ୍ୱମାନ ଉଦୟ କରାନ୍ତି । ସେଥିପାଇଁ ମହାପ୍ରଭୁ ଶ୍ରୀଳ ସନାତନ ଗୋସ୍ୱାମୀଙ୍କୁ ଶିକ୍ଷା ଦେଇ କହିଅଛନ୍ତି । ଯଥା—

"କୃଷ୍ଣ ଯଦି କୃପା କରେ କୋନ ଭାଗ୍ୟବାନେ
ଗୁରୁ ଅନ୍ତର୍ଯ୍ୟାମୀରୂପେ ଶିଖାୟ ଆପନେ ।"

( ଚୈଃ ଚଃ ମଧ୍ୟ )

ଶ୍ରୀକୃଷ୍ଣ କୃପାର ପରିବାର, ଯେ ଯଦ କାହାକୁ କୃପା କରନ୍ତି ତାହାର ବିଷୟ ବାସନା ସମୂଳେ ଉତ୍ପାଟନ କରନ୍ତି । ମହାପ୍ରଭୁଙ୍କର ଶ୍ରୀମୁଖ ଉକ୍ତି ଏହାର ପ୍ରମାଣ । ଶ୍ରୀଳ ସନାତନ ଗୋସ୍ୱାମୀ ଗୌଡ଼ ବାଦ୍‌ସାହଙ୍କର ମନ୍ତ୍ରୀ ଥିଲେ । ଗୌଡେଶ୍ୱର ଯେତେବେଳେ ଓଡ଼ିଶା ମହାରାଜାଙ୍କ ସହ ଯୁଦ୍ଧାର୍ଥ ପ୍ରସ୍ତୁତ ହୋଇ ସନାତନଙ୍କୁ ସଙ୍ଗରେ ଅଧିବାକୁ ଅଜ୍ଞାକଲେ, ସ୍ୱାଧୀନଚେତା ସନାତନ ସେଥିରେ ସମ୍ମତ ହେଲେ ନାହିଁ । ସନାତନ କହିଲେ "ମହାରାଜ ! ଆପଣ ଶ୍ରୀ ଜଗନ୍ନାଥଙ୍କ ଦେଶସ୍ଥ ରାଜାଙ୍କୁ ଉତ୍ପୀଡ଼ନ କରିବାକୁ ଯାଉଅଛନ୍ତି. ମୁଁ ସେଥିରେ ଯୋଗ ଦେଇ ନପାରେ । ଏଥିରେ ଗୌଡେଶ୍ୱର କ୍ରୁଦ୍ଧହୋଇ ସନାତନଙ୍କୁ ବନ୍ଦଶାଳାରେ ବନ୍ଦୀ କରାଇ ରଖିଲେ ଏବଂ ନିଜେ ସୈନ୍ୟ ସାମନ୍ତ ଘେନ ଦକ୍ଷିଣଦିଗକୁ ଯୁଦ୍ଧଯାତ୍ରା କଲେ । ସନାତନ କାରାରୁଦ୍ଧ ହୋଇ କାରାଧ୍ୟକ୍ଷଙ୍କୁ କହିଲେ ମୁଁ ତୁମ୍ଭଙ୍କୁ ପାଞ୍ଚହଜାର ମୁଦ୍ରା ଦେଉଅଛି, ତୁମ୍ଭେ ମୋତେ ଏ କାରାଗାରରୁ ମୁକ୍ତ କରିଦିଅ । ବାକବନ୍ଧରେ କାରାଧ୍ୟକ୍ଷ ପ୍ରଥମେ ଅସ୍ୱୀକୃତ ହେଲେ, ତତ୍‌ପରେ ସନାତନ ସାତହଜାର ମୁଦ୍ରାର ଲୋଭ ଦେଖାଇ କହିଲେ "ଦେଖ ! ତୁମ୍ଭର କିଛି ଭୟ ନାହିଁ । ମୁଁ ଏ ଦେଶରେ ଆଉ ନରହିବି ନାହିଁ । ଦରବେଶ ହୋଇମକ୍କା ଯିବି, ବାଦ୍‌ସାହ ଆସି ଖୋଜିଲେ ତୁମ୍ଭେ କହିବ, ସନାତନ ଜଳରେ ବୁଡ଼ି କେଉଁଆଡେ ଭାସିଗଲା, ଖୋଜି ଖୋଜି ତାକୁ ପାଇଲୁ ନାହିଁ । ଅର୍ଥଲୋଭରେ କାରାଧ୍ୟକ୍ଷ ରାଜି ହୁଅନ୍ତେ ସନାତନ କାରାମୁକ୍ତ ହୋଇ ବନପଥରେ ପଳାଇଗଲେ । ପଥରେ ଯେତେବେଳେ ତାଙ୍କର ଭଗିନୀପତି ଶ୍ରୀକାନ୍ତଙ୍କ ସହ ଭେଟ ହେଲା ସେତେବେଳେ ସେ ରାଜମନ୍ତ୍ରୀ ସନାତନଙ୍କ ତତ୍‌କାଳୀନ ଅବସ୍ଥାରେ ବଡ ଦୁଃଖିତ ହେଲେ ଏବଂ ଶୀତରୁ ରକ୍ଷା ପାଇବା ନିମିତ୍ତ ଏକ ଭୋଟ କମ୍ବଳ ପ୍ରଦାନ କଲେ । ସନାତନ ତତ୍‌ପରେ ଯାଇ ଶ୍ରୀ କାଶୀଧାମରେ ମହାପ୍ରଭୁଙ୍କୁ ସାକ୍ଷାତ କଲେ । ମହାପ୍ରଭୁ ସନାତନଙ୍କୁ ପାଇ ପରମାନନ୍ଦ ଲାଭକଲେ, ଏବଂ ତାଙ୍କର ଦରବେଶ ବେଶ ଦୂର କରାଇ ନୂତନ ବସ୍ତ୍ର ପିନ୍ଧିବାକୁ ଦେଲେ । ଏହିରୂପେ ସନାତନ କିଛିଦିନ ସେଠାରେ ମହାପ୍ରଭୁଙ୍କ ନିକଟରେ ବାସ କଲେ । ଦିନକର ଅପରାହ୍ଣ

ସନାତନଙ୍କ ଅଙ୍ଗରେ ଭୋଟ କମ୍ବଳ ମହାପ୍ରଭୁଙ୍କୁ ଭଲ ଲାଗିଲା ନାହିଁ । ସନାତନ ତାହା ବୁଝିପାରି ଏକ ଗୌଡ଼ୀୟ ବୈଷ୍ଣବଙ୍କୁ ଭୋଟ କମ୍ବଳ ଦେଇ ତାଙ୍କ କନ୍ଥାନେବାକୁ ପ୍ରାର୍ଥନା କଲେ । ବୈଷ୍ଣବ ପ୍ରଥମେ ପ୍ରାର୍ଥନାକୁ ପରିହାସ ଜନକ ମନେ କରିଥିଲେ, ସନାତନଙ୍କ ମଣିବାର କଥା, ଏତେ ନିଜ ଅଧିକମୂଲ୍ୟ ବସ୍ତୁ ଅନ୍ୟର ସାମାନ୍ୟ ପଦାର୍ଥ ସଙ୍ଗେ ବିନିମୟ କରେ, କିନ୍ତୁ ସନାତନ ତାଙ୍କୁ ଭଲକରି ବୁଝାଇଦେବାରୁ ସେ ଭୋଟ କମ୍ବଳ ନେଇ ନିଜ କନ୍ଥା ଖଣ୍ଡିକ ସନାତନଙ୍କୁ ପ୍ରଦାନ କଲେ । ସେ କନ୍ଥାକୁ ସନାତନଙ୍କ ଅଙ୍ଗରେ ଦେଖି ମହାପ୍ରଭୁ ପଚାରିଲେ "ସନାତନ ! ତୁମ୍ଭର ଭୋଟ କମ୍ବଳ କାହିଁ ? ଏ ପୁରାତନ କନ୍ଥା କେଉଁଠାରୁ ପାଇଲ ।" ସନାତନ କହିଲେ, ମୁଁ ଏହା ଏକ ମୂର୍ତ୍ତି ବୈଷ୍ଣବଙ୍କଠାରୁ ବଦଳାଇ ଆଣିଛି । ମହାପ୍ରଭୁ ସେଥିରେ ପରମାପ୍ରୀତ ଲାଭ କଲେ ଏବଂ କହିଲେ "ସନାତନ ! ଶ୍ରୀକୃଷ୍ଣ କୃପାକର ତୁମ୍ଭର ଭୋଗାବଶେଷ ଖଣ୍ଡନ କରି ଅଛନ୍ତି । ସେତ କୃପାସାଗର, ସେ କାହିଁକି ତୁମ୍ଭର ବ୍ୟାଧିର ଅବଶିଷ୍ଟାଂଶ ରଖିବେ ! ସଦ୍‌ବୈଦ୍ୟ କି ବ୍ୟାଧି ଏକେବାରେ ନିର୍ମୂଳ ନକରି ଅବଶେଷ ରଖି ଛାଡ଼ିଯାଏ । ଯଥା—

" ସେ ( କୃଷ୍ଣ ) କେନ ରଖିବେ ତୋମାର ଶେଷ ବିଷୟ ରୋଗ
ରୋଗ ଖଣ୍ଡି ସଦ୍‌ବୈଦ୍ୟ ନା ରାଖେ ଶେଷ ରୋଗ । "

( ଚୈଃ ଚଃ ମଧ୍ୟ ୨୦ )

ହେ ଭକ୍ତଙ୍କ ଚୂଡ଼ାମଣି ! ଆମ୍ଭେମାନେ ଯେ ସତତ ବିଷୟବାସନାରୂପ ରୋଗରେ ଜର୍ଜରିତ, ତୁମ୍ଭେ ଆମ୍ଭମାନଙ୍କୁ କି ଏ ଭବରୋଗରୁ ଉଦ୍ଧାର କରିବ ନାହିଁ, ନଚେତ୍ ତୁମ୍ଭ ନାମର ଯେ କଳଙ୍କ ହେବ, ତୁମ୍ଭେ ଭକ୍ତପାଇଁ ଅକରଣୀୟ କାର୍ଯ୍ୟ ମଧ୍ୟ କରିଥାଅ, କିନ୍ତୁ ମୁଁ ତ ଭକ୍ତ ନୁହେଁ । ସେ ଦୋଷ ମୋର ନାହିଁ । ତୁମ୍ଭେ ଯେ ଭକ୍ତପାଇଁ କଅଣ ନ କର ଏହି ଜନ୍ମୋକ୍ତ ଦୁଇଟି ଉଦାହରଣ ତାହାର ସାକ୍ଷୀ ।

ଶ୍ରୀମାନ୍ ନବଦ୍ୱୀପ ଧାମରେ ମହାପ୍ରଭୁଙ୍କର ମହାପ୍ରକାଶ ସମୟରେ ସେ ନିଜ ପ୍ରିୟଜନମାନଙ୍କୁ ଏକେ ଏକେ ଡାକି ତାଙ୍କର ପୂର୍ବ ଅନୁଭୂତ

ଦୂରଣ କବର କୃପାମୃତ ସେଚନ କରୁଥିଲେ, ସେ ଏହି ସମୟରେ ପଣ୍ଡିତ ଶ୍ରୀଗଙ୍ଗାଦାସଙ୍କୁ ଡାକି କହିଲେ " ପଣ୍ଡିତ ! ତୁମ୍ଭର ମନେଅଛି ତୁମ୍ଭେ ଯେବେ ଉପଦ୍ରବ ଭୟରେ ସକୁଟୁମ୍ବ ଗୋପନରେ ପଳାଇ ଯାଇଥିଲ, ନୌକା ପାରହେବା ଘାଟରେ ଆସି ଉପସ୍ଥିତ ହୋଇ ଦେଖିଲ ଘାଟରେ ନୌକା ନାହିଁ, ରାତ୍ର ଶେଷ ହେଲା ତଥାପି ନୌକା ମିଳିଲା ନାହିଁ, ତୁମ୍ଭେ ମନୋଦୁଃଖରେ କାନ୍ଦିବାକୁ ଲାଗିଲ, ଭାବିଲ ହାୟ ! ମୋର ଏ ଜୀବନ ଥାଉଁ ? ଯବନ ଆସି ମୋର ପରିବାରର ଅଙ୍ଗ ସ୍ପର୍ଶ କରିବ । ଧିକ ମୋର ଏ ଜୀବନ ରଖିବା ବ୍ୟର୍ଥ, ଏଥି ଭାବି ଗଙ୍ଗାରେ ପ୍ରାଣ ହରାଇବାର ବାସନା କଲ । ସେତେବେଳେ ମୁଁ ତୁମ୍ଭର ମନୋବେଦନା ଅଉ ସହ୍ୟ କରି ନ ପାରି ନାବିକରୂପରେ ଖଣ୍ଡେ ନୌକାଘେନି ଆସି ତୁମ୍ଭ ନିକଟରେ ଉପସ୍ଥିତ ହେଲି, ତୁମ୍ଭେ ମୋତେ ସାଧାରଣ ନାବିକ ଜ୍ଞାନରେ ପାରିତୋଷିକ ଯାଚିଲ ଓ ମୁଁ ତୁମ୍ଭଙ୍କୁ ନୌକାରେ ନଦୀ ପାର କରିଦେଲି, ଯଥା—

ତବେ ଆମି ନୌକା ଲଞା କେୱ୍ୟାଳର ରୂପେ
ଗଙ୍ଗାୟ ବାହିୟା ଯାଇ ତୋମାର ସମୀପେ ।

( ଚୈଃ ଭା ୯ ମ ଅଧ୍ୟାୟ )

ବଦ୍ୟାନଗରର ବତ୍ତ୍ଵବସ୍ତ ଓ ଶ୍ରେଷ୍ଠବିପ୍ରଙ୍କ ବିଷୟ ପୂର୍ବ ଏକ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି, ଶ୍ରୀଗୋପାଳ ଜୀଉ ଶ୍ରେଷ୍ଠବିପ୍ରଙ୍କ ଅନୁରୋଧରେ ଶ୍ରୀବୃନ୍ଦାବନ ଧାମ ପରିତ୍ୟାଗ ପୂର୍ବକ ବିଗ୍ରହରୂପେ ଭକ୍ତଙ୍କ ସଙ୍ଗେ ସଙ୍ଗେ ପଦବ୍ରଜରେ ଆସି ବିଦ୍ୟାନଗରଠାରେ ସାକ୍ଷ୍ୟ ପ୍ରଦାନ କଲେ, ସାକ୍ଷ୍ୟ ପ୍ରଦାନାନ୍ତର ଗୋପାଳ କହିଲେ " ହେ ବିପ୍ରଦ୍ୱୟ ! ତୁମ୍ଭେ ଦୁହେଁ ଜନ୍ମଜନ୍ମର ମୋର କିଙ୍କର; ମୁଁ ତୁମ୍ଭମାନଙ୍କ ସତ୍ୟରକ୍ଷା ନିମନ୍ତେ ଏହି ବିଗ୍ରହ ରୂପେ ଏତେବାଟ ଆସି ସାକ୍ଷ୍ୟଦେଲି, ଏବେ ମୁଁ ବର ଦେବାକୁ ପ୍ରସ୍ତୁତ, ତୁମ୍ଭେ ଦୁହେଁ କି ବର ମାଗୁଛ ମାଗ; ମୁଁ ବର ଦେଇ ବୃନ୍ଦାବନକୁ ଫେରିଯିବି । " ସେମାନେ ଗୋପାଳଙ୍କର ଅନୁଗ୍ରହପାଇ ଓ ପୁଣି ତାର, ଗୋପାଳଙ୍କ ଦର୍ଶନ ସୁଖରୁ ନିଜକୁ ବଞ୍ଚିତ କରିବା ସେମାନେ ମହାକଷ୍ଟକର ମନେକଲେ ଏବଂ କହିଲେ " ପ୍ରଭୁ ! ଯଦି ଆପଣ ବର ଦେବାକୁ ପ୍ରସ୍ତୁତ

ତେବେ ଆମ୍ଭମାନଙ୍କର ଏହି ପ୍ରାର୍ଥନା ଯେ ଆପଣ କୃପାକରି ଏଠାରେ ଚିରକାଳ ବିରାଜମାନ କରନ୍ତୁ । ତେବେ ଆପଣଙ୍କର ଏ କିଙ୍କର ଦ୍ୱୟଙ୍କ ପ୍ରତି ଯେ କୃପା ତାହା ଚିରକାଳ ରହିବ, ଯଥା :—

ଯାବତ ରବେ ତବେ ରହ ଏହିସ୍ଥାନେ,
କିଙ୍କରେର ଦୟା ତବେ ସର୍ବଲୋକ ଜାନେ ”

( ଚୈ: ଚ: ମଧ୍ୟ ୫ )

ଭକ୍ତାନୁରୋଧରେ ଗୋପାଳ ସେହିସ୍ଥାନରେ ରହିଲେ, ସେଠାରୁ କାଳକ୍ରମେ ମହାରାଜା ପୁରୁଷୋତ୍ତମ ଦେବଙ୍କ ସମୟରେ ସେ ବିଗ୍ରହ କଟକକୁ ଆନୀତ ହୁଅନ୍ତି । ବର୍ତ୍ତମାନ ଶ୍ରୀଗୋପାଳ ସତ୍ୟବାଦୀରେ ରହି ନିଜ ଭକ୍ତ ଦ୍ୱୟଙ୍କ ଯଶ ଘୋଷଣା କରୁଅଛନ୍ତି । ଆହା କି ଭକ୍ତବାତ୍ସଲ୍ୟର ପରାକାଷ୍ଠା, ଧନ୍ୟ ପ୍ରଭୁ ଓ ଧନ୍ୟ ତୋର ଭକ୍ତ ।

ଶ୍ରୀକୃଷ୍ଣ କୃପାସାଗର ଓ ସର୍ବଶକ୍ତିସମ୍ପନ୍ନ । ଯଦି କେହି ତାଙ୍କର ଶରଣାପନ୍ନ ହୋଇ କହେ ଯେ ହେ ଶରଣାଗତପାଳକ ଶ୍ରୀକୃଷ୍ଣ ! ମୁଁ ଭବଦୀୟ ଅଭୟପାଦପଙ୍କଜରେ ଶରଣ ନେଲି, ତେବେ ଶ୍ରୀକୃଷ୍ଣ ତାକୁ ମାୟାବନ୍ଧନରୁ ବିମୁକ୍ତ କରନ୍ତି, ଯଥା :—

“ କୃଷ୍ଣ ତୋମାର ହଓ ଯଦି ବଲେ ଏକବାର
ମାୟାବନ୍ଧ ହଇତେ କୃଷ୍ଣ ତାରେ କରେ ପାର ।”

( ଚୈ: ଚ: ମଧ୍ୟ )

କିନ୍ତୁ ସମ୍ପୂର୍ଣ୍ଣଭାବରେ ଶରଣାପନ୍ନ ହେବା ଆବଶ୍ୟକ । ଖାଲି ମୁହଁରେ କହିଲେ ଚଳିବ ନାହିଁ । ଅନ୍ତର୍ଯ୍ୟାମୀ ଭଗବାନ୍ ଅନ୍ତରର ସମସ୍ତ ନିଭୃତପ୍ରଦେଶ ଭେଦ କରି ଦେଖି କୃପା କରିବେ । ପ୍ରତାରଣା ସେଠାରେ ଚଳିବ ନାହିଁ ।

କେବଳ ଯେ ମାୟାରୁ ପାରକରନ୍ତି ଏମନ୍ତ ନୁହେଁ ତାକୁ ନିଜ ତୁଲ୍ୟ ମନେ କରନ୍ତି । ଯଥା ।—

ଶରଣ ଲଇଁଆ କରେ କୃଷ୍ଣେ ଆତ୍ମ ସମର୍ପଣ,
କୃଷ୍ଣ ତାଁରେ କରେ ତତ୍କାଳେ ଆତ୍ମସମ ।

( ଚୈ: ଚ: ମଧ୍ୟ )

ଯଦି କେହି ଭଜନ କୌଣସି କାମନା ନିମନ୍ତ ଶ୍ରୀକୃଷ୍ଣଙ୍କ ଭଜନ କରେ କୃପାହେତୁ ଶ୍ରୀକୃଷ୍ଣ ତାର ବିଷୟ ବାସନା ଛେଦନ କରାଇ ସ୍ୱଚରଣାମୃତ ଦାନ କରନ୍ତି, ଏହି ସମ୍ବନ୍ଧରେ ମହାପ୍ରଭୁଙ୍କର ଶ୍ରୀମୁଖର ଉକ୍ତିହିଁ ପ୍ରମାଣ, ସେ ଶ୍ରୀଳ ସନାତନଙ୍କୁ କହିଅଛନ୍ତି ।

ଅନ୍ୟକାମୀ ଯଦି କରେ କୃଷ୍ଣେର ଭଜନ,
ନା ମାଗିଲେଓ କୃଷ୍ଣ ତାରେ ଦେନ ସ୍ୱଚରଣ ।
କୃଷ୍ଣ କହେ ଆମାଭଜେ ମାଗେ ବିଷୟ ସୁଖ,
ଅମୃତ ଛାଡ଼ି ବିଷମାଗେ ଏତ ବଡ଼ ମୂର୍ଖ ।
ଆମି ବିଜ୍ଞ ଏଇମୂର୍ଖେ ବିଷୟ କେନ ଦିବ,
ସ୍ୱଚରଣାମୃତ ଦିୟା ବିଷୟ ଭୁଲାଇବ ।

( ଚୈଃ ଚଃ ମଧ୍ୟ ୨୨ ପରି )

ଶ୍ରୀକୃଷ୍ଣଙ୍କ କୃପା ଯେ ଲଭକରେ ତାର ମନରେ ଆଉ ବିଷୟ ବାସନା ରହିପାରେ ନାହିଁ; ସେ କୃଷ୍ଣ ବଂଶୀସ୍ୱନ ଶ୍ରବଣ କରି ପ୍ରେମରେ ବିହ୍ୱଳ ହୋଇ ପଡ଼େ । ଶ୍ରୀକୃଷ୍ଣହିଁ ତାହାର ଧ୍ୟାନ, ଶ୍ରୀକୃଷ୍ଣହିଁ ଜ୍ଞାନ ଓ ଶ୍ରୀକୃଷ୍ଣହିଁ ତାହାର ସର୍ବସ୍ୱ ହୋଇ ପଡନ୍ତି । ଶ୍ରୀକୃଷ୍ଣଙ୍କର ସୁମଧୁର ବଂଶୀ ଧ୍ୱନି ଶ୍ରବଣରେ ଗୋପୀମାନଙ୍କର ଯେଉଁ ଦଶା ହୁଏ, କୃଷ୍ଣଗତପ୍ରାଣ ଭକ୍ତର ଶ୍ରୀକୃଷ୍ଣ କୃପାଲାଭରେ ମଧ୍ୟ ସେହି ଦଶା ଆସି ଉପସ୍ଥିତ ହୁଏ । ଗୋପୀମାନଙ୍କର ବଂଶୀରବ ଶ୍ରବଣରେ ଯାହା ଘଟିଥାଏ ତାକୁ ଶ୍ରୀଳ କବିରାଜ ଗୋସ୍ୱାମୀ ଏହି ରୂପେ ବର୍ଣ୍ଣନା କରି ଅଛନ୍ତି । ଯଥା ।—

ପୁରୁଷେ କରେ ଆକର୍ଷଣ     ଆପନା ପିୟାଇତେ ମନ
ଅନ୍ୟ ରସ ସବ ପାସୋରାୟ ।
ସଚେତନ ରହୁ ଦୂରେ     ଅଚେତନ ସଚେତନ କରେ
ତୋମାର ଅଧର ବଡ଼ ବାଜିକର ॥

ଅତଏବ ଏହି ଯାଦୁକରତ୍ୱନିପୁଣ ଶ୍ରୀକୃଷ୍ଣଙ୍କର ପାଖରେ ପଡ଼ିଲେ ଲୋକର ବିଷୟ ଉପରେ ବାସନା ଆଉ ରହି ପାରେ ନାହିଁ ।

ଶ୍ରୀକୃଷ୍ଣ କୃପା ଲାଭ ହେଲେ ଉକ୍ତ ବାସନା ଯେ ଅନ୍ତର୍ହିତ ହୋଇ ଯାଏ ଦିଗ୍ବିଜୟୀ ପଣ୍ଡିତ କେଶବ କାଶ୍ମୀରୀ ଏହାର ଏକ ଉତ୍କୃଷ୍ଟ ଉଦାହରଣ ସ୍ଥଳ । ସେ ସରସ୍ୱତୀଙ୍କ ବରପାଇ ବହୁଦେଶ ଭ୍ରମଣ ପୂର୍ବକ ବଡ଼ ବଡ଼ ମହା ପଣ୍ଡିତଙ୍କୁ ପରାଜୟ କରି ଶ୍ରୀ ନବଦ୍ୱୀପ ଧାମରେ ଆସି ଉପସ୍ଥିତ ହେଲେ । ସେତେବେଳେ ନବଦ୍ୱୀପର ପଣ୍ଡିତ ଗଣ ଭୟରେ ତାଙ୍କ ସହ ତର୍କ କରିବାକୁ କେହି ସାହସୀ ହେଲେ ନାହିଁ । କିନ୍ତୁ ସେ ମହାପ୍ରଭୁଙ୍କର ( ନିମାଇ ପଣ୍ଡିତଙ୍କର ) ସୁଖ୍ୟାତି ଶ୍ରବଣ କରି ତାଙ୍କୁ ପରାଜୟ କରିବା ବାସନାରେ ଶ୍ରୀଗଙ୍ଗା ଘାଟରେ ତାଙ୍କ ସହ ସାକ୍ଷାତ କଲେ । ମହାପ୍ରଭୁ ଅତ୍ୟନ୍ତ ବିନୟ ସହକାରେ ତାଙ୍କୁ ମହା ସମାଦର କରି ବସାଇଲେ ଏବଂ ଶ୍ରୀଗଙ୍ଗା ମାହାତ୍ମ୍ୟ ବର୍ଣ୍ଣନା କରି ଶୁଣାଇ ବାକୁ ତାଙ୍କୁ ପ୍ରାର୍ଥନା କଲେ । ବିଦ୍ୟା ଗର୍ବରେ ପ୍ରମତ୍ତ ଦିଗ୍ବିଜୟୀ ପ୍ରବଳପ୍ରଭଞ୍ଜନ ଗତି କଲାପରି ଏକଶତ ଶ୍ଳୋକ ଆବୃତ୍ତି କଲେ । ମହାପ୍ରଭୁ ସେଥିମଧ୍ୟରୁ ଗୋଟିଏ ଶ୍ଳୋକ ବ୍ୟାଖ୍ୟା କରିବାକୁ ତାଙ୍କୁ ଅନୁରୋଧ କଲେ । ଦିଗ୍ବିଜୟୀ ମନେ କଲେ ଏହାଙ୍କର ( ମହାପ୍ରଭୁଙ୍କର ) ବ୍ୟାକରଣରେ ଖ୍ୟାତି ଶୁଣାଅଛି, ଅଳଙ୍କାର ଶାସ୍ତ୍ର ଏ କି ଜାଣନ୍ତି ; ଏହା ଭାବି ତାଚ୍ଛଲ୍ୟ ଭାବରେ ସେହି ଶ୍ଳୋକଟି ଅଳଙ୍କାରସମ୍ପନ୍ନ ବ୍ୟାଖ୍ୟା କରିବାକୁ ଲାଗିଲେ । ମହାପ୍ରଭୁ ତାଙ୍କର ସେହି ଶ୍ଳୋକରେ ଅଳଙ୍କାରାଦି ସମ୍ବନ୍ଧରେ ଅନେକ ଦୋଷ ଦର୍ଶାଇଲେ । ସେତେବେଳେ ଦିଗ୍ବିଜୟୀଙ୍କ ମୁଖରୁ ଆଉ ବାକ୍ୟ ସ୍ଫୁରିଲା ନାହିଁ । ଶିଷ୍ୟଗଣଙ୍କ ସମକ୍ଷରେ ମହାପ୍ରଭୁ ତାଙ୍କୁ ବିଶେଷ ଲଜ୍ଜା ନଦେଇ କହିଲେ "ପଣ୍ଡିତ ମହାଶୟ ! ଅଦ୍ୟ ବସାକୁ ଫେରି ଯାଆନ୍ତୁ , କାଲି ସେଥିରୁ ଉତ୍ତମ ରୂପେ ଆଲୋଚନା କରାଯିବ ।" ଦିଗ୍ବିଜୟୀ ବିଷାଦରେ ଗୃହକୁ ଫେରି ଗଲେ । ସେ ମନେ ମନେ ଚିନ୍ତା କଲେ ଶ୍ରୀ ସରସ୍ୱତୀଙ୍କ ବରହେତୁ ନ୍ୟାୟ, ସାଂଖ୍ୟ, ପାତଞ୍ଜଳ, ମୀମାଂସା ବେଦାନ୍ତାଦି ଦର୍ଶନ ନିପୁଣ ପଣ୍ଡିତ କେହି ମୋ ସମକ୍ଷରେ ଉତ୍ତର ଦେବାକୁ ସକ୍ଷମ ହୁଅନ୍ତି ନାହିଁ । ନିମାଇ ପଣ୍ଡିତ ଏକ ଶିଶୁ, ଏହାଙ୍କ ବିଦ୍ୟା ବ୍ୟାକରଣ ପର୍ଯ୍ୟନ୍ତ । ସେ ମୋତେ ଆଜି ପରାସ୍ତ କଲା, ଦେଖି ସରସ୍ୱତୀଙ୍କ ଠାରେ ମୋର କି କିଛି ଅପରାଧ

ଘଟି ଅଛି । ଏହି ପରି ଚନ୍ଦ୍ରାକରି ନବଷ୍ଟ ଚତ୍ତ୍ୱରେ ଦେବୀଙ୍କ ମନ୍ତ୍ର ଜପକରି ଶୟନ କଲେ । ସ୍ୱପ୍ନରେ ଦେବୀ ତାଙ୍କୁ ଦର୍ଶନ ଦେଇ କହିଲେ "ଦ୍ୱିଜବର ! ତୁମ୍ଭେ ଯେଉଁ ଯୁବକ ବ୍ରାହ୍ମଣଙ୍କଠାରେ ପରାଜିତ ହେଲ, ସେ କ ସାମାନ୍ୟ ବ୍ରାହ୍ମଣ, ସେ ଯେ ଅନନ୍ତ ବ୍ରହ୍ମାଣ୍ଡର ନାଥ । ମୁଁ ଯେ ତାଙ୍କ ଶ୍ରୀପଦର ଦାସୀ । ତାଙ୍କ ସମ୍ମୁଖରେ ମୋର ଛିଡ଼ା ହେବାର ଶକ୍ତି ନାହିଁ । ତୁମ୍ଭେ ଯେ ମୋର ଆରାଧନା କରିଥିଲ ତାହାର ଉତ୍କୃଷ୍ଟ ଫଳ ସ୍ୱରୂପ ଆଜ ତାଙ୍କ ଶ୍ରୀଚରଣ ଦର୍ଶନ ଲଭିକଲ, ଏବେ ଯାଇ ତାଙ୍କର ଶରଣାପନ୍ନ ହୁଅ ।"

ତହୁଁ ଦିଗ୍‌ବିଜୟୀ ପରଦିନ ଯାଇ ମହାପ୍ରଭୁଙ୍କର ଶରଣାପନ୍ନ ହେଲେ, ଏବଂ ତାଙ୍କ କୃପାଲାଭକରି ସମସ୍ତ ହସ୍ତୀଘୋଟକାଦି ଧନ ସମ୍ପତ୍ତି ବିତରଣ ପୂର୍ବକ ଶ୍ରୀହରିଙ୍କର ଦାସ ହୋଇ ଏକାକୀ ବିଚରଣ କରିବାକୁ ଲାଗିଲେ । ତେଣୁ ଶ୍ରୀଳ ବୃନ୍ଦାବନ ଦାସ କହି ଅଛନ୍ତି ଯଥା ।—

ତାହାନ କୃପାର ସ୍ୱଭାବ ଏଇ ଧର୍ମ
ରାଜ୍ୟ ପଦ ଛାଡ଼ିକରେ ଭିକ୍ଷୁକେରକର୍ମ
କଳିଯୁଗେ ତାର ସାକ୍ଷୀ ଶ୍ରୀ ଦବୀର ଖାସ
ରାଜ୍ୟ ସୁଖ ଛାଡ଼ି ଯାର ଅରଣ୍ୟେ ବିଳାସ ।

"( ଚୈ ଭ ଅଧ )

ନିରନ୍ତର ଭକ୍ତିର ଅନୁଶୀଳନ ଏବଂ ସେଥି ସଙ୍ଗେ ୨ କୃଷ୍ଣକୃପାଭିକ୍ଷା ପୂର୍ବକ ତାହା ପ୍ରାପ୍ତି ନିମିତ୍ତ ଅପେକ୍ଷା କରିବା ଆବଶ୍ୟକ ।

ସାର୍ବଭୌମ ଭଟ୍ଟାଚାର୍ଯ୍ୟ ମହାପ୍ରଭୁଙ୍କର ପ୍ରେମମୂର୍ଚ୍ଛା ସଂଦର୍ଶନ କରି ଏବଂ ତାଙ୍କ ଅଙ୍ଗରେ ଅଷ୍ଟସାତ୍ତ୍ୱିକ ଭାବ ପୂର୍ଣ୍ଣମାତ୍ରାରେ ବିକଶିତ ଦେଖି ମଧ୍ୟ ଯେତେବେଳେ ତାଙ୍କ ଭଗବତ୍ତ୍ୱରେ ଅବିଶ୍ୱାସ କରି ତର୍କ ଉଠାଉଥିଲେ ସେତେବେଳେ ତାଙ୍କର ଭଗ୍ନୀପତି ଗୋପୀନାଥ ଆଚାର୍ଯ୍ୟ ଯଥାର୍ଥ କହିଥିଲେ ଯେ ତୁମ୍ଭଙ୍କୁ ଏ ସମସ୍ତ ତତ୍ତ୍ୱ ବର୍ତ୍ତମାନ ବୁଝାଇବା ଅନର୍ଥକ । ଏହା ଊଷର ଭୂମିରେ ବୀଜ ବପନ ମାତ୍ର । ଯେତେବେଳେ ତୁମ୍ଭେ ତାଙ୍କ କୃପା ଲାଭ କରିବ ତୁମ୍ଭେ ଆପେ ୨ ଏହି ସମସ୍ତ ସିଦ୍ଧାନ୍ତ ସ୍ଥାପନ କରିବ । ଯଥା ।—

"ତୋମାର ଅଗେ ଏତ କଥାର ନାହିଁ ପ୍ରୟୋଜନ,
ଊଷର ଭୂମିତେ ଯେନ ବୀଜେର ରୋପଣ ।
ତୋମାର ଉପରେ ତାଁର କୃପା ଯବେ ହେବେ,
ଏସବ ସିଦ୍ଧାନ୍ତ ତବେ ତୁମିହ କରିବେ ।

( ଚୈଃ ଚଃ ମଧ୍ୟ ୬ ପର )

ପ୍ରକୃତରେ ତାହାହିଁ ଘଟିଥିଲା । ସାର୍ବଭୌମ ଭଟ୍ଟାଚାର୍ଯ୍ୟ ମହାପ୍ରଭୁଙ୍କ କୃପା ପାଇ ତାଙ୍କୁ ସ୍ୱୟଂ ଭଗବାନ ବୋଲି ଜାଣି ତାଙ୍କର ଜଣେ ପ୍ରଧାନ ପାର୍ଷଦ ମଧ୍ୟରେ ଗଣ୍ୟ ହୋଇ ଥିଲେ । ଯଥା ;—

"ସାର୍ବଭୌମ ହୈଲ ପ୍ରଭୁର ଭକ୍ତ ଏକତାନ,
ମହାପ୍ରଭୁ ବିନେ ସେବ୍ୟ ନାହିଁ ଜାନେ ଅନ ।
ଶ୍ରୀକୃଷ୍ଣଚୈତନ୍ୟ ଶଚୀସୁତ ଗୁଣଧାମ,
ଏଇ ଧ୍ୟାନ ଏଇ ଜପ ଲୟ ଏଇ ନାମ ।"

( ଚୈଃ ଚଃ ମଧ୍ୟ ୬ ପର )



୯। କୃଷ୍ଣପ୍ରେମ ।

## ସପ୍ତଦଶ ପରିଚ୍ଛେଦ ।

କୃଷ୍ଣପ୍ରେମଠାରେ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚାରି ପୁରୁଷାର୍ଥ ତୃଣତୁଲ୍ୟ । କୃଷ୍ଣପ୍ରେମ ପଞ୍ଚମ ପୁରୁଷାର୍ଥ ଏବଂ ତାହା ଜୀବର ଚରମ ଲକ୍ଷ୍ୟ । ମହାପ୍ରଭୁ ସ୍ୱୟଂ ଶ୍ରୀମୁଖରେ ପ୍ରେମ ସମ୍ବନ୍ଧରେ କହି ଅଛନ୍ତି । ଯଥା ;—

କୃଷ୍ଣ ବିଷୟକ ପ୍ରେମା ପରମ ପୁରୁଷାର୍ଥ,
ଯାର ଆଗେ ତୃଣ ତୁଲ୍ୟ ଚାରି ପୁରୁଷାର୍ଥ ।
ପଞ୍ଚମ ପୁରୁଷାର୍ଥ ପ୍ରେମାନନ୍ଦାମୃତସିନ୍ଧୁ,
ମୋକ୍ଷାଦି ଆନନ୍ଦ ଯାର ନହେ ଏକ ବିନ୍ଦୁ ।

( ଚୈଃ ଚଃ ଅନ୍ତ )

ମହାପ୍ରଭୁ ଶ୍ରୀଲ ସନାତନ ଗୋସ୍ୱାମୀଙ୍କୁ ମଧ୍ୟ ପ୍ରେମ ସେ ମୂଳ ପ୍ରୟୋଜନ ଏହା ଶିକ୍ଷା ଦେଇ ଅଛନ୍ତି । ଯଥା;—

ଆମି ସମ୍ବନ୍ଧତତ୍ତ୍ୱ ଆମାର ଜ୍ଞାନ ବିଜ୍ଞାନ,
ଆମା ପାଇତେ ସାଧନ ଭକ୍ତି ଅଭିଧେୟ ନାମ ।
ସାଧନେର ଫଳ ପ୍ରେମ ମୂଳ ପ୍ରୟୋଜନ,
ସେଇପ୍ରେମେ ପାୟ ଜୀବ ଆମାର ସେବନ ।

ଚୈଃ ଚଃ ମଧ୍ୟ )

କୃଷ୍ଣପ୍ରେମ ଲାଭ ହେଲେ ଭକ୍ତ ଉନ୍ମତ୍ତ ପ୍ରାୟ ହସେ, କାନ୍ଦେ, ନାଚେ, ଗାଏ ଏବଂ ଏଣେ ତେଣେ ଧାବମାନ ହୁଏ । ତାହାର ବାହ୍ୟଜ୍ଞାନ ନଥାଏ ।

କୃଷ୍ଣପ୍ରେମ ଯେ କି ପଦାର୍ଥ, ଏହା ବୁଝାଇବା ମୋର ଶକ୍ତିର ବହିର୍ଭୂତ, ଶ୍ରୀଲ କବିରାଜ ଗୋସ୍ୱାମୀଙ୍କ ଗ୍ରନ୍ଥରାଜ ଶ୍ରୀ ଚୈତନ୍ୟଚରିତାମୃତରୁ ମହାପ୍ରଭୁଙ୍କ ଉକ୍ତି ଉଦ୍ଧୃତ କଲି । ଯଥା :—

କୋନ ଭାଗ୍ୟେ କୋନ ଜୀବେର ଶ୍ରଦ୍ଧା ଯଦି ହୟ,
ତବେ ସେଇ ଜୀବ ସାଧୁସଙ୍ଗ କରୟ ।
ସାଧୁସଙ୍ଗ ହୈତେ ହୟ ଶ୍ରବଣ କୀର୍ତ୍ତନ,
ସାଧନ ଭକ୍ତ୍ୟେ ହୟ ସର୍ବାନର୍ଥ ନିବର୍ତ୍ତନ ।
ଅନର୍ଥ ନିବୃତ୍ତି ହୈଲେ ଭକ୍ତି ନିଷ୍ଠା ହୟ,
ନିଷ୍ଠା ହୈତେ ଶ୍ରବଣାଦ୍ୟେ ରୁଚି ଉପଜୟ ।
ରୁଚି ହୈତେ ହୟ ତବେ ଆସକ୍ତି ପ୍ରଚୁର,
ଆସକ୍ତି ହୈତେ ଚିତ୍ତେ ଜନ୍ମେ କୃଷ୍ଣେ ରତ୍ୟଙ୍କୁର ।
ସେଇ ରତି ଗାଢ଼ ହୈଲେ ଧରେ ପ୍ରେମ ନାମ,
ସେଇ ପ୍ରେମା ପ୍ରୟୋଜନ ସର୍ବାନନ୍ଦ ଧାମ ।

ଏଥିରୁ ବେଶ୍ ବୁଝାଯାଏ, କୃଷ୍ଣପ୍ରେମ କେଡ଼େ ଉଚ୍ଚରେ । ପ୍ରଥମ ଶ୍ରଦ୍ଧାଠାରୁ ଆରମ୍ଭ କରି କେତେ ପାବଚ୍ଛ ଉଠିଲେ କୃଷ୍ଣପ୍ରେମ ଲାଭ ହେବ । ସେ କଥ ମୁହଁର କଥା ନୁହେଁ, ଅନର୍ଥ ନିବୃତ୍ତି ପର୍ଯ୍ୟନ୍ତ ଯିବାତ ଜୀବ ପକ୍ଷରେ ମହା କଠିନ । କୃଷ୍ଣପ୍ରେମ ଲାଭତ ବହୁତ ଦୂରର କଥା । କୃଷ୍ଣରେ ରତି ଗାଢ଼ ହେଲେ ତାକୁ ପ୍ରେମ ବୋଲାଯାଏ । ସେହି ଗାଢ଼ରତି ବା ପ୍ରେମର ନାମ ସ୍ଥାୟୀ ଭାବ । ଯଥା :—

କୃଷ୍ଣେର ରତି ଗାଢ଼ ହୈଲେ ପ୍ରେମ ଅଭିଧାନ,
କୃଷ୍ଣ ଭକ୍ତି ରସେର ସେଇ ସ୍ଥାୟୀଭାବ ନାମ ।

ସ୍ଥାୟୀ ଓ ବ୍ୟଭିଚାରୀ ପ୍ରଭୃତି ଶ୍ରୀରୂପ ଗୋସ୍ୱାମୀ ପାଦ ତାଙ୍କ କୃତ ଭକ୍ତିରସାମୃତସିନ୍ଧୁ ଗ୍ରନ୍ଥରେ ଉତ୍ତମ ରୂପେ ବୁଝାଇ ଅଛନ୍ତି । ସେ ସବୁ ମୋର ସୀମାର ବହିର୍ଭୂତ । ଅତଏବ ତାହା ବୁଝାଇବାକୁ ଚେଷ୍ଟା କଲି ବୃଥା ।

ଏହି ଯେ ମାନବର ପ୍ରଧାନତମ ଲକ୍ଷ୍ୟ କୃଷ୍ଣପ୍ରେମ, ତାହା ନିତ୍ୟସିଦ୍ଧ । ସାଧନ ଦ୍ୱାରା ଏହା କେହି ନୂତନ ସୃଷ୍ଟି କରଇ ନପାରେ । କେବଳ ସାଧନ ଦ୍ୱାରା ମନର ମଳ ଅପସାରିତ କରି ଦେଲେ ନିତ୍ୟସିଦ୍ଧ କୃଷ୍ଣପ୍ରେମ ନିଜେ ଉଜ୍ଜ୍ୱଳ ହୋଇ ପ୍ରକଟିତ ହୁଏ । ତେଣୁ ମହାପ୍ରଭୁ ଶ୍ରୀଲ ସନାତନ ଗୋସ୍ୱାମୀଙ୍କୁ କହି ଅଛନ୍ତି । ଯଥା ;—

"ନିତ୍ୟସିଦ୍ଧ କୃଷ୍ଣପ୍ରେମ ସାଧ୍ୟ କଭୁ ନୟ,
ଶ୍ରବଣାଦି ଶୁଦ୍ଧ ଚିତ୍ତେ କରୟେ ଉଦୟ ।"

ମହାପ୍ରଭୁ ରାଧାପ୍ରେମରେ ଋଣୀ ହୋଇ ସେ ଋଣ ପରିଶୋଧ କରିବା ନିମିତ୍ତ ରାଧାଭାବ ବିଭାବିତ ଦେହ ଧାରଣ କରି ଶ୍ରୀ ଗୌରାଙ୍ଗ ରୂପରେ ଅବତୀର୍ଣ୍ଣ ହୋଇ ଥିଲେ । ତେଣୁ ସେ ଦିବା ନିଶି, ବିଶେଷତଃ ତାଙ୍କ ପ୍ରକଟ ଲୀଳାର ଶେଷ ବ ୧୮ ର୍ଷ ସେ କେବଳ ପ୍ରେମାସ୍ୱାଦନ କରୁଥିଲେ । ସେତେବେଳେ ତାଙ୍କର ଦୁଇଗୋଟି ପ୍ରଧାନ ବନ୍ଧୁ ଥିଲେ । ସ୍ୱରୂପ ଓ ରାୟ ରାମାନନ୍ଦ ।

ରାଧାଭାବରେ ଉନ୍ମାଦିନୀ ପ୍ରାୟ ମହାପ୍ରଭୁ କେତେବେଳେ କରଦ୍ୱାରା ସେମାନଙ୍କ ଗଳା ବେଷ୍ଟନ କରି କାନ୍ଦି ଅଛନ୍ତି । କେତେବେଳେ କହୁଅଛନ୍ତି, ତୁମ୍ଭେମାନେ ମୋର ମରମୀ ସଖୀ, ମୋର ଏ କଷ୍ଟ କି ତୁମ୍ଭେମାନେ ମୋଚନ କରିବ ନାହିଁ । ହାୟ ! ମୁଁ ସ୍ୱପ୍ନରେ ବର୍ତ୍ତମାନ କି ଦେଖୁଥିଲି, ମୋର ପ୍ରାଣନାଥ ବଂଶୀ ଧାରଣ କରି କି ଯେ ମୋ ଆଗରେ ଆସି ଛିଡା ହୋଇ ଥିଲେ । ହାୟ ! ସେ ଚାଲି କାହିଁ ପଳାଇ ଗଲେ । ପୁଣି କ୍ଷଣେ ଚୈତନ୍ୟ ଲାଭକରି କହୁଅଛନ୍ତି, ଏକି ମୁଁ କି ପ୍ରଳାପ କରୁଥିଲି ମୁଁ କି ସେହି କୃଷ୍ଣଚୈତନ୍ୟ ନା ଅପର କେହି । ହେ ସ୍ୱରୂପ ! ହେ ରାମନନ୍ଦ । ସତ କହିଲ ମୁଁ କି ପ୍ରଳାପ କରୁଥିଲି ? ହାୟ ! କୃଷ୍ଣପ୍ରେମର ଗନ୍ଧ ମୋଠାରେ ନାହିଁ । ଏହିରୂପ ପ୍ରଳାପ କରୁଁ କରୁଁ କୃଷ୍ଣପ୍ରେମର ଲକ୍ଷଣ ମାନ ବ୍ୟକ୍ତ କରି କହୁ ଅଛନ୍ତି ।

ଅକୈତବ କୃଷ୍ଣପ୍ରେମ, ଯେହ୍ନ ଜାମ୍ବୁନଦ ହେମ
ସେହି ପ୍ରେମା ନୃଲୋକେ ନାହୟ,

ଯଦି ହୟ ତାର ଯୋଗ, ନାହୟ ତବେ ବିୟୋଗ
ବିୟୋଗେତେ କେହ ନା ଜୀୟୟେ ।
( ଚୈଃ ଚଃ ମଧ୍ୟ )

ଅର୍ଥାତ କୃଷ୍ଣ ପ୍ରେମ ବିଶୁଦ୍ଧ, ନିର୍ମଳ । ଏଥିରେ କୈତବର ଗନ୍ଧମାତ୍ର ନାହିଁ । ସେ ପ୍ରେମ ଭକ୍ତଙ୍କଠାରେ ସହଜେ ଜାତ ହୁଏ ନାହିଁ । ଯଦି ସୌଭାଗ୍ୟ ଫଳେ କେବେ ଉଦୟ ହୁଏ ତେବେ ତାହା ଆଉ ବିଲୁପ୍ତ ହୁଏ ନାହିଁ, କାରଣ ଯେ ଥରେ ସେ ପ୍ରେମ ଅନୁଭବ କରିବ, ସେ ଯଦି ପୁନର୍ବାର ସେ ପ୍ରେମରୁ ବଞ୍ଚିତ ହୁଏ ତେବେ ସେ ଆଉ ପ୍ରାଣଧାରଣ କରି ରହିପାରେ ନାହିଁ ଏହି ପ୍ରେମର ସ୍ୱରୂପ କିଛି ମହାପ୍ରଭୁଙ୍କ ନିଜ ଶିକ୍ଷାରେ ଆସ୍ୱାଦନ କରାଯାଉ । ମହାପ୍ରଭୁ ମହାଭାବ୍ୟବାନ୍ ଶ୍ରୀଳ ସ୍ୱରୂପ ଓ ଶ୍ରୀରାୟ ରାମାନନ୍ଦଙ୍କୁ ସମ୍ବୋଧନ ପୂର୍ବକ ପ୍ରଲାପମୟ ବାକ୍ୟରେ କହୁ ଅଛନ୍ତି ।

କୃଷ୍ଣ ପ୍ରେମ ସୁନିର୍ମଳ, ଯେହ୍ନ ଶୁଦ୍ଧ ଗଙ୍ଗାଜଳ
ସେଇ ପ୍ରେମ ଅମୃତର ସିନ୍ଧୁ ।
ନିର୍ମଳ ସେ ଅନୁରାଗେ, ନା ଲୁକାୟ ଅନ୍ୟ ଦାଗେ
ଶୁକ୍ଳ ବସ୍ତ୍ରେ ଯୈଛେ ମସୀବିନ୍ଦୁ ।
ଶୁଦ୍ଧପ୍ରେମ ସୁଖସିନ୍ଧୁ, ପାଇ ତାର ଏକ ବିନ୍ଦୁ
ସେଇ ବିନ୍ଦୁ ଜଗତ ଡୁବାୟ
କହିବାର ଯୋଗ୍ୟ ନୟ, ତଥାପି ବାଉଲେ କୟ
କହିଲେ ବା କେବା ପାତିଆୟ
( ଚୈଃ ଚଃ ମଧ୍ୟ )

ଆହା ! ଯେ ପ୍ରେମର ଏକ ବିନ୍ଦୁ ଜଗତକୁ ବୁଡାଇ ପାରେ, ସେ ଯେ କି ବସ୍ତୁ ତାହା କିଏ ବୁଝାଇ ପାରିବ । ଯାହା ଆସ୍ୱାଦନରେ କୋଟି ବ୍ରହ୍ମାଣ୍ଡର ଅଧୀଶ୍ୱର ସ୍ୱୟଂ ମହାପ୍ରଭୁ ଉନ୍ମତ୍ତ ପ୍ରାୟ ହୋଇ ଅଛନ୍ତି । ଅଧିକ କଥା ଅବା କଣ ।

ସେହି ପ୍ରେମ ଲକ୍ଷଣ ବର୍ଣ୍ଣନ କରି ମହାପ୍ରଭୁ କହୁ ଅଛନ୍ତି
ଏଇ ପ୍ରେମାର ଆସ୍ୱାଦନ ତପ୍ତ ଇକ୍ଷୁ ଚର୍ବଣ,

ମୁଖ ଜ୍ୱଳେ ନା ଯାଏ ତ୍ୟଜନ,
ସେଇ ପ୍ରେମା ଯାର ମନେ ତାର ବିକ୍ରମ ସେଇ ଜାନେ
ବିଷାମୃତେ ଏକତ୍ର ମିଳନ ।

( ଚୈଃ ଚଃ ମଧ୍ୟ ୨ ପଃ )

ଅନୁଭବହୀନ ଏ ପ୍ରେମର ମାଧୁର୍ଯ୍ୟ କେହି ବୁଝି ପାରିବେ ନାହିଁ । ଏ ପ୍ରେମଜନିତ ବିରହ କାଳରେ ଯେଉଁ ଅସହ୍ୟ ପୀଡ଼ା ଜାତ ହୁଏ ତାହା ଶତ ଶତ ତୀବ୍ର କାଳକୂଟର ବିଷଜ୍ୱାଳାଠାରୁ ଅଧିକତର ପୀଡ଼ାଦାୟୀ ହୁଏ, ଏବଂ ପ୍ରେମଜନିତ ମିଳନରେ ଯେଉଁ ଆନନ୍ଦ ଜାତ ହୁଏ ତାହା କୋଟି ଅମୃତାସ୍ୱାଦନର ଆନନ୍ଦକୁ ତୁଚ୍ଛ କରିଦିଏ ।

ଏହି ଯେ ଅପୂର୍ବ ପ୍ରେମ ଏଥିରେ ଶ୍ରୀକୃଷ୍ଣ ଚିରକାଳପାଇଁ ଭକ୍ତର ବଶ ହୋଇ ରହନ୍ତି । କର୍ମ, ଯୋଗ କିମ୍ବା ଜ୍ଞାନ ଏଥିରେ କୃଷ୍ଣ କଦାପି ଭକ୍ତର ବଶ ହୁଅନ୍ତି ନାହିଁ । କେବଳ ପ୍ରେମ ବଳରେ ସେ ବଶ । ଯଥା—

ଜ୍ଞାନ କର୍ମ ଯୋଗ ଧର୍ମେ ନହେ କୃଷ୍ଣ ବଶ,
କୃଷ୍ଣ ବଶହେତୁ ଏକ କୃଷ୍ଣ ପ୍ରେମରସ ।

( ଚୈଃ ଚଃ ଆଦି )

କୃଷ୍ଣପ୍ରେମରେ ଯେଉଁ ଲୋକ ପ୍ରେମିକ ତାହାର ନିଜ ସୁଖ ଦୁଃଖ ପ୍ରତି ଲକ୍ଷ୍ୟ ନ ଥାଏ । ସେ କେବଳ କୃଷ୍ଣ ସୁଖାଭିଳାଷୀ । କୃଷ୍ଣଙ୍କର କିପରି ସୁଖ ଜାତ ହେଉ ଏହି ଭାବନାରେ ତାହାର ହୃଦୟ ସତତ ପୂର୍ଣ୍ଣ । ସେ ଲେଶମାତ୍ର ନିଜସୁଖ ବାଞ୍ଛା ନ କରି ଏବଂ ନିଜର ବିପଦକଷ୍ଟ ପ୍ରତି ଭ୍ରୂକ୍ଷେପ ନ କରି କୃଷ୍ଣସୁଖାଭିଳାଷରେ ସମସ୍ତ କାର୍ଯ୍ୟ କରନ୍ତି । ଶ୍ରୀଲ ମାଧବେନ୍ଦ୍ର ପୁରୀ ଶ୍ରୀଗୋପାଳଙ୍କ ସ୍ୱପ୍ନାଦେଶକ୍ରମେ ଯେତେବେଳେ ଶ୍ରୀବୃନ୍ଦାବନରୁ ଶ୍ରୀପୁରୁଷୋତ୍ତମକୁ ପଦ ବ୍ରଜରେ ଆସି ଚନ୍ଦନ ନେଇ ଶ୍ରୀବୃନ୍ଦାବନକୁ ଫେରିଯାଉଥିଲେ, ଦୂରପଥ, ମ୍ଳେଚ୍ଛଦେଶ, ବଟମାର୍ଗ ହାତରେ କଉଡ଼ି ନାହିଁ, ବିଶେଷ ନଦୀ ନାଳ ପାର ହେବାକୁ ହେବ ଏ ସମସ୍ତ ବାଧା-ସତ୍ତ୍ୱେ ତାଙ୍କର ଲେଶମାତ୍ର ଭ୍ରୂକ୍ଷେପ ନ ଥିଲା । ଗୋପାଳ ମୋର ଚନ୍ଦନ ଲେପିବେ, ତାଙ୍କର ତାପିତ ଅଙ୍ଗ ଶୀତଳ ହେବ ଏହି ଆନନ୍ଦରେ ବିହ୍ୱଳ ।

ତାଙ୍କର ସେହି ଅବସ୍ଥାକୁ, ଲକ୍ଷ୍ୟକରି ଶ୍ରୀଲ କବିରାଜ ଗୋସ୍ୱାମୀ ଲେଖି-ଅଛନ୍ତି ; ଯଥା—

"ସ୍ୱଗାତ୍ର ପ୍ରେମେର ଏଇ ସ୍ୱଭାବ ଆଚାର
ନିଜ ଦୁଃଖ ବିଘ୍ନାଦିର ନା କରେ ବିଚାର ।"

( ଚୈଃ ଚଃ ମଧ୍ୟ ୪ )

ପ୍ରେମରେ ଭକ୍ତ ଯଦି କୌଣସି ଅକରଣୀୟ କାର୍ଯ୍ୟ କରେ ଅଥବା ଭଗବାନଙ୍କ ଶ୍ରୀମୁଖର ଆଜ୍ଞାପାଳନ ନକରି ବିପରୀତ ଆଚରଣ କରେ, ପ୍ରେମବଶ ଭଗବାନ ସେଥିରେ ବିରକ୍ତ ନ ହୋଇ ବରଂ ନିଜ ଆଜ୍ଞା ପ୍ରତି-ପାଳନଠାରୁ ଆଜ୍ଞାଭଙ୍ଗ କାର୍ଯ୍ୟରେ ଅଧିକତର ସୁଖଲାଭ କରନ୍ତି । କିନ୍ତୁ ସେଥିପାଇଁ ପ୍ରତ୍ୟବାୟ ହେବା ଅସମ୍ଭବ । ଅତଏବ ଘନିଷ୍ଠ ପ୍ରଣୟ ନଥିଲେ ଭକ୍ତ ସେରୂପ ଆଜ୍ଞାଲଙ୍ଘନ କାର୍ଯ୍ୟ କରି ନପାରେ । ଶ୍ରୀମନ୍ ନିତ୍ୟା-ନନ୍ଦ ପ୍ରଭୁଙ୍କୁ ମହାପ୍ରଭୁ ଗୌଡ଼ ଦେଶରେ ହରି ପ୍ରେମ ପ୍ରଚାର କରିବାକୁ ଆଦେଶ କରିଥିଲେ ଏବଂ କହିଥିଲେ "ଶ୍ରୀପାଦ ! ଅଉ ଆପଣଙ୍କର ମଦର୍ଶନ ନିମିତ୍ତ ଶ୍ରୀପୁରୁଷୋତ୍ତମକୁ ଆସିବାର ଆବଶ୍ୟକ ନାହିଁ ।" କିନ୍ତୁ ପ୍ରଭୁ ଶ୍ରୀନିତ୍ୟାନନ୍ଦ ପ୍ରେମାଧିକ୍ୟରେ ମହାପ୍ରଭୁଙ୍କ ଆଜ୍ଞା ଲଙ୍ଘନ କରି ମଧ୍ୟେ୨ ଶ୍ରୀପୁରୁଷୋତ୍ତମକୁ ଆସୁଥିଲେ । ସେଥିରେ ମହାପ୍ରଭୁ ନିତ୍ୟାନନ୍ଦଙ୍କ ପ୍ରତି ଅସନ୍ତୁଷ୍ଟ ନ ହୋଇ ବରଂ ପ୍ରୀତି ଲାଭ କରୁଥିଲେ, ସେଥିପାଇଁ ଶ୍ରୀଲ କବିରାଜ ଗୋସ୍ୱାମୀ କହି ଅଛନ୍ତି । ଯଥା—

"ଅନୁରାଗେର ଲକ୍ଷଣ ଏଇ ବିଧି ନାହିଁ ମାନେ,
ତାଁର ଆଜ୍ଞା ଭାଙ୍ଗି ତାଁର ସଙ୍ଗେର କାରଣେ ।
ରାସେ ଗୋପୀକେ ଘରେ ଯାଇତେ କୃଷ୍ଣ ଆଜ୍ଞାଦିଲ
ତାଁର ଆଜ୍ଞା ଭାଙ୍ଗି ତାଁର ସଙ୍ଗେ ସେ ରହିଲ ।
ଆଜ୍ଞାର ପାଳନେ କୃଷ୍ଣେର ଯତ ପରିତୋଷ,
ପ୍ରେମେ ଆଜ୍ଞା ଭାଙ୍ଗିଲେ ହୟ କୋଟି ସୁଖ ପୋଷ ॥"

( ଚୈଃ ଚଃ ଅନ୍ତ୍ୟ )

ଶ୍ରୀ ଗଦାଧର ପଣ୍ଡିତ ମହାପ୍ରଭୁଙ୍କ ଅଜ୍ଞା ଲଙ୍ଘନ ପୂର୍ବକ ତାଙ୍କ ସଙ୍ଗେ ଶ୍ରୀବୃନ୍ଦାବନକୁ ଯିବାକୁ ଲଗିଲେ, ଏବଂ କଟକଠାରୁ ମହାପ୍ରଭୁ ତାଙ୍କୁ ମଧୁର ଉପଦେଶ ଦେଇ ଫେରାଇ ଦେଲେ ଏହା ଏଠାରେ ଉଦାହରଣ ସ୍ୱରୂପ ଉଲ୍ଲେଖ ଯୋଗ୍ୟ ।

ପଣ୍ଡିତ ଶ୍ରୀ ଗଦାଧର ମହାପ୍ରଭୁଙ୍କର ଅତୀବ ପ୍ରଶସ୍ତ ପାତ୍ର । ମହାପ୍ରଭୁ ଯେତେବେଳେ ଶ୍ରୀ ପୁରୁଷୋତ୍ତମରୁ ଶ୍ରୀବୃନ୍ଦାବନକୁ ଯାତ୍ରା କରିବାକୁ ବାହାରିଲେ ଗଦାଧର କହିଲେ "ପ୍ରଭୋ ! ମୁଁ ଅପଣଙ୍କୁ ଛାଡ଼ି ଏଠାରେ ରହି ନ ପାରେଁ, ମୋତେ ଅପଣଙ୍କ ସଙ୍ଗରେ ଯିବାକୁ ଅଜ୍ଞା ପ୍ରଦାନ କରନ୍ତୁ ।" ମହାପ୍ରଭୁ କହିଲେ " ଗଦାଧର ! ତୁମ୍ଭେ ଯେଉଁ ନିୟମରେ ସନ୍ନ୍ୟାସ ଗ୍ରହଣ କରିଅଛ ସେଥିର ବିଧି ତୁମ୍ଭଙ୍କୁ ସର୍ବଦା ଶ୍ରୀପୁରୁଷୋତ୍ତମରେ ରହିବାକୁ ହେବ, ମୋ ସଙ୍ଗସୁଖ ନିମିତ୍ତ ସେ ବିଧି ଖଣ୍ଡନ କରିବାକ ତୁମ୍ଭ ପକ୍ଷରେ ଉଚିତ ? ଗଦାଧର ପଣ୍ଡିତ କହିଲେ " ପ୍ରଭୋ ! ଅପଣ ଯେଉଁଠାରେ ଥିବେମାନ ତାହିଁ ହିଁ ନୀଳାଚଳ ନୁହେ, ହେଉ ନୈଷ ସନ୍ନ୍ୟାସ ବ୍ରତ ପଛେ ମୋର ଭଙ୍ଗହେଉ ମୁଁ ଅପଣଙ୍କୁ ଛାଡ଼ି ରହି ପାରିବ ନାହିଁ ।"

ମହାପ୍ରଭୁ କହିଲେ "ଗଦାଧର ତୁମ୍ଭେ ଶ୍ରୀଗୋପୀନାଥଙ୍କର ସେବକ । ସେ ବିଗ୍ରହ ସେବା ଛାଡ଼ି ଯିବା ତୁମ୍ଭ ପକ୍ଷରେ ଉଚିତ କି ? ଏହିଠାରେ ରହି ଶ୍ରୀ ଗୋପୀନାଥଙ୍କ ଚରଣ ସେବାକର, ପରମ ସୁଖ ଲାଭ ହେବ ।" ଗଦାଧର କହିଲେ "ପ୍ରଭୋ ! ଭବଦୀୟ ପଦ ଦର୍ଶନରେ କୋଟି ସେବାର ଫଳ ମିଳିବ ।" ମହାପ୍ରଭୁ କହିଲେ "ହେଉ ତୁମ୍ଭେତ ମୋ ପାଇଁ ଶ୍ରୀ ଗୋପିନାଥ ଜୀଉଙ୍କ ସେବା ପରିତ୍ୟାଗ କରିବ, କିନ୍ତୁ ସେଥିରେ ସେ ମୋର ଦୋଷ ହେବ ।" ଗଦାଧର କହିଲେ " ଅପଣଙ୍କ ସଙ୍ଗରେ ଚଲେ ଯଦି କେହି ଅପଣଙ୍କର ଦୋଷ ଦେବେ ତେବେ ମୁଁ ଅପଣଙ୍କ ସଙ୍ଗେ ଯିବି ନାହିଁ । ଏକାକୀ ନବଦ୍ୱୀପରେ ଜନନୀ ଶ୍ରୀଶଚୀଦେବୀଙ୍କ ଦର୍ଶନକୁ ଯିବି ଏବଂ ମୁଁ ଯେ ଶ୍ରୀଗୋପୀନାଥଙ୍କ ସେବା ଛାଡ଼ିବି ନାହିଁ ପ୍ରତିଜ୍ଞା କରିଥିଲି ଏହା ପରିତ୍ୟାଗ କରୁଅଛି, ଏ ଦୋଷତ ମୋର, ଏହାତ ଅପଣଙ୍କର ଦୋଷ ନୁହେ ।" ଏହିରୂପ ନାନା ଯୁକ୍ତି କରି ପ୍ରଭୁଙ୍କ ସଙ୍ଗରେ ନ ଯାଇ ନିଜେ ସ୍ୱତନ୍ତ୍ର

... ଯିବାକୁ ଲାଗିଲେ । କଟକ ନଠରେ ମହାପ୍ରଭୁ ଗଦାଧରଙ୍କ ନିକଟକୁ ...ଲେ ଏବଂ ...ଙ୍କର ହସ୍ତ ଧାରଣ ପୂର୍ବକ, କହିଲେ, "ଗଦାଧର ? ଶ୍ରୀଗୋପୀନାଥ ଜଉଙ୍କ ସେବା ଛାଡ଼ି ଯେ ଏତେଦୂର ଆସିଲ, ଏବେତ ତୁମ୍ଭ... ପ୍ରତିଜ୍ଞା ଓ ସେବା ଛାଡ଼ିବାର ଅଭିପ୍ରାୟ ସିଦ୍ଧ ହେଲା, କିନ୍ତୁ ମୋ ସଙ୍ଗ-... ଆସିବା ଦ୍ୱାରା ତୁମ୍ଭେ ନିଜ ସୁଖ ଗୃହି ଅଛ, ଏଥିରେ ତୁମ୍ଭର ଧର୍ମ-ହାନି ... ଓ ମୋର ମନରେ କଷ୍ଟ ହେଉଅଛି, ଅତଏବ ତୁମ୍ଭେ ଏଠାରୁ ଶ୍ରୀ... ଫେରି ଯାଅ, ମୋ ଶପଥ, ଏଥିରେ ଯେବେ ଅନ୍ୟଥା କ... ...ପରେ ଗଦାଧର ଆଉ କଣ କହିବେ, ସେ ମହାପ୍ରଭୁଙ୍କର ଏ ...ଙ୍କରେ ମୂର୍ଚ୍ଛିତ ହୋଇ ପଡ଼ିଲେ, ଏଣେ ମହାପ୍ରଭୁ ନୌକାରୋହଣ ପୂର୍ବକ ଚଟକାପୁଳା ନଦୀ ପାରହେବାକୁ ଲାଗିଲେ ଏବଂ ଗଦାଧରଙ୍କୁ ସାନ୍ତ୍ୱନା କରାଇ ଶ୍ରୀପୁରୁଷୋତ୍ତମକୁ ଫେରାଇ ନେବାକୁ ଶ୍ରୀସାର୍ବଭୌମ-ଭଟ୍ଟାଚାର୍ଯ୍ୟଙ୍କୁ ଆଦେଶ କଲେ, ଗଦାଧର ପଣ୍ଡିତଙ୍କର ଏହି ଶ୍ରୀ ଗୋପୀନାଥ ଜଉଙ୍କ ସେବା ଓ ପ୍ରତିଜ୍ଞା ଛାଡ଼ିବାକୁ ଲକ୍ଷ୍ୟକରି ଶ୍ରୀକୃଷ୍ଣଦାସ କବିରାଜ ଗୋସ୍ୱାମୀ କହି ଅଛନ୍ତି ।—

"ପଣ୍ଡିତେର ଚୈତନ୍ୟ ପ୍ରେମ
ବୁଝନ ନା ଯାୟ '
ପ୍ରତିଜ୍ଞା-ଶ୍ରୀକୃଷ୍ଣସେବା ଛାଡ଼ିଲ ତୃଣ ପ୍ରାୟ"
( ଚୈଃ ଚ ମଧ୍ୟ )

ଶ୍ରୀକୃଷ୍ଣପ୍ରେମ ଉଦୟ ହେବା ବଡ଼ ସହଜ ନୁହେଁ, ଯେତେବେ ବହୁ ସୌଭାଗ୍ୟ ବଶରୁ ଯାହାର କୃଷ୍ଣପ୍ରେମ ଜାତ ହୁଏ ତାହାର କାର୍ଯ୍ୟ ସାଧାରଣ ଲୋକର ଦୁର୍ବୋଧ୍ୟ, ସାଧାରଣ ଲୋକେତ ବୁଝିବା ଦୂରର କଥା, ଭକ୍ତ-ମାନେ ସୁଦ୍ଧା ତାହାର ... ବୁଝି ପାରନ୍ତି ନାହିଁ, ହୁଏତ ଅନେକ ସ୍ଥଳରେ ପ୍ରେମିକ ଭକ୍ତ ସାଧାରଣ ଦୃଷ୍ଟିରେ ପାଗଳ ବୋଲି ଅନୁମିତ ହୁଅନ୍ତି । ଗୋଟିଏ ନିଜ ଅନୁଭବର ... ମୋର ମନେ ପଡ଼ିବାରୁ ଏଠାରେ ବ୍ୟକ୍ତ କଲି, ଭକ୍ତ ଢେଙ୍କାନାଳକୁ ଜଣେ ଉଚ୍ଚ ଦରର ଭକ୍ତ ପଦା-ର୍ପଣ କରିଥିଲେ, ଯେ ପ୍ରଭୁ ... ନାମରେ ପାଗଳ, ତେଣୁ ତାଙ୍କୁ ଲୋକେ ସାଧାରଣତଃ "ଜୟ ନିତାଇ" ବୋଲି ଡ଼ାକୁଥାଆନ୍ତି, ସେ ପ୍ରେମରେ

ପାଗଳ ପ୍ରାପ୍ତ ହେଲେହେଁ ଉଚ୍ଚଶିକ୍ଷା ଲାଭ କରି ଅଛନ୍ତି ଓ ବି:ଏ: ଉପାଧି-ଧାରୀ, ଅପର ସମୟରେ ଠିକ ଗୋଟିଏ ପାଗଳ ଏରୂପ ଅନୁମିତ ହେଲେହେଁ ଢେଙ୍କାନାଳରେ ଭକ୍ତି ସମ୍ବନ୍ଧରେ ଯେ ଯେ ସରଳ ଓ ପ୍ରାଣସ୍ପର୍ଶୀ ଭାଷାରେ ବକ୍ତୃତା କରିଥିଲେ ସେଥିରେ ଲୋକେ ମୁଗ୍ଧ ହୋଇଥିଲେ, ଏହି ମହାତ୍ମା ପ୍ରଥମେ ଯେତେବେଳେ ଗଡ଼ରେ ପହଞ୍ଚି ରାଜଭବନକୁ ଯାଆନ୍ତି, ଏ ଅଧମ ତାଙ୍କ ସଙ୍ଗରେ ଥିଲା । ସେ ମୋତେ ସମସ୍ତ ସ୍ଥାନମାନ ପଚାରି ଯାଉ ଥାଆନ୍ତି । ରାଜଭବନକୁ ଗମନ କରିବାକୁ ହେଲେ ପ୍ରଥମେ ଘୋଡ଼ା ଅସ୍ତବଲ ପଡ଼େ, ସେ ମହାତ୍ମା ମୋତେ ପଚାରିଲେ ଏ ପକାଘର କଣ ? ମୁଁ କହିଲି ଏ ଅଶ୍ୱଶାଳା । ସେ ତତ୍‌କ୍ଷଣାତ ମସ୍ତକ ନତକରି ତାକୁ ଗୋଟିଏ ପ୍ରଣାମ କଲେ, ଏଥିରେ ତାଙ୍କୁ ସାଧାରଣ ଲୋକ ପାଗଳ ନ ଭାବି କଣ ଭାବବେ ! କିନ୍ତୁ ସର୍ବଭୂତରେ ଯେ ଯେ ଭଗବାନଙ୍କୁ ଦର୍ଶନ କରୁଅଛନ୍ତି, ତାଙ୍କ ହୃଦୟରେ ଅଶ୍ୱଶାଳା ମଧ୍ୟ ଭଗବତ୍ଭାବ ଉଦ୍ଦୀପନ କରାଇବାରୁ ସେ ତାକୁ ପ୍ରଣାମ କଲେ ଏ ଉଚ୍ଚଭାବ କେତେଜଣ ବୁଝି ପାରିବେ ? ତେଣୁ ମହାପ୍ରଭୁ ସନାତନ ଗୋସ୍ୱାମୀଙ୍କୁ ଶିକ୍ଷା ଦେବାକାଳରେ କହି ଅଛନ୍ତି,

"ଯାର ଚିତ୍ତେ କୃଷ୍ଣପ୍ରେମା କରୟେ ଉଦୟ
ତାର ବାକ୍ୟ, କ୍ରିୟା, ମୁଦ୍ରା, ବିଜ୍ଞେ ନା ବୁଝୟ ।"

( ଚୈ: ଚ ମଧ୍ୟ )

ଶ୍ରୀଳ କବିରାଜ ଗୋସ୍ୱାମୀ ଅନ୍ୟ ଏକସ୍ଥାନରେ ମଧ୍ୟ ତଦ୍ରୂପ ଉକ୍ତି ପ୍ରକାଶ କରି ଅଛନ୍ତି । ଯଥା—

"ଯେଇପ୍ରେମା ସଦାଜାଗେ ଯାହାର ଅନ୍ତରେ,
ପଣ୍ଡିତେଓ ତାଁର ଚେଷ୍ଟା ବୁଝିତେ ନା ପାରେ ।"

( ଚୈ: ଚ: ଅନ୍ତ୍ୟ )

ପଣ୍ଡିତମାନଙ୍କର ବୁଦ୍ଧି ଏ କୃଷ୍ଣପ୍ରେମର ଲକ୍ଷଣମାନ ଦୁର୍ବୋଧ । ତେଣୁ ମହାପ୍ରଭୁ ଶ୍ରୀଗୟାଧାମରୁ ଆସିବା ପରେ କୃଷ୍ଣପ୍ରେମର ଚିହ୍ନ ସମସ୍ତ ତାଙ୍କ ଶ୍ରୀଅଙ୍ଗରେ ପରିଲକ୍ଷିତ ହୁଅନ୍ତେ ନବଦ୍ୱୀପର ମହାମହା ପଣ୍ଡିତମାନେ ମଧ୍ୟ ତାଙ୍କର ଉନ୍ମାଦ ରୋଗ ଉପସ୍ଥିତ ହୋଇଅଛି ବୋଲି

ମନେକରୁଥିଲେ ଓ କେତେ ତାଙ୍କ ଜନନୀଙ୍କୁ ନାନାସ୍ତୁତିଗତିଦ୍ୱାରା ମସ୍ତକରେ ଘିଅ ରୋଗଶାନ୍ତି - କରାଇବାକୁ ଉପଦେଶ ଦେଇ ଥିଲେ ।

କୃଷ୍ଣପ୍ରେମ ଯେ କିରୂପ ଦୁର୍ବୋଧ ଶ୍ରୀଳ କବିରାଜ ଗୋସ୍ୱାମୀ ତାହା ଏକ ସ୍ଥାନରେ ଅଳଙ୍କାରରେ ସୁନ୍ଦର ରୂପେ ଦେଖାଇ ଅଛନ୍ତି । ଅତଏବ ମୁଁ କୃଷ୍ଣପ୍ରେମ କି ବସ୍ତୁ ତାହା ବୁଝାଇବାକୁ ନିତାନ୍ତ ଅଶକ୍ତ ଥିବାରୁ ଶ୍ରୀଳ କବିରାଜଙ୍କର ଯେ କେତେପଦ ପଙ୍କ୍ତି ଉଦ୍ଧୃତ କଲି ।

ଯଥା ।—

"ଭକ୍ତେର ପ୍ରେମ ବିକାର ଦେଖି କୃଷ୍ଣେର ଚମତ୍କାର,
କୃଷ୍ଣ ଯାର ନା ପାୟ ଅନ୍ତ କେ ଛାର ଆର ।
ଭକ୍ତ ପ୍ରେମେର ଯତ ଦଶା ଯେଇ ତ ପ୍ରକାର,
ଯତ ଦୁଃଖ ଯତ ସୁଖ ଯତେକ ବିକାର ।
କୃଷ୍ଣ ତାହା ସମ୍ୟକ୍ ନା ପାର ଜାନିତେ,
ଭକ୍ତଭାବ ଅଙ୍ଗୀକରେ ତାହା ଆସ୍ୱାଦିତେ ।
କୃଷ୍ଣେରେ ନାଚାୟ ପ୍ରେମା ଭକ୍ତେରେ ନାଚାୟ,
ଆପନି ନାଚୟେ, ତିନେ ନାଚେ ଏକଠାଇଁ ।
ପ୍ରେମେର ବିକାର ବର୍ଣ୍ଣିତେ ଚାହେ ଯେଇ ଜନ,
ଚାନ୍ଦ ଧରିତେ ଚାହେ ଯେନ ହଇୟା ବାମନ ।
ବାୟୁ ଯୈଛେ ସିନ୍ଧୁ ଜଲେର ହରୟେ ଏକକଣ,
କୃଷ୍ଣ ପ୍ରେମାକଣାର ତୈଛେ ଜୀବେର ସ୍ପର୍ଶନ ।
କ୍ଷଣେ କ୍ଷଣେ ଉଠେ ପ୍ରେମାର ତରଙ୍ଗ ଅନନ୍ତ,
ଜୀବ ଛାର କାହାଁ ତାର ପାଇବେକ ଅନ୍ତ ।
( ଚୈ: ଚ ଅନ୍ତ୍ୟ )

ଦେଖିଲେତ, ଶ୍ରୀକବିରାଜ ଗୋସ୍ୱାମୀ କଣ କହୁଅଛନ୍ତି । ସ୍ୱୟଂ ଶ୍ରୀକୃଷ୍ଣ ଯାହାର ଅନ୍ତ ପାଆନ୍ତି ନାହିଁ, ଜୀବଛାର ତାର ଅନ୍ତ କଣ ପାଇବ ?

ପ୍ରେମର ସ୍ୱଭାବ ଏହି ଯେ-ପ୍ରେମିକ ମନେ କରେ ଆମର ସଙ୍ଗେ କୃଷ୍ଣଙ୍କର ଲେଶମାତ୍ର ସମ୍ବନ୍ଧ ନାହିଁ । ପ୍ରେମିକ ଯେ ମିଥ୍ୟା କହି ଏ ରୂପ କରନ୍ତି ଏମନ୍ତ ନୁହେ ।

କେହିକେହି ଏକ ଆକାଶର ଯେତେ ଉପରକୁ ଉଠିବ ତାକୁ ଆକାଶର ଅନନ୍ତତ୍ୱ ତେତେ ଅଧିକ ପ୍ରତୀୟମାନ ହେବ । ସେହିରୂପ ଶ୍ରୀକୃଷ୍ଣଙ୍କର ଅପାର ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ପରିଚୟ ପାଇ ପ୍ରେମିକମାନେ ଅନୁଭବ କରନ୍ତି ମୋର କୃଷ୍ଣଙ୍କଠାରେ ଭକ୍ତିର ଗନ୍ଧମାତ୍ର ନାହିଁ । ତେଣୁ ଶ୍ରୀକବିରାଜ ଗୋସ୍ୱାମୀ ଲେଖି ଅଛନ୍ତି ।

"ପ୍ରେମେର ସ୍ୱଭାବ ଯାଁହା ପ୍ରେମେର ସମ୍ବନ୍ଧ,
ସେଇମାନେ କୃଷ୍ଣେ ମୋର ନାହିଁ ଭକ୍ତି ଗନ୍ଧ ।"

( ଚୈଃ ଚଃ ଅନ୍ତ୍ୟ )

ଶ୍ରୀଲ କବିରାଜ ଗୋସ୍ୱାମୀ ଏହା ନିଜ ଅନୁଭବରୁ ଲେଖିଯାଇ ଅଛନ୍ତି । ଆମ୍ଭମାନଙ୍କର ତାହା ସହଜରେ ବୋଧଗମ୍ୟ ହୋଇ ପାରିବ ନାହିଁ । ଯେଉଁମାନେ ଅନୁଭବୀ ସେମାନେହିଁ ଏ ଉକ୍ତିର ପ୍ରକୃତ ତାତ୍ପର୍ଯ୍ୟ ବୁଝିପାରିବେ ।

ପ୍ରେମିକର କପରି ଦଶା ଘଟିଥାଏ ସେଥିର ଗୋଟିଏ ଉଦାହରଣ ଶ୍ରୀ ଚୈତନ୍ୟମଙ୍ଗଳରୁ ଉଦ୍ଧୃତ କଲି ।

ଶ୍ରୀଲ ଲୋଚନ ଦାସ ମୁକୁନ୍ଦଙ୍କ ସମ୍ବନ୍ଧରେ ଲେଖିଅଛନ୍ତି ଯେ ଏ ରାଜବୈଦ୍ୟଥିବାରୁ ରାଜାଙ୍କଠାକୁ ସତତ ଯାତାୟତ କରୁଥିଲେ । ଏକଦିନ ରାଜାଙ୍କ ସନ୍ନିକଟରେ ଏକଜଣ ଭୃତ୍ୟ ଏକ ମୟୂରପୁଚ୍ଛବିଶିଷ୍ଟ ପଙ୍ଖାଧରି ବ୍ୟଜନ କରୁଥିଲେ । ମୟୂରପୁଚ୍ଛ ଦେଖି ମୁକୁନ୍ଦଙ୍କର ଶ୍ରୀକୃଷ୍ଣସ୍ମୃତି ହେବାରୁ ସେ ପ୍ରେମରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ. ଯଥା ।

" ମୟୂରେର ପାଙ୍ଖା ଦେଖି ରାଜ ସନ୍ନିଧାନେ,
ପଡ଼ିଲେନ କୃଷ୍ଣରୂପ ଆକର୍ଷିଲ ମନେ ।"

ଏହି ଯେ ଦୁର୍ଲ୍ଲଭ କୃଷ୍ଣପ୍ରେମ ଏହାଦ୍ୱାରା କୃଷ୍ଣ ପ୍ରାପ୍ତି ସୁଲଭ । କୃଷ୍ଣପ୍ରେମ ଜାତ ହେଲେ କୃଷ୍ଣ ଭକ୍ତର ବଶ ହୁଅନ୍ତି । ଶ୍ରୀକୃଷ୍ଣଙ୍କୁ ବଶ କରିବା ପାଇଁ ମସ୍ତକ ମୁଣ୍ଡନାଦି ବାହ୍ୟ ବୈରାଗ୍ୟର ବେଶ କିଛି ଆବଶ୍ୟକ ନାହିଁ । ଅନ୍ତର ପ୍ରେମରେ ଦ୍ରବୀଭୂତ ହେବା ଆବଶ୍ୟକ ।

ଶ୍ରୀବାସ ପଣ୍ଡିତଙ୍କର ଦୁଃଖୀ ନାମରେ ଜଣେ ମହାଭାଗ୍ୟବତୀ ଦାସୀଥିଲେ । ସେ ଶ୍ରୀବାସଙ୍କ ଘରେ ଜଳ ଯୋଗାଉ ଥିଲେ । ମହାପ୍ରଭୁ

ଭକ୍ତଗଣଙ୍କ ସଙ୍ଗେ ଶ୍ରୀବାସଙ୍କ ଅଙ୍ଗନରେ ନୃତ୍ୟକୀର୍ତ୍ତନାଦି ଶେଷ କରି କେବେ କେବେ ଗଙ୍ଗାରୁ ଜଳ ଆଣାଇ ସେହି ଅଙ୍ଗନରେ ଭକ୍ତଗଣଙ୍କ ସଙ୍ଗେ ସ୍ନାନାଦି କାର୍ଯ୍ୟ ସମାପନ କରୁଥିଲେ । ତଦୁପଲକ୍ଷେ ସେହି ଭାଗ୍ୟବତୀ ଦାସୀ ଦୁଃଖୀ ଗଙ୍ଗାରୁ ଜଳ ବହନ କରି ଯୋଗାଉ ଥିଲେ । ଜଳ ବହନ କରୁଛନ୍ତି, ଏଣେ ପ୍ରେମରେ ତାଙ୍କ ନୟନରୁ ଜଳ ବହି ଯାଉଅଛି । ଅଶେଷ ଜଳ ବହିବାରେ ଲେଶମାତ୍ର କଷ୍ଟ ଅନୁଭବ କରୁ ନାହାନ୍ତି । ଭକ୍ତଗ୍ରାହୀ ମହାପ୍ରଭୁ ଦୁଃଖୀଙ୍କର ସେହି ପ୍ରେମବିହ୍ୱଳ-ଭାବ ଜାଣି ଶ୍ରୀବାସଙ୍କୁ ପଚାରିଲେ "ଏତେ ଜଳ ଗଙ୍ଗାରୁ କିଏ ବହି ଆଣେ ।" ଶ୍ରୀବାସ କହିଲେ "ପ୍ରଭୋ ! ଏହି ଦୁଃଖୀ ଏ ସମସ୍ତ ଜଳ ବହି ଆଣେ ।" ମହାପ୍ରଭୁ କହିଲେ "ଶ୍ରୀବାସ ! ଏହାଙ୍କର ଦୁଃଖୀନାମ ଉପଯୁକ୍ତ ହୋଇ ନାହିଁ । ଏହାଙ୍କୁ ଆଜିଠାରୁ ସମସ୍ତେ ସୁଖୀ ବୋଲି ଡାକିବ । କାରଣ ମୁଁ ଅନୁମାନ କରେଁ ଏ ସତତ ଭକ୍ତି ସୁଖରେ ସୁଖୀ "। ସେହି ଦିନଠାରୁ ସମସ୍ତେ ସେ ସୌଭାଗ୍ୟବତୀ ଦୁଃଖୀଙ୍କୁ ମହାପ୍ରଭୁଙ୍କ ନାମକରଣାନୁସାରେ ସୁଖୀ ବୋଲି ଡାକିବାକୁ ଲାଗିଲେ । ତାଙ୍କର ସୌଭାଗ୍ୟ ବର୍ଣ୍ଣନ କରି ଶ୍ରୀଲବୃନ୍ଦାବନ ଦାସ ଲେଖିଅଛନ୍ତି

"ପ୍ରେମ ଯୋଗେ ସେବାକରିଲେଇ କୃଷ୍ଣ ପାଇ
ମାଥା ମୁଡ଼ାଇଲେ ଯମ ଦଣ୍ଡ ନାଏ ତାଇ ।"



## ଅଷ୍ଟାଦଶ ପରିଚ୍ଛେଦ ।

### ଶ୍ରୀରାଧାତତ୍ତ୍ୱ ଓ ଗୋପୀପ୍ରେମ ।

ଶ୍ରୀରାଧାକୃଷ୍ଣ ଏକଲୀଳାରସ ଆସ୍ୱାଦନପାଇଁ ଦୁଇ ଦେହ ଧାରଣ କରି ଅଛନ୍ତି । ମୃଗମଦ ଓ ତାହାର ଗନ୍ଧ ଯେରୂପ ଏକ ବସ୍ତୁ, ଅଗ୍ନି ଓ ତାହାର ଜ୍ୱାଳା ଯେରୂପ ଏକବସ୍ତୁ, ଶ୍ରୀରାଧା ଓ ଶ୍ରୀକୃଷ୍ଣ ସେହି ରୂପ ଏକ । ରାଧାତତ୍ତ୍ୱ ହୃଦୟଙ୍ଗମ କରିବା ବଡ଼ କଠିନ । ଏହା ମୋର କ୍ଷୁଦ୍ର ଶକ୍ତିର ବହିର୍ଭୂତ । ଅତଏବ ମୁଁ ସେ ସମ୍ବନ୍ଧରେ ବିସ୍ତାରିତରୂପେ ବର୍ଣ୍ଣନ ନ କରି ଶ୍ରୀଳ କବିରାଜ ଗୋସ୍ୱାମୀଙ୍କ ଶ୍ରୀଚୈତନ୍ୟ ଚରିତାମୃତରୁ କେତେକ ଉକ୍ତି ଉଦ୍ଧୃତ କଲି ।

"କୃଷ୍ଣକେ ଆହ୍ଲାଦେ ତାତେ ନାମ ଆହ୍ଲାଦିନୀ,<br>
ସେଇ ଶକ୍ତି ଦ୍ୱାରେ ସୁଖ ଆସ୍ୱାଦେ ଆପନି ।<br>
ସୁଖରୂପ କୃଷ୍ଣକରେ ସୁଖ ଆସ୍ୱାଦନ,<br>
ଭକ୍ତଗଣେ ସୁଖଦିତେ ହ୍ଲାଦିନୀ କାରଣ ।<br>
ହ୍ଲାଦିନୀର ସାର ଅଂଶ ତାର ପ୍ରେମ ନାମ,<br>
ଆନନ୍ଦ ଚିନ୍ମୟରସ ପ୍ରେମେର ଆଖ୍ୟାନ ।<br>
ପ୍ରେମେର ପରମ ସାର ମହାଭାବ ଜାନି,<br>
ସେଇ ମହାଭାବରୂପା ରାଧା ଠାକୁରାଣୀ ।<br>
ପ୍ରେମେର ସ୍ୱରୂପ ଦେହ ପ୍ରେମ ବିଭାବିତ,<br>
କୃଷ୍ଣେର ପ୍ରେୟସୀ ଶ୍ରେଷ୍ଠ ଜଗତେ ବିଦିତ ।

ସେଇ ମହାଭାବ ହୁଏ ଚିନ୍ତାମଣି ସାର,
କୃଷ୍ଣବାଞ୍ଛା ପୂର୍ଣ୍ଣ କରେ ଏଇ କାର୍ଯ୍ୟ ତାର ।
ମହାଭାବ ଚିନ୍ତାମଣି ରାଧାର ସ୍ୱରୂପ,
ଲଳିତାଦି ସଖୀ ତାଁର କାୟବ୍ୟୂହରୂପ ।"

ଅନ୍ୟତ୍ର ଶ୍ରୀମନ୍ ମହାପ୍ରଭୁ ସନାତନଙ୍କୁ ଶିକ୍ଷା ଦେବା କାଳରେ କହିଅଛନ୍ତି ।

" ବ୍ରଜେନ୍ଦ୍ର ନନ୍ଦନ କୃଷ୍ଣ ନାୟକ ଶିରୋମଣି,
ନାୟିକାର ଶିରୋମଣି ରାଧା ଠାକୁରାଣୀ ।"

( ଚୈଃ ଚଃ ମଧ୍ୟ )

କୃଷ୍ଣ ଯେଉଁରୂପ ଅବତାରାବଳୀ ବୀଜ, ସେହିରୂପ ରାଧା ମୂଳଶକ୍ତି । ଅନ୍ୟ ସମସ୍ତ ଶକ୍ତି ରାଧାଙ୍କର ଅଂଶ । ଶ୍ରୀରାଧା ଶକ୍ତିଗଣ ମଧ୍ୟରେ ଅଂଶିନୀ । ସେଥିପାଇଁ ଶ୍ରୀରାୟରାମାନନ୍ଦ ମହାପ୍ରଭୁଙ୍କ ସଙ୍ଗେ ଗୋଦାବରୀ ତୀରରେ କୃଷ୍ଣ କଥା ଆଳାପ କାଳରେ ଶ୍ରୀରାଧାଙ୍କର ଗୁଣବର୍ଣ୍ଣନ କରି କହିଅଛନ୍ତି ଯେ ଦ୍ୱାରକାପୁରର ଶ୍ରୀକୃଷ୍ଣଙ୍କ ମହିଷୀ ଶ୍ରୀମତୀ ସତ୍ୟଭାମା ଏହାଙ୍କର ସୌଭାଗ୍ୟ ବାଞ୍ଛା କରନ୍ତି । ଅଶେଷ ଗୁଣଶାଳିନୀ ଲଳିତାଦି ବ୍ରଜ ରାମାଗଣ ଏହାଙ୍କଠାରୁ କଳାବିଳାସ ଶିକ୍ଷା କରନ୍ତି । ଶ୍ରୀ ନାରାୟଣଙ୍କ ଅଙ୍କ ଶୋଭିନୀ ଲକ୍ଷ୍ମୀଠାକୁରାଣୀ ଓ ଶିବ ପତ୍ନୀ ପାର୍ବତୀ ଏହାଙ୍କର ସୌନ୍ଦର୍ଯ୍ୟାଦି ଗୁଣର ଅଭିଳାଷ କରନ୍ତି ଏବଂ ପତିବ୍ରତାଶିରୋମଣି ଅରୁନ୍ଧତୀ ଏହାଙ୍କର ପାତିବ୍ରତ୍ୟ ଧର୍ମ ଇଚ୍ଛା କରନ୍ତି । ଆଉ ଅଧିକ କଥା କଣ, ସ୍ୱୟଂ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଏହାଙ୍କର ଗୁଣ ଗଣନା କରି ପାରନ୍ତି ନାହିଁ । ଯଥା—

" ଯାଁର ସୌଭାଗ୍ୟ ଗୁଣ ବାଞ୍ଛେ ସତ୍ୟଭାମା,
ଯାଁରଠାରେଁ କଳାବିଳାସ ଶିଖେ ବ୍ରଜରାମା ।
ଯାଁର ସୌନ୍ଦର୍ଯ୍ୟାଦି ଗୁଣ ବାଞ୍ଛେ ଲକ୍ଷ୍ମୀ ପାର୍ବତୀ;
ଯାଁର ପତିବ୍ରତା ଧର୍ମ ବାଞ୍ଛେ ଅରୁନ୍ଧତୀ ।

ଯାଁର ସଦ୍‌ଗୁଣ ଗଣନେର କୃଷ୍ଣ ନା ପାନ ପାର ।
ତାଁର ଗୁଣ ଗଣିବେ କେମନେ ଜୀବ ଛାର ?”
[ ଚୈଃ ଚଃ ମଧ୍ୟ ]

ଏହି ମହାଭାବ ଚିନ୍ତାମଣି ସ୍ୱରୂପିଣୀ ଶ୍ରୀରାଧାଙ୍କୁ ତାଙ୍କ କାୟବ୍ୟୂହା ରୂପା ସଖୀଗଣ ଏତତ ଶ୍ରୀକୃଷ୍ଣଙ୍କ ସହ ବିଳାସ କରାଇ ନାନାରୂପ ସୁଖ ଆସ୍ୱାଦନ କରନ୍ତି । ବ୍ରଜର ମଧୁରରସାଶ୍ରିତା ସଖୀ ଓ ମଞ୍ଜରୀଙ୍କ ବ୍ୟତୀତ ଅନ୍ୟ କାହାର ଏହି ଉଜ୍ଜ୍ୱଳ ମଧୁରରସ ଆସ୍ୱାଦନର ଶକ୍ତି ନାହିଁ । ସଖୀମାନେ ଶ୍ରୀରାଧା-ଗୋବିନ୍ଦଙ୍କର ଅଶେଷ ପ୍ରକାର ଲୀଳାର ବିସ୍ତାର କରନ୍ତି ଏବଂ ନାନା ହାସ-ପରିହାସାଦି ବଚନଦ୍ୱାରା ଲୀଳାର ପୁଷ୍ଟି ସାଧନ କରନ୍ତି ଏକସମୟରେ ରାଧାଙ୍କର ମାନ ଜନ୍ମାଇ ଦେଲେ ଓ ପରେ କୌଶଳରେ ତାହା ସମାଧାନ-ପୂର୍ବକ ମିଳାଇ ଦେଲେ, ଜଟିଳା ରାଧା ପ୍ରତି ଅଶେଷ ପ୍ରକାର ବାଧା ଜନ୍ମାଇଲେ ସଖୀମାନେ କୌଶଳକ୍ରମେ ସେ ବାଧାମାନ ଖଣ୍ଡନ କରାଇଲେ । ଏହିରୂପେ ସଖୀଗଣ ନିତ୍ୟ ନବନବ ଲୀଳା ରଚନା କରି ଲୀଳା ମାଧୁରୀ ଆସ୍ୱାଦନ କରୁ ଅଛନ୍ତି । ତାହା ସମୁଦ୍ର ଲହରୀବତ୍ ଗଣନା କରାଯାଇ ନ ପାରେ । ସଖୀମାନଙ୍କ ଏହି ଲୀଳାସ୍ୱାଦନ ବିଷୟରେ ଶ୍ରୀଳ ରାୟରାମାନନ୍ଦ କହି ଅଛନ୍ତି ।—

ରାଧାକୃଷ୍ଣେର ଲୀଳା ଏଇ ଅତି ଗୂଢ଼ତର
ଦାସ୍ୟ ବାତ୍ସଲ୍ୟାଦି ଭାବେ ନା ହୟ ଗୋଚର ।
ସବେ ଏକ ସଖୀ ଗଣେର ଇହାଁ ଅଧିକାର
ସଖୀ ହୈତେ ହୟ ଏଇ ଲୀଳାର ବିସ୍ତାର ।
ସଖୀ ବିନା ଏଇ ଲୀଳା ପୁଷ୍ଟ ନାହିଁ ହୟ
ସଖୀ ଲୀଳା ବିସ୍ତାରିୟା ସଖୀ ଆସ୍ୱାଦୟ ।
ସଖୀ ବିନା ଏଇ ଲୀଳାର ଅନ୍ୟେର ନାହିଁ ଗତି ।
( ଚୈଃ ଚଃ ମଧ୍ୟ ୮ ପରି )

ଏହି ଯେ ଅପୂର୍ବ ଶ୍ରୀରାଧାଗୋବିନ୍ଦଙ୍କର ବ୍ରଜଲୀଳା ଏଥିରେ ଶ୍ରୀଲକ୍ଷ୍ମୀଠାକୁରାଣୀଙ୍କର ମଧ୍ୟ ଅଧିକାର ନାହିଁ । ରଙ୍ଗିଆ ମହାପ୍ରଭୁ

ଶ୍ରୀ ପୁରୁଷୋତ୍ତମରେ ଗୁଣ୍ଡିଚା ଯାତ୍ରା ସମୟରେ ଯେବେ ଐଶ୍ୱର୍ଯ୍ୟଭାବାପନ୍ନ ନାରଦ ସ୍ୱଭାବ ଶ୍ରୀବାସଙ୍କ ସମକ୍ଷରେ ଶୁଦ୍ଧ ମାଧୁର୍ଯ୍ୟଭାବାପନ୍ନ ଶ୍ରୀଳ ସ୍ୱରୂପ ଗୋସ୍ୱାମୀଙ୍କୁ ଈଷତ୍ ହାସ୍ୟପୂର୍ବକ ପଚାରିଲେ, ଶ୍ରୀଜଗନ୍ନାଥ ଦେବ ଶ୍ରୀପୁରୁଷୋତ୍ତମରେ ଦ୍ୱାରକା ବିହାର ଲୀଳା କରୁଅଛନ୍ତି ଏବଂ ଏକ ବର୍ଷ ମଧ୍ୟରେ ଥରେ ବୃନ୍ଦାବନ ଦର୍ଶନ ଉତ୍କଣ୍ଠାରେ ନୀଳାଚଳ ଛାଡ଼ି ଶ୍ରୀରଥ ଯାତ୍ରା ଛଳକରି ସୁନ୍ଦରାଚଳକୁ ବିଜେ କରନ୍ତି, ଏବଂ ପୁଷ୍ପୋଦ୍ୟାନରେ ନାନା କୌତୁକରେ ବିହାର କରନ୍ତି । ସେତେବେଳେ ସେ ସଙ୍ଗରେ ଲକ୍ଷ୍ମୀ ଠାକୁରାଣୀଙ୍କୁ ନିଅନ୍ତି ନାହିଁ କାହିଁକି ? ସ୍ୱରୂପ ଗୋସ୍ୱାମୀ ଏହି ପ୍ରଶ୍ନର ଉତ୍ତର ଦାନକରି କହିଥିଲେ, "ପ୍ରଭୋ ! ଶ୍ରୀବୃନ୍ଦାବନ କ୍ରୀଡ଼ାରେ ଲକ୍ଷ୍ମୀ ଦେବୀଙ୍କର ଅଧିକାର ନାହିଁ । ବୃନ୍ଦାବନ ଲୀଳାରେ କେବଳ ଗୋପୀମାନେହିଁ ଶ୍ରୀକୃଷ୍ଣଙ୍କର ସହାୟ । ଗୋପୀଛଡ଼ା ଅନ୍ୟ କୌଣସି ନାରୀ ଶ୍ରୀବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କର ମନୋହରଣ କରି ପାରନ୍ତି ନାହିଁ । ଯଥା ।—

ସ୍ୱରୂପ କହେ ଶୁନ ପ୍ରଭୁ କାରଣ ଇହାର
ବୃନ୍ଦାବନ କ୍ରୀଡ଼ାତେ ଲକ୍ଷ୍ମୀର ନାହିଁ ଅଧିକାର
ବୃନ୍ଦାବନ ଲୀଳାୟ କୃଷ୍ଣେର ସହାୟ ଗୋପୀଗଣ
ଗୋପୀଗଣ ବିନା କୃଷ୍ଣେର ହରିତେ ନାରେ ମନ ।
( ଚୈ: ଚ: ମଧ୍ୟ )

ଗୋପୀମାନଙ୍କର ଏହି ବିଶୁଦ୍ଧ ମଧୁରଭାବ । ଏଥିରେ ଐଶ୍ୱର୍ଯ୍ୟର ଗନ୍ଧ ଲେଶ ନାହିଁ । ଲକ୍ଷ୍ମୀ ଠାକୁରାଣୀ ଐଶ୍ୱର୍ଯ୍ୟ ଭାବରେ ଭଜନ କରିବାରୁ ଏବଂ ନାଗରୀ ମୁକୁଟମଣି ଶ୍ରୀରାଧାଙ୍କର ଆନୁଗତ୍ୟ ସ୍ୱୀକାର କରି ନ ଥିବାରୁ ବ୍ରଜରେ ବ୍ରଜେନ୍ଦ୍ରନନ୍ଦନଙ୍କୁ ତପଶ୍ଚରଣ କରି ମଧ୍ୟ ପାଇ ପାରିଲେ ନାହିଁ । ଏହି ଗୋପୀମାନଙ୍କର ବିଶୁଦ୍ଧ ପ୍ରୀତି କେବଳା ନାମରେ ଅଭିହିତ । ଏହି କେବଳା ଭାବର ଭଜନକୁ ଶ୍ରୀକୃଷ୍ଣସଖା ଉଦ୍ଧବ ପ୍ରଶଂସା କରି ଯାଇ ଅଛନ୍ତି । ଶ୍ରୀକୃଷ୍ଣ ଦ୍ୱାରକାପୁରୀରୁ ଉଦ୍ଧବଙ୍କୁ ବ୍ରଜକୁ ପଠାଇଥିଲେ । ସେ ପ୍ରେମବତୀ ଗୋପରମଣୀମାନଙ୍କର ନିର୍ମଳ ଭଜନ ରୀତି ଦର୍ଶନ କରି ଚମତ୍କୃତ ହୋଇଥିଲେ ଏବଂ ଗୋପୀମାନଙ୍କର ପଦଧୂଳିର ପ୍ରାର୍ଥୀ ହୋଇଥିଲେ । ଯଥା—

ଐଶ୍ୱର୍ଯ୍ୟ ଜ୍ଞାନ ହୋଇଲେ କେବଳା ପରମ ପ୍ରଧାନ
ପୃଥିବୀରେ ଭକ୍ତ ନାହି ଉଦ୍ଧବ ସମାନ ।
ତିଁହ ଯାର ପଦଧୂଳ କରନ୍ତି ପ୍ରାର୍ଥନ
( ଯାଁର ଅର୍ଥାତ୍ ଯେଉଁ ଗୋପୀମାନଙ୍କର )

( ଚୈଃ ଚଃ ମଧ )

ଏବା ଗୋପୀକାମାନଙ୍କ ଶ୍ରୀକୃଷ୍ଣଙ୍କ ଉତ୍କୃଷ୍ଟତମ ପ୍ରୀତି ପ୍ରଦାନ କରନ୍ତି, ଅନ୍ୟ କୌଣସି ନାୟିକା ରସିକ ଶେଖରଙ୍କ ଚରିତ୍ର ପ୍ରକୃଷ୍ଟ ପରିମାଣରେ ରସାସ୍ୱାଦନ କରାଇ ପାରନ୍ତି ନାହିଁ, ଗୋପୀମାନଙ୍କର ପ୍ରେମରେ ରସାଭାସ ଦୋଷ ନାହିଁ, ଯେଣୁ ଯୋଗୁଁ ଶ୍ରୀକୃଷ୍ଣ ଗୋପୀମାନଙ୍କଠାରେ ଯାତଣାନ୍ତ ପ୍ରୀତି ଲାଭକରନ୍ତି । ଶ୍ରୀଳ ରୂପ ଗୋସ୍ୱାମୀ ମହାଶୟଙ୍କଠାରେ ଗୋପୀମାନଙ୍କର ଏହି ବିଶୁଦ୍ଧ ପ୍ରେମ ବର୍ଣ୍ଣନ କରି କହି ଅଛନ୍ତି—

ଦାମୋଦର କହେ କୃଷ୍ଣ ରସିକ ଶେଖର
ରସ ଆସ୍ୱାଦକ, ରସମୟ କଳେବର ।
ପ୍ରେମମୟ ବପୁ କୃଷ୍ଣ ଭକ୍ତ ପ୍ରେମାଧୀନ,
ଶୁଦ୍ଧ ପ୍ରେମରସ ଗୁଣେ ଗୋପୀକା ପ୍ରବୀଣ,
ଗୋପୀକାର ପ୍ରେମେ ନାହିଁ ରସାଭାସ ଦୋଷ,
ଅତଏବ କରେ କୃଷ୍ଣର ପରମ ସନ୍ତୋଷ,

( ଚୈଃ ଚଃ ମଧ୍ୟ )

ଶ୍ରୀଳ ଲୋଚନ ଦାସ ମଧ୍ୟ ଏହି ଗୋପୀପ୍ରେମର ଉତ୍କୃଷ୍ଟତା ବର୍ଣ୍ଣନ କରି ଲେଖିଅଛନ୍ତି—

ତାର ପର ପ୍ରେମ ଭକ୍ତି ଗୋପୀକାର ଭାବ
କେ ଅଛନ୍ତି ଅଧିକାରୀ ସେ ସବ ଅଗାଧ ।
ଯାର ରସେ ବଶ ପ୍ରଭୁ ନିଜଗତ ନାଥ,
ପ୍ରାକୃତ ଜନେର ଯେନ କୁଲଟାର ସାଥ ।
ତାର ପ୍ରେମ ଭକ୍ତି କଥା କେ କହିତେ ଜାନେ
ଗୁଲ୍ମ ଲତା ଜନ୍ମ ଉଦ୍ଧବ ମାଗେ ଯାର ଗୁଣେ ।

( ଚୈଃ ମଃ )

ଅର୍ଥାତ୍ ଯେ ଗୋପୀମାନଙ୍କର ଗୁଣ ଦର୍ଶନ କରି ଶ୍ରୀକୃଷ୍ଣସଖା ଉଦ୍ଧବ ବିମୋହିତ ହୋଇଥିଲେ ଏବଂ ନିଜେ ଶ୍ରୀବୃନ୍ଦାବନରେ ଗୁଳ୍ମ କିମ୍ବା ଲତା ଜନ୍ମ ପ୍ରାର୍ଥନା କରିଥିଲେ, ଅର୍ଥାତ୍ ସେ ଚିନ୍ତା କରିଥିଲେ, ମୁଁ ପଛେ ସ୍ଥାବର ଦେହ ଧାରଣ କରେଁ ତଥାପି ଏ ବ୍ରଜରେ ବାସ କରିବାର ଅଧିକାର ପାଏଁ । ତାହାହେଲେ ଏ ପ୍ରେମବତୀ ବ୍ରଜଲଳନାମାନଙ୍କର ଅଦ୍ଭୁତ କୃଷ୍ଣପ୍ରେମ ଦର୍ଶନ କରି ଜୀବନ ସାର୍ଥକ କରିବି । ଏହାଠାରୁ ଗୋପୀପ୍ରେମର ଚମତ୍କାରିତା ସମ୍ବନ୍ଧରେ ଆଉକି ଅଧିକ ପ୍ରମାଣ ଦିଆଯାଇପାରେ ? ହାୟ ! ଦୟାବତୀ ବ୍ରଜରାମାଗଣ କି ସତେ ଏ ଅଭାଗ୍ୟକୁ ଚରଣାଶ୍ରୟ ପ୍ରଦାନ କରିବେ, ସତେ ଦିନେ ଏ ଅଧମ ସେମାନଙ୍କର ଅଜ୍ଞାକାରିଣୀ ପରିଚାରିକା ହୋଇ ଶ୍ରୀରାଧାମାଧବଙ୍କର ସେବା କରିବ । ଏ ଯେ ଶ୍ରୀରାଧାକୃଷ୍ଣଲୀଳା ଅପାର ଓ ଅନନ୍ତ, ସ୍ୱୟଂ ଶ୍ରୀଅନନ୍ତ ଦେବ ଏ ଲୀଳାର ଅନ୍ତ ପାଇ ପାରି ନାହାନ୍ତି । ଶ୍ରୀ ଗଣେଶ କୋଟି-ଯୁଗ ପର୍ଯ୍ୟନ୍ତ ଲେଖିଲେ ଏ ବ୍ରଜଲୀଳାର ଦିନକର ବିଷୟ ଲେଖି ଶେଷ କରିପାରିବେ ନାହିଁ । ସେ ଲୀଳା ସମୁଦ୍ରର ଅନ୍ତ ପାଇବ କିଏ ? ଯେଉ ଗୋପୀମାନେ ସତତ ଏ ଲୀଳାରେ ସନ୍ତରଣ କରୁଅନ୍ତି ସେମାନେହିଁ ଧନ୍ୟ । ସେ ଲୀଳାର ଅନନ୍ତତ୍ୱ ସମ୍ବନ୍ଧରେ ଶ୍ରୀଲ କୃଷ୍ଣଦାସ କବିରାଜ ଲେଖି ଅଛନ୍ତି :—

ସହସ୍ର ବଦନେ ଯବେ କହୟେ ଅନନ୍ତ
ଏକ ଦିନେର ଲୀଳାର ତବୁ ନାହିଁ ପାୟ ଅନ୍ତ ।
କୋଟି ଯୁଗ ପର୍ଯ୍ୟନ୍ତ ଯଦି ଲିଖେନ ଗଣେଶ
ଏକ ଦିନେର ଲୀଳାର ତବୁ ନାହିଁ ପାୟ ଶେଷ ।

( ଚୈଃ ଚଃ ଅନ୍ତ୍ୟ )

## ଊନବିଂଶ ପରିଚ୍ଛେଦ ।

### କାମ ପ୍ରେମର ବସ୍ତୁର ।

ଗୋପୀ ଅନୁଗତ କାମାନୁଗା ଭଜନ ଭଗବଦ୍‌ଭଜନର ଶ୍ରେଷ୍ଠତମ ପ୍ରଣାଳୀ । ଶ୍ରୀମନ୍ ମହାପ୍ରଭୁ ଏହା ଶ୍ରୀରାୟ ରାମାନନ୍ଦଙ୍କ ମୁଖରେ ବ୍ୟକ୍ତ କରାଇ ଅଛନ୍ତି ଓ ନିଜେ ପୁଣି ଶ୍ରୀଳ ରୂପଗୋସ୍ୱାମୀ ଓ ଶ୍ରୀସନାତନ ଗୋସ୍ୱାମୀଙ୍କୁ ଶିକ୍ଷାଦେବା କାଳରେ ଉତ୍ତମରୂପେ ବୁଝାଇ ଦେଇ ଅଛନ୍ତି । ରାଗାନୁଗା ଭକ୍ତଗଣ ଗୋପୀମାନଙ୍କ ରାଗାତ୍ମିକା ଭଜନ ପଥକୁ ଅନୁସରଣ କରି ଶ୍ରୀବ୍ରଜଧାମରେ ରାଧାମାଧବଙ୍କର ନିତ୍ୟନୈମିତ୍ତିକ ଲୀଳାଦି ସ୍ମରଣ ପୂର୍ବକ ସାଧନାର ଶ୍ରେଷ୍ଠତମ ସୋପାନକୁ ଆରୋହଣ କରନ୍ତି ଓ ଶେଷରେ କୃଷ୍ଣପ୍ରେମ ଲାଭକରି ଚିଦାନନ୍ଦ ଦେହରେ ବ୍ରଜରେ ବାସ କରି ସଖୀ ମଞ୍ଜରୀମାନଙ୍କ ଅଧୀନ ଶ୍ରୀରାଧାମାଧବଙ୍କର ସେବା କରି ଚିରସୁଖ ଅନୁଭବ କରନ୍ତି ।

କିନ୍ତୁ ଏହି ଭଜନ ପଥ ଅନୁସରଣ କରିବାକୁ ଯାଇ ସମୟ ସମୟରେ ସାଧକମାନେ ପ୍ରକୃତ ତତ୍ତ୍ୱ ବୁଝିନପାରି ଭ୍ରମରେ ପଡ଼ି ଥାଆନ୍ତି । ତାହା ସେ ଭଜନର ଦୋଷ ନୁହେଁ, ଭଜନ ତତ୍ତ୍ୱ ବୁଝିବାର ଭ୍ରମ । ସେ ଭ୍ରମ ଯେ କେବଳ ଆମ୍ଭମାନଙ୍କର ନୂତନ ତାହା ନୁହେଁ । ମହାମୁନି ଶ୍ରୀଶୁକଦେବଗୋସ୍ୱାମୀ ଲୋକଙ୍କର ଏ ଭ୍ରମଜାତ ହୋଇବା ସମ୍ଭାବନା କରି ଶ୍ରୀମଦ୍‌ଭାଗବତରେ ସେ ଭ୍ରମଜନିତ ପ୍ରଶ୍ନ ମହାରାଜା ପରୀକ୍ଷିତଙ୍କ ମୁଖରେ ଉତ୍ଥାପନ କରାଇ ନିଜେ ତାହାର ମୀମାଂସା କରି ଯାଇ ଅଛନ୍ତି ।

ଯଥାପି ଅଜ୍ଞାନାବଦ୍ଧ ଜୀବର ସତତ ଯେ ଭ୍ରମ ଜାତ ହୋଇଥାଏ, ସେ କଠିନ ବିଷୟର ସୁମୀମାଂସା ମୁଁ କରି ପାରିବି ଏ ଶକ୍ତି ମୋର ନାହିଁ । ତେବେ ଶ୍ରୀଲ କବିରାଜ ଗୋସ୍ୱାମୀ ସେ ପ୍ରଶ୍ନମାନ ଉତ୍ଥାପନ କରି ତାହା ଯେଉଁରୂପେ ବୁଝାଇ ଦେଇ ଅଛନ୍ତି ତାହା ପୁନରାବୃତ୍ତି କରୁ ଅଛି ମାତ୍ର ।

ଶ୍ରୀକବିରାଜ ଗୋସ୍ୱାମୀ ଲେଖି ଅଛନ୍ତି, " କାମ ଏହି ଶବ୍ଦ ବ୍ୟବହାର ହୋଇ ଥିଲେହେଁ, ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କ ପ୍ରୀତିରେ କାମର ଗନ୍ଧମାତ୍ର ନାହିଁ । ଏ ପ୍ରୀତି କାମ ନୁହେ, ପ୍ରେମ । ଲୁହା ଓ ସୁନାର ଯେରୂପ ପାର୍ଥକ୍ୟ ରହି ଅଛି କାମ ଓ ପ୍ରେମ ମଧ୍ୟରେ ପାର୍ଥକ୍ୟ ତଦ୍ରୂପ— ଆତ୍ମେନ୍ଦ୍ରିୟ ପ୍ରୀତିର ନାମ କାମ । କୃଷ୍ଣେନ୍ଦ୍ରିୟପ୍ରୀତିର ନାମ ପ୍ରେମ । ଯଥା ।—

"କାମ ପ୍ରେମ ଦୋହାକାର ବିଭିନ୍ନ ଲକ୍ଷଣ,
ଲୌହ ଆର ହେମ ଯୈଛେ ସ୍ୱରୂପ ବିଲକ୍ଷଣ ।
ଆତ୍ମେନ୍ଦ୍ରିୟ ପ୍ରୀତି ଇଚ୍ଛା ତାରେ ବଲି କାମ,
କୃଷ୍ଣେନ୍ଦ୍ରିୟ ପ୍ରୀତି ଇଚ୍ଛା ଧରେ ପ୍ରେମନାମ ।

( ଚୈଃ ଚଃ ଆଦି ୮ପରି )

କାମର ତାତ୍ପର୍ଯ୍ୟ ନିଜର ସମ୍ଭୋଗେଚ୍ଛା । ନିଜ ସୁଖାଭିଲାଷ ଯେଥିରେ ଅନ୍ତର୍ନିହିତ । କିନ୍ତୁ ପ୍ରେମରେ ନିଜ ସୁଖେଚ୍ଛା ଲେଶମାତ୍ର ନାହିଁ । ଶ୍ରୀକୃଷ୍ଣ କିରୂପ ସୁଖୀ ହେବେ ଏହାହିଁ ପ୍ରେମର ତାତ୍ପର୍ଯ୍ୟ । କାମକର୍ଦ୍ଦମିତ ହୃଦୟରେ ସେ ନିର୍ମଳ କୃଷ୍ଣପ୍ରେମକୁ ହୃଦୟଙ୍ଗମ କରିବା କିମ୍ବା ଧାରଣ କରିବା ବଡ଼ କଠିନ । ଯେ ସର୍ବଦା ମିଥ୍ୟାକଥା କହେ, ମିଥ୍ୟା କହିବାକୁ ଯାହାର ଲେଶ ଭୟ ନାହିଁ, ସେ ଲୋକ ସତ୍ୟର ମର୍ଯ୍ୟାଦା କଦାପି ବୁଝି ପାରିବ ନାହିଁ । ସେହିରୂପ ସଂସାରୀ ଜୀବ ଆମ୍ଭମାନଙ୍କର କୃଷ୍ଣପ୍ରେମ କି ପଦାର୍ଥ ତାହା ଧାରଣ କରିବା କଠିନ ଏମନ୍ତ କି ଅସମ୍ଭବ କହିଲେ ଚଳେ ।

ଶ୍ରୀଲ ରାମାନନ୍ଦ ରାୟ ବିଦ୍ୟାନଗରଠାରେ ମହାପ୍ରଭୁଙ୍କ ସଙ୍ଗେ କଥୋପକଥନ ସମୟରେ ତାହା ଏହିରୂପେ ବୁଝାଇ ଅଛନ୍ତି ଯଥା ।—

"ସହଜେ ଗୋପୀର ପ୍ରେମ ନହେ ପ୍ରାକୃତ କାମ,
କାମ କ୍ରୀଡ଼ାସାମ୍ୟେ ତାର କହି କାମ ନାମ,
ନିଜେନ୍ଦ୍ରିୟ ସୁଖ ହେତୁ କାମେର ତାତ୍ପର୍ଯ୍ୟ,
କୃଷ୍ଣ ସୁଖେ ତାତ୍ପର୍ଯ୍ୟ ଗୋପୀଭାବ ବାର୍ଯ୍ୟ ।,

( ଚୈଃ ଚଃ ମଧ୍ୟ )

କୌଣସି ବସ୍ତୁ ବୁଝାଇବାକୁ ଗଲେ ଉପସ୍ଥିତ ବସ୍ତୁ ମଧ୍ୟରୁ କୌଣସି ତତ୍ସମ୍ୟ ବସ୍ତୁକୁ ଉଦାହରଣ ଦେଇ ବୁଝାଇବାକୁ ହୁଏ । ଶ୍ରୀକୃଷ୍ଣଙ୍କର ଅଙ୍ଗ ଶିରୀଷ କୁସୁମ ବତ୍ କୋମଳ; ଶ୍ରୀରାଧାଙ୍କର ମୁଖ ଚନ୍ଦ୍ରମାବତ୍ ଶୋଭାଯୁକ୍ତ କିନ୍ତୁ ଏଠାରେ ଶିରୀଷ କୁସୁମ କିମ୍ବା ଚନ୍ଦ୍ରମା ଶ୍ରୀରାଧା କୃଷ୍ଣଙ୍କର ସୌନ୍ଦର୍ଯ୍ୟ କିମ୍ବା କୋମଳତା ସମ୍ପୂର୍ଣ୍ଣ ବ୍ୟକ୍ତ କରୁ ଅଛନ୍ତି କି ?

ତାହା କଦାପି ନୁହେ । କୋଟି କୋଟି ଗୁଣରେ ଶିରୀଷପୁଷ୍ପର କୋମଳତା ଯଦି ବୃଦ୍ଧି ପାଏ, କୋଟି କୋଟି ଗୁଣରେ ଚନ୍ଦ୍ରମାର ଶୋଭା ଯଦି ବର୍ଦ୍ଧିତ ହୁଏ ତେବେ ସୁଦ୍ଧା ଏମାନେ ଶ୍ରୀରାଧାକୃଷ୍ଣଙ୍କର ମାଧୁର୍ଯ୍ୟ କିମ୍ବା କୋମଳତାର ସାମ୍ୟ ହୋଇ ପାରବେ ନାହିଁ । ତେବେ ଏ ଭୂମଣ୍ଡଳରେ ସେ ଚିଦାନନ୍ଦ ରାଜ୍ୟର ପଦାର୍ଥସଙ୍ଗେ ତୁଳନା ହେବାକୁ ତ କିଛି ନାହିଁ, ନିରୁପାୟ ବାଧ ହୋଇ ତାହାର କିଛି ସାମ୍ୟଥିବା ବସ୍ତୁର ସଙ୍ଗେ ତୁଳନା ଦେଉ ଥାଅନ୍ତି । ସେହିପରି ପ୍ରେମକୁ ବୁଝାଇବାର ପଦାର୍ଥ ଏ ଭୂମଣ୍ଡଳରେ ନାହିଁ । କିଛି ସାମ୍ୟ ହେତୁ, କାମ ସଙ୍ଗେ ତାହାର ତୁଳନା କରାଯାଇ ଅଛି ଏବଂ କାମ ଆଖ୍ୟାରେ ତାହା ବ୍ୟକ୍ତ କରାଯାଇ ଅଛି । ତେବେ ପ୍ରକୃତରେ ଏ ଦୁହିଙ୍କର ( କାମର ଓ ପ୍ରେମର ) ପାର୍ଥକ୍ୟ ଅନେକ, ଯଥା, ଗୋଟିଏ ବୃକ୍ଷ ଓ ତାହାର ଛାୟା; ଛାୟା ବୃକ୍ଷର ଆକାର ଧାରଣ କରେ କିନ୍ତୁ ଛାୟା ବୃକ୍ଷର ସମାନ ନୁହେ । ସେହିପରି କାମ, ପ୍ରେମର ସମାନ ନହେ । ସେଥିପାଇଁ ଶ୍ରୀଲ କବିରାଜ ଗୋସ୍ୱାମୀ ଲେଖି ଅଛନ୍ତି ।

" ଅତଏବ କାମ ପ୍ରେମ ବହୁତ ଅନ୍ତର,
କାମ ଅନ୍ଧତମଃ ପ୍ରେମ ନିର୍ମଳ ଭାସ୍କର । "

( ଚୈଃ ଚଃ ଅନ୍ତ ୮ )

କୃଷ୍ଣ ସୁଖହିଁ ଗୋପରମଣୀମାନଙ୍କର ଏକମାତ୍ର ଉଦ୍ଦେଶ୍ୟ । ନିଜର ସୁଖପ୍ରତି ଇଚ୍ଛା ନାହିଁ କିମ୍ବା ନିଜ ଅସୀମ କଷ୍ଟ ପ୍ରତି ଭ୍ରୂକ୍ଷେପ ନାହିଁ । ସେ ପ୍ରେମରେ ଲେଶମାତ୍ର ଦାଗ ନାହିଁ। ତାହା ଏକବାରେ ନିର୍ମଳ । କୌଣସି ସମ୍ବାଦ-ପତ୍ରରେ ଏକ ସମୟରେ ଗୋଟିଏ କଥା ପଢ଼ି ଥିଲି; ତାହା ଗୋପୀପ୍ରେମର ଉତ୍ତମ ଉଦାହରଣ । ନିମ୍ନରେ ତାହା ପ୍ରକାଶ କଲି ।

ଏକଦା ଶ୍ରୀନାରଦ ଗୋପୀପ୍ରେମ ବୁଝିବାକୁ ପ୍ରୟାସୀହୋଇ ଶ୍ରୀଦ୍ୱାରିକାକୁ ଆସି ଶ୍ରୀକୃଷ୍ଣଙ୍କୁ ତାହା ପଚାରିଲେ । ଶ୍ରୀକୃଷ୍ଣ ବାକ୍ୟ ଦ୍ୱାରା ତାହା ବୁଝାଇ ନଦେଇ କାର୍ଯ୍ୟରେ ବୁଝାଇ ଦେବାକୁ ଇଚ୍ଛାକଲେ ଏବଂ ସେହି ଉଦ୍ଦେଶ୍ୟରେ ନିଜଅଙ୍ଗରେ ଜ୍ୱର ଜାତ କରାଇଲେ । ଅନେକ ଯତ୍ନରେ ସେ ଜ୍ୱର କିଛି-ମାତ୍ର ଉପଶମ ହେଲା ନାହିଁ । ଦ୍ୱାରକାବାସୀ ସମସ୍ତେ ଶ୍ରୀକୃଷ୍ଣଙ୍କ ପୀଡ଼ାରେ ମର୍ମାହତ ହେଲେ । ଶ୍ରୀମତୀ, ସତ୍ୟଭାମା, ରୁକ୍ମିଣୀ ପ୍ରଭୃତି କୃଷ୍ଣ ମହିଷୀମାନଙ୍କର ଚିନ୍ତାର ସୀମା ରହିଲା ନାହିଁ । ଶ୍ରୀକୃଷ୍ଣ କହିଲେ ମୁଁ ଦେଖୁଛି ଏ ଜ୍ୱର ଅନ୍ୟ ଉପାୟରେ ଉପଶମ ହେବ ନାହିଁ । ଯଦି ମୋର ଏ ପତ୍ନୀଗଣଙ୍କ ମଧ୍ୟରୁ କେହି ନିଜ ପଦଧୂଳି ମୋରଶିର ଉପରେ ଦିଅନ୍ତି ତେବେ ଏ ଜ୍ୱର ଉପଶମ ହୋଇପାରେ । ମହାମୁନି ନାରଦ ସେଠାରେ ଉପସ୍ଥିତ ଥିଲେ । ସେସମସ୍ତ ମହିଷୀମାନଙ୍କୁ ଏକେ ଏକେ ପଚାରିଲେ କିନ୍ତୁ କେହି ଶ୍ରୀକୃଷ୍ଣଙ୍କ ଶିରରେ ନିଜ ପଦଧୂଳି ଦେବାକୁ ସମ୍ମତ ହେଲେ ନାହିଁ । ସେମାନେ କହିଲେ ଏ କି କଥା ? ଆମ୍ଭେମାନେ ଶ୍ରୀକୃଷ୍ଣଙ୍କର ପଦର ଦାସୀ । ଆମ୍ଭମାନଙ୍କର ଚରଣ ଧୂଳି ତାଙ୍କ ଶିରଉପରେ ଦେବୁ । ତହୁଁ ଶ୍ରୀକୃଷ୍ଣ ନାରଦଙ୍କୁ କହିଲେ "ମୁନିବର ଆପଣ ଟିକିଏ ଅନୁଗ୍ରହ ପୂର୍ବକ ବ୍ରଜପୁରକୁ ଯାଆନ୍ତୁ । ସେଠାରୁ ମୋର ପ୍ରେୟସୀ ରାଧା କିମ୍ବା ଅନ୍ୟ କେହି ଗୋପୀଙ୍କର ପଦଧୂଳି ଯଦି ପାଇ ପାରନ୍ତି ତାହି ଆଣି ମୋ ମସ୍ତକରେ ଦେବେ । ତେବେ ମୋର ଜ୍ୱର ଉପଶମ ହୋଇପାରେ ।" ତାହାଶୁଣି ମହାମୁନି ନାରଦ ତତ୍କ୍ଷଣାତ୍ ବ୍ରଜପୁରକୁ ଗମନ କଲେ । ସେଠାରେ ଯାଇ ଗୋପୀ-ମଣ୍ଡଳପରିବେଷ୍ଟିତ ବରଦଣୀ ରାଧାଙ୍କୁ ଉପର୍ଯ୍ୟୁ ବିଷୟ ଜ୍ଞାପନ କରାଇଲେ । ଏହା ଶୁଣିବା ମାତ୍ରେ ସମସ୍ତ ଗୋପୀଗଣ ଏବଂ ଶ୍ରୀରାଧା

ସମସ୍ତେ ଶ୍ରୀକୃଷ୍ଣଙ୍କ ଜ୍ୱର ହେତୁ କାତର ହୋଇ କହିଲେ "ମୁନିବର ! ଆପଣେ କ୍ଷଣମାତ୍ର କାଳ ବିଳମ୍ବ ନ କରି ଆମ୍ଭମାନଙ୍କର ପଦଧୂଳି ନେଇ ଦ୍ୱାରକାକୁ ଯାଆନ୍ତୁ । ଶ୍ରୀକୃଷ୍ଣଙ୍କର ଲେଶମାତ୍ର ପୀଡ଼ା ଆମ୍ଭମାନଙ୍କର ଅସହ୍ୟ ।"

ଏହି ସଂସ୍କୃତି ଶାସ୍ତ୍ରୀୟ ସତ୍ୟକି ଗୋଟିଏ ଗଳ୍ପ ମୁଁ ଜାଣେ ନା । ତେବେ ଏହା ଗୋପୀ ପ୍ରେମ ଯେ କିରୂପ କାମଗନ୍ଧହୀନ ତାହାର ଉତ୍ତମ ଉଦାହରଣ । ନିଜ ପଦର ଧୂଳି ଶ୍ରୀକୃଷ୍ଣଙ୍କ ଶିର ଉପରେ ଦେଲେ ନିଜର ଯେ କିଛି ଅନିଷ୍ଟ ହେବ ସେ ଦୃଷ୍ଟି ଗୋପୀମାନଙ୍କର ନ ଥିଲା । କେବଳ କୃଷ୍ଣସୁଖହିଁ ସେମାନଙ୍କର ସମସ୍ତ ଜୀବନର ତାତ୍ପର୍ଯ୍ୟ । ଅତଏବ ସେମାନେ ଅପରାଧ ଭୟ ନ କରି ଓ ଧର୍ମା ଧର୍ମ ବିଚାର ନ କରି ନିଜ ପଦଧୂଳି ଅତଢ଼ିବା ପଠାଇ ଦେଲେ । ସେଥିପାଇଁ କବିରାଜ ଗୋସ୍ୱାମୀ ଲେଖିଅଛନ୍ତି ।

ଅତଏବ ଗୋପୀଗଣେର ନାହିଁ କାମଗନ୍ଧ,
କୃଷ୍ଣସୁଖ ଲାଗି ମାତ୍ର କୃଷ୍ଣ ସେ ସମ୍ବନ୍ଧ ।
ଆତ୍ମ ସୁଖ ଦୁଃଖ ଗୋପୀ ନା କରେ ବିଚାର
କୃଷ୍ଣ ସୁଖ ହେତୁ କରେ ସବ ବ୍ୟବହାର ।
କୃଷ୍ଣ ବିନା ଆରସବ କରି ପରିତ୍ୟାଗ
କୃଷ୍ଣ ସୁଖ ହେତୁ କରେ ଶୁଦ୍ଧ ଅନୁରାଗ ।

( ଚୈଃ ଚଃ ଆଦି ୪ପରି )

ବ୍ରଜବଧୂମାନଙ୍କ ସହିତେ ରାସବିଳାସ ସେ ମହାପ୍ରେମକ୍ରୀଡ଼ା । ଏଥିରେ କାମର ଗନ୍ଧମାତ୍ର ନାହିଁ । ଏଥିରେ କାମର ଗନ୍ଧମାତ୍ର ଥିଲେ, ମହାରାଜା ପରୀକ୍ଷିତଙ୍କର ଆସନ୍ନ ମୃତ୍ୟୁକାଳରେ ମୁନିଗଣ ବେଷ୍ଟିତ ସଭା ମଧ୍ୟରେ ମହାମନା ଶୁକଦେବ ଗୋସ୍ୱାମୀ ସେହି ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କର ଅପୂର୍ବ ରାସ ବିହାରକୁ ଏଡ଼େ ସୁମଧୁର ଭାବ. ପ୍ରେମ-ଗଦ୍‌ଗଦ ହୋଇ ବର୍ଣ୍ଣନ କରି ନ ଥାନ୍ତେ ଏବଂ ସେ ଲୀଳା ବର୍ଣ୍ଣନରେ ବକ୍ତା ଓ ଶ୍ରୋତା ଉଭୟଙ୍କୁ ପବିତ୍ର କରେ, ସେମାନଙ୍କ ହୃଦୟର କାମ ବିନାଶ କରେ ଏହା ଶ୍ରୀ ଶୁକଦେବ ଗୋସ୍ୱାମୀ କହି ନ ଥାନ୍ତେ ।

ମହାପ୍ରଭୁ ପ୍ରଦ୍ୟୁମ୍ନ ମିଶ୍ରଙ୍କୁ ଶ୍ରୀଳରାୟ ରାମାନନ୍ଦଙ୍କ ନିକଟକୁ କୃଷ୍ଣ କଥା ଶୁଣିବାକୁ ପଠାଇ ଥିଲେ, ସେ ରାୟଙ୍କ ଗୃହକୁ ଯାଇ ଶୁଣିଲେ, ରାୟ-ମହାଶୟ ଦୁଇଜଣ ପରମା ସୁନ୍ଦରୀ ଯୁବତୀଙ୍କୁ ଉଦ୍ୟାନର ନିଭୃତ ମନ୍ଦିରରେ ନେଇ ନିଜକୃତ ନାଟକର ଗୀତ ଶିକ୍ଷା ଦେଉଅଛନ୍ତି । ଏହା ଶୁଣି ପ୍ରଦ୍ୟୁମ୍ନ-ମିଶ୍ରଙ୍କ ମନରେ ଶ୍ରୀରାୟ ରାମାନନ୍ଦଙ୍କ ସମ୍ବନ୍ଧରେ କିଛି ସଂଶୟ ଜାତ ହେଲା । ତେଣୁ ସେ କୃଷ୍ଣକଥା ଶୁଣିବାର ବିଷୟ ରାୟ ମହାଶୟଙ୍କଠାରେ ପ୍ରକାଶ ନ କରି ଖାଲି ଦେଖା କରି ଚାଲି ଆସିଲେ । ମହାପ୍ରଭୁ ତାଙ୍କୁ ପଚା-ରିଲେ ମିଶ୍ର ମହାଶୟ ନିଜ ମନୋଗତଭାବ ସମସ୍ତ ପ୍ରକାଶ କଲେ । ମହାପ୍ରଭୁ ସେତେବେଳେ ରାମାନନ୍ଦଙ୍କ ଗୁଣ ବର୍ଣ୍ଣନ କରି କହିଥିଲେ, ଦେଖ, ରାମା-ନନ୍ଦଙ୍କ କଥା ଅତୀବ ଆଶ୍ଚର୍ଯ୍ୟ । ସେ ପରମାସୁନ୍ଦରୀ ଯୁବତୀଦ୍ୱୟଙ୍କର ଗୁହ୍ୟ-ଅଙ୍ଗାଦି ମାର୍ଜ୍ଜନ କରି ସେବା କରନ୍ତି ଓ ସେମାନଙ୍କୁ ବେଶ ଭୂଷାରେ ବିଭୂଷିତ କରି ନିଜ କୃତ ନାଟକର ଗୀତମାନ ଓ ଅଙ୍ଗଭଙ୍ଗୀମାନ ଶିକ୍ଷା କରାଇ ଶ୍ରୀଜଗନ୍ନାଥ ଦେବଙ୍କୁ ସେମାନଙ୍କ ଗୀତ ଶ୍ରବଣ କରାନ୍ତି ଓ ନୃତ୍ୟ ଦର୍ଶନ କରାନ୍ତି । ଏକା ରାୟରାମାନନ୍ଦଙ୍କର ଏହି ଅଧିକାର । ତେବେ ଏହା କହାଇବାର କାରଣ ଏହି ଯେ ବ୍ରଜବଧୂମାନଙ୍କ ସହ ରସାଦିବିଳାସ ବିଶ୍ୱାସ ସହ ଶ୍ରବଣ କଲେ କାମ ବିକାର ବିନଷ୍ଟ ହୁଏ । ଶ୍ରୀମଦ୍ଭାଗବତରେ ମଧ୍ୟ ଏହା ବର୍ଣ୍ଣିତ ହୋଇଅଛି । ଯଥାଃ—

" ବ୍ରଜବଧୂ ସଙ୍ଗେ କୃଷ୍ଣେର ରାସାଦି ବିଳାସ,
ଯେଇ ଜନ କହେ ଶୁନେ କରିୟା ବିଶ୍ୱାସ ।
ହୃଦ୍ ରୋଗ କାମ ତାର ତତ୍କାଳେ ହୟ କ୍ଷୟ,
ତିନଗୁଣ କ୍ଷୋଭ୍ ନହେ ମହାଧୀର ହୟ ।

( ଚୈଃ ଚଃ ଅନ୍ତ୍ୟ )

କିନ୍ତୁ ଶାସ୍ତ୍ରବଚନରେ ବିଶ୍ୱାସ ନାହିଁ, ଅପାର୍ଥିବ ଶ୍ରୀକୃଷ୍ଣଲୀଳାରେ ବିଶ୍ୱାସ ନାହିଁ, ଆମ୍ଭେମାନେ ସେ ଲୀଳା ଶ୍ରବଣର ପାତ୍ର ନୋହୁଁ । ଆଗେ କର୍ଣ୍ଣକୁ ଶୁଣିବାର ଉପଯୋଗୀ କରିବା ବିଧେୟ । ତତ୍ପରେ ସେହି ଅମାନୁଷୀ ପ୍ରେମଲୀଳା ଶୁଣିବା ଉଚିତ ।

ଅମ୍ଭ ବିଶୁଦ୍ଧ ବୈଷ୍ଣବଧର୍ମରେ ଏହିପରି ତାତ୍ପର୍ଯ୍ୟାନଭିଜ୍ଞ କେତେକ ଲୋକଙ୍କ ଦ୍ୱାରା ନାନା କଳଙ୍କ ପ୍ରବେଶ କରୁଅଛି । ସେମାନେ ଧର୍ମର ପ୍ରକୃତ ତାତ୍ପର୍ଯ୍ୟ ବୁଝି ନପାରି ମହାପ୍ରଭୁଙ୍କ ଉଚ୍ଚୋନ୍ନତ ଶିକ୍ଷାକୁ ଲକ୍ଷ୍ୟ ନ ରଖି ଇନ୍ଦ୍ରିୟ ଚରିତାର୍ଥ ଲାଳସାରେ ନିଜେ ନାନା ଭ୍ରଷ୍ଟାଚାରରେ ପ୍ରବୃତ୍ତ ହୋଇ, ସରଳମତି କୋମଳ ସ୍ୱଭାବ, ନବାନୁରାଗୀ ସ୍ତ୍ରୀ ପୁରୁଷମାନଙ୍କୁ ଉକ୍ତ ଭ୍ରଷ୍ଟାଚାରରେ ପ୍ରବୃତ୍ତ କରାଇ ସମାଜର ମହା ଅନିଷ୍ଟ ସାଧନ କରୁଅଛନ୍ତି ଏବଂ ଉତ୍ତମ ବୈଷ୍ଣବ ଧର୍ମ ପ୍ରତି ଜନସାଧାରଣଙ୍କର ଘୃଣା ଜାତ କରାଉଅଛନ୍ତି । ସେମାନେ ଏତିକି ମାତ୍ର ଦେଖି ପାରୁନାହାନ୍ତି ଯେ ଏ ଦେହ ପ୍ରାକୃତ । ଏ ଦେହରେ ଅପ୍ରାକୃତ ପ୍ରକାର କାର୍ଯ୍ୟ ସମ୍ପାଦିତ ହୋଇ ନ ପାରେ । ଶ୍ରୀରାଧାମାଧବଙ୍କର ଲୀଳା ଏ ଦେହରେ କେବଳ ମାନସରେ ଭାବିବାକୁ ହେବ ଓ ସାଧନ ସିଦ୍ଧି ହେଲେ, ଯେବେ ଚିଦାନନ୍ଦ ଦେହ ପାଇଲେ, ସେ ଦେହରେ ଶ୍ରୀରାଧାମାଧବଙ୍କର ସେବା କରିବାକୁ ହେବ । ଏ ସାଧନରେ ଭ୍ରଷ୍ଟାଚାର ସଙ୍ଗେ କିଛି ମାତ୍ର ସମ୍ପର୍କ ନାହିଁ । ଏ ବିଶୁଦ୍ଧ ବୈଷ୍ଣବ ଧର୍ମରେ ପ୍ରବେଶ କରିବାକୁ ଇଚ୍ଛୁକ ନବାନୁରାଗୀମାନଙ୍କର ଏ ପାପପିଶାଚୀ ହସ୍ତରୁ ରକ୍ଷା ପାଇବାକୁ ସାବଧାନ ହେବା କର୍ତ୍ତବ୍ୟ ।

ଉକ୍ତ ଭ୍ରଷ୍ଟାଚାରୀମାନଙ୍କ ଦ୍ୱାରା ଇନ୍ଦ୍ରଜାଲବତ୍ ନାନା ଭ୍ରଷ୍ଟମତର ପୋଷକ ପୁସ୍ତକ ମଧ୍ୟ ରଚିତ ହୋଇଅଛି । ସେ ସମସ୍ତ ଦେଖିଲେ ହୃଦୟ ଯୁଗପତ୍ ଘୃଣା ଓ ଲଜ୍ଜାରେ ପରିପୂର୍ଣ୍ଣ ହୁଏ ।

ସେ ସବୁ ଘୃଣିତ ବିଷୟରେ ଅଧିକ ଚର୍ଚ୍ଚା କରିବା ମୋର ଇଚ୍ଛା ନୁହେ । କେବଳ ମୁଁ ଏତିକି ମାତ୍ର କହୁଅଛି ଯେ କୃଷ୍ଣଭକ୍ତିର ସାଧନ ପଥ ମାନସିକ, ଦେହର ଇନ୍ଦ୍ରିୟ ଚରିତାର୍ଥ ଜଘନ୍ୟ ବ୍ୟାପାର ସଙ୍ଗେ ସେ ପ୍ରେମ ଧର୍ମର କିଛି ମାତ୍ର ସମ୍ପର୍କ ନାହିଁ । କେବଳ ପାଷଣ୍ଡଗଣ ଶାସ୍ତ୍ରର ଶବ୍ଦମାନଙ୍କର ନାନା ଅର୍ଥ ଆରୋପ କରି ନିଜର ଅଭିସନ୍ଧି ସାଧନ ନିମିତ୍ତ ଜଘନ୍ୟ ପଥ ଆବିଷ୍କାର କରିଅଛନ୍ତି ଓ ଅନେକ ସରଳ ଲୋକ ସେ ଭ୍ରମରେ ପଡ଼ି ଉନ୍ମାର୍ଗଗ୍ରସ୍ତ ହୋଇଅଛନ୍ତି ।

ମହାପ୍ରଭୁ, ଭବିଷ୍ୟତରେ ବୈଷ୍ଣବ ଧର୍ମରେ କଳଙ୍କ ପ୍ରବେଶ କରିବ ଏହା ଜାଣି ଛୋଟ ହରିଦାସଙ୍କୁ ଦଣ୍ଡଛଳରେ ଏହାର ଚୂଡ଼ାନ୍ତ ଶିକ୍ଷା ଅସ୍ମ-ମାନଙ୍କ ପାଇଁ ରଖି ଯାଇଅଛନ୍ତି । ଛୋଟ ହରିଦାସ ବୈରାଗୀ, ବୈରାଗୀ ହୋଇ ଶ୍ରୀଭଗବାନ ଆଚାର୍ଯ୍ୟଙ୍କ ଆଦେଶରେ ଶ୍ରୀନନ୍ଦି ମାଧବୀ ଦାସୀଙ୍କଠାରୁ ଯତ୍‌କିଞ୍ଚିତ ଚାଉଳ ମାଗି ଆଣିଥିଲେ, ତାଙ୍କର ଏହି ମାତ୍ର ଦୋଷରେ ମହାପ୍ରଭୁ ତାଙ୍କ ନିଜ ନିକଟକୁ ଆସିବାକୁ ବାରଣ କରିଥିଲେ, ଛୋଟ ହରିଦାସ ମହା-ପ୍ରଭୁଙ୍କର ଏହି କଠିନ ଆଜ୍ଞା ଶ୍ରବଣ କରି ବିଷାଦ ସାଗରରେ ମଗ୍ନ ହୋଇଲେ ଓ ତିନିଦିନ ପର୍ଯ୍ୟନ୍ତ ଜଳମାତ୍ର ଗ୍ରହଣ କଲେ ନାହିଁ, ତାଙ୍କର ଏ ଦୁଃଖ ଦେଖି ଶ୍ରୀଳ ସ୍ୱରୂପ ଗୋସ୍ୱାମୀ ମହାପ୍ରଭୁଙ୍କୁ ପଚାରିଲେ " ପ୍ରଭୋ ! ହରିଦାସ କି ଦୋଷ କରିଅଛି ଯେ ତାକୁ ଆପଣ ଦ୍ୱାର ପର୍ଯ୍ୟନ୍ତ ମନା କରି ଅଛନ୍ତି, ସେ ଯେ ଉପବାସରେ ରହିଅଛି" ମହାପ୍ରଭୁ କହିଲେ :—

" ବୈରାଗୀ ହଇୟା କରେ ପ୍ରକୃତି ସମ୍ଭାଷଣ,
ଦେଖିତେ ନା ପାରି ଆମି ତାହାର ବଦନ ।
ଦୁର୍ବାର ଇନ୍ଦ୍ରିୟ କରେ ବିଷୟ ଗ୍ରହଣ,
ଦାରବୀ ପ୍ରକୃତି ହରେ ମୁନି ଜନେର ମନ ।"
କ୍ଷୁଦ୍ରଜୀବ ସବ ମର୍କଟ ବୈରାଗ୍ୟ କରିୟା,
ଇନ୍ଦ୍ରିୟ ଚରାଞା ବୁଲେ ପ୍ରକୃତି ସମ୍ଭାଷିୟା ।
( ଚୈଃ ଚଃ ଅନ୍ତ୍ୟ ୨ ପରି )

ସ୍ୱରୂପ ଗୋସ୍ୱାମୀ ମହାପ୍ରଭୁଙ୍କ ମୁଖରୁ ଏକଥା ଶୁଣି ନିରୁତ୍ତର ହୋଇଲେ, କେତେ ଦିନ ପରେ ମହାପ୍ରଭୁଙ୍କର ପ୍ରିୟଭକ୍ତଗଣ ମିଳି ମହାପ୍ରଭୁଙ୍କୁ ଅନୁନୟ-ପୂର୍ବକ କହିଲେ, " ପ୍ରଭୋ ! ହରିଦାସର ଅପରାଧାନୁରୂପ ଶାସ୍ତି ସେ ଭୋଗ କଲାଣି, ଏବେ ତା ପ୍ରତି ଦୟାପ୍ରକାଶ କରନ୍ତୁ, ଏବେ ସେ ଆଉ ଅନ୍ୟାୟାଚରଣ କରିବ ନାହିଁ, ମହାପ୍ରଭୁ ସେ ସମସ୍ତଙ୍କର ଅନୁରୋଧ ନ ଶୁଣି କହିଲେ,, :—

" ପ୍ରଭୁ କହେ ମୋର ବଶ ନହେ ମୋର ମନ,
ପ୍ରକୃତି ସମ୍ଭାଷୀ ବୈରାଗୀ ନା କରେ ଦର୍ଶନ,

ନିଜ ଗାମ୍ଭୀର୍ଯ୍ୟ ଯାଉ ସବେ ଛାଡ଼ ବୃଥା କଥା,
ପୁନଃ କହି ଯଦି ଆମା ନା ଦେଖିବେ ହେଥା ।”

( ଚୈଃ ଚଃ ଅନ୍ତ୍ୟ ୨ ପଃ )

ଏଥିରେ ଆଉ କିଏ ଉତ୍ତର ଦେବ, ସମସ୍ତେ କର୍ଣ୍ଣରେ ହସ୍ତଦେଇ ତଟସ୍ଥ ହେଲେ, ଏହାପରେ ଆଉକିଛି କହିବାକୁ ସାହାସୀ ହେଲେ ନାହିଁ, କିନ୍ତୁ ସମସ୍ତେ ଉପାୟାନ୍ତର ନ ଦେଖି ଶ୍ରୀପରମାନନ୍ଦ ପୁରୀଙ୍କ ଶରଣ ନେଲେ । ସେମାନେ ଭାବିଲେ ଶ୍ରୀପରମାନନ୍ଦ ପୁରୀ ମହାପ୍ରଭୁଙ୍କ ଗୁରୁ ସ୍ଥାନୀୟ ଓ ମହା ସମ୍ମାନର ପାତ୍ର, ମହାପ୍ରଭୁ ଆମ୍ଭମାନଙ୍କ କଥା ନ ଶୁଣିଲେହେଁ ପୁରୀଗୋସ୍ୱାମୀଙ୍କ କଥା ଅବଶ୍ୟ ରଖିବେ, ସମସ୍ତଙ୍କ ଅନୁରୋଧରେ ପୁରୀ ଗୋସ୍ୱାମୀ ଏକାକୀ ମହାପ୍ରଭୁଙ୍କ ନିକଟକୁ ଯାଇ ହରିଦାସଙ୍କ ପ୍ରତି କୃପାଭିକ୍ଷା କଲେ, କିନ୍ତୁ ଭଗବାନ୍ ଶ୍ରୀଗୌରଚନ୍ଦ୍ରଙ୍କର ସେଥିରେ ସୁଦ୍ଧା ମନ ତରଳ ହେଲା ନାହିଁ, ସେ ତହୁଁ କହିଲେ “ ଶ୍ରୀପାଦ ! ଆପଣ ସମସ୍ତ ବୈଷ୍ଣବମାନଙ୍କ ସହ ଏ ଶ୍ରୀପୁରୁଷୋତ୍ତମରେ ବାସ କରନ୍ତୁ, ମୋତେ ଆଜ୍ଞା କରନ୍ତୁ ମୁଁ କେବଳ ଗୋବିନ୍ଦଙ୍କୁ ସଙ୍ଗେ ନେଇ ଆଲାଲ ନାଥରେ ବାସ କରିବି ।” ଏହା କହି ଶ୍ରୀପୁରୀ ଗୋସ୍ୱାମୀଙ୍କୁ ନମସ୍କାର କରି ଗୋବିନ୍ଦଙ୍କୁ ଡାକି ଆଲାଲ ନାଥ ଯିବାକୁ ଲାଗିଲେ । ଶ୍ରୀପୁରୀଗୋସ୍ୱାମୀ ଏହା ଦେଖି ବଡ଼ ବ୍ୟସ୍ତ ହେଲେ ଏବଂ ଦଉଡ଼ି ଯାଇ ଅନୁନୟପୂର୍ବକ ମହାପ୍ରଭୁଙ୍କୁ ଅଟକାଇଲେ ଏବଂ କହିଲେ :—

“ ତୋମାର ଯେ ଇଚ୍ଛା କର ସ୍ୱତନ୍ତ୍ର ଈଶ୍ୱର,
କେବା କି ବଲିତେ ପାରେ ତୋମାର ଉପର,
ଲୋକହିତ ଲାଗି ତୋମାର ସବ ବ୍ୟବହାର,
ଆମି ସବ ନା ଜାନି ଗମ୍ଭୀର ହୃଦୟ ତୋମାର ।”

( ଚୈଃ ଚଃ ଅନ୍ତ୍ୟ ୨ ପଃ )

ଏହି ଯେ ଛୋଟ ହରିଦାସଙ୍କ ମହାପ୍ରଭୁଙ୍କର ଦଣ୍ଡ ଏହାର ଗଭୀର ଉଦ୍ଦେଶ୍ୟ ଭେଦ କରିବା ବଡ଼ ସୁକଠିନ, ତେବେ ଶ୍ରୀଳ କବିରାଜ ଗୋସ୍ୱାମୀ ଲେଖି ଅଛନ୍ତି :—

" ମହାପ୍ରଭୁ କୃପାସିନ୍ଧୁ କେପାରେ ବୁଝିତେ,
ନିଜଭକ୍ତେ ଦଣ୍ଡ କରେ ଧର୍ମ ଶିଖାଇତେ,
ଦେଖି ତ୍ରାସ ଉପୁଜିଲ ସବ୍ ଭକ୍ତଗଣେ,
ସ୍ୱପ୍ନେ ଓ ଛାଡ଼ିଲ ସବେ ସ୍ତ୍ରୀ ସମ୍ଭାଷଣେ,

( ଚୈ: ଚ: ଅନ୍ତ୍ୟ ୨ ୟ ପର )

ଏହାପରି ଶିକ୍ଷାର ଉଚ୍ଚ ଆଦର୍ଶ ଥାଉଁ ଥାଉଁ ଯଦି ଆମ୍ଭେମାନେ ପରଙ୍କ ବାହ୍ୟ ଦୁର୍ବୁଦ୍ଧି କରି ଅନେକଙ୍କୁ ନିଜେ ନିଜେ ଡୁବୁଁ ପଡ଼ୁଁ ଦେଖୁ ପାରୁ ଦୋଷ କାହାର ।

ପ୍ରେମକୁ ଯେପରି କାମ ବୋଲି ଲେଶମାତ୍ର କଳ୍ପିତ ନ ହୁଏ ଏହାହିଁ ମହାପ୍ରଭୁଙ୍କର ଏହି ଶିକ୍ଷାର ସାର ମର୍ମ ।—



## ବିଂଶ ପରିଚ୍ଛେଦ ।

### ଜୀବତତ୍ତ୍ୱ ।

ଜୀବର ସ୍ୱରୂପ କଣ ଏ ବିଷୟର ଯେନ ବହୁଶାସ୍ତ୍ର ପ୍ରଣୀତ ହୋଇଅଛି । ଏ ଜଟିଳ ବିଷୟର ମୀମାଂସା ହେବା ବଡ଼ କଠିନ । ଏହା ଯେନ କେତେ କେତେ ବାଦ ବିବାଦ, ତର୍କ ଓ ଯୁକ୍ତି ଯେ ହୋଇଯାଇଅଛି ଓ ହେଉଅଛି ତାହାର ସୀମା ନାହିଁ । ଦର୍ଶନଶାସ୍ତ୍ରାନଭିଜ୍ଞ ମାଦୃଶ ବ୍ୟକ୍ତିର ଏ ଗୁରୁତର ବିଷୟରେ ଚର୍ଚ୍ଚା କରିବା ବିଡ଼ମ୍ବନା । ତେବେ ଶ୍ରୀଚୈତନ୍ୟଚରିତାମୃତ ଓ ଶ୍ରୀଚୈତନ୍ୟଭାଗବତରେ ଏ ସମ୍ବନ୍ଧରେ ଯାହା ଉଲ୍ଲେଖ ହୋଇଅଛି ତାହା ମୁଁ ଉଦ୍ଧୃତ କରି ବସାଇ ଦେଉଅଛି ମାତ୍ର ।

ଶ୍ରୀଲ ସନାତନ ଗୋସ୍ୱାମୀ ମହାପ୍ରଭୁଙ୍କୁ ପଚାରିଥିଲେ, ମୁଁ କିଏ ଏବଂ ମୋତେ ତାପତ୍ରୟ ସତତ ବ୍ୟଥିତ କରୁଅଛି କାହିଁକି ଅର୍ଥାତ୍ ଜୀବର ସ୍ୱରୂପ କଣ ଏବଂ ଜୀବ କପାଇଁ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ଏହି ତ୍ରିତାପରେ ସତତ ଜର୍ଜ୍ଜରିତ ହୋଇ ଅଶେଷ କଷ୍ଟ ଭୋଗ କରୁଅଛି । ତାଙ୍କ ପ୍ରଶ୍ନ ଯଥା :—

"କେ ଆମି କେନ ଆମାୟ ଜାରେ ତାପତ୍ରୟ,
ଇହା ନାହିଁ ଜାନି କେମନେ ହିତ ହୟ ।"

(ଚୈଃ ଚଃ ମଧ୍ୟ ୨୦ ପରି)

ଶ୍ରୀଲ ସନାତନ ଆହୁରି ମଧ୍ୟ ପଚାରିଥିଲେ, ମୋର କି ପ୍ରକାରରେ ହିତ ହେବ ମୁଁ ତାହା ଜାଣେନାହିଁ, ଅର୍ଥାତ୍ ଜୀବ ମାୟାରେ ସତତ ବିମୋହିତ, ତେଣୁ ନିଜର ହିତାହିତ ବୁଝିବାର ତାହାର ଶକ୍ତି ନାହିଁ ।

ମହାପ୍ରଭୁ ସନାତନଙ୍କର ଏ ପ୍ରଶ୍ନର ଉତ୍ତର ଦେଇଥିଲେ "ସନାତନ ! ତୁମ୍ଭେ ଶ୍ରୀକୃଷ୍ଣଙ୍କର ଅତୀବ କୃପାପାତ୍ର । ଏ ସମସ୍ତ ତତ୍ତ୍ୱ ତୁମ୍ଭଙ୍କୁ ଉତ୍ତମରୂପେ ଜଣା । ତାପତ୍ରୟ ତୁମ୍ଭଙ୍କୁ ସ୍ପର୍ଶ କରି ପାରୁନାହିଁ । ତଥାପି ଜାଣିବା ଦାର୍ଢ୍ୟଲାଗି ସେତେବେଳେ ପଚାରୁଅଛ ମୁଁ କହୁଅଛି ଶୁଣ । ଜୀବର ପ୍ରକୃତ ସ୍ୱରୂପ ଶ୍ରୀକୃଷ୍ଣଙ୍କର ନିତ୍ୟଦାସ । ଜୀବ ଶ୍ରୀକୃଷ୍ଣଙ୍କର ତଟସ୍ଥାଶକ୍ତି ବିଶେଷ । ସେ ଶ୍ରୀକୃଷ୍ଣଙ୍କଠାରୁ ଅଭେଦ ଏବଂ ଶ୍ରୀକୃଷ୍ଣଙ୍କଠାରୁ ଭେଦ । ସୂର୍ଯ୍ୟ ଓ ତାହାଙ୍କ କିରଣ, ଅଗ୍ନି ଓ ତାହାର ଜ୍ୱାଳା, ସମୁଦ୍ର ଓ ଜଳକଣା ଏମାନଙ୍କ ମଧ୍ୟରେ ଯେଉଁ ସମ୍ପର୍କ ଶ୍ରୀକୃଷ୍ଣ ଓ ଜୀବ ମଧ୍ୟରେ ସେହି ସମ୍ପର୍କ ରହିଅଛି । କିରଣ ସୂର୍ଯ୍ୟଙ୍କର ଅଂଶ ବିଶେଷ, ଜଳକଣା ସମୁଦ୍ରର ଅଂଶ ବିଶେଷ ଅତଏବ ଏହି ସମ୍ପର୍କରେ ତାହା ଅଭେଦ । କିନ୍ତୁ କଣାଏ କିରଣ କିମ୍ବା ବୁନ୍ଦାଏ ଜଳରେ ସୂର୍ଯ୍ୟଦେବଙ୍କର କିମ୍ବା ସମୁଦ୍ରର ସମସ୍ତ ଶକ୍ତି ନିହିତ ଅଛି କି ? ତାହାନୁହେଁ, ଏହି ଭାବରେ ସେମାନେ ସୂର୍ଯ୍ୟ କିମ୍ବା ସମୁଦ୍ରଠାରୁ ଭିନ୍ନ । ସେହିପ୍ରକାର ଜୀବ ଶ୍ରୀକୃଷ୍ଣଙ୍କଠାରୁ ଅଭେଦ ଏବଂ ଏକପ୍ରକାର ଭେଦ । ତେଣୁ ମହାପ୍ରଭୁ କହୁଅଛନ୍ତି :—

"ଜୀବେର ସ୍ୱରୂପ ହୟ କୃଷ୍ଣେର ନିତ୍ୟଦାସ
କୃଷ୍ଣେର ତଟସ୍ଥାଶକ୍ତି ଭେଦାଭେଦ ପ୍ରକାଶ ।
ସୂର୍ଯ୍ୟାଂଶ କିରଣ ଯେନ ଅଗ୍ନି ଜ୍ୱାଳାଚୟ,
ସ୍ୱାଭାବିକ କୃଷ୍ଣେର ତିନଶକ୍ତି ହୟ ।

( ଚୈଃ ଚଃ ମଧ୍ୟ ୨୦ ପରି )

ଏହି ଉକ୍ତିଦ୍ୱାରା ମହାପ୍ରଭୁ "ସୋଽହଂ" ବାଦକୁ ଖଣ୍ଡନ କରିଅଛନ୍ତି । ଜୀବ ବ୍ରହ୍ମ ସମାନ ଏହା ମହାପ୍ରଭୁଙ୍କର ସିଦ୍ଧାନ୍ତ ନୁହେଁ । ତେଣୁ ସେ ଅନ୍ୟସ୍ଥାନରେ କହିଅଛନ୍ତି !

"ଯେଇ ମୂର୍ଖ କହେ ଜୀବ ଈଶ୍ୱରେର ସମ
ସେଇତ ପାଷଣ୍ଡୀ ହୟ ଦଣ୍ଡେ ତାରେ ଯମ ।"

[ ଚୈଃ ଚଃ ମଧ୍ୟ )

ଅର୍ଥାତ୍ ଯେ ଜୀବ ଓ ବ୍ରହ୍ମ ଏ ଦୁହିଁଙ୍କୁ ସମାନ ଜ୍ଞାନ କରେ ସେ ମହାପାପୀ ଏବଂ ତାକୁ ଯମଦଣ୍ଡ ଭୋଗ କରିବାକୁ ହୁଏ । ଶ୍ରୀକୃଷ୍ଣରାଜ୍ୟକୁ ଯିବାକୁ ତାହାର ଅଧିକାର ନାହିଁ ।

ଜୀବ କୃଷ୍ଣୋନ୍ମୁଖୀ ନ ହୋଇ ସଂସାରଦୁଃଖରେ ପ୍ରମତ୍ତ, ତେଣୁ ମାୟା କର୍ତ୍ତୃକ ପ୍ରପୀଡ଼ିତ । କେତେବେଳେ ଜୀବ ଭଲ କାର୍ଯ୍ୟ କରି ସ୍ୱର୍ଗକୁ ଯାଉଅଛି କିମ୍ବା ମନ୍ଦ କାର୍ଯ୍ୟ କରି ନରକରେ ପଡ଼ୁଅଛି କିନ୍ତୁ ଶ୍ରୀକୃଷ୍ଣଚରଣାରବିନ୍ଦରେ ଏକାନ୍ତ ଶରଣାପନ୍ନ ନ ହେବା ଯାଏ ମାୟାହାତରୁ ତାହାର ନିସ୍ତାର ନାହିଁ । ନାନାବିଧ ମଙ୍ଗଳ କାର୍ଯ୍ୟ କରି ଜୀବ ଯଦି ସ୍ୱର୍ଗ ଭୋଗ କରେ ତଥାପି ମାୟାହାତରୁ ତାହାର ନିସ୍ତାର ନାହିଁ । କର୍ମଫଳ ଶେଷହେଲେ ପୁନର୍ବାର ସଂସାରରେ ନିପତିତ ହୋଇ ମାୟା କର୍ତ୍ତୃକ ଯନ୍ତ୍ରିତ ହୁଏ । ଯଥା:—

"କୃଷ୍ଣ ଭୁଲି ସେଇ ଜୀବ ଅନାଦିବହିର୍ମୁଖ,
ଅତଏବ ମାୟାତାରେ ଦେୟ ସଂସାର ଦୁଃଖ ।
କଭୁ ସ୍ୱର୍ଗେ ଉଠାୟ କଭୁ ନରକେ ଡୁବାୟ,
ଦଣ୍ଡ୍ୟଜନେ ରାଜା ଯେନ ନଦୀତେ ଚୁବାୟ ॥"

( ଚୈଃ ଚଃ ମଧ୍ୟ ୨୦ପରି )

କୃଷ୍ଣବହିର୍ମୁଖଜୀବ କୋଟୀ କୋଟୀ ଜନ୍ମ ଏହିପରି ସଂସାରଯାତନା ଭୋଗକରନ୍ତି । କିନ୍ତୁ ଯଦି ସାଧୁକୃପାବଳରୁ କିମ୍ବା ଶାସ୍ତ୍ରକୃପାବଳରୁ ସେ କେବେ କୃଷ୍ଣୋନ୍ମୁଖୀ ହୁଏ ତେତେବେଳେ ମାୟାହାତରୁ ସେ ନିସ୍ତାର ପାଏ ଏବଂ କୃଷ୍ଣ ଭଜନ କରି ଶେଷରେ ଶ୍ରୀକୃଷ୍ଣଚରଣାରବିନ୍ଦରେ ତାଙ୍କର ନିତ୍ୟ ସେବକ ହୋଇ ବାସକରେ । ଯଥା :—

"ସାଧୁ ଶାସ୍ତ୍ର କୃପାୟ ଯଦି କୃଷ୍ଣୋନ୍ମୁଖ ହୟ
ସେଇ ଜୀବ ନିସ୍ତରେ, ମାୟା ତାହାରେ ଛାଡ଼ୟ ।"

( ଚୈଃ ଚଃ ମଧ୍ୟ ୨୦ପରି )

ଶ୍ରୀକୃଷ୍ଣ ଶାସ୍ତ୍ର, ଗୁରୁ ଓ ଅନ୍ତର୍ଯ୍ୟାମୀରୂପରେ ଜୀବକୁ ନିଜତତ୍ତ୍ୱ ଶିଖାଉଅଛନ୍ତି । ନିଜ ସହିତ ଜୀବର ଯେ ପ୍ରଭୁ ଓ ଦାସର ନିତ୍ୟ ସମ୍ବନ୍ଧ ତାହା ଜୀବକୁ ଜଣାଉଅଛନ୍ତି ।

ଜୀବ ଶ୍ରୀକୃଷ୍ଣଙ୍କର ବିଭିନ୍ନାଂଶ କିନ୍ତୁ ତାଙ୍କ ଶକ୍ତିର ଅନ୍ତର୍ଭୁକ୍ତ । ସେ ଜୀବ ପୁଣି ପ୍ରଧାନ ଦୁଇ ଶ୍ରେଣୀରେ ବିଭକ୍ତ । ଏକ ନିତ୍ୟ ମୁକ୍ତ, ଅପର ନିତ୍ୟ ସଂସାରୀ । ଯେଉଁ ଜୀବ କୃଷ୍ଣୋନ୍ମୁଖ ସେ ନିତ୍ୟ ମୁକ୍ତ । ସେ ଶ୍ରୀକୃଷ୍ଣଙ୍କ ପ୍ରକଟ ଅବତାର କାଳରେ ଏହି ସଂସାରରେ ଆସି ଶ୍ରୀକୃଷ୍ଣଙ୍କର ସେବାସୁଖ ଅନୁଭବ କରନ୍ତି ସେ କୃଷ୍ଣ ପାରିଷଦ ମଧ୍ୟରେ ଗଣ୍ୟ । ସେବା ସୁଖରେ ସତତ ଆନନ୍ଦ ଉପଲବ୍ଧି କରନ୍ତି । କିନ୍ତୁ କୃଷ୍ଣବହିର୍ମୁଖ ବ୍ୟକ୍ତି ବଦ୍ଧଜୀବନାମରେ ଖ୍ୟାତ । ସେ ସତତ ମାୟା କର୍ତ୍ତୃକ ପ୍ରପୀଡ଼ିତ । ସତତ ଆଧ୍ୟାତ୍ମିକାଦି ତାପତ୍ରୟରେ ଜର୍ଜରିତ । କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟାଦି ରିପୁଗଣ ତାକୁ ସତତ ପ୍ରହାର କରନ୍ତି । ଏମାନଙ୍କ ଅସହ୍ୟ ପ୍ରହାରରେ ବଦ୍ଧଜୀବ ପ୍ରାଣାନ୍ତ କଷ୍ଟ ଭୋଗ କରେ । ତେବେ ଯଦି ଏହି ମାୟାବଦ୍ଧଜୀବ ସୌଭାଗ୍ୟକ୍ରମେ ସାଧୁ ବୈଦ୍ୟର ଭେଟ ପାଏ ଏବଂ ତାଙ୍କ ଆଶ୍ରୟ ଗ୍ରହଣ କରେ ତେତେବେଳେ ମାୟାପିଶାଚୀ ତାହାକୁ ଭୟରେ ପଳାୟନ କରେ ଏବଂ ସେ ଜୀବ କୃଷ୍ଣଭକ୍ତି ଲାଭ କରି କ୍ରମେ ସାଧନ ବଳରେ ସିଦ୍ଧ ଦେହ ପାଇ ଶ୍ରୀକୃଷ୍ଣଚରଣାରବିନ୍ଦ ଲାଭ କରେ । ଏହି ସମ୍ବନ୍ଧରେ ମହାପ୍ରଭୁଙ୍କର ନିଜ ଶ୍ରୀମୁଖର ଉକ୍ତି ଏହିରୂପ । ଯଥା :—

ସେହିବିଭିନ୍ନାଂଶ ଜୀବ ଦୁଇତ ପ୍ରକାର
ଏକନିତ୍ୟ ମୁକ୍ତ ଏକେର ନିତ୍ୟ ସଂସାର ।
ନିତ୍ୟ ମୁକ୍ତ ନିତ୍ୟ କୃଷ୍ଣଚରଣେ ଉନ୍ମୁଖ,
କୃଷ୍ଣ ପାରିଷଦନାମ, ଭୁଞ୍ଜେ ସେବା ସୁଖ
ନିତ୍ୟବନ୍ଧ କୃଷ୍ଣହଇତେ ନିତ୍ୟବହିର୍ମୁଖ
ନିତ୍ୟ ସଂସାର ଭୁଞ୍ଜେ ନରକାଦି ଦୁଃଖ ।
ସେଇ ଦୋଷେ ମାୟା ପିଶାଚୀ ଦଣ୍ଡ କରେ ତାହାରେ
ଆଧ୍ୟାତ୍ମିକ ତାପତ୍ରୟ ତାରେ ଜାରି ମାରେ ।
କାମ କ୍ରୋଧେର ଦାସ ହଞା ତାର ଲାଥି ଖାୟ
ଭ୍ରମିତେ ଭ୍ରମିତେ ଯଦି ସାଧୁ ବୈଦ୍ୟପାୟ ।

ତାର ଉପଦେଶ ମନ୍ତ୍ରେ ପିଶାଚୀ ପଳାୟ,
କୃଷ୍ଣଭକ୍ତି ପାୟ ତବେ, କୃଷ୍ଣନିକଟ ଯାୟ "
( ଚୈ ଚ ମଧ୍ୟ ୨୨ ପରି )

ଜୀବର ସ୍ୱରୂପହିଁ ଶ୍ରୀକୃଷ୍ଣଙ୍କର ନିତ୍ୟଦାସ । ଜୀବ ସେହି ତତ୍ତ୍ୱଟିକୁ ଭୁଲି ମାୟା ଜାଲରେ ପଡ଼ି ସଂସାର ସାଗରରେ ମଗ୍ନ ହୁଏ ଓ ଅଗାଧ ଜଳମଗ୍ନ ସନ୍ତରଣାନଭିଜ୍ଞ ଲୋକପରି ମହା କଷ୍ଟ ଭୋଗ କରେ । କିନ୍ତୁ ଜୀବ ଗୁରୁପଦ ଆଶ୍ରୟ ପୂର୍ବକ ଶ୍ରୀକୃଷ୍ଣ ଭଜନ କଲେ ସେ ମାୟା ଜାଲରୁ ବିମୁକ୍ତ ହୋଇ ଯାଏ ।

ସେ ସଂସାର ସାଗରରୁ ଉତ୍ତୀର୍ଣ୍ଣ ହୋଇ ସଦାନନ୍ଦ ବ୍ରଜଭୂମିରେ ଶ୍ରୀକୃଷ୍ଣ ଚରଣାରବିନ୍ଦଲାଭ କରି ନିତ୍ୟ ସେବା ସୁଖ ଅନୁଭବ କରେ ଓ ନିତ୍ୟ ସୁଖରେ ବିଚରଣ କରେ । ଯଥା :—

"କୃଷ୍ଣେର ନିତ୍ୟ ଦାସ ଜୀବ ତାହାଭୁଲି ଗେଲ,
ସେଇ ଦୋଷେ ମାୟାତାର ଗଲାୟ ବାନ୍ଧିଲ ।
ତାତେ କୃଷ୍ଣଭଜେ କରେ ଗୁରୁର ସେବନ,
ମାୟାଜାଲ ଛୁଟେ ପାୟେ କୃଷ୍ଣେର ଚରଣ "
( ଚୈ ଚ ମଧ୍ୟ ୨୨ ପରି )

ଭଗବାନ ଶ୍ରୀକୃଷ୍ଣ କୋଟି କୋଟି ବ୍ରହ୍ମାଣ୍ଡରେ କର୍ତ୍ତା । ସେ ଯେପରି ଚଳାଉଅଛନ୍ତି ସମସ୍ତେ ତଦାଜ୍ଞାନୁବର୍ତ୍ତୀ ହୋଇ ଚଳୁଅଛନ୍ତି । ଅତଏବ ଜୀବର ନିଜ ସ୍ୱାତନ୍ତ୍ର୍ୟ କିଛିନାହିଁ । ସେ କୃଷ୍ଣଙ୍କ ହାତରେ ପିତୁଳା ପରି ନାଚୁଅଛି । ପିତୁଳା ମଧ୍ୟରେ କଳ ସଂଯୋଗ କଲେ ସେ ଗାଇପାରେ, ଆଜିକାଲି ଗ୍ରାମୋଫୋନ ଯନ୍ତ୍ର ସୁନ୍ଦର ଭାବରେ ଗୀତ ଗାଉଅଛି । ଅବିକଳ ମନୁଷ୍ୟର ଗାଇବାପରି ।

ସେହିରୂପ ମନୁଷ୍ୟ ଭଗବାନଙ୍କ ହାତରେ ଏକଯନ୍ତ୍ର ବିଶେଷ । ସେ ମନୁଷ୍ୟକୁ ଯେପରି ନଗ୍ରଜ ଅଛନ୍ତି ଏବଂ ଯେଉଁ ସ୍ୱରରେ ଯାହା ଗାଇବାକୁ ଆଜ୍ଞା କରୁଅଛନ୍ତି ମନୁଷ୍ୟ ସେପରି ନାଚୁଅଛି ଓ ଗାଉଅଛି ।

ଶ୍ରୀସନାତନ ଗୋସ୍ୱାମୀ ଶ୍ରୀପୁରୁଷୋତ୍ତମକୁ ଆସି ରଥଚକ୍ରତଳେ ପ୍ରାଣ ହରାଇବାକୁ ମାନସ କରିଥିଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ତାଙ୍କ ମନୋଗତ ଭାବ ଜାଣି ତାଙ୍କୁ ଏରୂପ ଗର୍ହିତ କାର୍ଯ୍ୟ କରିବାକୁ ବାରଣ କଲେ ଏବଂ କହିଲେ " ସନାତନ ! ତୁମ୍ଭେ ତ ମୋତେ ଆତ୍ମ ସମର୍ପଣ କରିଅଛ, ସେ ଦେହରେ ତୁମ୍ଭର କି ଅଧିକାର ଅଛି । ବିଶେଷତଃ ଯେଉଁ ଦେହ ସାହାଯ୍ୟରେ ମୁଁ ମଥୁରାରେ ଲୁପ୍ତତୀର୍ଥ ଉଦ୍ଧାର କରିବି ଓ ଶାସ୍ତ୍ରରାଶି ମନ୍ଥନ କରାଇ ସାଧାରଣଙ୍କ ପୂର୍ବକ ଭକ୍ତତତ୍ତ୍ୱ ଭକ୍ତିତତ୍ତ୍ୱ କୃଷ୍ଣତତ୍ତ୍ୱ ପ୍ରେମତତ୍ତ୍ୱ ବୈଷ୍ଣବାଚାର ପ୍ରଭୃତି ବିଷୟକ ଶାସ୍ତ୍ରମାନ ପ୍ରଣୟନ କରାଇବି ସେ ଦେହକୁ ତୁମ୍ଭେ ନଷ୍ଟ କରିବାକୁ ବସିଅଛ, ଏହାକି ତୁମ୍ଭର ଉଚିତ ? " ସନାତନ କହିଲେ " ପ୍ରଭୋ ! ଆପଣଙ୍କର ଗମ୍ଭୀର ଆଶୟ ବୁଝିବ ଏପରି ଶକ୍ତି କାହାର ଅଛି । କାଠ ପିତୁଳାକୁ ଯେପରି ନଚାଯାଏ ତାହା ତଦ୍ରୂପ ନାଚେ । କିନ୍ତୁ ପିତୁଳା କି ଜାଣେ, ମୁଁ ଏହିପରି ନାଚୁଅଛି । ଆପଣଙ୍କ ହାତରେ ସେହିପରି ମନୁଷ୍ୟଗଣ ପିତୁଳା ପରି ନାଚୁଅଛନ୍ତି । ଯଥା —

" କାଷ୍ଠର ପୁତ୍ତଳୀ ଯେନ କୁହକେ ନାଚାୟ
ଆପନେ ନାଜାନେ ପୁତ୍ତଳୀ କିବା ନାଚେ ଗାୟ ।
ଯାରେ ଯୈଛେ ନାଚାଓ ସେ କରେ ନର୍ତ୍ତନେ,
କୈଛେ ନାଚେ କେବା ନାଚାୟ ସେହ ନାହିଁ ଜାନେ "
( ଚୈ- ଚ- ଅନ୍ତ୍ୟ ୪ ପରି )

ଜୀବ ଯେ ଶ୍ରୀକୃଷ୍ଣଙ୍କ ଇଚ୍ଛାଧୀନ ଓ ତାହାର ଲେଶମାତ୍ର ସ୍ୱାତନ୍ତ୍ର୍ୟ ନାହିଁ ଶ୍ରୀଶଚୀମାତାଙ୍କର ଉକ୍ତିମଧ୍ୟ ତାହାର ଏକ ପ୍ରମାଣ ।

ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ପରେ ଶ୍ରୀମନ୍ ନିତ୍ୟାନନ୍ଦଙ୍କଦ୍ୱାରା ଶାନ୍ତିପୁରକୁ ନୀତ ହୁଅନ୍ତି । ଜନନୀ ଶ୍ରୀମତୀ ଶଚୀଦେବୀ ମଧ୍ୟ ସେଠାକୁ ଆସିଥିଲେ । ମହାପ୍ରଭୁ ଜନନୀଙ୍କୁ ପ୍ରଣାମ ପୂର୍ବକ ସ୍ତବ କରନ୍ତେ ଶଚୀଦେବୀ କହିଥିଲେ, "ବାପ ନିମାଇଁରେ ତୋର ବଚନ ବୁଝିବାର ଶକ୍ତି କାହାର ଅଛି ? ଜୀବ ସକଳ ଯେ ଅଚେତନ କାଷ୍ଠଖଣ୍ଡ ପରି ସଂସାରସାଗରରେ ଭାସମାନ ହେଉଅଛନ୍ତି କାହାରକି କିଛି ନିଜ କର୍ତ୍ତୃତ୍ୱ ଅଛି । ସବୁ ତୋହରି ଇଚ୍ଛା । ଯଥା —

"ପ୍ରାଣହୀନଜନ ଯେନ ସିନ୍ଧୁ ମାଝେ ଭାସେ,
ସ୍ରୋତ ଯଥା ଲୟ ତଥା ଚଳୟେ ଅବଶେ ।
ଏଇ ମତ ସର୍ବଜୀବ ସଂସାର ସାଗରେ,
ତୋମାର ମାୟାୟ ଯେ କରାୟ ତାହାକରେ ॥

( ଚୈଃ ଭାଃ ଅନ୍ତ୍ୟ ୪ ଅଧ୍ୟାୟ )

ସ୍କନ୍ଦ ପୁରାଣରେ ମହାଯୋଗୀ ଶଙ୍କରଙ୍କର ଯେଉଁ ଉକ୍ତିଅଛି ତାହା ଶ୍ରୀଳ ବୃନ୍ଦାବନ ଦାସ ନିଜଗ୍ରନ୍ଥରେ ବ୍ୟବହାର କରି ଦେଖାଇଅଛନ୍ତି, ସମସ୍ତଭୁବନ ବାୟୁକର୍ତ୍ତୃକ ତୃଣ ଚାଳିତ ହେବାତୁଲ୍ୟ ଭଗବାନଙ୍କ କର୍ତ୍ତୃତ୍ୱରେ ଚାଲୁଅଛି । ସେ ପ୍ରସଙ୍ଗଟିର ସାମାନ୍ୟସୂଚନା ଏଠାରେ ଉଦ୍ଧୃତ । ତେଣୁ କିଛି ଲେଖିଲି ।

ଶ୍ରୀଧାମକାଶୀରେ କାଶୀ ନାମଧେୟ ଏକରାଜା ରାଜତ୍ୱ କରୁଥିଲେ । ସେ ଶିବଙ୍କର ଭକ୍ତ ଓ ଉଗ୍ରମନରୂପେ ଶିବଙ୍କର ଆରାଧନା କରୁଥିଲେ । ଏକସମୟରେ ତାଙ୍କର କୁମତି ଉପସ୍ଥିତ ହେଲା ଏବଂ ସେ ଶ୍ରୀକୃଷ୍ଣଙ୍କୁ ଜିଣିବାର କାମନା କରି ଶିବଙ୍କୁ ପୂଜା କରିବାକୁ ଲାଗିଲେ । ଦୁର୍ଗାନ୍ତି ତପଃ ପ୍ରଭାବରେ ଆଶୁତୋଷ ସନ୍ତୁଷ୍ଟ ହୋଇ ତାଙ୍କୁ ଦେଖାଦେଲେ ଏବଂ ତାଙ୍କୁ ବର ଯାଚିଲେ । ରାଜାତହୁଁ ଶ୍ରୀକୃଷ୍ଣଙ୍କୁ ଜୟ କରିବାର ବର ପ୍ରାର୍ଥନା କଲେ । ଦେବଦେବ ମହାଦେବ କହିଲେ ହେଉ ତୁମ୍ଭେ ଯୁଦ୍ଧକୁ ଅଗ୍ରସର ହୁଅ । ମୁଁ ଗଣସହ ତୁମ୍ଭ ପଛେ ପଛେ ପାଶୁପତଅସ୍ତ୍ର ଘେନି ଯାଉଅଛି । ସର୍ବାନ୍ତର୍ଯ୍ୟାମୀ ବାସୁଦେବ ରାଜାର ମନକଥା ଜାଣି ମହାବଳୀ ଶ୍ରୀସୁଦର୍ଶନ ଚକ୍ରକୁ ପଠାଇଲେ । ଶ୍ରୀସୁଦର୍ଶନ ଯାଇ ପ୍ରଥମେ କାଶୀରାଜାଙ୍କ ମସ୍ତକଚ୍ଛେଦନ କଲେ ଏବଂ ତତ୍ପରେ ବାରାଣସୀନଗର ଧ୍ୱଂସ କଲେ । ଶଙ୍କରଙ୍କର ପାଶୁପତଅସ୍ତ୍ର ଶ୍ରୀସୁଦର୍ଶନଙ୍କ ତେଜରେ ଭୀତହୋଇ ଲେଉଟିଗଲେ । ଶଙ୍କର ଅନନ୍ୟୋପାୟ ହୋଇ ଶ୍ରୀକୃଷ୍ଣଙ୍କର ଶରଣାପନ୍ନ ହେଲେ । ଶ୍ରୀକୃଷ୍ଣ ତହୁଁ ସୁଦର୍ଶନଙ୍କୁ ସମ୍ବରଣ କଲେ । ସେତେବେଳେ ଶଙ୍କର ଶ୍ରୀକୃଷ୍ଣଙ୍କର ଶରଣାପନ୍ନ ହୋଇ ନିଜ ଅହଂକାର ଖଣ୍ଡନ କରି ଶ୍ରୀକୃଷ୍ଣଙ୍କୁ ସ୍ତୁତି କରି କହିଥିଲେ ପ୍ରଭୋ ତୋରପାଦପଦ୍ମ ସତତ ଚିନ୍ତା କରୁଥିଲେହେଁ ତୋରମାୟାରେ ବିମୁଗ୍ଧ ହୋଇ ସମୟ ସମୟରେ ମନରେ ଅହଙ୍କାର ଜାତ

ହେଉଅଛି । ଅତଏବ ଅନୁଗ୍ରହପୂର୍ବକ ମୋତେ ନିଜଚରଣ ନିକଟରେ ସ୍ଥାନ ଦେଉନ୍ତୁ ଶ୍ରୀକୃଷ୍ଣ କହିଲେ ହେଉ ତୁମ୍ଭେ ମୋର ପ୍ରିୟଧାମ ଶ୍ରୀପୁରୁଷୋତ୍ତମର ଦଶକ୍ରୋଶୀ ମଧ୍ୟରେ ଏକାମ୍ର କାନନରେ ଯାଇ ବାସକର । ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟଅଛି ଯେ ସ୍ଥାନରେ ନିଦ୍ରାରେ ସମାଧିର ଫଳହୁଏ । ଭ୍ରମଣରେ ପ୍ରଦକ୍ଷିଣର ଫଳ ଲାଭ ହୁଏ, କଥା ମାତ୍ର ଉଚ୍ଚାରଣରେ ମୋର ସ୍ତବ କରାହୁଏ, ସେଠାରେ ଯମର ଅଧିକାର ନାହିଁ । ସେହି ଶ୍ରୀପୁରୁଷୋତ୍ତମର ଉତ୍ତରରେ ଏକାମ୍ରକାନନରେ ବାସକର ଏବଂ ସେଠାରେ ଭୁବନେଶ୍ବର ବୋଲି ତୁମ୍ଭନାମ ବିଖ୍ୟାତ ହେବ । ତଦନୁସାରେ ଶିବ ଆସି ସେହି ଏକାମ୍ର କାନନରେ ବାସକଲେ ଏବଂ ସମସ୍ତ ତୀର୍ଥରୁ ବିନ୍ଦୁ ବିନ୍ଦୁ ଜଳ ଆଣି ବିନ୍ଦୁ-ସରୋବର ପ୍ରକାଶ କଲେ । ଦେବଦେବ ଶଙ୍କର ଶ୍ରୀକୃଷ୍ଣଙ୍କୁ ଉପରୋକ୍ତ ସ୍ତୁତି କାଳରେ କହିଥିଲେ

> ପବନେ ଚଳାଯ଼ୁ ଯେମ ଶୁଷ୍କତୃଣଗଣ,
> ଏଇମତ ଅଧିନନ୍ତୁ ସକଳ ଭୁବନ ।
> ଯେ କରଓ ପ୍ରଭୁ ତୁମ୍ଭେ ସେଇ ଜୀବକରେ,
> କେହି କେବା ଅଛେ ଯେ ତୋମାର ମାୟା ତରେ
>
> ( ଚୈଃ ଭାଃ ଅନ୍ତ୍ୟ ୨ୟ ଅ )

ଶ୍ରୀମୁରାରି ଗୁପ୍ତ ମଧ୍ୟ ଠିକ ଏହିରୂପ ଉକ୍ତି ବ୍ୟବହାର କରିଅଛନ୍ତି ଯଥା—

> ପବନ କାରଣେ ଯେନ ଶୁଷ୍କତୃଣ ଚଲେ,
> ଜୀବେର ସକଳ ଧର୍ମ ତୋରଶକ୍ତି ବଲେ ।
>
> ( ଚୈଃ ଭାଃ ମଧ୍ୟ ୨୦ ଅ )

ସମସ୍ତହିଁ ଶ୍ରୀକୃଷ୍ଣଙ୍କ ଇଚ୍ଛାରେ ଚାଳିତ । ଜୀବଇଚ୍ଛାରେ କିଛିମାତ୍ର ହୋଇ ନପାରେ । ଘରେ କୋଠୀ ଭର୍ତ୍ତି ରହିଅଛି କିନ୍ତୁ ମାନବ ତାହା ଭୋଗ କରିବାକୁ ଅକ୍ଷମ । ହୁଏତ ଜ୍ବର ହେଲା କମ୍ବା ଅନ୍ୟକିଛି କାର୍ଯ୍ୟ ହଠାତ୍ ପଡ଼ିଗଲା ଯେ ଲୋକକୁ ବଢ଼ା ଅନ୍ନ ଛାଡ଼ିଯିବାକୁ ହେଲା ।

ବ୍ରାହ୍ମଣ ଶ୍ରୀଜଗନ୍ନାଥମିଶ୍ରଙ୍କ ଘରେ ପାକକରିବା କାଳରେ ମହାପ୍ରଭୁ ବାଲ୍ୟଚାପଲ୍ୟରେ ତାଙ୍କର ଅନ୍ନ ଉଚ୍ଛିଷ୍ଟ କରିବାରୁ ଯେ ଶ୍ରୀକୃଷ୍ଣଙ୍କୁ ନିବେ-ଦନ କରି ନ ପାରି ଅନ୍ନ ରନ୍ଧନରୁ ବିରତ ହେଲେ । ମହାପ୍ରଭୁଙ୍କରଅଗ୍ରଜ ଶ୍ରୀବିଶ୍ୱରୂପ ତାଙ୍କୁ ପୁନର୍ବାର ପାକ କରିବାକୁ ଅନୁରୋଧ କରନ୍ତେ ସେ ବିପ୍ରବର କହିଥିଲେ :—

"କୋଟି ଭକ୍ଷ୍ୟ ଦ୍ରବ୍ୟ ଯଦି ଥାଏ ନିଜଘରେ,
କୃଷ୍ଣ ଆଜ୍ଞା ହଇଲେ ସେ ଖାଇବାରେ ପାରେ ।
ଯେ ଦିନେ କୃଷ୍ଣେର ଯାରେ ଲିଖନ ନା ହୟ,
କୋଟି ଯତ୍ନ କରୁକ ତଥାପି ସିଦ୍ଧ ନୟ ।"

( ଚୈ: ଭା: ଆଦି ୪ର୍ଥ )

ମହାପ୍ରଭୁ ନିଜେ ମଧ ବହୁସ୍ଥାନରେ ଜୀବଙ୍କୁ ଏହିଶିକ୍ଷା ଦେଇଅଛନ୍ତି । ମହାପ୍ରଭୁ ସନ୍ନ୍ୟାସୀ ହୋଇ ନୀଳାଚଳକୁ ଆସିବା କାଳରେ ପଥରେ ନିତ୍ୟା-ନନ୍ଦ ଗଦାଧର ପ୍ରଭୃତି ସଙ୍ଗୀମାନଙ୍କ ପରୀକ୍ଷା କରିବା ଉଦ୍ଦେଶ୍ୟରେ ପଚ୍ଚା-ରିଲେ, "ତୁମ୍ଭମାନଙ୍କ ମଧରେ ପଥପାଇଁ କିଏ କି ସମ୍ବଳ ଆଣିଅଛ ।" ସଙ୍ଗୀମାନେ ଉତ୍ତର କଲେ "ପ୍ରଭୋ ! ଭବଦୀୟ ଆଜ୍ଞା ବ୍ୟତିରେକେ ଆମ୍ଭ ମାନଙ୍କର କିଛି ଦ୍ରବ୍ୟ ସଙ୍ଗରେ ନେବାର ଶକ୍ତି ନାହିଁ ।" ମହାପ୍ରଭୁ ଏ ଉତ୍ତରରେ ସନ୍ତୁଷ୍ଟ ହୋଇ କହିଲେ "ବଡ଼ ଉତ୍ତମ କଥା । ଭଗବାନଙ୍କର ଇଚ୍ଛା ଥିଲେ ମହାଅରଣ୍ୟରୁ ଖାଦ୍ୟ ମିଳିବ । ତାଙ୍କ ଇଚ୍ଛା ବ୍ୟତିରେକେ ଘରେ ପ୍ରଚୁର ପରିମାଣରେ ଉତ୍ତମ ଖାଦ୍ୟ ଥିଲେ ମଧ ଲୋକ ଖାଇ ନ ପାରେ । ଯଥା :—

"ଭୋକ୍ତବ୍ୟ ଅଦୃଷ୍ଟେ ଥାକେ ଯେ ଦିନେ ଲିଖନ,
ଅରଣ୍ୟେଓ ଆସିମିଳେ ଅବଶ୍ୟ ତଖନ ।
ପ୍ରଭୁ ଯାରେ ଯେ ଦିବସ ନାଲିଖେ ଆହାର,
ରାଜପୁତ୍ର ହେଉ ତବୁ ଉପବାସ ତାର ।
ଥାକିଲେ ଓ ଖାଇତେ ନାପାରେ ଆଜ୍ଞାବିନେ,
ଅକସ୍ମାତ୍ କନ୍ଦଳ କରାୟେ୍ କାରସନେ ।

କ୍ରୋଧ କରି ବଲେ ମୁଇଁ ନା ଖାଇବ ଭାତ,
ଦ୍ରବ୍ୟ କରିଲେକ ନଜ ଶିରେ ଧର୍ମ୍ମେ ହତ ।
ଅଥବା ସକଳଦ୍ରବ୍ୟ ହୈଲେ ବିଦ୍ୟମାନ,
ଅଚମ୍ବିତେ ଜ୍ୱର ଦେହେ ହୈଲ ଅଧିଷ୍ଠାନ ।
ଜ୍ୱରବେଦନାୟ କୋଥା ଥାକଲ ଭକ୍ଷଣ,
ଅତଏବ ଈଶ୍ବରେର ଇଚ୍ଛା ସେ କାରଣ ।

[ ଚୈଃ ଭାଃ ଅନ୍ତ୍ୟ ୨ୟ ]

ଏହା ସ୍ୱୟଂ ମହାପ୍ରଭୁଙ୍କର ଉକ୍ତି । ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଧର୍ମର ପ୍ରକୃତ ଅର୍ଥ ବୁଝି ପାରିଲେ ଏହାର ସତ୍ୟତା ହୃଦୟଙ୍ଗମ ହେବ । ଏହିରୂପେ ମହାପ୍ରଭୁ ଜୀବମାନଙ୍କ ଶିକ୍ଷା ପାଇଁ ଏହିରୂପ ଉକ୍ତି ବ୍ୟବହାର କରିଅଛନ୍ତି । ଶ୍ରୀଲବୃନ୍ଦାବନ ଦାସ ତେଣୁ କହି ଅଛନ୍ତି ।

"ଯେତେମତେ କେହେ କୋଟି ଯତ୍ନନାହିଁ କରେ,
ଈଶ୍ବରେର ଇଚ୍ଛା ହୈଲେ ସେଇ ଫଳଧରେ ॥

( ଚୈ ଭା ଅନ୍ତ ୨ୟ )

ସଂସାରର ସମସ୍ତଜୀବ ଈଶ୍ୱରାଧୀନ । ରାଜା ମହାରାଜା ହେଉନ୍ତୁ ଅଥବା ଶୌର୍ଯ୍ୟ ବୀର୍ଯ୍ୟରେ କେହି ସଂସାରକୁ ବିମୁଗ୍ଧ କରନ୍ତୁ ସମସ୍ତେ ଭଗବତ୍ ଶକ୍ତିର ଅଧୀନ । ମହାପ୍ରତାପଶାଳୀ ନେପୋଲିୟନ୍ ବୋନାପାର୍ଟଙ୍କୁ ତାଙ୍କ ଶେଷଜୀବନରେ କାରାଗାରରେ ରହି କାଳକଟାଇବାକୁ ହୋଇଥିଲା । ପୁରାଣ ବର୍ଣ୍ଣିତ ମହାପ୍ରତାପୀ ଲଂକେଶ୍ୱର ରାବଣ ଓ ଇନ୍ଦ୍ରପ୍ରସ୍ଥେଶ୍ୱର ଦୁର୍ଯ୍ୟୋଧନଙ୍କ ଶେଷ ଦୁରବସ୍ଥା ଭାରତବର୍ଷରେ କିଏ ନ ଜାଣେ । ସମସ୍ତେ ଭଗବତ୍ ଇଚ୍ଛାର ଅଧୀନ । ଯେ ଯେତେ ଆତ୍ମାଭିମାନୀ ହେଉ କାର୍ଯ୍ୟତଃ ସକଳଜୀବ ଭଗବତ୍ ଶକ୍ତିର ଅଧୀନ । ସମ୍ପ୍ରତି ରୁଷିୟା ଓ ଜର୍ମାନୀର ମହା ପ୍ରତାପଶାଳୀ ସମ୍ରାଟମାନଙ୍କର ଦୁର୍ଦ୍ଦଶା ଦେଖିଲେ ତ ! ଏତ ସେ ଦିନର କଥା । ମହାପ୍ରଭୁ ଏ ସମ୍ବନ୍ଧରେ ଏକସ୍ଥାନରେ ଯେଉଁ ଉକ୍ତିଟି ବ୍ୟବହାର କରିଅଛନ୍ତି ତାହା ଏହାର ଜ୍ୱଳନ୍ତ ଉଦାହରଣ ।

ମହାପ୍ରଭୁ ଯେତେବେଳେ ଶ୍ରୀବୃନ୍ଦାବନ ଗମନ ଉଦ୍ଦେଶ୍ୟରେ ଶ୍ରୀପୁରୁଷୋତ୍ତମରୁ ବଙ୍ଗ ଦେଶକୁ ଆସିଥିଲେ ସେତେବେଳେ ସେ ରୂପସନାତନଙ୍କ ବାସଭୂମି ରାମକେଳି ଗ୍ରାମକୁ ଯାଇଥିଲେ । ପ୍ରବଳପ୍ରତାପୀ ହୋସେନ ସାହା ସେତେବେଳେ ଗୌଡ଼ର ବାଦଶାହା । ମହାପ୍ରଭୁଙ୍କ ସଙ୍ଗେ ଲକ୍ଷଲକ୍ଷଲୋକ ଦର୍ଶନାଭିଳାଷୀ ହୋଇ ଗମନ କରୁଥିଲେ । ସେ ଯେଉଁ ସ୍ଥାନରେ ଯାଇ ଅବସ୍ଥାନ କରୁଥିଲେ ଲକ୍ଷ ଲକ୍ଷ ଲୋକ ଆସି ରୁଣ୍ଡ ହେଉଥିଲେ ଏବଂ ମହାପ୍ରଭୁଙ୍କ ଅଦ୍ଭୁତ ନୃତ୍ୟ କୀର୍ତ୍ତନ ଦର୍ଶନ କରି କୃତକୃତ୍ୟ ହେଉଥିଲେ । ରାମକେଳି ଗ୍ରାମରେ ତାଙ୍କର ଅବସ୍ଥାନ କାଳରେ କୋତୁଆଳ ଯାଇ ଗୌଡ଼େଶ୍ୱର ହୁସେନସାହାଙ୍କୁ ମହାପ୍ରଭୁଙ୍କର ଆଗମନ ବାର୍ତ୍ତା ଓ ତାଙ୍କ ସହ ଯେ ଲୋକ ଅଛନ୍ତି ତାହା ସମସ୍ତ ନିବେଦନ କଲେ । ଗୌଡ଼େଶ୍ୱର ତାଙ୍କ ନିଜର ଜଣେ ପ୍ରଧାନ କର୍ମଚାରୀ କେଶବ ଖାନଙ୍କୁ ମହାପ୍ରଭୁଙ୍କ ସମ୍ବନ୍ଧରେ ପ୍ରକୃତ ତତ୍ତ୍ୱ ପ୍ରଶ୍ନକଲେ, କେଶବ ଖାନ୍ ମନେ କଲେ ବାଦସାହା ମୁସଲମାନ, ଏ ଓଡ଼ିଶା ଆକ୍ରମଣ କରି ନାନା ଦେବଦେବୀ ମୂର୍ତ୍ତି ନଷ୍ଟ କରିଅଛନ୍ତି, ଏ ବ୍ରାହ୍ମଣ ବୈଷ୍ଣବଙ୍କୁ ଉତ୍ପୀଡ଼ନ କରି ଅଛନ୍ତି, ବର୍ତ୍ତମାନ ଅବା ମହାପ୍ରଭୁଙ୍କ ପ୍ରତି କିଛି ଅନିଷ୍ଟ ଘଟାଇ ପାରନ୍ତି ଏହାଭାବି କହିଲେ ଶ୍ରୀକୃଷ୍ଣ ଚୈତନ୍ୟ ଜଣେ ଭିକ୍ଷୁକ ସନ୍ନ୍ୟାସୀମାତ୍ର ଏବଂ ପାଞ୍ଚ ଦଶଜଣ ଲୋକ ତାଙ୍କ ସଙ୍ଗରେ ଅଛନ୍ତି, ସେ ବୃକ୍ଷତଳେ ବାସ କରନ୍ତି ।

ଗୌଡ଼େଶ୍ୱର ମହାପ୍ରଭୁଙ୍କ ବିଷୟ କିଛି ଭଲ କରି ଶୁଣିଥିଲେ ଓ କେଶବଖାନ୍ ଯେଉଁ ଅଭିପ୍ରାୟରେ ଏରୂପ ତୁଚ୍ଛ କରି କହୁ ଅଛନ୍ତି ତାହା ମଧ୍ୟ ବୁଝି ପାରିଲେ ଏବଂ କହିଲେ ନା ଗରିବ ବୋଲି ତାଙ୍କୁ କହନା । ହିନ୍ଦୁମାନେ ଯାହାଙ୍କୁ କୃଷ୍ଣ ବୋଲି କହନ୍ତି ଏବଂ ମୁସଲମାନମାନେ ଖୋଦା ବୋଲି କହନ୍ତି ସେ ସ୍ୱୟଂ ସେହି, ଆମ୍ଭଦେଶମଧ୍ୟରେ ସେ ସ୍ୱଚ୍ଛନ୍ଦରେ ବିହାର କରନ୍ତୁ, ଯେପରି କେହି ତାଙ୍କ ପ୍ରତି କିଛି ଅତ୍ୟାଚାର ନ କରେ । କି କୋତୁଆଲ, କି କାଜୀ କିବା ଅନ୍ୟ କେହି ଯେ ତାଙ୍କ ପ୍ରତି କିଛି ଅତ୍ୟାଚାର କରେ ମୁଁ ତାହାର ପ୍ରାଣ ଦଣ୍ଡ ଆଜ୍ଞା କରିବି । ଗୌଡ଼େଶ୍ୱର ଏମନ୍ତ ଆଜ୍ଞା ପ୍ରଚାର

କଲେହେଁ ସେସ୍ଥାନର ସଜ୍ଜନଗଣ ଏକତ୍ରିତ ହୋଇ ଏହି ପରାମର୍ଶ କଲେ, ଏ ମହାରାଜା ମୁସଲମାନ ଓଡ଼ିଶାରେ କୋଟି କୋଟି ପ୍ରତିମା ଭଗ୍ନ କରି-ଅଛନ୍ତି । ରାଜା କାଳସର୍ପ, ଅତଏବ ଏହାଙ୍କୁ ବିଶ୍ୱାସ ନାହିଁ । ଏବର୍ତ୍ତମାନ ଏରୂପ ଅଜ୍ଞାପ୍ରବୃତ୍ତିର କଲେହେଁ, ହୁଏତ କାଲି କେହି ଖଟୁଆ ମୁଖରୁ କିଛି କୁମନ୍ତ୍ରଣା ଶୁଣି ତାଙ୍କର ଏମତ ପରିବର୍ତ୍ତିତ ହୋଇଯିବ । ଅତଏବ ମହା-ପ୍ରଭୁଙ୍କର ଏସ୍ଥାନ ଶୀଘ୍ର ପରିତ୍ୟାଗ କରିବା ବିଧେୟ । ଏହି ପରାମର୍ଶ କରି ଜଣେ ସୁବ୍ରାହ୍ମଣଙ୍କୁ ଏହିବିଷୟ କହିବା ନିମିତ୍ତ ମହାପ୍ରଭୁଙ୍କ ନିକଟକୁ ପଠାଇଲେ । ସେ ବ୍ରାହ୍ମଣ ଯାଇ ଦେଖିଲେ ଲକ୍ଷ ଲକ୍ଷ ଲୋକ ପ୍ରେମୋନ୍ମତ୍ତ ହୋଇ କୀର୍ତ୍ତନ କରୁ ଅଛନ୍ତି ଓ ମହାପ୍ରଭୁ ଅବିଷ୍ଟ ଭାବରେ ମଧ୍ୟରେ ନୃତ୍ୟ କରୁଅଛନ୍ତି । ଏହା ଦେଖି ବ୍ରାହ୍ମଣ ବିସ୍ମିତ ହେଲେ ଏବଂ ମହାପ୍ରଭୁଙ୍କୁ ଏ ବିଷୟ ଗୋଚର କରିବେ ତାହାର ଅବସର ପାଇଲେ ନାହିଁ । ମହାପ୍ରଭୁଙ୍କ କୌଣସି ପାରିଷଦଙ୍କୁ କହି ଚାଲି ଆସିଲେ । ଏକଥା କ୍ରମେ ପାରିଷଦବୃନ୍ଦ ଓ ଅପରାପର ଉପସ୍ଥିତ ବ୍ୟକ୍ତିଙ୍କ ମଧ୍ୟରେ ପ୍ରଚାରିତ ହେଲା । ଏହା ଶୁଣି ସମସ୍ତେ ଚିନ୍ତିତ ହେଲେ । ଅନ୍ତର୍ଯ୍ୟାମୀ ପ୍ରଭୁ ଭକ୍ତଗଣଙ୍କର ଏହି ଚିନ୍ତା ଜାଣି ପାରି କହିଲେ "ତୁମ୍ଭେମାନେ ଅକାରଣରେ ଭୀତ ହେଉଅଛ କାହିଁକି? ମୋତେ ମହାରାଜା ଡ଼କାଇବେ କାହିଁକି ? ଯେବେ ଡ଼କାନ୍ତି ତେବେ ମୁଁ ତାଙ୍କ ପାଖକୁ ଯିବି, ସେଥିରେ କ୍ଷତି କଣ" ତେବେ ତୁମ୍ଭେମାନେ ଏତିକି ବୁଝିପାରୁନାହିଁ ମୋତେ ଡ଼କାଇବାର ରାଜାର କି ଶକ୍ତି ଅଛି ? ମୁଁ ଯଦି ତା ହୃଦୟରେ ରହି ସେରୂପ ପ୍ରବୃତ୍ତି ଦିଏଁ ତେବେ ସିନା ସେ ମୋତେ ଡକାଇବ । ମୁଁ ତାକୁ ସେ ପ୍ରବୃତ୍ତି ନ ଦେଲେ ତ ସେ ମୋତେ ଡ଼କାଇ ନପାରେ । ମୋର ଇଚ୍ଛା ବିନା କି କେହି କିଛି କରି ପାରେ," ଯଥା :—

"ରାଜା ବା ଆମାରେ କେନ ବଲିବ ଗୃହତେ
କି ଶକ୍ତି ରାଜାର ଏବା ବୋଲ ଉଚାରିତେ ।
ଆମି ଯଦି ବୋଲାଇ ସେ ରାଜାର ମୁଖେତେ,
ତବେ ସେ ବଲିବ ରାଜା ଆମାରେ ଗୃହତେ ।"

( ଚୈଃ ଭାଃ ଅନ୍ତ୍ୟ ୪ ଅଃ )

ଅତଏବ ମହାପ୍ରଭୁ ଏହି ବାକ୍ୟ ଦ୍ୱାରା ଜଗତକୁ ଶିକ୍ଷା ଦେଇଅଛନ୍ତି ଯେ ଭଗବତ୍ ଶକ୍ତି ବ୍ୟତୀତ କାହାର କିଛି କରିବାର ଶକ୍ତି ନାହିଁ । ଜୀବର ସମସ୍ତ କାର୍ଯ୍ୟହିଁ ଭଗବତ୍ ଇଚ୍ଛାଧୀନ ।

ସମସ୍ତ ଯେ ଶ୍ରୀଭଗବାନଙ୍କ ଶକ୍ତିରେ ଚାଳିତ, ମନୁଷ୍ୟର ନିଜର କିଛି ମାତ୍ର ଶକ୍ତି ନାହିଁ ଶ୍ରୀମନ୍ ନିତ୍ୟାନନ୍ଦଙ୍କର ଉକ୍ତି ଏହାର ଏକ ଉତ୍ତମ ପ୍ରମାଣ । ଶ୍ରୀମନ୍ ନିତ୍ୟାନନ୍ଦ ମହାପ୍ରଭୁଙ୍କର ଦ୍ୱିତୀୟ ସ୍ୱରୂପ ଓ ବଳରାମଙ୍କ ଅବତାର । ଏକା ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ଚୈତନ୍ୟଙ୍କ ଛଡ଼ା ନିତ୍ୟାନନ୍ଦଙ୍କୁ ବଳି ଅଧିକ କେହି ନାହିଁ । ମାଧାଇକୁ କୃପାକରିବା ନିମନ୍ତେ ମହାପ୍ରଭୁ ତାଙ୍କୁ ଅନୁରୋଧ କରନ୍ତେ ସେ ( ଶ୍ରୀମନ୍ନିତ୍ୟାନନ୍ଦ ) କହିଲେ "ପ୍ରଭୋ ! ଆପଣ ବୃକ୍ଷ ଦ୍ୱାରା ମଧ୍ୟ ଅନ୍ୟରକୁ କୃପା କରିପାରନ୍ତି । ମହାପାତକୀ ମାଧାଇ ପ୍ରତି ଆପଣଙ୍କର ଯେତେବେଳେ କୃପା ହୋଇ ଅଛି, ସେ ଅବଶ୍ୟ ଉଦ୍ଧାର ହେବ । ମୋତେ କେବଳ ସେଥିରେ ନିମିତ୍ତମାତ୍ର କରାଇଅଛନ୍ତି । ଯଥା :—

" ନିତ୍ୟାନନ୍ଦ ବଲେ ପ୍ରଭୁ କି ବଲିବ ମୁଞି
ବୃକ୍ଷଦ୍ୱାରେ କୃପାକର ସେଇ ଶକ୍ତି ତୁମି ।"

( ଚୈଃ ଭାଃ ମଧ୍ୟ ୧୩ଶ ଅ )

ସ୍ୱୟଂ ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କର ଏରୂପ ଉକ୍ତି ବର୍ତ୍ତମାନ ଆଉ ? ଆମ୍ଭେମାନେ ଅଭିମାନରେ ଅନ୍ଧ ହୋଇ " ମୁଁ କଲି, ମୁଁ ଦେଲି " ପ୍ରଭୃତି ଶବ୍ଦରେ ପ୍ରମତ୍ତ ହେଉଅଛୁଁ । ପ୍ରକୃତ କର୍ତ୍ତା ଜଣେ ତାହାପ୍ରତି ଆଦୌ ଦୃଷ୍ଟି ରଖୁନାହୁଁ । ଜୀବଯେ ଶ୍ରୀକୃଷ୍ଣଙ୍କର ନିତ୍ୟଦାସ ଓ ତାହାର କିଛି ମାତ୍ର ସ୍ୱାତନ୍ତ୍ର୍ୟ ନାହିଁ , ଏହିବ ଟିକିଏ ମାତ୍ର ମନକୁ ଆଣୁନାହୁଁ । ବରଂ କିଛି ଖରାପ ହେଲେ ମନେ କରୁଛୁଁ ଏହା ଭଗବାନ କରାଇଲେ ଓ କିଛି ଭଲହେଲେ ମନେ କରୁଅଛୁଁ ଏହା ଆମ୍ଭେ କରିଅଛୁଁ ।

ଶ୍ରୀ ଭଗବାନ୍ ସକଳର କର୍ତ୍ତା, ସେ ଜୀବକୁ ପୋଷଣ କରନ୍ତି । ବୁଦ୍ଧି, ବିଦ୍ୟା, ପରିଶ୍ରମ ଏସମସ୍ତ ପୋଷଣର କାରଣ ନୁହନ୍ତି, ଶ୍ରୀକୃଷ୍ଣହିଁ ପୋଷଣର କାରଣ । ମହାପ୍ରଭୁ ବାଲ୍ୟକାଳରେ ଉତ୍ତମ ରୂପେ ବିଦ୍ୟା ଅଧ୍ୟୟନ କରି-

ଖାନ୍ତ କଲେ । ତାଙ୍କର ଅଲ୍ପଦିନ ମଧ୍ୟରେ ପାରଦର୍ଶିତା ଅବଲୋକନ କରି ତାଙ୍କର ପିତା ଶ୍ରୀଜଗନ୍ନାଥ ମିଶ୍ର ଭାବିଲେ, ଶାସ୍ତ୍ରାଧ୍ୟୟନ କରି ଓ ଉତ୍ତମ ରୂପେ ଶାସ୍ତ୍ରର ମର୍ମ ଜାଣି ବିଶ୍ୱରୂପ ସନ୍ୟାସ ହୋଇ ଗଲା । ଏହି ଅଭ ଘଟନା ଘଟିବ ? ଏହାଭାବି ନିଜପୁତ୍ର ନିମାଇଁଙ୍କର ( ମହାପ୍ରଭୁ ) ପାଠ ବନ୍ଦ କରି ଦେଲେ ।

ତାହା ଦେଖି ତାଙ୍କ ପତ୍ନୀ ଶ୍ରୀମତୀ ଶଚୀ ଦେବୀ କହିଲେ " ଏ ପୁତ୍ରକୁ ମୂର୍ଖ କରୁଅଛନ୍ତି, ଏକି ଭଲ ? ସେ ମୂର୍ଖ ହେଲେ କେଉଁ ପୋଷିବ କିପରି ?" ତହିଁରେ ଶ୍ରୀ ଜଗନ୍ନାଥ ମିଶ୍ର କହିଲେ "ବିଦ୍ୟାକି କାହାକୁ ପୋଷିପାରେ ? ଏକା ଶ୍ରୀକୃଷ୍ଣହିଁ ପୋଷଣ କର୍ତ୍ତା । କେତେଲୋକ ବହୁ ଶାସ୍ତ୍ରାଧ୍ୟୟନ କରି ମଧ୍ୟ ଜ୍ଞାନ ଦ୍ୱାରା ଜୀବିକା ନିର୍ବାହ କରି ପାରୁନାହାନ୍ତି । କିନ୍ତୁ ଅନେକେ ନିରକ୍ଷର ଅଛି ମଧ୍ୟ ମହାଧନୀ ହୋଇ ଅଛନ୍ତି ।" ଯଥା :—

"ପାଣ୍ଡିତେଇ ଏଥି କେନ ନାଦେଖ ଅମାତ,
ପଢ଼ିଆ ଓ ଅମାର କେନ ଘରେ ନାହିଁ ଭାତ ।

ଭାଲ ମତେ ବର୍ଣ୍ଣ ଉଚ୍ଚାରିତେ ଓ ନେନାରେ,
ସହସ୍ର ପଣ୍ଡିତ ଗିଯା ଦେଖେ ତାର ଦ୍ୱାରେ

ଅତଏବ ବିଦ୍ୟା ଅଛି ନାହିରେ ପୋଷଣ,
କୃଷ୍ଣ ସେ ସବାର କରେ ପୋଷଣ ପାଳନ ॥"

( ଚୈଃ ଭାଃ ଅଦ ୬ ଷ୍ଟ ଅ )

ଅତଏବ ଏସମସ୍ତରୁ ଉତ୍ତମ ରୂପେ ପ୍ରମାଣିତ ହେଉଅଛି ଯେ ଜୀବର ନିଜଶକ୍ତି କିଛି ମାତ୍ର ନାହିଁ । ସମସ୍ତହିଁ ଭଗବତ୍ ଶକ୍ତିରେ ଚାଳିତ । ଏଥିରେ କାହାର ମନରେ ଏହି ତର୍କ ଉଠିପାରେ ଯେ, ଏ ନୀତି ପ୍ରଚଳିତ ହେଲେ ଲୋକେ ଅଳସୁଆ ପାଲଟି ଯିବେ । କାର୍ଯ୍ୟ କରିବାର ପ୍ରବୃତ୍ତି କାହାରି ରହିବ ନାହିଁ କିନ୍ତୁ ଏ ଅନୁମାନ ବୃଥା । ଶ୍ରୀକୃଷ୍ଣଙ୍କୁ ସମସ୍ତ କାର୍ଯ୍ୟର କର୍ତ୍ତା ମନେ କରି ଆପଣାକୁ ତାଙ୍କର ଦାସ ମନେ କଲେ ଓ ଆତ୍ମାଭିମାନ ତ୍ୟାଗ କଲେ ଜୀବର ଆଳସ୍ୟରୂପ ଦୁର୍ବୁଦ୍ଧି ରହି ପାରିବ କି ? ସେ ଯେ ନିଜକୁ

ଶ୍ରୀକୃଷ୍ଣଙ୍କ ଦାସ ଭବି ତାଙ୍କ ନିଯୁକ୍ତ କାର୍ଯ୍ୟ କରିବାକୁ, ସେବା ସମ୍ପାଦନ କରିବାକୁ ସତତ ଉନ୍ମୁଖ ହେବ ।

ଅଳସ୍ୟ ଯେ ଗୋଟିଏ ଦୁର୍ଗୁଣ କୃଷ୍ଣଦାସର ଏ ଦୁର୍ଗୁଣ ଆସିବ କେଉଁଆଡୁ ? ଅତଏବ ଏ ତର୍କ ଭିତ୍ତିଶୂନ୍ୟ । ବରଂ ନିଜ ଅଭିମାନ ତ୍ୟାଗକରି ଆପଣାକୁ ସତତ କୃଷ୍ଣଦାସ ବୋଲି ମନେକରି କାର୍ଯ୍ୟ କଲେ, ଜୀବ ନିର୍ବିଘ୍ନରେ ସଂସାର ଯାତ୍ରା ନିର୍ବାହ କରିପାରିବ । ସଂସାରର ଏତେ ଦୁଃଖଯାତନା ତାକୁ ସ୍ପର୍ଶ କରିପାରିବ ନାହିଁ । ତାହାର ଜୀବନ ସୁଖଶାନ୍ତିରେ ଅତିବାହିତ ହେବ ।



## ଏକବିଂଶ ପରିଚ୍ଛେଦ ।

### ଶ୍ରୀବୃନ୍ଦାବନତତ୍ତ୍ୱ ।

ଶ୍ରୀ ବୃନ୍ଦାବନର ତତ୍ତ୍ୱ ଦେବତାମାନଙ୍କ ଅଗୋଚର । ସୃଷ୍ଟିକର୍ତ୍ତା ବ୍ରହ୍ମା ତାହାର ମହିମା ନଜାଣି ମୁଗ୍ଧ ହୋଇଥିଲେ ଏବଂ ଦେବରାଜ ଇନ୍ଦ୍ରଙ୍କର ମଧ୍ୟ ସେହି ଦୁର୍ଦ୍ଦଶା । ଏମନ୍ତ ଅଚିନ୍ତ୍ୟ ପ୍ରଭାବ ଯେ ବୃନ୍ଦାବନ, ତାହାର ତତ୍ତ୍ୱ ମୁଁ କି ବର୍ଣ୍ଣିବି । ତେବେ ଶ୍ରୀଲ କୃଷ୍ଣଦାସ କବିରାଜ, ଓ ଶ୍ରୀଲ ଲୋଚନ ଦାସ ଯେ ସୂଚନା ଦିଗ୍‌ଦର୍ଶନରୂପେ କହିଅଛନ୍ତି ତାହା ଉଦ୍ଧୃତ କରି ପ୍ରାଣ ସଫଳ କରେଁ ।

ଶ୍ରୀଗୁଣ୍ଡିଚା ଯାତ୍ରାପରେ ହୋରାପଞ୍ଚମୀ ମହୋତ୍ସବ । ଏଥିରେ ଲକ୍ଷ୍ମୀଠାକୁରାଣୀ ନିଜ ଦଳବଳ ସାଜି ପ୍ରଚଣ୍ଡ କୋପ ପ୍ରଦର୍ଶନ-ପୂର୍ବକ ଗୁଣ୍ଡିଚା-ମନ୍ଦିରରେ ଉପସ୍ଥିତ ହୁଅନ୍ତି ଏବଂ ବିଚିତ୍ର ବେଶ ଭୂଷାରେ ଅଳଙ୍କୃତା ଲକ୍ଷ୍ମୀଠାକୁରାଣୀଙ୍କର ଦାସୀଗଣ ମଧ୍ୟ ଔଦ୍ଧତ୍ୟ ପ୍ରକାଶପୂର୍ବକ ଶ୍ରୀଜଗନ୍ନାଥଙ୍କ ସେବକମାନଙ୍କୁ ବାନ୍ଧିଆଣି ଠାକୁରାଣୀଙ୍କ ସମ୍ମୁଖରେ ଉପସ୍ଥିତ କରନ୍ତି, ଏବଂ ଚୋରମାନଙ୍କୁ ଯେଉଁରୂପ ଦଣ୍ଡବିଧାନ କରାଯାଏ ସେହିରୂପ ସେମାନଙ୍କୁ ଅନେକ ଶାସ୍ତି ପ୍ରଦାନ କରନ୍ତି । କେତେ ଯେ ଗାଳି ବର୍ଷଣ କରନ୍ତି ତାହାର ସୀମା ରହେନାହିଁ । ଏହି ଅପରୂପ ଲୀଳା ଦର୍ଶନ କରି ସ୍ୱରୂପ ଗୋସ୍ୱାମୀ କହିଲେ, ଏତ ଅଭିମାନ, ଏରୂପମାନର ଅଭିନୟତ ତ୍ରିଜଗତରେ ଦେଖାନାହିଁ କିମ୍ବା ଶୁଣା ନାହିଁ । ମାନିନୀଗଣ ବେଶଭୂଷଣ ପରିତ୍ୟାଗ ପୂର୍ବକ ମଳିନ ଅଙ୍ଗରେ ଓ ବିମର୍ଷଚିତ୍ତରେ ବସି ରହନ୍ତି କିମ୍ବା ଭାବନାମଗ୍ନ ହୋଇ ନଖରେ ଭୂମି-ଉପରେ ଗାର କାଟନ୍ତି । କିନ୍ତୁ ନିଜ ଐଶ୍ୱର୍ଯ୍ୟ ପ୍ରକଟନ ପୂର୍ବକ ନିଜ ସୈନ୍ୟ

ଯାଙ୍କ ପ୍ରିୟବ୍ରଜବସ୍ତୁ କେହି ଆଉ ହୁଅନ୍ତି ନାହିଁ । ଶ୍ରୀ ରାଧାଙ୍କର ମାନଲୀଳା ଅତୀବ ମନୋହର । ତାହା ଶ୍ରୀକୃଷ୍ଣଙ୍କର ପ୍ରୀତି ବର୍ଦ୍ଧନ କରେ ଓ ସେଥିରେ ପ୍ରେମର ପୁଷ୍ଟି ହୁଏ । ଶ୍ରୀବାସପଣ୍ଡିତ ସେଠାରେ ଉପସ୍ଥିତ ଥିଲେ । ସେ ସ୍ୱୟଂ ମହାମୁନି ନାରଦ । ତେଣୁ ଐଶ୍ୱର୍ଯ୍ୟ ଭାବାପନ୍ନ । ସେ ବସ୍ତୁର ବ୍ରଜଲୀଳାରେ ସ୍ୱରୂପ ଗୋସ୍ୱାମୀଙ୍କର ଏହି ଉପର୍ଯ୍ୟୁକ୍ତ ବଚନ ଶୁଣି ପରିହାସଚ୍ଛଳରେ କହିଲେ "ଦାମୋଦର ! ତୁମ୍ଭେ ଅମ୍ଭ ଠାକୁରାଣୀଙ୍କର ସମ୍ପତ୍ତି ଓ ଐଶ୍ୱର୍ଯ୍ୟ ଦେଖ । ମଣି, ମାଣିକ୍ୟ, ହୀରା, ନୀଳରେ ପୂର୍ଣ୍ଣ । ତୁମ୍ଭ ବୃନ୍ଦାବନରେ ଏ ବହୁମୂଲ୍ୟ ସମ୍ପତ୍ତି କେଉଁଠାରୁ ଆସିବ । ଫୁଲପତ୍ର, ଗିରିଧାତୁ, ଶିଖିପୁଚ୍ଛ, ଗୁଞ୍ଜା ଏହିତ ତୁମ୍ଭ ବୃନ୍ଦାବନର ସମ୍ପତ୍ତି । ଯେତେବେଳେ ଏହି ଐଶ୍ୱର୍ଯ୍ୟ ସକଳ ତ୍ୟାଗକରି ଶ୍ରୀ ଜଗନ୍ନାଥ ଏହି ସାମାନ୍ୟ ଫୁଲ ଫଳ ଦେଖିବାପାଇଁ ଶ୍ରୀ ବୃନ୍ଦାବନକୁ ଗଲେ, ଅମ୍ଭ ଠାକୁରାଣୀଙ୍କ ମନରେ ସେଥିରେ ଅମର୍ଷ ଜାତ ହେଲା ଏବଂ ତାହା ହେବାର କଥା । ତେଣୁ ସେ ଶ୍ରୀ ଜଗନ୍ନାଥଙ୍କୁ ପରିହାସ କରିବା ନିମିତ୍ତ ନିଜ ବୈଭବ ଦେଖାଇ ସସୈନ୍ୟରେ ବାହାରମାନ ହେଲେ । ଏବଂ ତାଙ୍କର ଦାସୀଗଣ ଶ୍ରୀଜଗନ୍ନାଥଙ୍କ ସେବକମାନଙ୍କୁ ଭର୍ତ୍ସନା ପୂର୍ବକ ବାନ୍ଧିଆଣି ଅମ୍ଭ ଠାକୁରାଣୀଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ । ଏବଂ ସେମାନଙ୍କଠାରୁ ଅର୍ଥ ଦଣ୍ଡଗ୍ରହଣ-ପୂର୍ବକ ନାନାଦଣ୍ଡରେ ଦଣ୍ଡିତ କରିବାକୁ ଲାଗିଲେ । ତତ୍ପରେ ଶ୍ରୀ ଜଗନ୍ନାଥଙ୍କ ସେବକମାନେ କହିଲେ "ଦେବି ? ଅମ୍ଭେମାନେ କାଲି ଶ୍ରୀ ଜଗନ୍ନାଥଙ୍କୁ ତୁମ୍ଭ ସମ୍ମୁଖରେ ଉପସ୍ଥିତ କରାଇବୁଁ ।" ଏହା କହି ଠାକୁରାଣୀଙ୍କୁ ସାନ୍ତ୍ୱନା କରାନ୍ତେ ଠାକୁରାଣୀ ଗୃହକୁ ଫେରିଗଲେ । ଦାମୋଦର ! ତୁମ୍ଭର ଗୋପୀଗଣ ଦୁଗ୍ଧ ଆବର୍ତ୍ତନ୍ତି ଓ ଦଧିମନ୍ଥନ କରନ୍ତି, ସେମାନେ ଏ ମହା ଐଶ୍ୱର୍ଯ୍ୟ ପାଇବେ କାହିଁ । ଅମ୍ଭ ଠାକୁରାଣୀ ସତତ ସିଂହାସନରେ ଆସୀନା । କୋଟି କୋଟି ଦାସଦାସୀ ତାଙ୍କର ସେବା କରୁଅଛନ୍ତି ।" ଶ୍ରୀବାସଙ୍କର ଗର୍ବବାଣୀ ଶ୍ରବଣକରି ସ୍ୱରୂପ ଗୋସ୍ୱାମୀ ଆଉ ଚୁପ କରି ରହିପାରିଲେ ନାହିଁ । ସେ କହିଲେ "ଶ୍ରୀବାସ ? ତୁମ୍ଭେ ବୃନ୍ଦାବନ କଥା ଉଲଙ୍ଘନ କରି ଏହା କହୁଛ ନା । ଖାଲି ତୁମ୍ଭ ଲକ୍ଷ୍ମୀଙ୍କ ଗୌରବ ରକ୍ଷା ପାଇଁ ଏରୂପ କହୁଅଛ ? । ବୃନ୍ଦାବନର ସମ୍ପତ୍ତି ଆଗରେ ତୁମ୍ଭର

ବୈକୁଣ୍ଠସମ୍ପତ୍ତି କ ଛାର । ଶ୍ରୀ ବୃନ୍ଦାବନର ସମ୍ପତ୍ତି ସଙ୍ଗେ ତୁଳନା କରିବାକୁ ଗଲେ ତୁମ୍ଭ ଦ୍ୱାରକା କିମ୍ବା ବୈକୁଣ୍ଠର ସମ୍ପତ୍ତି ଅତିସାମାନ୍ୟ, ଏମନ୍ତ କି ସାଗର ସଙ୍ଗେ ଜଳ ବିନ୍ଦୁର ଯେଉଁ ତୁଳନା, ଶ୍ରୀ ବୃନ୍ଦାବନ ସମ୍ପତ୍ତିସଙ୍ଗେ ଦ୍ୱାରକା କିମ୍ବା ବୈକୁଣ୍ଠର ସମ୍ପତ୍ତି ତଦ୍ରୂପ । ଶ୍ରୀ ବୃନ୍ଦାବନରେ ପରମପୁରୁଷ ସର୍ବାବତାରୀ ସ୍ୱୟଂ-ଭଗବାନ୍ ଶ୍ରୀକୃଷ୍ଣ ସତତ ବିରାଜମାନ । ଭୂମି ଚିନ୍ତାମଣି-ମୟ ଓ ଗୃହ ରତ୍ନନିର୍ମିତ । ସେଠାରେ ଦାସୀମାନେ ଚିନ୍ତାମଣିସମୂହ ଦେହର ଅଳଙ୍କାରରୂପେ ପିନ୍ଧିଅଛନ୍ତି । ଯହିଁରେ ବୃକ୍ଷଲତାଗଣ କଳ୍ପବୃକ୍ଷ ଓ କଳ୍ପଲତା, ସେମାନଙ୍କୁ ଯାହା ପ୍ରାର୍ଥନା କରିବ, ସେମାନେ ତାହା ଦାନ କରିବେ ।

ଅତଏବ ଫଳଫୁଲ ଛଡ଼ା ଅନ୍ୟଧନ ସେଠାରେ କେହି ଖୋଜେ ନାହିଁ । ସେଠାରେ ଧେନୁସକଳ କାମଧେନୁ । ଏକମାତ୍ର କାମଧେନୁଥିଲେ ସର୍ବ ଅଭିଷ୍ଟପଦାର୍ଥ ମିଳିପାରେ । କିନ୍ତୁ ସେଠାରେ କୋଟି କୋଟି ଧେନୁ ସମସ୍ତେ କାମ ଧେନୁ । ଦୁଗ୍ଧଛଡ଼ା ଅନ୍ୟଦ୍ରବ୍ୟ କେହି ତାଙ୍କୁ ମାଗେନାହିଁ । ସେଠାରେ ସହଜରେ କଥାବାର୍ତ୍ତା ସଙ୍ଗୀତକୁ ବଳେ ଏବଂ ସାଧାରଣ ଗତିହିଁ ନୃତ୍ୟଠାରୁ ଅଧିକ ମନୋହର । ସେଠାରେ ସମସ୍ତଜଳ ଅମୃତ । ଚିଦାନନ୍ଦ ଜ୍ୟୋତି ସମସ୍ତ ବନରେ ଘୋଟିରହିଅଛି । ଶ୍ରୀମତୀଙ୍କର ଦାସୀଗଣ ସେଠାରେ ଲକ୍ଷ୍ମୀଙ୍କଠାରୁ ବଳି ରୂପବତୀ ଓ ଗୁଣବତୀ । ସେଠାରେ ଶ୍ରୀକୃଷ୍ଣଙ୍କର ବଂଶୀ ପ୍ରିୟସଖୀର କାର୍ଯ୍ୟ କରୁଅଛି । ଏହାଠାରୁ ଅଧିକ ଆଉ ତୁମ୍ଭେ କଣ ଶୁଣିବ ।” ଯଥା:—

ପ୍ରଭୁ କହେ ଶ୍ରୀବାସ ! ଶୁଣ ସାବଧାନେ,
ବୃନ୍ଦାବନ ସମ୍ପଦ ତୋମାର ନାହିଁ ପଡ଼େ ମନେ ।
ବୃନ୍ଦାବନେ ସାହଜିକ ଯେ ସମ୍ପଦସିନ୍ଧୁ,
ଦ୍ୱାରକା ବୈକୁଣ୍ଠ ତାର ନହେ ଏକବିନ୍ଦୁ ।
ପରମ ପୁରୁଷୋତ୍ତମ ସ୍ୱୟଂ ଭଗବାନ,
କୃଷ୍ଣ ଯାହା ଧନୀ ତାହା ବୃନ୍ଦାବନ ଧାମ
ଚିନ୍ତାମଣିମୟ ଭୂମି ରତ୍ନର ଭବନ,

ଚନ୍ଦ୍ରାମଣିଗଣ ଦାସୀଚରଣିଭୂଷଣ,
କଳ୍ପ ବୃକ୍ଷଲତା ଯାଁହା ସାହାଢକ ବଜ,
ପୁଷ୍ପ ଫଳ ବନା କେହ ନା ମାଗେ ଅନ୍ୟଧନ ।
ଅନନ୍ତ କାମଧେନୁ ଯାଁହା ଫିରେ ବନେ ବନେ,
ଦୁଗ୍ଧମାତ୍ର ଦେନ କେହ ନା ମାଗେ ଅନ୍ୟଧନେ,
ସହଜେ ଲୋକେର କଥା ଯାଁହା ଦିବ୍ୟ ଗୀତ,
ସହଜ ଗମନ କରେ ନୃତ୍ୟ ପ୍ରତୀତ,
ସର୍ବତ୍ର ଜଳ ଯାଁହା ଅମୃତ ସମାନ,
ଚିଦାନନ୍ଦ ଜ୍ୟୋତି ସ୍ୱାନ୍ ଯାଁହା ମୂର୍ତ୍ତିମାନ୍,
ଲକ୍ଷ୍ମୀଜନ ଗୁଣ ଯାଁହା ଲକ୍ଷ୍ମୀର ସମାଜ,
କୃଷ୍ଣବଂଶୀ କରେ ଯାଁହା ପ୍ରୀୟସଖୀ କାଯ,
( ଚୈଃ ଚଃ ମଧ୍ୟ ୧୪ ପଃ )

ଏହି କେତେକ ପଙ୍‌କ୍ତିରେ ସ୍ୱରୂପ ଶ୍ରୀବୃନ୍ଦାବନର ମାହାତ୍ମ୍ୟ ଅତି ସୁନ୍ଦର ରୂପେ ବର୍ଣ୍ଣନ କରିଅଛନ୍ତି, ସେ ତାହାର ପୋଷକରେ କେତେକ ଶାସ୍ତ୍ରୀୟ ଶ୍ଳୋକମଧ୍ୟ ଅବୃତ୍ତି କରିଥିଲେ,

ଶ୍ରୀଲ କବିରାଜ ଗୋସ୍ୱାମୀ ଅଉ ଏକସ୍ଥାନରେ ଲେଖି ଅଛନ୍ତି,

"ବୃନ୍ଦାବନେ ତରୁଲତା ଅଦ୍ଭୁତ ତାହାର କଥା
× × × × × × × × × + ×
ବାରମାସରେ ଫୁଲ ଫଳ ।
କୋନ ଦେଶେ କାର ଖ୍ୟାତି ବୃନ୍ଦାବନେ ସବାର ସ୍ଥିତି
ସହସ୍ର ଜାତି ଲେଖା ଯାଏ କତ,
( ଚୈଃ ଚଃ ଅନ୍ତ୍ୟ ୧୮ ପଃ )

ଅର୍ଥାତ୍ ଅନ୍ୟତ୍ର ତରୁଲତା ସକଳ ଏକ୨ ନିର୍ଦ୍ଦିଷ୍ଟ ସମୟରେ ଫଳ ଫୁଲ ଧାରଣ କରନ୍ତି । କିନ୍ତୁ ଚିନ୍ମୟ ଶ୍ରୀବୃନ୍ଦାବନରେ ତରୁଲତାଗଣ ବାର-ମାସରେ ଫୁଲ ଫଳ ପ୍ରସବ କରନ୍ତି, କୌଣସି ଋତୁର ଅପେକ୍ଷା ନାହିଁ । କୌଣସି ତରୁ ଏକ ଦେଶରେ ଜାତ ହୁଏ; ଅନ୍ୟ ଦେଶରେ ତାହା ଦେଖା

ଯାଏ କିନାହିଁ । ଯେମନ୍ତ କି ସମୁଦ୍ର ଉପକଣ୍ଠବର୍ତ୍ତୀ ସ୍ଥାନରେ ପ୍ରଚୁର ନାରିକେଳ ଜନ୍ମେ କିନ୍ତୁ ହିମାଳୟ ପ୍ରଦେଶରେ କେହି ନାରିକେଳ ଦେଖିବାକୁ ପାଇବ ନାହିଁ । କିନ୍ତୁ ଶ୍ରୀବୃନ୍ଦାବନରେ ସର୍ବଦେଶୀୟ ତରୁମାନ ବର୍ତ୍ତମାନ ।

ଶ୍ରୀଲଲୋଚନ ଦାସ ମଧ୍ୟ ଦୁଇ ଗୋଟି ଧାଡ଼ିରେ ଶ୍ରୀବୃନ୍ଦାବନ ମାହାତ୍ମ୍ୟ ସୁନ୍ଦରରୂପେ ବ୍ୟକ୍ତ କରି ଅଛନ୍ତି,

ଯଥା :—

"ଚିନ୍ତାମଣି ଭୂମି ରତ୍ନ ମନ୍ଦିର ସୁନ୍ଦର,
କଳ୍ପବୃକ୍ଷ ରତ୍ନବେଦୀ ତାହାର ଉପର,
କାମଧେନୁଗଣ ତଥା ଅଚିନ୍ତ୍ୟପ୍ରଭାବ,
ଅଭୀଷ୍ଟ କରିଯାଁ ଦେହ କରୁ ଯେ ଯେ ଭାବ ।"

( ଚୈ: ମ: )

ଅର୍ଥାତ୍ ଶ୍ରୀବୃନ୍ଦାବନର ଭୂମି ଚିନ୍ତାମଣି ମୟ । ସେଠାରେ ବୃକ୍ଷ ସମସ୍ତ କଳ୍ପବୃକ୍ଷ ଓ ଧେନୁଗଣ କାମଧେନୁ । ଅତଏବ ସ୍ୱଚ୍ଛନ୍ଦରେ ଅଭୀଷ୍ଟ ସିଦ୍ଧି ହୁଏ । କିଛି ଅଭାବ ରହେ ନାହିଁ,

ଏହି ବୃନ୍ଦାବନରେ ରସିକଶେଖର ଶ୍ରୀକୃଷ୍ଣ ନାଗରୀମୁକୁଟମଣି ବ୍ରଜବାଳାମାନଙ୍କ ସଙ୍ଗରେ ସତତ ବିହାର କରନ୍ତି । ଲୀଳା ପୁରୁଷୋତ୍ତମ ଶ୍ରୀବ୍ରଜେନ୍ଦ୍ରନନ୍ଦନ ଏହିଠାରେ ସତତ ବର୍ତ୍ତମାନ, ସେ ସତତ ଆନନ୍ଦଚିନ୍ମୟରସପ୍ରତିଭାବିତା ଗୋପଲଲନାମାନଙ୍କ ସଙ୍ଗେ କ୍ରୀଡ଼ା ପରବଶ ହୋଇ ନାନାପ୍ରକାର ଲୀଳା କରୁ ଅଛନ୍ତି । ବ୍ରହ୍ମାଣ୍ଡର ସୃଷ୍ଟିସ୍ଥିତି ପ୍ରଳୟ ଆଦି ତାଙ୍କ ଅଂଶ, ଅବତାରମାନଙ୍କ ଦ୍ୱାରା ସାଧିତ ହେଉଅଛି । ଏମନ୍ତ କି ମଥୁରା ଓ ଦ୍ୱାରକାକୁ ଶ୍ରୀବ୍ରଜେନ୍ଦ୍ରନନ୍ଦନ ଆସି ନ ଥିଲେ, କେବଳ ବିରହଲୀଳାର ଅଭିନୟ ନିମିତ୍ତ ଶ୍ରୀବୃନ୍ଦାବନରେ ପ୍ରଚ୍ଛନ୍ନ ଭାବରେ ରହିଥିଲେ ଏବଂ ତାଙ୍କର ପ୍ରକାଶମୂର୍ତ୍ତି ଶ୍ରୀମନ୍ ବାସୁଦେବ ମଥୁରାକୁ ଆସିଥିଲେ । ଶ୍ରୀଲ ଗୋସ୍ୱାମୀପାଦଗଣ ଏ ସିଦ୍ଧାନ୍ତର ଉତ୍ତମ ମୀମାଂସା କରିଯାଇ ଅଛନ୍ତି । ଶ୍ରୀଲରୂପ ଗୋସ୍ୱାମୀ ଶ୍ରୀବୃନ୍ଦାବନରୁ ମହାପ୍ରଭୁଙ୍କ ଚରଣଦର୍ଶନ ନିମିତ୍ତ ଶ୍ରୀପୁରୁଷୋତ୍ତମ ଯାତ୍ରା କଲେ, ଯାତ୍ରା ସମୟରେ ସେ ଶ୍ରୀବୃନ୍ଦାବନଲୀଳା ଶ୍ରୀମଥୁରାଲୀଳା, ଓ ଶ୍ରୀଦ୍ୱାରକାଲୀଳା ସମସ୍ତ,

ସମନ୍ୱୟ କରି ଖଣ୍ଡିଏ ପୁସ୍ତକ ରଚନା କରୁଥିଲେ । ଶ୍ରୀରୂପ ଗୋସ୍ୱାମୀ ଶ୍ରୀପୁରୁଷୋତ୍ତମର ଉତ୍ତର ସତ୍ୟଭାମା ପୁର ନାମକ ଏକଗ୍ରାମରେ ଉପସ୍ଥିତ ହେଲେ । ସେଠାରେ ସେ ଶୋଇଥିଲେ, କୃଷ୍ଣମହିଷୀ ଶ୍ରୀମତୀ ସତ୍ୟଭାମା ତାଙ୍କୁ ଦର୍ଶନ ଦେଇ ସ୍ୱପ୍ନରେ ଆଦେଶ କଲେ "ରୂପ ! ତୁମ୍ଭେ ଶ୍ରୀବୃନ୍ଦାବନଲୀଳା ଓ ଦ୍ୱାରକାଲୀଳା ଏକତ୍ର କରି ଖଣ୍ଡିଏ ନାଟକ ରଚନା କରୁଅଛ କିନ୍ତୁ ତାହା ଭଲ ଉତ୍କୃଷ୍ଟ ହେବ ନାହିଁ, ତୁମ୍ଭେ ଶ୍ରୀଦ୍ୱାରକା ସମ୍ବନ୍ଧୀୟ ଲୀଳାକୁ ଶ୍ରୀବୃନ୍ଦାବନ ଲୀଳାରୁ ପୃଥକ କରି ଦୁଇଖଣ୍ଡି ନାଟକ ରଚନା କର । ମୋର ଅନୁଗ୍ରହରୁ ଉତ୍ତମ ଲକ୍ଷଣ ନାଟକ ରଚନା ହେବ । ଯଥା :—

"ଆମାର ନାଟକ ପୃଥକ କରହ ରଚନ,
ଆମାର କୃପାତେ ନାଟକ ହବେ ବିଲକ୍ଷଣ, "

( ଚୈଃ ଚଃ ଅନ୍ତ୍ୟ ୧ ମ ପରି )

ଏସ୍ୱପ୍ନ ଦେଖି ରୂପ ମନେ କଲେ ମୁଁ ଏବେ ବ୍ରଜଲୀଳା ଓ ପୁରଲୀଳା ପୃଥକ କରି ଦୁଇଖଣ୍ଡ ନାଟକ ରଚନା କରିବି କାରଣ ଏକସଙ୍ଗେ ନାଟକ ରଚିତ ହେବ ଏହା ଦେବୀ ସତ୍ୟଭାମାଙ୍କର ଅଭିପ୍ରେତ ନୁହେ । ଏହିରୂପ କଳ୍ପନା କରି ଶ୍ରୀପୁରୁଷୋତ୍ତମରେ ଆସି ପହଞ୍ଚିଲେ ଓ ଠାକୁର ଶ୍ରୀହରିଦାସଙ୍କ କୁଟୀରରେ ବାସକଲେ ।

ମହାପ୍ରଭୁ ଶ୍ରୀରୂପଙ୍କୁ ଦେଖି ପରମ ପ୍ରୀତ ହେଲେ, ଅନନ୍ତରେ ମହାପ୍ରଭୁ ହଠାତ୍ ଶ୍ରୀରୂପଙ୍କୁ ସମ୍ବୋଧନ କରି କହିଲେ "ରୂପ ! ତୁମ୍ଭେ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କୁ ବ୍ରଜରୁ ବାହାର କରନାହିଁ । ସେ ବ୍ରଜଛାଡ଼ି ନିମିଷମାତ୍ର ଅନ୍ୟତ୍ର ଯାଆନ୍ତି ନାହିଁ । ଯଥା :—

କୃଷ୍ଣକେ ବାହିର ନାହି କରିହ ବ୍ରଜହୈତେ,
ବ୍ରଜଛାଡ଼ି କୃଷ୍ଣ କଭୁ ନା ଯାନ କାହାଁତେ,

[ ଚୈଃ ଚଃ ଅନ୍ତ୍ୟ ୧ ମ ପରି ]

ଶ୍ରୀରୂପ ଭାବିଲେ ପୂର୍ବରୁ ଦେବୀ ସତ୍ୟଭାମା ତାଙ୍କର ପୃଥକ ନାଟକ କରିବାକୁ ଆଜ୍ଞା ଦେଇଥିଲେ । ବର୍ତ୍ତମାନ ମହାପ୍ରଭୁ ସ୍ପଷ୍ଟରୂପେ ଆଦେଶ ଦେଲେ । ଅତଏବ ଏବେ ତାହାକୁ ଅଲଗାକରି ବୃନ୍ଦାବନ ଲୀଳାର ଓ ପୁର-

ଲୀଳାର ଦୁଇ ପୃଥକ ନାଟକ ରଚନା କରିବ । ପ୍ରସିଦ୍ଧ ବିଦଗ୍ଧ ମାଧବ ଓ ଲଳିତ ମାଧବ ଏହି ଦୁଇ ନାଟକ ଏହି ଆଦେଶର ଫଳ ।

ଅତଏବ ଏଥିରୁ ପ୍ରମାଣ ଯେ ଦ୍ୱାରକାବିହାରୀ ବାସୁଦେବ ବ୍ରଜେନ୍ଦ୍ର-ନନ୍ଦନ ଶ୍ରୀକୃଷ୍ଣଙ୍କଠାରୁ ବିଭିନ୍ନ । ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଅବତାରୀ ଓ ପୂର୍ଣ୍ଣ-ତମ । ଶ୍ରୀବାସୁଦେବ ପୂର୍ଣ୍ଣତର । ଏ ବିଷୟରେ ଗୋସ୍ୱାମୀଗଣ ବହୁ ବହୁ ପ୍ରମାଣମାନ ଲେଖି ଯାଇ ଅଛନ୍ତି ।

ଅତଏବ ଦ୍ୱାରକାର କୃଷ୍ଣମହିଷୀଗଣ ବ୍ରଜଗୋପୀମାନଙ୍କଠାରୁ ପୃଥକ୍ । ମହିଷୀମାନଙ୍କର ଐଶ୍ୱର୍ଯ୍ୟଭାବ । ଅତଏବ ବିଶୁଦ୍ଧ ମାଧୁର୍ଯ୍ୟମୟ ଶ୍ରୀବୃନ୍ଦାବନ ଲୀଳାରେ ସେମାନଙ୍କର ଅଧିକାର ନାହିଁ ।

ଶ୍ରୀଲକ୍ଷ୍ମୀଠାକୁରାଣୀଙ୍କର ମଧ୍ୟ ଶ୍ରୀବୃନ୍ଦାବନଲୀଳାରେ ଅଧିକାର ନାହିଁ । ସେ ଗୋପୀ ଆନୁଗତ୍ୟ ସ୍ୱୀକାର କରି ନ ଥିବାରୁ ବିଶେଷ ତପ କରି ମଧ୍ୟ ନୃତ୍ୟର ବ୍ରଜେନ୍ଦ୍ରନନ୍ଦନଙ୍କ ସଙ୍ଗ ପାଇ ନ ଥିଲେ । ଶ୍ରୀମଦ୍ଭାଗବତରେ ନାଗ-ପତ୍ନୀମାନଙ୍କ ସ୍ତବରେ ଏହା ପ୍ରକାଶ ପାଇଅଛି । ବୃନ୍ଦାବନଲୀଳାରେ କେବଳ ଗୋପୀମାନଙ୍କରହିଁ ଅଧିକାର । ଗୋପୀ ବିନା ଅନ୍ୟ କୌଣସି ନାରୀ ବ୍ରଜେନ୍ଦ୍ରନନ୍ଦନଙ୍କ ମନୋହରଣ କରିବାକୁ କ୍ଷମ ନୁହନ୍ତି । ଶ୍ରୀଳ ସ୍ୱରୂପଙ୍କ ବଚନ ଏହାର ଉତ୍ତମ ପ୍ରମାଣ । ଯଥା ।—

" ସ୍ୱରୂପ କହେ ଶୁନ ପ୍ରଭୁ କାରନ ଇହାର,
ବୃନ୍ଦାବନ କ୍ରୀଡ଼ାତେ ଲକ୍ଷ୍ମୀର ନାହିଁ ଅଧିକାର ।
ବୃନ୍ଦାବନ ଲୀଳାୟ କୃଷ୍ଣେର ସହାୟ ଗୋପୀଗଣ,
ଗୋପୀଗଣ ବିନା କୃଷ୍ଣେର ହରିତେ ନାରେ ମନ ।

( ଚୈଃ ଚଃ ମଧ୍ୟ )

ଶ୍ରୀ ଗୁଣ୍ଡିଚ୍ଚା ଯାତ୍ରା କାଳୀନ ଜଗନ୍ନାଥଙ୍କର ରଥ ଯାତ୍ରା ବେଳେ ମହା-ପ୍ରଭୁଙ୍କ ସଙ୍ଗେ ଶ୍ରୀବାସାଦିଙ୍କର ଯେ କଥୋପକଥନ ହୋଇଥିଲା, ସ୍ୱରୂପ ଗୋସ୍ୱାମୀ ସେହି ସମୟରେ ଉପର୍ଯ୍ୟୁକ୍ତ କଥାଟି ପ୍ରକାଶ କରିଥିଲେ ।

ଅତଏବ ଶ୍ରୀବୃନ୍ଦାବନ ଲୀଳା ଯେ ଅତି ମଧୁର ଓ ଶ୍ରୀବୃନ୍ଦାବନ ଯେ ଶ୍ରୀକୃଷ୍ଣଙ୍କର ଉଚ୍ଚତମ ଅଧିଷ୍ଠାନ ଏ ସମସ୍ତ ତାହାର ଉଜ୍ଜ୍ୱଳ ପ୍ରମାଣ । ଏଥିରୁ

ଶ୍ରୀବୃନ୍ଦାବନ ମାହାତ୍ମ୍ୟ ଉତ୍ତମରୂପେ ପ୍ରତିପନ୍ନ ହେଉଅଛି ।

ଯେଉଁମାନେ ଏ ସମ୍ବନ୍ଧରେ ଉତ୍ତମ ପ୍ରମାଣ ଜାଣିବାକୁ ଇଚ୍ଛାକରନ୍ତି ସେମାନେ ଶ୍ରୀରୂପଗୋସ୍ୱାମୀଙ୍କକୃତ ଲଘୁଭାଗବତାମୃତ ଓ ଶ୍ରୀସନାତନ ଗୋସ୍ୱାମୀଙ୍କ କୃତ ବୃହଦ୍ ଭାଗବତାମୃତ ପାଠ କରି ପାରନ୍ତି ।

ଶ୍ରୀଳକବିରାଜ ଗୋସ୍ୱାମୀ ମଧ୍ୟ ଭଗଦର୍ଶନ ସ୍ୱରୂପ ଲେଖିଅଛନ୍ତି ।:-

ତାହାର ଉପରିଭାଗେ କୃଷ୍ଣଲୋକ ଖ୍ୟାତ
ଦ୍ୱାରକା ମଥୁରା ଗୋକୁଳ ତ୍ରିବିଧତ୍ୱେ ସ୍ଥିତ ।
ସର୍ବୋପରି ଶ୍ରୀଗୋକୁଳ ବ୍ରଜଲୋକ ଧାମ
ଶ୍ରୀଗୋଲୋକ ଶ୍ୱେତଦ୍ୱୀପ ବୃନ୍ଦାବନ ନାମ ।
ସର୍ବଗ ଅନନ୍ତ ବିଭୁ କୃଷ୍ଣ ତନୁ ସମ
ଉପର୍ଯ୍ୟଧୋ ବ୍ୟାପି ଅଛି ନାହିଁକ ନିୟମ ।
ବ୍ରହ୍ମାଣ୍ଡେ ପ୍ରକାଶ ତାର କୃଷ୍ଣେର ଇଚ୍ଛାୟ
ଏକଇ ସ୍ୱରୂପ ତାର ନାହିଁ ଦୁଇ କାୟ ।
ଚିନ୍ତାମଣି ଭୂମି କଳ୍ପବୃକ୍ଷମୟ ବନ
ଚର୍ମଚକ୍ଷେ ଦେଖେ ତାରେ ପ୍ରପଞ୍ଚେର ସମ
ପ୍ରେମ ନେତ୍ରେ ଦେଖେ ତାର ସ୍ୱରୂପ ପ୍ରକାଶ
ଗୋପଗୋପୀ ସଙ୍ଗେ ଯାହାଁ କୃଷ୍ଣେର ବିଳାସ ।

( ଚୈଃ ଚଃ ଆଦି ୫ ପରି )



## ଦ୍ୱାବିଂଶ ପରିଚ୍ଛେଦ ।

### ବୈଷ୍ଣବ ଅପରାଧ ।

ଶ୍ରୀକୃଷ୍ଣ ନାମର ଅଶେଷ ଫଳ ପୂର୍ବ ଏକଅଧ୍ୟାୟରେ ବର୍ଣ୍ଣିତ ହୋଇ-ଅଛି । ହରିନାମ ଗ୍ରହଣରେ ଏତେଦୂର ଫଳଲାଭ ହେବାର କଥା, ତେବେ ଅନେକସ୍ଥଳରେ ହରିନାମର ଫଳ ଦୃଷ୍ଟିଗୋଚର ହୁଏ ନାହିଁ କାହିଁକି, ସତତ ଆମ୍ଭମାନଙ୍କ ମନରେ ଏହି ତର୍କ ଉପସ୍ଥିତ ହୋଇଥାଏ । ଭକ୍ତି ଯାଜନରେ କୃଷ୍ଣପ୍ରେମ ଅବଶ୍ୟ ମିଳିବାର କଥା । ହରିନାମ ଗ୍ରହଣରେ ଯେ ଅଶେଷ ଫଳ ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି, ଭକ୍ତି ଯାଜନ ଦ୍ୱାରା ଯେ କୃଷ୍ଣପ୍ରେମ ଲାଭହୁଏ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ତେବେ କିପାଇଁ ତାହା ଶୀଘ୍ର ଫଳବତୀ ହୁଏ ନାହିଁ ତାହାର କାରଣ ମଧ୍ୟ ସ୍ୱୟଂମହାପ୍ରଭୁ ଶ୍ରୀମୁଖରେ ବ୍ୟକ୍ତ କରି ରଖିଅଛନ୍ତି । ଶ୍ରୀଧାମପ୍ରୟାଗଠାରେ ସେ ଶ୍ରୀରୂପଗୋସ୍ୱାମୀଙ୍କୁ ଶିକ୍ଷା ଦେବା କାଳରେ କହିଅଛନ୍ତି ।

ବ୍ରହ୍ମାଣ୍ଡ ଭ୍ରମିତେ କୋନ ଭାଗ୍ୟବାନ ଜୀବ ।<br>
ଗୁରୁ କୃଷ୍ଣ ପ୍ରସାଦେ ପାୟ ଭକ୍ତିଲତା ବୀଜ ।<br>
ମାଲୀହୟା କରେ ସେଇ ବୀଜ ଆରୋପଣ<br>
ଶ୍ରବଣ କୀର୍ତ୍ତନ ଜଲେ କରୟେ ସେଚନ<br>
ଉପଜୟା ବାଢ଼େଲତା ବ୍ରହ୍ମାଣ୍ଡ ଭେଦଯାୟ<br>
ବିରଜା ବ୍ରହ୍ମଲୋକ ଭେଦି ପରବ୍ୟୋମ ପାୟ ।<br>
ତବେଯାୟ ତଦୁପରି ଗୋଲୋକବୃନ୍ଦାବନ<br>
କୃଷ୍ଣଚରଣ କଳ୍ପବୃକ୍ଷେ କରେ ଆରୋହଣ<br>
ତାହା ବିସ୍ତାରିତ ହୟା ଫଲେ ପ୍ରେମଫଲ

ଯହିଁ ମାଳୀ ନିତ୍ୟ ସେଚେ ଶ୍ରବଣାଦିଜଳ ।
ଯଦି ବୈଷ୍ଣବ ଅପରାଧ ଉଠେ ହାତୀ ମାତା
ଉପାଡ଼େ ବା ଛିଣ୍ଡେ ତାର ଶୁଖିଯାଏ ପାତା ।

( ଚୈଃ ଚଃ ମଧ୍ୟ ୧୯ ପରି )

ଅହୋ ! ଦେଖିଲେତ; ବୈଷ୍ଣବାପରାଧ ଭକ୍ତି ପଥରେ କେତେଦୂର କଣ୍ଟକ । ଅତି ଉଚ୍ଚ ଭକ୍ତର ଯଦି ବୈଷ୍ଣବାପରାଧ ଜାତହୁଏ, ତେବେ ସୁଦ୍ଧା, ସେ ପରିବର୍ଦ୍ଧିତ ଭକ୍ତିଲତା ଅପରାଧ ରୂପ ମତ୍ତ ହାତୀ କର୍ତ୍ତୃକ ଏକେବାରେ ଧ୍ୱଂସପ୍ରାପ୍ତ ହୁଏ । ମତ୍ତହାତୀ କେତେବେଳେ ଲତାକୁ ଛିଡ଼ାଇ ଅସ୍ତ-ବ୍ୟସ୍ତ କରିଦିଏ, କେତେବେଳେ ଏକାବେଳକେ ଉପାଡ଼ି ପକାଏ । ସେଥି-ପାଇଁ ମହାପ୍ରଭୁ ବୈଷ୍ଣବାପରାଧ ରୂପ ପ୍ରବଳ ଶତ୍ରୁ ଯେରୂପ ଆମାକୁ ପ୍ରବେଶ କରି ନପାରେ ସେଥି ପ୍ରତି ବିଶେଷ ସାବଧାନ ହେବାକୁ ଉପଦେଶ ଦେଇ ଯାଇଅଛନ୍ତି । ଯଥା :—

ତାତେ ମାଳୀ ଯତ୍ନ କରି କରେ ଆବରଣ
ଅପରାଧ ହାତୀ ଯୈଛେ ନାହୟ ଉଦ୍‌ଗମ ।

( ଚୈଃ ଚଃ ମଧ୍ୟ ୧୯ ପରି )

ଭକ୍ତପ୍ରତି ଦ୍ରୋହାଚରଣ କଲେ ଯେ କେତେଦୂର ମନ୍ଦଫଳ ଘଟେ ତାହାର ସୀମା ନାହିଁ । ଦ୍ରୋହକାରୀର ଅନିଷ୍ଟ ଅନିବାର୍ଯ୍ୟ । ଏମନ୍ତ କି ଯେଉଁ ଗ୍ରାମରେ, ଦେଶରେ ବୈଷ୍ଣବପ୍ରତି ଅତ୍ୟାଚାର କରାଯାଏ ସେ ଗ୍ରାମର ଓ ସେ ଦେଶର ସୁଦ୍ଧା ଅମଙ୍ଗଳ ଘଟେ । ରାମଚନ୍ଦ୍ର ଖାଁ ଠାକୁର ଶ୍ରୀହରିଦାସଙ୍କ ପ୍ରତି ଅକାରଣରେ ଦ୍ରୋହାଚରଣ ପୂର୍ବକ ତାଙ୍କୁ ଭ୍ରଷ୍ଟ କରିବା ପାଇଁ ବେଶ୍ୟା ନିଯୁକ୍ତ କରିଥିଲେ । ଠାକୁର ହରିଦାସ ରାମଚନ୍ଦ୍ର ଖାଁ ଅଜ୍ଞ ବୋଲି ତାଙ୍କୁ କ୍ଷମା କରିଥିଲେହେଁ ଶ୍ରୀଭଗବାନ୍ ଖାନଙ୍କର ଅତି ଗର୍ହିତ କାର୍ଯ୍ୟକୁ ସହ୍ୟ କରି ନ ପାରି ତାଙ୍କର ଦଣ୍ଡ ବିଧାନ କରିଥିଲେ ।

ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁ ନିଜ ଗଣସଙ୍ଗେ ରାମଚନ୍ଦ୍ର ଖାଁଙ୍କ ମନ୍ଦିରରେ ଆସି ଉପସ୍ଥିତ ହେଲେ ଏବଂ ତାଙ୍କ ଦୁର୍ଗାମଣ୍ଡପରେ ଆସି ଉପବେଶନ କଲେ । ଭକ୍ତାପରାଧୀ ରାମଚନ୍ଦ୍ର ଖାନ୍ ପ୍ରଭୁ ଶ୍ରୀନିତ୍ୟାନନ୍ଦଙ୍କୁ ସେ

ସ୍ଥାନ ପରିତ୍ୟାଗକରି ସେହି ଗ୍ରାମରେ ଏକ ଗୋପାଳର ଗୋଶାଳାକୁ ଯିବା ନିମନ୍ତେ କହି ପଠାଇଲେ । ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ଏଥିରେ କ୍ରୁଦ୍ଧହୋଇ-କହିଲେ "ସତ, ଏସ୍ଥାନତ ମୋର ଗଣଙ୍କର ରହିବାର ଉପଯୁକ୍ତ ନୁହେଁ । ଏହା ମ୍ଲେଚ୍ଛମାନଙ୍କର ରହିବାର ଉପଯୁକ୍ତ, ସେମାନେ ଏଠାରେ ଗୋବଧ ପୂର୍ବକ ମାଂସ ରନ୍ଧନ କରି ଆହାର କରିବେ । ଆସ, ଆମ୍ଭେମାନେ ଏସ୍ଥାନ ଆଶୁ ପରିତ୍ୟାଗ କରିବା" । ଏହା କହି ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ନିଜଗଣ ସହି ସେ ଗ୍ରାମରେ ନ ରହି ଅନ୍ୟଗ୍ରାମକୁ ଗମନ କଲେ । ରାମଚନ୍ଦ୍ର ଖାନର ମହଦପରାଧ ପରିପାକ ହେବାରୁ ମ୍ଲେଚ୍ଛ ଉଜିର ଆସି ତାଙ୍କ ସେହି ଦୁର୍ଗାମଣ୍ଡପରେ ବାସ କଲେ ଓ ଅବଧ୍ୟ ବଧ କରି ସେଠାରେ ମାଂସ ରନ୍ଧନ କରାଇଲେ ଏବଂ ରାମଚନ୍ଦ୍ର ଖାନଙ୍କୁ ସବଂଶରେ ବନ୍ଦୀ କରି ତାହାରି ଜାତି ଦ୍ୱାରି ନଷ୍ଟ କରିଦେଲେ । ଯଥା ।—

ଦସ୍ୟୁ ବୃତ୍ତି ରାମଚନ୍ଦ୍ରେର ରାଜାୟ ନା ଦେୟ କର
କ୍ରୁଦ୍ଧ ହଇୟା ମ୍ଲେଚ୍ଛ ଉଜିର ଆଇଲ ତାର ଘର ।
ଆସି ସେଇ ଦୁର୍ଗାମଣ୍ଡପେ ବାସ କୈଲ
ଅବଧ୍ୟ ବଧ କରି ଘରେ ମାଂସ ରାନ୍ଧିଲ ।
ସ୍ତ୍ରୀ ପୁତ୍ର ସହିତ ରାମଚନ୍ଦ୍ରେର ବାନ୍ଧିୟା
ତାର ଘର ଗ୍ରାମ ଲୁଟେ ତିନି ଦିନ ରହିୟା ।
ସେଇ ଘରେ ତିନଦିନ ଅବଧ୍ୟ ରନ୍ଧନ
ଆର ଦିନ ସବା ଲଞା କରିଲ ଗମନ ।
ଜାତି ଧନ ଜନ ଖାନେର ସକଲ ଲଇଲ
ବହୁଦିନ ପର୍ଯ୍ୟନ୍ତ ଗ୍ରାମ ଉଜାଡ଼ ରହିଲ ॥
ମହାନ୍ତେର ଅପମାନ ଯେ ଦେଶ ଗ୍ରାମେ ହୟ
ଏକ ଜନାର ଦୋଷେ ସବ ଦେଶ ଉଜାଡ଼ୟ ।

[ ଚୈଃ ଚଃ ଅନ୍ତ୍ୟ ୩ ପରି ]

ସେହି ଠାକୁର ଶ୍ରୀହରିଦାସଙ୍କୁ ଅବମାନନ କରିବାରୁ ଗୋପାଳ ଚକ୍ର-ବର୍ତ୍ତୀଙ୍କ ଦୁର୍ଦ୍ଦଶା ଘଟିଥିଲା ତାହାମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ ।

ଶ୍ରୀଗୋବର୍ଦ୍ଧନ ଦାସଙ୍କ ସଭାରେ ଠାକୁର ହରିଦାସ ହରିନାମର ମହିମା କୀର୍ତ୍ତନ କରନ୍ତେ ପଣ୍ଡିତାଭିମାନୀ ଗୋପାଳଚକ୍ରବର୍ତ୍ତୀର କର୍ଣ୍ଣରେ ତାହା ସହ୍ୟ ହେଲା ନାହିଁ । ସେ ଠାକୁର ହରିଦାସଙ୍କୁ ଭର୍ତ୍ସନାପୂର୍ବକ ହରିନାମ ମାହାତ୍ମ୍ୟକୁ ନିନ୍ଦାକଲେ । ଠାକୁର ହରିଦାସଙ୍କୁ ଅବମାନନା ହେତୁ ତିନଦିନ ମଧ୍ୟରେ ଗୋପାଳ ଚକ୍ରବର୍ତ୍ତୀ କୁଷ୍ଠ ରୋଗରେ ଆକ୍ରାନ୍ତ ହେଲେ । ତାଙ୍କର ସୁନ୍ଦର ଦେହ ବିବର୍ଣ୍ଣ ହୋଇଗଲା, ନାସିକା ଖସି ପଡ଼ିଲା । ଠାକୁର ହରିଦାସ ତାଙ୍କର ଦୋଷ ଧରି ନ ଥିଲେହେଁ ଦୋଷୀର ଦଣ୍ଡଦାତା ଶ୍ରୀହରି ତାଙ୍କୁ ଛାଡ଼ିଲେ ନାହିଁ , ମହତ୍ ଅପରାଧ ଫଳ ଅଶୁ ଭୋଗ କରାଇଲେ । ଯଥା ।—

ତିନଦିନ ବହି ସେଇ ବିପ୍ରେର କୁଷ୍ଠହୈଲ
ଅତି ଉଚ୍ଚ ନାସା ତାର ଗଲିୟା ପଡ଼ିଲ ।
ଚମ୍ପକକଲିକା ସମ ହସ୍ତପଦାଙ୍ଗୁଲି
କୋଁକଡ଼ ହଇଲ ସବ କୁଷ୍ଠେ ଗେଲ ଗଲି ।
ଦେଖିୟା ସକଲ ଲୋକ ହଇଲ ଚମତ୍କାର
ହରିଦାସେ ସବଲୋକ କରେ ନମସ୍କାର !
ଯଦ୍ୟପି ହରିଦାସ ବିପ୍ରେର ଦୋଷ ନା ଲୈଲେ
ତଥାପି ଈଶ୍ୱର ତାରେ ଫଳ ଭୁଞ୍ଜାଇଲ ।
ଭକ୍ତେର ସ୍ୱଭାବ ଅଜ୍ଞେର ଦୋଷ କ୍ଷମାକରେ
କୃଷ୍ଣ ସ୍ୱଭାବ ଭକ୍ତନିନ୍ଦା ସହିତେ ନା ପାରେ ।

( ଚୈଃ ଚଃ ଅନ୍ତ୍ୟ ୨

ଏ ସମ୍ବନ୍ଧରେ ଶ୍ରୀ ମନ୍ମହାପ୍ରଭୁଙ୍କର ନିଜଉକ୍ତି ମଧ୍ୟ ପ୍ରମାଣ । ଏକଦିନ ମହାପ୍ରଭୁ ନିଜ ଜନଙ୍କ ସଙ୍ଗରେ କୃଷ୍ଣ କଥା କହି କହି ନବଦ୍ୱୀପରେ ଭ୍ରମଣ କରୁଅଛନ୍ତି ଏମନ୍ତ ସମୟରେ ଏକ କୁଷ୍ଠ ରୋଗୀ ତାଙ୍କ ଶ୍ରୀଚରଣରେ ପଡ଼ି କାତରରେ ନିବେଦନ କଲା " ପ୍ରଭୋ ! ଆପଣଙ୍କୁ ଲୋକେ ସ୍ୱୟଂ ଜନାର୍ଦ୍ଦନ ବୋଲି କହୁଅଛନ୍ତି, ଆପଣ ପୁରୁଷୋତ୍ତମ ସନାତନ । ଆପଣ ନିଜଗତର ବନ୍ଧୁ ପତିତପାବନ । ହେ ଗୌର ଗୋପାଳ ! ଏ ଅଧମ ବଡ

ଦୂରାଗ୍ରହ, ଏ ସ୍ଥାଠାରୁ ପାପୀ ତ୍ରିଭୁବନରେ ନାହିଁ । ଭୀଷମ କୁଷ୍ଠ ବ୍ୟାଧିରେ ଅସହ୍ୟ ବେଦନା ସହ୍ୟ କରୁଅଛି । କୃପାଦୃଷ୍ଟି କରି ଏ ଅଧମକୁ ଉକ୍ତ ଉତ୍କଟ ବ୍ୟାଧିରୁ ମୁକ୍ତ କରନ୍ତୁ । ମହାପ୍ରଭୁ ତାହାର ଏ ବାକ୍ୟ ଶୁଣି କ୍ରୁଦ୍ଧ ହୋଇ କହିଲେ "ଦୁରାଗ୍ରହ ! ତୁ ବୈଷ୍ଣବଦ୍ରୋହୀ, ସଂସାରରେ ସମସ୍ତେ ମୋର ମିତ୍ର ହେଲେହେଁ ବୈଷ୍ଣବଦ୍ରୋହୀଗଣ ମୋର ଶତ୍ରୁ । ତୁମ୍ଭେ ମୋର ପ୍ରିୟାତ୍ପ୍ରିୟ ଶ୍ରୀବାସ ପଣ୍ଡିତଙ୍କୁ ଅଶେଷ ନିନ୍ଦା କରିଅଛ । ଅତଏବ ଶ୍ରୀବାସଙ୍କଠାରେ ତୁମ୍ଭର ଯେ ଅପରାଧ ହୋଇଅଛି ସେଥିପାଇଁ ଶତଜନ୍ମ ତୁମ୍ଭଙ୍କୁ ନରକ ଯନ୍ତ୍ରଣା ଭୋଗ କରିବାକୁ ହେବ । ମୋଠାରେ ଶତ ଅପରାଧ କରି ମଧ୍ୟ ଯେଉଁଜନ ମୋର ପ୍ରିୟଭକ୍ତମାନଙ୍କୁ ସେବାକରେ, ମୁଁ ସେମାନଙ୍କୁ ପରିତ୍ରାଣ କରେଁ । କିନ୍ତୁ ଭକ୍ତଦ୍ୱେଷୀର ଉଦ୍ଧାର ନାହିଁ । ଯଥା :—

ବୈଷ୍ଣବେର ଅପରାଧ କରେ ଯେଇଜନ
ନରକେ ପଡ଼ିଲେ ତାର ନାହିଁକ କାରଣ,
ବୈଷ୍ଣବେର ସେବାକରେ ମୋର କରେ ଦ୍ୱେଷ
ତାର ପରିତ୍ରାଣ କର ଘୁଚଇଯ୍ୟା କ୍ଲେଶ;
ବାହିରେ ସବୁଣ ଦେଖ ଏହିମୋର ଦେହ
ବୈଷ୍ଣବ ଅନ୍ତରେ ପ୍ରାଣ ନାହିଁକ ସନ୍ଦେହ,,

( ଚୈଃ ମଃ )

ପରେ ଶ୍ରୀବାସଙ୍କ କୃପାରୁ ସେ କୁଷ୍ଠରୋଗୀ ଉଦ୍ଧାର ପାଇଲା ।

ମହାପ୍ରଭୁ ସନ୍ନ୍ୟାସାବଲମ୍ବନ ପରେ ଶ୍ରୀମନ୍ନିତ୍ୟାନନ୍ଦ ତାହାଙ୍କୁ ବୃନ୍ଦାବନ ଗମନ ପଥରୁ କୌଶଳକ୍ରମେ ଭୁଲାଇ ଶାନ୍ତିପୁରର ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ଭବନକୁ ଘେନି ଆସିଥିଲେ, ମହାପ୍ରଭୁ ଯେତେବେଳେ ସେହି ଅଦ୍ୱୈତାଚାର୍ଯ୍ୟଙ୍କ ଘରେ ବାସ କରୁଥିଲେ ତେତେବେଳେ ମଧ୍ୟ ଅପର ଏକ କୁଷ୍ଠରୋଗୀ ମହାପ୍ରଭୁଙ୍କ କୃପାଭିକ୍ଷା କରିଥିଲେ, କିନ୍ତୁ ତାଙ୍କର ମଧ୍ୟ ଉକ୍ତ ଶ୍ରୀବାସ ପଣ୍ଡିତଙ୍କଠାରେ ଅପରାଧ ହେବାରୁ ମହାପ୍ରଭୁ କହିଥିଲେ !

"ଯେ ବୈଷ୍ଣବ ନାମେ ହୟ ସଂସାର ମୋଚନ
ବ୍ରହ୍ମାଣ୍ଡ ପାବନ ଯେଇ ବୈଷ୍ଣବଚରଣ ।
ଯେ ବୈଷ୍ଣବ ଭଜିଲେ ଅଚିନ୍ତ୍ୟ କୃଷ୍ଣ ପାଇ
ଯେ ବୈଷ୍ଣବ ପୂଜାହେତେ ବଡ଼ ଆର ନାଇ ।
ଶେଷ ରମା ଅଜ ଭବ ନିଜଦେହ ହୈତେ
ବୈଷ୍ଣବ କୃଷ୍ଣେର ପ୍ରିୟ କହେ ଭାଗବତେ ।
ହେନ ବୈଷ୍ଣବେର ନିନ୍ଦାକରେ ଯେଇଜନ
ସେଇ ପାୟ ଦୁଃଖ ଜନ୍ମ ଜୀବନ ମରଣ ।
ବିଦ୍ୟାକୁଳ ତପ ସବ ବିଫଲ ତାହାର
ବୈଷ୍ଣବେରେ ନିନ୍ଦେ ଯେ ଯେ ପାପୀ ଦୁରାଚାର ।
ପୂଜାତ ତାହାର କୃଷ୍ଣ ନା କରେ ଗ୍ରହଣ
ବୈଷ୍ଣବେର ନିନ୍ଦାକରେ ଯେ ପାପିଷ୍ଠଜନ ।
ଯେ ବୈଷ୍ଣବ ନାଚିତେ ପୃଥିବୀ ଧନ୍ୟ ହୟ
ଯାର ଦୃଷ୍ଟି ମାତ୍ର ଦଶଦିକେ ପାପକ୍ଷୟ ।
ଯେ ବୈଷ୍ଣବଜନ ବାହୁ ତୁଲିୟା ନାଚିତେ
ସ୍ୱର୍ଗେର ସକଲ ବିଘ୍ନ ଘୁଚେ ଭାଲ ମତେ ।
ହେନ ମହାଭାଗବତ ଶ୍ରୀବାସ ପଣ୍ଡିତ
ତୁଇ ପାପୀ ନିନ୍ଦା କୈଲ ତାହାର ଚରିତ ।
ଏତେକେ ତୋମାର କୁଷ୍ଠ ହୈଲ କୋନକାଜ ;
ମୂଳ ଶାସ୍ତ୍ରୀ ପଶ୍ଚାତୁ ଅଛେନ ଧର୍ମ ରାଜ,
ଏତେକ ଆମାର ଦୃଶ୍ୟଯୋଗ୍ୟ ନହ ତୁମି
ତୋମାର ନିସ୍ତାର କରିବାରେ ନାରି ଆମି ।

( ଚୈଃ ଭାଃ ଅନ୍ତ୍ୟ ୪ର୍ଥ )

ଶ୍ରୀଚୈତନ୍ୟ ଭାଗବତରେ ବର୍ଣ୍ଣିତ କୁଷ୍ଠରୋଗୀ ଓ ଚୈତନ୍ୟ ମଙ୍ଗଳ ବର୍ଣ୍ଣିତ କୁଷ୍ଠରୋଗୀ ଏକ ହୋଇ ପାରନ୍ତି, କିମ୍ବା ଭିନ୍ନ, ତାହା ବୋଲିଯାଇ ନ ପାରେ, କିନ୍ତୁ ବର୍ଣ୍ଣନା ସମୟରେ କହି ଥିବାରୁ ଭିନ୍ନ ବୋଲି ଅନୁମିତ ହୁଏ,

କୃଷ୍ଣପ୍ରିୟ ବୈଷ୍ଣବଙ୍କୁ ଅନାଦର କରି ଶ୍ରୀକୃଷ୍ଣଙ୍କୁ ପୂଜାକଲେ ଶ୍ରୀକୃଷ୍ଣ ତାହା ଗ୍ରହଣ କରନ୍ତି ନାହିଁ । ଶ୍ରୀଅଦ୍ୱୈତଙ୍କ ମଧ୍ୟବରେ ମହାପ୍ରଭୁ ଏକଦା କହିଥିଲେ :—

"ମୋର ଏହି ସତ୍ୟ ଶୁନ ସବେ ମନ ଦିଆ
ଯେ ଆମାରେ ପୂଜେ ସେବକ ଲଙ୍ଘିୟା ।
ସେ ଅଧମ ଜନ ମୋରେ ଖଣ୍ଡ ଖଣ୍ଡ କରେ
ତାର ପୂଜା ମୋର ଗାୟେ ଅଗ୍ନିହେନ ପଡ଼େ ।
ଆମାର ଦାସେର ଯେ ସକୃତ ନିନ୍ଦାକରେ
ମୋର ନାମକଳ୍ପତରୁ ସଂହାରେ ତାହାରେ ।

( ଚୈଃ ଭାଃ ମଧ୍ୟ ୧୯ ପରି )

ମହାପ୍ରଭୁ ଭକ୍ତମାନଙ୍କୁ ବୈଷ୍ଣବନିନ୍ଦାରୂପ ଅପରାଧରୁ ବାରମ୍ବାର ସତର୍କ କରାଇ ଅଛନ୍ତି, ଯଥା :—

ବାହୁ ତୁଲି ଜଗତେରେ ବଲେ ଗୌରଧାମ
ଅନିନ୍ଦୁକ ହଇ ସବେ ବଲ କୃଷ୍ଣ ନାମ ।
ଅନିନ୍ଦୁକ ହଇୟେ ସକୃତ କୃଷ୍ଣବଲେ
ସତ୍ୟ ସତ୍ୟ ମୁଇଁ ତାରେ ଉଦ୍ଧାରିବ ହେଲେ ।

( ଚୈଃ ଭାଃ ମଧ୍ୟ ୧୯ ପରି )

ମହାପ୍ରଭୁଙ୍କର ନବଦ୍ୱୀପଲୀଳାରେ ଜଗାଇ ମାଧାଇ ଉଦ୍ଧାର ଏକ ପ୍ରଧାନ ଘଟନା, ଜଗାଇ ମାଧାଇ ଦୁହେଁ ଦସ୍ୟୁଦଳପତି ଓ ମହାପାପୀ, ଗୋହତ୍ୟା ବ୍ରହ୍ମହତ୍ୟାଦି ବହୁ ପାପ ଏମାନଙ୍କର ଥିଲେହେଁ ଶ୍ରୀମନ୍ନିତ୍ୟା-ନନ୍ଦଙ୍କ କୃପାରୁ ଏମାନେ ଉଦ୍ଧାର ପାଇଲେ । ଶ୍ରୀଲବୃନ୍ଦାବନଦାସ ଏମାନଙ୍କ ଉଦ୍ଧାରଲୀଳା ବର୍ଣ୍ଣନକାଳରେ ଲେଖିଅଛନ୍ତି ।—

ସର୍ବପାପ ସେଇ ଦୁଇ ଶରୀରେ ଛାଡ଼ିଲ
ବୈଷ୍ଣବେର ନିନ୍ଦା ପାପ ସବେ ନା ହଇଲ ।

ଅପ୍ରକାଶ ନଦୀୟାରେର ସଙ୍ଗ ରଙ୍ଗେ ଥାକେ
ନହିଲ ବୈଷ୍ଣବ ନିନ୍ଦା ଏହି ସବ ପାକେ ।
( ଚୈଃ ଭାଃ ମଧ୍ୟ ୧୩ ଅ )

ଶ୍ରୀଲ ବୃନ୍ଦାବନଦାସ ଅନର୍ଥକ ପରଚର୍ଚ୍ଚାକୁ ବାରଣପୂର୍ବକ ସେହି ସ୍ଥାନରେ କହି ଅଛନ୍ତି ।

ନଦୀୟାରେର ନିସ୍କୃତି ଅଛୟେ କୋନକାଲେ
ପରଚର୍ଚ୍ଚାକର ଗତି କଭୁ ନାହିଁ ଭଲେ ।
( ଚୈଃ ଭାଃ ମଧ୍ୟ ୧୩ ଅ )

ବୈଷ୍ଣବନିନ୍ଦା ବିଷୟରେ ଲୋକଙ୍କୁ ବାରମ୍ବାର ସାବଧାନ କରାଇ ଅନ୍ୟତ୍ର କହିଅଛନ୍ତି :—

ନଦୀୟାରେରେ ଉଦ୍ଧାରିଲା ଚୈତନ୍ୟ ଗୋସାଇଁ
ବୈଷ୍ଣବ ନିନ୍ଦୁକଙ୍କୁ କୁମ୍ଭୀପାକେ ଦଣ୍ଡ ଠାଇଁ ।
( ଚୈଃ ଭାଃ ମଧ୍ୟ ୧୩ ଅ )

ଏହି ଭକ୍ତଙ୍କର ମଧ୍ୟ ବୈଷ୍ଣବନିନ୍ଦାରେ ଅଧଃପତନ ଘଟେ । ଶ୍ରୀଲ ବୃନ୍ଦାବନଦାସ ସେଥିପାଇଁ କହିଅଛନ୍ତି ।ଃ—

ଶୂଲପାଣି ସମ ଯଦି ଭକ୍ତ ନିନ୍ଦା କରେ
ଭାଗବତ ପ୍ରମାଣ ତଥାପି ଶୀଘ୍ର ମରେ ।
( ଚୈଃ ଭାଃ ମଧ୍ୟ ୧୩ ଅ )

ଯେ ଜନ କୃଷ୍ଣକୃପା ଲାଭ କରିଥାନ୍ତି ପଛକେ, ଯଦି ବୈଷ୍ଣବଙ୍କଠାରେ ଅପରାଧ ଜାତ ହୁଏ, ତେବେ ସେ ବ୍ୟକ୍ତି କୃଷ୍ଣପ୍ରେମରୁ ବଞ୍ଚିତ ହୁଏ । ଯଥା

ବୈଷ୍ଣବେର ଠାଇଁ ଯାର ହୟ ଅପରାଧ
କୃଷ୍ଣକୃପା ହଇଲେଓ ତାର ପ୍ରେମ ବାଧ ।
( ଚୈଃ ଭାଃ ମଧ୍ୟ ୨୨ ଅ )

ଏହି ଉପର୍ଯ୍ୟୁକ୍ତ ତେଜକ୍ରିୟ ଲେଖିବାକୁ ଯାଇ ତାହାର ସମର୍ଥନ ନିମିତ୍ତ ଶ୍ରୀଲଠାକୁର ବୃନ୍ଦାବନଦାସ କହିଅଛନ୍ତି । "ମୋର ଏହି କଥାଯାଳ-

କଲିରେ ନୃତ୍ୟ । ଏ ଦେବବାକ୍ୟ ଓ ମହାପ୍ରଭୁ ନିଜେ ଏହା ବ୍ୟକ୍ତ କରି ଅଛନ୍ତି ।" ଏବଂ ସେ ଅଦ୍ଭୁତ ନିମ୍ନୋକ୍ତ ଉଦାହରଣଟି ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲେଖ କରି ଅଛନ୍ତି ।

ଶାନ୍ତିପୁରନାଥ ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କର ନବଦ୍ୱୀପରେ ଏକ ବାସଗୃହ ଥିଲା । ଅନେକ ସମୟରେ ସେ ସେଠାରେ ବାସ କରି ଶାସ୍ତ୍ରଚର୍ଚ୍ଚା କରୁଥିଲେ । ମହାପ୍ରଭୁଙ୍କର ଜ୍ୟେଷ୍ଠଭ୍ରାତା ବିଶ୍ୱରୂପ ବାଳକକାଳରୁ ମହାପଣ୍ଡିତ ଓ ଭକ୍ତ । ସେ ଅନ୍ୟତ୍ର ଶ୍ରୀକୃଷ୍ଣ ଭକ୍ତିର ଚର୍ଚ୍ଚା ନ ଦେଖି ମନେ ମନେ କଷ୍ଟାନୁଭବ କରୁଥିଲେ, ଏବଂ ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କ ସଭାରେ ସତତ କୃଷ୍ଣଭକ୍ତିର ଚର୍ଚ୍ଚା ହେଉଥିବାରୁ ସେ ସେଠାକୁ ସର୍ବଦା ଯାଉଥିଲେ । କିଛିଦିନ ପରେ ବିଶ୍ୱରୂପ ସନ୍ନ୍ୟାସ ଗ୍ରହଣପୂର୍ବକ ଗୃହ ତ୍ୟାଗକରି ଦେଶଭ୍ରମଣ କରିବାକୁ ଚାଲିଗଲେ । ଏଥିରେ ଶଚୀମାତାଙ୍କ ମନରେ ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କ ପ୍ରତି ଅଶ୍ରଦ୍ଧା ଜନ୍ମିଥିଲା । କିନ୍ତୁ ସେ ବୈଷ୍ଣବାପରାଧ ଭୟରେ କିଛି କହି ନଥିଲେ । ପରେ ମହାପ୍ରଭୁ ଗୟାଧାମରୁ ପ୍ରତ୍ୟାଗମନ ପରେ ଭାବବିହ୍ୱଳ ହୋଇ ସତତ ଶ୍ରୀଅଦ୍ୱୈତ ପ୍ରଭୁଙ୍କ ସଙ୍ଗରେ କୃଷ୍ଣକଥା ଆଲୋଚନା କରିବାକୁ ଲାଗିଲେ । ସାଂସାରିକ କାର୍ଯ୍ୟରେ ଆଉ ମନ ନିବେଶ କଲେ ନାହିଁ । ଶଚୀଦେବୀ ଏଥିରେ ମର୍ମାନ୍ତିକ ଦୁଃଖ ଅନୁଭବ କରି କହିଥିଲେ ଃ—

> କେ ବଲେ ଅଦ୍ୱୈତ ଦ୍ୱୈତ ଏ ବଡ଼ ଗୋସାଇଁ
> ଚନ୍ଦ୍ରସମ ଏକ ପୁତ୍ର କରିଯା ବାହିର
> ଏହି ପୁତ୍ର ନା ଦିଲେନ କରିବାରେ ସ୍ଥିର ।
>
> ( ଚୈଃ ଭାଃ ମଧ୍ୟ ୨୨ ଅ )

ଶଚୀଦେବୀଙ୍କର ଏହି ଉକ୍ତି ମହାପ୍ରଭୁଙ୍କୁ ଅବଗତ ନଥିଲା । ସେ ଏକ ଦିନ ଭଗବଦ୍‌ଭାବରେ ଐଶ୍ୱର୍ଯ୍ୟ ପ୍ରକାଶପୂର୍ବକ ବିଷ୍ଣୁଖଟ୍ଟା ଉପରେ ଯାଇ ଉପବେଶନ କଲେ ଏବଂ ଭକ୍ତମାନଙ୍କୁ ଆହ୍ୱାନ ପୂର୍ବକ କହିଲେ ମୁଁ ଶ୍ରୀମନ୍ ନାରାୟଣ, ମୁଁ ଶ୍ରୀରାମରୂପେ ସେତୁବନ୍ଧନ କରିଥିଲି । ମୁଁ କ୍ଷୀରସାଗର ମଧ୍ୟରେ ଅନନ୍ତ ଶଯ୍ୟାରେ ଶୟନ କରିଥିଲି । ନାଡ଼ା, ( ଅଦ୍ୱୈତାଚାର୍ଯ୍ୟ )

ହୁଁ କାର କରିବାରୁ ମୋର ନିଦ୍ରାଭଙ୍ଗ ହେଲା । ମୁଁ ପ୍ରେମଭକ୍ତି ବିତରଣ ପାଇଁ ଅବତୀର୍ଣ୍ଣ ହୋଇଅଛି । ହେ ନାଢ଼ା ହେ ଶ୍ରୀବାସ ତୁମ୍ଭେମାନେ କି ବର ମାଗୁଛ ମାଗ । ମୁଁ ବର ଦେବାକୁ ପ୍ରସ୍ତୁତ ଅଛି । ମହାପ୍ରଭୁଙ୍କ ଏହି ଭଗବଦ୍-ଭାବ ପ୍ରକଟନ ଦେଖି ଶ୍ରୀମନ୍ ନିତ୍ୟାନନ୍ଦ ତାଙ୍କ ମସ୍ତକୋପରି ଛତ୍ର ଧାରଣ କଲେ । ଶ୍ରୀଗଦାଧର ବାମ ପଟରେ ରହି ତାମ୍ବୁଳ ଯୋଗାଇବାକୁ ଲାଗିଲେ କେତେକ ଭକ୍ତ ଚାମର ଢ଼ାଳିବାକୁ ଲାଗିଲେ, ଏବଂ ମହାପ୍ରଭୁଙ୍କ ଆଜ୍ଞା ମତ ଭକ୍ତଗଣ ନିଜ ନିଜ ଅଭିମତ ବର ପ୍ରାର୍ଥନା କରିବାକୁ ଲାଗିଲେ । କେହି ପ୍ରାର୍ଥନା କଲେ ମୋର ପିତାଙ୍କର ଭକ୍ତି ଉଦୟ ହେଉ, କେହି କହିଲେ ମୋର ପୁତ୍ରର ଶ୍ରୀକୃଷ୍ଣଚରଣାରବିନ୍ଦରେ ମତି ହେଉ, କେହି ନିଜ ଗଭୀର କୃଷ୍ଣ-ଭକ୍ତି ପ୍ରାର୍ଥନା କଲେ । ମହାପ୍ରଭୁ ଭକ୍ତମାନଙ୍କର ପ୍ରାର୍ଥନାନୁରୂପ ବର ଦେବାକୁ ଲାଗିଲେ । ଶ୍ରୀବାସ ପଣ୍ଡିତ ସେତେବେଳେ ପ୍ରାର୍ଥନା କରି କହିଲେ, ଆଇଙ୍କୁ [ ଶଚୀଦେବୀଙ୍କୁ ] ଏ ପ୍ରେମର ବିକାଶ ଦର୍ଶନ କରାଉନ୍ତୁ । ମହାପ୍ରଭୁ ତହିଁରେ ଉତ୍ତର କଲେ " ତାଙ୍କର ବୈଷ୍ଣବାପରାଧ ଜନ୍ମି ଅଛି, ସେ ଏ ପ୍ରେମ ଭକ୍ତି ପାଇ ପାରିବେ ନାହିଁ । " ଉଚିତ ବକ୍ତା ନିର୍ଭୀକ ଶ୍ରୀବାସ ଏହା ଶୁଣି କହିଲେ , " ପ୍ରଭୋ ! ଆପଣ ଏ କି କଥା କହୁଅଛନ୍ତି । ଆପଣ ଯାହା ଗର୍ଭରୁ ଅବତୀର୍ଣ୍ଣ ହୋଇ ଅଛନ୍ତି ତାହାଙ୍କର କୃଷ୍ଣପ୍ରେମରେ ଅଧିକାର ନାହିଁ । ସେ ଯେ ଜଗତଜନନୀ । ଆପଣ ତାଙ୍କର ପୁତ୍ର, ପୁତ୍ରଠାରେ ମାତାର କି ଅପରାଧ ଥାଇ ପାରେ । ଯଦି ଦୈବାତ୍ କୌଣସି ସ୍ଥଳେ ବୈଷ୍ଣବାପରାଧ ଜାତ ହୋଇଥିବ ତେବେ ତାହା ଖଣ୍ଡନ କରାଇ କୃଷ୍ଣପ୍ରେମ ପ୍ରଦାନ କରନ୍ତୁ । " ମହାପ୍ରଭୁ କହିଲେ, " ମୋର ସେ ଅପରାଧ ଖଣ୍ଡନ କରିବାର ଶକ୍ତି ନାହିଁ । ଯାହାଙ୍କଠାରେ ଅପରାଧ ହୋଇଅଛି, ସେହି କୃପା କଲେ ଏ ଅପରାଧ ଖଣ୍ଡନ ହୋଇପାରେ । ନତୁବା ଅପରାଧ ଖଣ୍ଡନର ଅନ୍ୟ ଉପାୟ ନାହିଁ ।

ଯେ ବୈଷ୍ଣବ ସ୍ଥାନେ ଅପରାଧ ହୟ ଯାର
ପୁନଃ ସେହି କ୍ଷମିଲେ ସେ ଘୁଚେ, ନହେ ଆର ।

( ଚୈଃ ଭାଃ ୨୨ ଅ )

ମହାମୁନି ଦୁର୍ବାସାଙ୍କର ମହାରାଜା ଅମ୍ବରୀଷଙ୍କଠାରେ ଅପରାଧ ହୋଇ ଥିଲା । ସେହି ଅମ୍ବରୀଷ ବିନା ଅନ୍ୟ କେହି ସେ ଅପରାଧ ମାର୍ଜନ କରି ପାର ନଥିଲେ । ଏହାଙ୍କର ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ସ୍ଥାନରେ ଅପରାଧ ହୋଇଅଛି, ତାଙ୍କ ଶ୍ରୀଚରଣରେଣୁ ଗ୍ରହଣକଲେ ତାଙ୍କ ପ୍ରସାଦରୁ ଉକ୍ତ ଅପରାଧ ମୋଚନ ହେବ ।" ମହାପ୍ରଭୁଙ୍କ ମୁଖରୁ ଏହିବାକ୍ୟ ଶ୍ରବଣକରି ଧାମସ୍ତେ ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କ ପାଖକୁ ଦଉଡ଼ିଲେ ଓ ତାଙ୍କଠାରେ ସମସ୍ତ ବିବରଣ ପ୍ରକାଶ କଲେ । ଶ୍ରୀ ଅଦ୍ୱୈତାଚାର୍ଯ୍ୟ ଏହା ଶ୍ରବଣକରି ବିଷ୍ଣୁ ସ୍ମରଣ କଲେ ଏବଂ କହିଲେ "ତୁମ୍ଭେମାନେ କି ମୋର ପ୍ରାଣ ନେବାକୁ ବସିଅଛ । ସ୍ୱୟଂ ଭଗବାନ ଗୌରଚନ୍ଦ୍ର ଯାହାଙ୍କ ଗର୍ଭରୁ ଜାତ ହୋଇଅଛନ୍ତି ସେ ମୋର ଜନନୀ ଓ ମୁଁ ତାହାଙ୍କର ପୁତ୍ର । ମୁଁ ତାଙ୍କର ଚରଣ ଧୂଳିର ପାତ୍ର । ସେ ଯେ ସାକ୍ଷାତ ଦେବକୀ ଏବଂ ଯଶୋଦା । ଗଙ୍ଗାସଙ୍ଗେ ତାଙ୍କର ଯେ କିଛି ଭେଦ ନାହିଁ । ସେ ଯେ ମୂର୍ତ୍ତିମତୀ ଭକ୍ତି । ଏହିରୂପେ ଶଚୀଦେବୀଙ୍କର ପ୍ରଭାବ ବର୍ଣ୍ଣନ କରୁଁ କରୁଁ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ମୂର୍ଚ୍ଛିତ ହେଲେ, ଶଚୀଦେବୀ ଏହି ଅବସର ଜାଣି ତାଙ୍କ ଚରଣରେଣୁ ଗ୍ରହଣ କଲେ ଏବଂ ନେବାମାତ୍ର ପ୍ରେମରେ ମୂର୍ଚ୍ଛିତ ହେଲେ । ସେତେବେଳେ ମହାପ୍ରଭୁ ଖଟ ଉପରେ ଥାଇ କହିଲେ "ଜନନୀଙ୍କର ଏବେ ଆଉ ଅପରାଧ ନାହିଁ । ଏହିରୂପେ ଶିକ୍ଷାଦାତା ମହାପ୍ରଭୁ ଜଗତକୁ ବୈଷ୍ଣବାପରାଧ ପ୍ରତି ବିଶେଷ ସାବଧାନ ହେବାକୁ ଶିକ୍ଷା ଦେଉଥିଲେ । ଶ୍ରୀଲ ବୃନ୍ଦାବନଦାସ ଏହିଠାରେ କହି ଅଛନ୍ତି :—

ଜନନୀର ଲକ୍ଷ୍ୟେ ଶିକ୍ଷାଗୁରୁ ଭଗବାନ
କରାଇଲେନ ବୈଷ୍ଣବାପରାଧାସୁ ସାବଧାନ ।
ଶୂଲପାଣି ସମ ଯଦି ବୈଷ୍ଣବେରେ ନିନ୍ଦେ
ତଥାପିଓ ନାଶଯାୟ କହେ ଶାସ୍ତ୍ରବୃନ୍ଦେ ।

( ଚୈ; ଭା; ୨୨ )

ମହାପାପୀ ହେଲେହେଁ ମହାପ୍ରଭୁଙ୍କର କୃପାଲାଭ କରିପାରନ୍ତି କିନ୍ତୁ ବୈଷ୍ଣବାପରାଧୀ ବା ବୈଷ୍ଣବନିନ୍ଦୁକମାନଙ୍କର କୌଣସି କାଳରେ ଉଦ୍ଧାର ନାହିଁ । ତେଣୁ ଶ୍ରୀଲ ବୃନ୍ଦାବନଦାସ କହିଅଛନ୍ତି ।—

ସବାର କରବ ଗୌରସୁନ୍ଦର ଉଦ୍ଧାର
ବ୍ୟତିରିକ୍ତ ବୈଷ୍ଣବ ନିନ୍ଦକ ଦୁରାଚାର ।
( ଚୈ: ଭା: ମଧ୍ୟ ୧୯ ଅ )

ନାନାରୂପେ ବୈଷ୍ଣବଙ୍କଠାରେ ଅପରାଧ ଜନ୍ମିପାରେ । ବୈଷ୍ଣବଙ୍କୁ ଅନାଦର କରିବା କମ୍ବା ମନେ ମନେ ବୈଷ୍ଣବଙ୍କ ପ୍ରତି ଅଶ୍ରଦ୍ଧା କରିବା ପ୍ରଭୃତି ବୈଷ୍ଣବାପରାଧର ନାନା କାରଣ ଅଛି । ଶ୍ରୀ ଚୈତନ୍ୟ ଭାଗବତରୁ ଗୋଟିଏ ଦୁଇଟି ଉଦାହରଣ ଉଦ୍ଧୃତ କଲି । ଠାକୁର ଶ୍ରୀ ହରିଦାସ ଜାତିରେ ଯବନ ଥିଲେ କିନ୍ତୁ ସେ କେତେବଡ ଉଚ୍ଚଭକ୍ତ ତାହା ପୂର୍ବ ପରିଚ୍ଛେଦମାନଙ୍କରେ ସ୍ଥାନେ ସ୍ଥାନେ ଉଲ୍ଲିଖିତ ହୋଇଅଛି । ତାଙ୍କ ସମ୍ବନ୍ଧେ କହିବାକୁ ଯାଇ ଠାକୁର ଶ୍ରୀଲ ବୃନ୍ଦାବନଦାସ କହିଅଛନ୍ତି ;—

ଯେ ପାପୀଷ୍ଠ ବୈଷ୍ଣବେର ଜାତି ବୁଦ୍ଧି କରେ
ଜନ୍ମ ଜନ୍ମ ଅଧମ ଯୋନିତେ ଡୁବି ମରେ ।

ବୈଷ୍ଣବଙ୍କୁ ଉପହାସ କରିବା ଦୂଷଣୀୟ । ଯଥା ;—

ଦେଖି ମୂର୍ଖ ଦରିଦ୍ର ଯେ ବୈଷ୍ଣବେରେ ହାସେ
ତାର ପୂଜା ବିତ୍ତ କୁଳ କୃଷ୍ଣେରେ ନାଶେ ।
( ଚୈ: ଭା: ୬୦୯ ଅ )

ସାଧୁ ନିନ୍ଦା ଶୁନିଲେ ସୁକୃତ ହୟ କ୍ଷୟ
ଜନ୍ମ ଜନ୍ମ ଅଧଃପାତ ବେଦେ ଏଇ କୟ ।
( ଚୈ: ଭା: ମଧ ୬୦ ଅ

ଭକ୍ତିଦେବୀଙ୍କଠାରେ କୌଣସି କାରଣରୁ ଅପରାଧ ଜନ୍ମିଲେ, ଭକ୍ତି ଦେବୀ ସେ ସ୍ଥାନ ପରିତ୍ୟାଗ କରନ୍ତି । ଭକ୍ତି ଦେବୀ ପରିତ୍ୟାଗ କଲେ ଜୀବର ଚକ୍ଷୁ ଥାଇ ମଧ ଅନ୍ଧ । ତାର ଚକ୍ଷୁ ମାୟା ଦ୍ୱାରା ଆଚ୍ଛାଦିତ ହୁଏ ଓ ସେ ପ୍ରକୃତ ବସ୍ତୁ ଦେଖି ପାରେନାହିଁ ଅର୍ଥାତ୍ ଭକ୍ତିର କୃପାରୁ ଯେ ଚିଦ୍‌ରାଜ୍ୟର ବସ୍ତୁମାନ ଦୃଷ୍ଟି ଗୋଚର ହୁଏ ଭକ୍ତି ଅନ୍ତର ହେଲେ ଅନ୍ଧ ତାହା ସେ ଦେଖି ପାରେନାହିଁ ଯଥା :—

ଭକ୍ତ ସ୍ଥାନେ ଅପରାଧ କୈଲେ ଘୁଚେ ଭକ୍ତି
ଭକ୍ତିର ଅଭାବେ ଘୁଚେ ଦରଶନ ଶକ୍ତି ।

( ଚୈଃ ଭାଃ ମଧ୍ୟ ୧୦ ଅଃ )

ସାଧୁନିନ୍ଦାରୂପ ଅପରାଧର ପ୍ରାୟଶ୍ଚିତ୍ତ ସାଧୁଙ୍କ ଚରଣଶରଣାପନ୍ନ ହୋଇ ସାଧୁମାନଙ୍କ ସ୍ତୁତି ଗାୟନ କରିବା । ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ପରେ ଶ୍ରୀ ପୁରୁଷୋତ୍ତମରେ କିଛି ଦିନ ବାସ କରି ଶ୍ରୀ ବୃନ୍ଦାବନ ଦେଖିବାଛଳରେ ଗୌଡ଼ ଦେଶକୁ ଆସିଥିଲେ । ଏହି ଥର ସେ ଯେତେବେଳେ କୁଳିୟା ଗ୍ରାମକୁ ଆସିଥିଲେ, ଜଣେ ବ୍ରାହ୍ମଣ ମହାପ୍ରଭୁଙ୍କ ଶ୍ରୀଚରଣ ଧାରଣପୂର୍ବକ ନିବେଦନ କଲେ "ପ୍ରଭୋ, ମୁଁ ଭକ୍ତିର ପ୍ରଭାବ ବୁଝି ନପାରି ଏ ମୁଖରେ ବହୁବୈଷ୍ଣବ ନିନ୍ଦା କରିଅଛି । ମୁଁ ସେମାନଙ୍କୁ ପରିହାସପୂର୍ବକ କହିଅଛି, କଳିଯୁଗରେ ପୁଣି କି ବୈଷ୍ଣବ ଓ କି କୀର୍ତ୍ତନ, ପ୍ରଭୋ, ମୁଁ ଏହିରୂପ ମହା ବୈଷ୍ଣବ ଅପରାଧରେ ଲିପ୍ତ । ଆପଣ ପତିତପାବନ, ପତିତ ଜୀବର ଉଦ୍ଧାର ପାଇଁ ଏ ଅବତାର ଗ୍ରହଣ କରିଅଛନ୍ତି । ମୋର କିରୂପେ ସଦ୍ଗତିହେବ ତାହାର ଉପାୟ ବିଧାନ କରନ୍ତୁ । ମହାପ୍ରଭୁ କହିଲେ" ଏଥିକି ଚିନ୍ତା ନାହିଁ । ତୁମ୍ଭେ ଯେଉଁ ମୁଖରେ ଭକ୍ତଙ୍କର ନିନ୍ଦା କରିଅଛ ସେହି ମୁଖରେ ସେମାନଙ୍କର ସ୍ତୁତି ପାଠକର । ଭକ୍ତି ମହିମା ଓ ଭକ୍ତ ମହିମା ବର୍ଣ୍ଣନ କରି ପଦ ରଚନାକର । ଏ ଅପରାଧରୁ ମୁକ୍ତି ପାଇବ । ଯଥାଃ—

ଶୁନ ଦ୍ୱିଜ ବିଷ କରି ଯେ ମୁଖେ ଭକ୍ଷଣ
ସେଇ ମୁଖେ କରି ଯେବେ ଅମୃତ ଗ୍ରହଣ,
ବିଷ ହୈଯ୍ୟ ଜୀର୍ଣ୍ଣ, ଦେହ ହୟତ ଅମର
ଅମୃତ ପ୍ରଭାବ ଏବେ ଶୁନ ସେ ଉତ୍ତର
ନା ଜାନିଯ୍ୟା ତୁମି ଯତ କହିଲା ନିନ୍ଦନ
ସେ କେବଳ ବିଷ ତୁମି କରିଲା ଭୋଜନ
ପରମ ଅମୃତ ଏବେ କୃଷ୍ଣ ଗୁଣ ନାମ
ନିରବଧି ସେଇ ମୁଖେ କର ତୁମି ପାନ,

ଯେ ମୁଖେ କରିଲ ତୁମି ବୈଷ୍ଣବନିନ୍ଦନ
ସେହି ମୁଖେ କର ତୁମି ବୈଷ୍ଣବବନ୍ଦନ ।

ସବା ହୈତେ ଭକ୍ତେର ମହିମା ବଢ଼ାଇୟା
ସଂଗୀତ କବିତା ଭକ୍ତମତ କର ଗିୟା ।

କୃଷ୍ଣଯଶ ପରାନନ୍ଦ ଅମୃତେ ତୋମାର
ନିନ୍ଦାବିଷ ଯତ ସବ କରିବ ସଂହାର ।

ଏଇ ସତ୍ୟ କହି ତୋମା ସବାରେ କେବଲ
ନା ଜାନିୟା ନିନ୍ଦା ଯେବା କରିଲ ସକଲ ।

ଆର ଯଦି ନିନ୍ଦା କର୍ମ୍ମ କଭୁ ନା ଆଚରେ
ତିବେ ସେଇ ବଷ୍ଣୁ ବୈଷ୍ଣବେର ସ୍ତୁତି କରେ ।

ଏ ସକଲ ପାପ ଘୁଚେ ଏଇ ସେ ଉପାୟ
କୋଟି ପ୍ରାୟଶ୍ଚିତ୍ତେଓ ଅନ୍ୟଥା ନାହିଁ ଯାୟ ।

ଚଲ ଦ୍ୱିଜ କର ଗିୟା ଭକ୍ତେର ବର୍ଣ୍ଣନ
ତବେ ସେ ତୋମାର ସବ ପାପ ବିମୋଚନ ।

( ଚୈଃ ଭଃ ଅନ୍ତ୍ୟ ୩ୟ ଅଧ୍ୟାୟ )

ବୈଷ୍ଣବାପରାଧ ଯେ କେତେବେଳେ କେଉଁ ପ୍ରକାରେ ଜାତ ହୋଇ ପଡେ ତାହା ବୋଲିଯାଇ ନ ପାରେ । ଏମନ୍ତ କି ଅତି ଉଚ୍ଚ ଭକ୍ତଙ୍କର ମଧ୍ୟ ଅନବଧାନତା ବଶତଃ ସମୟ୨ରେ ବୈଷ୍ଣବାପରାଧ ଜାତ ହୋଇ ପଡ଼େ । ଶ୍ରୀ ଗଦାଧର ପଣ୍ଡିତ ମହାପ୍ରଭୁଙ୍କର ଶକ୍ତିବିଶେଷ । କିନ୍ତୁ ତାଙ୍କର ମଧ୍ୟ ସମୟରେ ଅପରାଧ ଜାତ ହେବାର ଘଟନା ଉପସ୍ଥିତ ହୋଇଥିଲା । ଶ୍ରୀଲ ପୁଣ୍ଡରୀକ ବିଦ୍ୟାନିଧି ନବଦ୍ୱୀପକୁ ଆସିଥିଲେ । ମୁକୁନ୍ଦ, ଗଦାଧରଙ୍କର ପରମପ୍ରିୟବନ୍ଧୁ । ସେ ଗଦାଧରଙ୍କୁ ସମ୍ବୋଧନପୂର୍ବକ କହିଲେ ଗଦାଧର ! ତୁମ୍ଭେ ସତତ ବୈଷ୍ଣବ ଦର୍ଶନ ଅଭିଳାଷ କର । ଆଜ ଏକ ଅଦ୍ଭୁତ ବୈଷ୍ଣବ ଦର୍ଶନ କରିବାକୁ ମୋ ସଙ୍ଗେ ଆସ ।” ଗଦାଧର ଆନନ୍ଦରେ ମୁକୁନ୍ଦଙ୍କ

ସଙ୍ଗେ ଗମନ କଲେ । ମୁକୁନ୍ଦ ତାହାଙ୍କୁ ନେଇ ପୁଣ୍ଡରୀକ ବିଦ୍ୟାନିଧିଙ୍କ ରହିବା ସ୍ଥାନକୁ ଗଲେ ଏବଂ ଉଭୟ ଯାଇ ବିଦ୍ୟାନିଧିଙ୍କୁ ପ୍ରଣାମ କଲେ । ବିଦ୍ୟାନିଧି ମୁକୁନ୍ଦଙ୍କୁ ପଚାରିଲେ ତୁମ୍ଭ ସଙ୍ଗରେ ଏ ଯୁବକଟି କିଏ ? ଏହାଙ୍କ ଦେହରୁ ବିଷ୍ଣୁଭକ୍ତିର ତେଜ ନିଃସୃତ ହେଉଅଛି । ଆକୃତି ଓ ପ୍ରକୃତି ଲକ୍ଷଣରୁ ଏହାଙ୍କୁ ଅତି ଉତ୍ତମ ବୋଧ ହେଉଅଛି ।" ମୁକୁନ୍ଦ ଉତ୍ତର କଲେ ଏହାଙ୍କ ନାମ ଗଦାଧର, ସୁକୃତିବାନ୍ ମାଧବମିଶ୍ରଙ୍କ ସନ୍ତାନ ଏବଂ ଶିଶୁ-କାଳରୁ ଏହାଙ୍କର ସଂସାରରେ ବିରକ୍ତି ଜାତ ହୋଇଅଛି । ସମସ୍ତ ବୈଷ୍ଣବ-ଗଣ ଏହାଙ୍କୁ ଭଲ ପାଆନ୍ତି । ଆପଣଙ୍କ ନାମ ଶୁଣି ଶ୍ରୀଚରଣ ଦର୍ଶନ ନିମିତ୍ତ ଆସି ଅଛନ୍ତି । ବିଦ୍ୟାନିଧି ଗଦାଧରଙ୍କ ପରିଚୟ ପାଇ ପରମ ସନ୍ତୁଷ୍ଟ ହେଲେ ଏବଂ ତାଙ୍କୁ ସାଦର ସମ୍ଭାଷଣ କଲେ । କିନ୍ତୁ ଗଦାଧର ଦେଖିଲେ, ବିଦ୍ୟାନିଧି ଏକ ମହାନ ଭୋଗାଭିଳାଷୀ ବ୍ୟକ୍ତି । ରାଜପୁତ୍ର ପରି ତାଙ୍କର ବ୍ୟବହାର । ଦିବ୍ୟ ପଲଙ୍କ ଓ ଦିବ୍ୟ ବିଛଣା ଶୋଭା ପାଉଅଛି । ମହାମୂଲ୍ୟ ବାଲିଶମାନ ପଲ୍ୟଙ୍କ ଉପରେ ପଡ଼ିଅଛି । ବଡ଼ ଓ ସାନ ଝାରିମାନ ପାଶରେ ବିଦ୍ୟମାନ । ଦିବ୍ୟ ପାନବଟା ଓ ପକ୍ୱ ତାମ୍ବୂଳମାନ ସେଥିରେ ସୁସଜ୍ଜିତ ହୋଇ ରହିଅଛି । ବିଦ୍ୟାନିଧି ନିଜେ ତାମ୍ବୂଳ ଚର୍ବଣ କରୁଅଛନ୍ତି ଓ ପାଶରେ ଥିବା ପିକଦାନରେ ପିକ ପକାଉଅଛନ୍ତି । ଦୁଇ ଦିଗରେ ଦୁଇଜଣ ସେବକ ଦିବ୍ୟ ସୁନ୍ଦର ମୟୂରପୁଚ୍ଛ ସୁଶୋଭିତ ଚାମର ବ୍ୟଜନ କରୁଅଛନ୍ତି । ଦେହରେ ନାନା ସୁଗନ୍ଧ ଦ୍ରବ୍ୟ ଲିପ୍ତ ଥିବାରୁ ଗୃହ ଦିଗ ସୁବାସରେ ପୂର୍ଣ୍ଣ । ଗଦାଧର ଆଜନ୍ମରୁ ବିରକ୍ତ । ଭକ୍ତପ୍ରବରଙ୍କର ଏହି ସୁଖାଭିଳାଷବ୍ୟଞ୍ଜକ ଆଡ଼ମ୍ବର ତାଙ୍କ ଚକ୍ଷୁରେ ପ୍ରୀତିକର ହେଲା ନାହିଁ । ସେ ବିଦ୍ୟାନିଧିଙ୍କ ଉକ୍ତିରେ ସନ୍ଦିହାନ ହେଲେ ଯଥା:—

ଅଜନ୍ମ ବିରକ୍ତ ଗଦାଧର ମହାଶୟ
ବିଦ୍ୟାନିଧି ପ୍ରତି କିଛୁ ଜନ୍ମିଲ ସଂଶୟ ।
ଭାଳିତ ବୈଷ୍ଣବ ସବ ବିଷୟୀର ବେଶ
ଦିବ୍ୟଭୋଗ, ଦିବ୍ୟବାସ ଦିବ୍ୟ ଗନ୍ଧକେଶ ।

ଶୁନଞା ତ ତାନଭକ୍ତି ଅଛିଲ ଏହାନେ
ଅଛିଲ ଯେ ଭକ୍ତି ସେବା ଗେଲ ଦରଶନେ ।
( ଚୈଃ ଭାଃ ମଧ୍ୟ ୭ମ )

ସେ ମନେ କଲେ, ମୁକୁନ୍ଦ ମୋତେ ଅଦ୍ଭୁତ ବୈଷ୍ଣବ ଅଣି ଦେଖାଇଲେ । ଏହାଙ୍କ ବିଷୟ ଶ୍ରବଣ କରି ମୋର ମନରେ ଏହାଙ୍କ ପ୍ରତି ଯେ ଭକ୍ତି ଜାତ ହୋଇଥିଲା ଏହାଙ୍କୁ ଦର୍ଶନ କରି ତାହା ତିରୋହିତ ହେଲା ।

ମୁକୁନ୍ଦ ଗଦାଧରଙ୍କ ଭାବଭଙ୍ଗୀରୁ ତାଙ୍କ ମନୋଗତ ଭାବ ବୁଝି ପାରିଲେ ଏବଂ ବିଦ୍ୟାନିଧିଙ୍କ ପ୍ରକୃତ ସ୍ୱରୂପ ପ୍ରକାଶ କରାଇବା ପାଇଁ ଶ୍ରୀମଦ୍‌ଭାଗବତରୁ ଭକ୍ତିମହିମାସୂଚକ ଶ୍ଳୋକ ଆବୃତ୍ତି କଲେ । ସେହି ଭକ୍ତି-ଯୋଗାତ୍ମକ ଶ୍ଳୋକ ଶ୍ରବଣ କରି ବିଦ୍ୟାନିଧିଙ୍କର ହୃଦୟନିହିତ ଭକ୍ତି ସମୁଦ୍ର ଉଚ୍ଛୁଳି ପଡ଼ିଲା । ସେ ପ୍ରେମରେ ଅଶ୍ରୁ ବିସର୍ଜ୍ଜନ କରିବାକୁ ଲାଗିଲେ । କମ୍ପ ସ୍ୱେଦାଦି ଅଙ୍ଗରେ ଦେଖାଦେଲା । ଶେଷରେ ପ୍ରେମରେ ମୂର୍ଚ୍ଛିତ ହେଲେ । ତାଙ୍କ ପତନରେ ପାନବଟା ପିକଦାନୀ କେଉଁଆଡ଼େ ପଡ଼ିଲା କିଛି ଠିକଣା ରହିଲାନାହିଁ । ପ୍ରେମବିହ୍ୱଳ ହୋଇ ଦିବ୍ୟ ପରିହିତ ବସ୍ତ୍ରକୁ ସେ ଚିରିବାକୁ ଲାଗିଲେ । ସେ ହା କୃଷ୍ଣ, ମୋର ପ୍ରାଣ ! ତୁ କେଉଁଠାରେ, ମୋତେ ତୁ କାଷ୍ଠପାଷାଣତୁଲ୍ୟ କଠିନ କରିଅଛୁ । ଏହିରୂପ ନାନା ପ୍ରକାରରେ କ୍ରନ୍ଦନ କରିବାକୁ ଲାଗିଲେ । ମନେ ହେଲା ତାଙ୍କ ହାଡ଼ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ । ଏହିରୂପେ ସଂଜ୍ଞାଶୂନ୍ୟ ହୋଇ ସେ କିଛିକ୍ଷଣ ପଡ଼ି ରହିଲେ । ତାହାଙ୍କର ଏ ଅଦ୍ଭୁତ ପ୍ରେମବିକାର ଓ ପ୍ରେମମୂର୍ଚ୍ଛା ଦେଖି ଗଦାଧର ବିସ୍ମିତ ହେଲେ । ଏବଂ ମହାଅପରାଧଜନିତ ଭୟ ତାଙ୍କ ଚିତ୍ତକୁ ଆକ୍ରାନ୍ତ କଲା । ସେ ବଡ଼ ଚିନ୍ତିତ ହୋଇ ପରମବନ୍ଧୁ ମୁକୁନ୍ଦଙ୍କଠାରେ ମନୋଗତ ଭାବ ପ୍ରକାଶ କଲେ ଏବଂ କହିଲେ," ମୋର ଏହାଙ୍କଠାରେ ଯେଉଁ ଅପରାଧ ଜାତ ହୋଇଅଛି ତାହା ଖଣ୍ଡନ ନିମିତ୍ତ ମୁଁ ଏହାଙ୍କଠାରୁ ମନ୍ତ୍ର ଉପଦେଶ ଗ୍ରହଣ କରିବି । ମୁଁ ଏହାଙ୍କର ଶିଷ୍ୟ ହେଲେ ଏ କୃପାକରି ମୋର ଅପରାଧମାନ ମାର୍ଜ୍ଜନା କରିବେ । ମୁକୁନ୍ଦ ତାହା ଅନୁମୋଦନ କରି ବିଦ୍ୟା-

ନିଧିଙ୍କ ପ୍ରେମମୂର୍ତ୍ତି । ଉଗ୍ର ହୁଅନ୍ତି ତାଙ୍କଠାରେ ଗଦାଧରଙ୍କ ପ୍ରାର୍ଥନା ଜଣା-ଇଲେ । ବିଦ୍ୟାନିଧି ମଧ୍ୟ ଗଦାଧରଙ୍କୁ ଉପଯୁକ୍ତ ପାତ୍ର ଜାଣି ତାଙ୍କ ମନୋବାସନା ପୂର୍ଣ୍ଣ କଲେ । ଏଥିରୁ ଦେଖାଗଲା ମହାପ୍ରଭୁଙ୍କ ନିଜଶକ୍ତି ଶ୍ରୀଗଦାଧର ପଣ୍ଡିତ-ଙ୍କର ବୈଷ୍ଣବାପରାଧ ଜାତ ହେବାର ଉପକ୍ରମ ହୋଇଥିଲା । ଆମ୍ଭେମାନେ ଅବା କି ଛାର । ଅତଏବ ଆମ୍ଭମାନଙ୍କର ବୈଷ୍ଣବାପରାଧ ପ୍ରତି ସତତ ବିଶେଷ ସାବଧାନ ହେବା କର୍ତ୍ତବ୍ୟ ।

ଅନିଚ୍ଛୁକ ହୋଇ ଥରେ ମାତ୍ର କୃଷ୍ଣ ଉଚ୍ଚାରଣ କଲେ ଶ୍ରୀକୃଷ୍ଣ ତାଙ୍କୁ ଉଦ୍ଧାର କରନ୍ତି ।

ଯଥାଃ—

ଅନିଚ୍ଛୁକ ହଇ ଯେ ସକୃତ୍ ବଲେ
ସତ୍ୟ ସତ୍ୟ କୃଷ୍ଣ ତାରେ ଉଦ୍ଧାରିବହେଲେ ।

[ ଚୈଃ ଭାଃ ମଧ୍ୟ ୧୦ମ ଅ ]

ଏହି ଯେ ବୈଷ୍ଣବାପରାଧ ତାହା ଭକ୍ତର ମନୋଗତ ଭାବ ଉପରେ ବିଶେଷ ନିର୍ଭର କରେ, କାର୍ଯ୍ୟ ଉପରେ ନୁହେଁ, ଏମନ୍ତ ଅନେକ କାର୍ଯ୍ୟ ଅଛି, ତାହା ସାଧାରଣ ଦୃଷ୍ଟିରେ ଅପରାଧ ବୋଲି ପ୍ରତୀୟମାନ ହେଲେ ମଧ୍ୟ ଭଗବାନଙ୍କଠାରେ ପ୍ରକୃତ ଅପରାଧ ବୋଲି ଗଣ୍ୟ ନୁହେ । କାରଣ ଭାବଗ୍ରାହୀ ଜନାର୍ଦ୍ଦନ ଭାବ ଗ୍ରହଣ କରନ୍ତି, ଶ୍ରୀଗୋବିନ୍ଦ ମହାପ୍ରଭୁଙ୍କର ଶ୍ରୀଅଙ୍ଗ ସେବାକାରୀ ଭୃତ୍ୟ, ସତତ ମହାପ୍ରଭୁଙ୍କ ସେବା ତାଙ୍କର ବ୍ରତ, ମହାପ୍ରଭୁ ଭୋଜନାନ୍ତେ ଶୟନ କଲେ, ଗୋବିନ୍ଦ ତାଙ୍କର ପାଦସମ୍ବାହନ କରନ୍ତି, ଥରେ ମହାପ୍ରଭୁ ଗୋବିନ୍ଦଙ୍କୁ ପରୀକ୍ଷା କରିବା ପାଇଁ ଅହ୍ବାରନ୍ତେ ଗୃହଦ୍ୱାର-ଦେଶରେ ଶୋଇରହିଲେ । ଗୋବିନ୍ଦ ଯାଇ ଦେଖିଲେ, ଭିତରକୁ ଯିବାର ବାଟ ନାହିଁ, ସେ ମହାପ୍ରଭୁଙ୍କୁ ବାରମ୍ବାର ନିବେଦନ କଲେ, ପ୍ରଭୋ, ମୋତେ ପଥ ଛାଡ଼ି ଦିଅନ୍ତୁ, ମୁଁ ଭିତରକୁ ଯାଏଁ, ମହାପ୍ରଭୁ କହିଲେ ମୋର ପାର୍ଶ୍ୱ ପରିବର୍ତ୍ତନ କରିବାର ଅଭିଶକ୍ତି ନାହିଁ । ଗୋବିନ୍ଦ କହିଲେ "ପ୍ରଭୋ ! ମୁଁ ଶ୍ରୀଚ-ରଣ ସେବା କରିବ କପରି ?" ମହାପ୍ରଭୁ ଉତ୍ତର କଲେ କର ବା ନ କର ତୁମ୍ଭର ଇଚ୍ଛା, ସେତେବେଳେ ଗୋବିନ୍ଦ ନିଜ ବହିର୍ବାସକୁ ମହାପ୍ରଭୁଙ୍କ

ଉପରେ ପକାଇ ମହାପ୍ରଭୁଙ୍କୁ ଲଙ୍ଘନ ପୂର୍ବକ ଗୃହାଭ୍ୟନ୍ତରରେ ପ୍ରବେଶ କଲେ ଏବଂ ପ୍ରବେଶ କରି ମହାପ୍ରଭୁଙ୍କ ଶ୍ରୀଚରଣ ସ୍ପର୍ଶ ବାକୁ ଲାଗିଲେ । ମହାପ୍ରଭୁଙ୍କର ନିଦ୍ରା ଆସିଗଲା । ଗୋବିନ୍ଦ ସେହିପରି ଶ୍ରୀଅଙ୍ଗ ସେବା କରୁଥାନ୍ତି । ରାତ୍ରି ଦୁଇଦଣ୍ଡ ଅବଶେଷ ଅଛି । ମହାପ୍ରଭୁଙ୍କର ନିଦ୍ରା ଭଙ୍ଗହେଲା । ସେ ଦେଖିଲେ, ଗୋବିନ୍ଦ ତଦବଧି ଚରଣ ସେବାକରୁଅଛି । ମହାପ୍ରଭୁ ତାହା ଦେଖି ଗୋବିନ୍ଦଙ୍କ ପ୍ରତି ବିରକ୍ତ ହୋଇ କହିଲେ "ଗୋବିନ୍ଦ ! ଆଜି ତୁମ୍ଭେ ଏତେବେଳ ଯାଏ ସେବା କରୁଅଛ କାହିଁକି ? ପ୍ରସାଦ ସେବନ କରିବାକୁ ଗଲ ନାହିଁ ! ଗୋବିନ୍ଦ ଉତ୍ତର କଲେ " ପ୍ରଭୋ ! ଆପଣ ତ ଦ୍ୱାର ଦେଶରେ ଶୋଇଅଛନ୍ତି । ତେଣୁ କିପରି ମୁଁ ବାହାରି ଯିବି !" ମହାପ୍ରଭୁ ସେଥିରେ ଅଧିକ ବିରକ୍ତହୋଇ କହିଲେ ପଥ ନାହିଁ ତ ତୁମ୍ଭେ ଭିତରକୁ ଅସିଲ କପରି । ଯେପରି ଅସିଲ ସେହିପରି ବାହାରିଗଲ ନାହିଁ ! ଗୋବିନ୍ଦ ଏଥିରେ କିଛି ଉତ୍ତର ଦେଲେ ନାହିଁ । ଚୁପ କରି ରହିଲେ । କିନ୍ତୁ ସେ ମନେ ଭାବିଲେ, ମୁଁ ସିନା ମହାପ୍ରଭୁଙ୍କ ସେବା ନିମିତ୍ତ ତାଙ୍କୁ ଲଙ୍ଘନ କରି ଅସିଲି । କିନ୍ତୁ ମୋର ନିଜ ଉଦର ତୃପ୍ତିନିମିତ୍ତ କି ମହାପ୍ରଭୁଙ୍କୁ ଲଙ୍ଘନ କରି ଯାଅନ୍ତି । ଏ ଯେ ମହାପରାଧରକଥା । ଯଥା :—

ଗୋବିନ୍ଦ ମନେ କହେ ମୋର ସେବା ସେ ନିୟମ
ଅପରାଧ ହଉକ କିବା ନରକେ ଗମନ ।
ସେବା ଲାଗି କୋଟି ଅପରାଧ ନାହିଁଗଣି
ସ୍ୱନିମିତ୍ତ ଅପରାଧ ଆଭାସେ ଭୟ ମାନି ।

( ଚୈ: ଚ: ଅନ୍ତ୍ୟ ୧୦ ପରି )

ଏହି ହେଉଛି ଭକ୍ତର ସୂକ୍ଷ୍ମ ବିଚାର । ଭକ୍ତମାନଙ୍କୁ ସତତ ଏହିରୂପ ବିଚାର କରି ଚଳିବା ଉଚିତ । ମହାପ୍ରଭୁଙ୍କର କୃପାରୁ ଭକ୍ତଗଣଙ୍କର ଏରୂପ ସୁମତି ଜାତହୋଇଥାଏ ଓ ଏରୂପ ସୂକ୍ଷ୍ମ ବିଚାରରେ ସେମାନେ ପହଞ୍ଚିପାରନ୍ତି । ଯଥା :—

ଏଇ ସବ ହୟ ଭକ୍ତି ଶାସ୍ତ୍ରେର ସୂକ୍ଷ୍ମ ମର୍ମ
ଚୈତନ୍ୟେର କୃପାୟ ଜାନେ ସେଇ ଧର୍ମ ମର୍ମ ।
( ଚୈ: ଚ: ଅନ୍ତ୍ୟ ୧୦ ପର

ବୈଷ୍ଣବାପରାଧ ଛଡ଼ା ଅନ୍ୟାନ୍ୟ ଅନେକ ପ୍ରକାର । ଭକ୍ତିବାଧକ କାର୍ଯ୍ୟ ମଧ୍ୟ ଅଛି । ଭକ୍ତ ପକ୍ଷରେ ସେ ସମସ୍ତ ବର୍ଜ୍ଜନୀୟ । ସେ ସମସ୍ତ ଭକ୍ତିବାଧକ କାର୍ଯ୍ୟ ନାନା ପ୍ରକାର । ମହାପ୍ରଭୁ ଶ୍ରୀ ଧାମ ପ୍ରୟାଗଠାରେ ଶ୍ରୀ ରୂପ ଗୋସ୍ୱାମୀଙ୍କୁ ଶିକ୍ଷାଦେବା କାଳରେ ତାହାର ମୋଟା ମୋଟି ନାମ ଉଲ୍ଲେଖ କରିଥିଲେ ମାତ୍ର । ଯଥା :—

କିନ୍ତୁ ଯଦି ଲତାର ଅଙ୍ଗେ ଉଠେ ଉପଶାଖା ।
ଭୁକ୍ତି ମୁକ୍ତି ବାଞ୍ଛା ଯତ ଅସଂଖ୍ୟ ତାର ଲେଖା ।
ନିଷିଦ୍ଧାଚାର କୁଟିନାଟି ଜୀବ ହିଂସନ
ଲାଭ ପୂଜା ପ୍ରତିଷ୍ଠାଦି ଯତ ଉପଶାଖାଗଣ ।
ସେକଜଲ ପାଁଞା ଉପଶାଖା ବାଢ଼ିଯାୟ
ସ୍ତବ୍ଧ ହୟା ମୂଲଶାଖା ବାଢ଼ିତେ ନା ପାୟ ।
ପ୍ରଥମେଇ ଉପଶାଖା କରୟେ ଛେଦନ
ତବେ ମୂଲଶାଖା ବାଢ଼ିଯାୟ ବୃନ୍ଦାବନ ।

ଭୋଗବିଳାସ ଭକ୍ତ ପକ୍ଷରେ ବାଞ୍ଛନୀୟ ନୁହେ । ଭକ୍ତ ଶ୍ରୀକୃଷ୍ଣଙ୍କର ଦାସ ଓ ସେବା ତାର କାର୍ଯ୍ୟ । ଭୋଗ ବାସନା ଭକ୍ତିପଥର କଣ୍ଟକ । ମୁକ୍ତିବାସନା ମଧ୍ୟ ବାରଣ କରାହୋଇଅଛି । ଭକ୍ତଙ୍କର ସରଳ ହେବା ଉଚିତ, ବ୍ୟବହାରରେ କୁଟିଳତା ଭକ୍ତଙ୍କର ପକ୍ଷରେ ନିନ୍ଦନୀୟ । ଜୀବରେ ଦୟା ଓ ନାମରେ ରୁଚି ଭକ୍ତର ମୂଳମନ୍ତ୍ର । ଅତଏବ 'ଜୀବହିଂସା ଯେ ଏକବାରେ ବର୍ଜ୍ଜନୀୟ ଏଥିରେ ଆଉ ସନ୍ଦେହ ନାହିଁ ! ପ୍ରତିଷ୍ଠାଶା ଅତିଉଚ୍ଚ ଭକ୍ତର ପତନ ଘଟାଏ ତେଣୁ ଭକ୍ତ ତାହାକୁ କଦାପି ମନରେ ସ୍ଥାନ ଦେବେ ନାହିଁ । ଏହିରୂପ ଭକ୍ତି ବାଧକ ସମସ୍ତ କାର୍ଯ୍ୟରୁ ଭକ୍ତଙ୍କର ବିରତ ହେବା ବିଧେୟ ।

କିନ୍ତୁ ଜୀବର ନାନାରୂପ ପାପମତି ଜାତହୁଏ ଓ ନାନାରୂପ ପାପାଚରଣ କରିଥାଏ । ଜୀବ ନିତ୍ୟ ଯେ କେତେ ପାପ କରୁଅଛି ତାହାର ସୀମାନାହିଁ । ତେବେ ପାପୀ ଲୋକ ଭଗବତ୍ ଶରଣାପନ୍ନ ହୋଇ ଆଉ ପାପ ନକଲେ ଭଗବାନ ପୂର୍ବପାପମାନ କ୍ଷମାକରନ୍ତି । ଜଗାଇ ମାଧାଇ ମହାପାପୀ । ଗୋବ୍ରାହ୍ମଣବଧ ପ୍ରଭୃତି ମହାଗୁରୁ ପାପରେ ସେମାନେ ଅଭିଭୂତ ଥିଲେହେଁ ମହାପ୍ରଭୁ ସେମାନଙ୍କୁ କୃପାପୂର୍ବକ କହିଥିଲେ ,—

କୋଟି କୋଟି ଜନ୍ମେ ଯେ ତ ଅଛେ ପାପତୋର
ଆର ଯଦି ନା କରସ ସବଦାୟ୍ମ ମୋର ।
ତୋ ଦୁହାଁର ମୁଖେ ମୁଇଁ କରବ ଅହାର
ତୋର ଦେହେ ହଇବେକ ମୋର ଅବତାର

( ଚୈଃଭାଃ ମଧ୍ୟ ୧୩ )

ତୋର ଦେହେ ହଇବେକ ମୋର ଅବତାର । ଯଦି ପାପୀଲୋକ ନିଜକୃତ ପାପ ବୁଝିପାରି ପରିତାପ କରେ ଓ ଭବିଷ୍ୟତ୍‌ରେ ଆଉ ପାପ ନ କରିବାକୁ ଦୃଢ଼ପ୍ରତିଜ୍ଞ ହୁଏ ଏବଂ ଭଗବାନଙ୍କର ଶରଣାପନ୍ନ ହୁଏ ମହାପାପୀକୁ ଭଗବାନ ତାକୁ ଉଦ୍ଧାର କରନ୍ତି । ଏକ ଦ୍ୱିଜଚରିତ୍ର ଏଥିର ଉଦାହରଣ ।

ମହାପ୍ରଭୁଙ୍କ ଆଦେଶରେ ଶ୍ରୀମାନ୍ ନିତ୍ୟାନନ୍ଦ ଦାରପରିଗ୍ରହପୂର୍ବକ ସଂସାର ଧର୍ମ ଆଚରଣ କରିଥିଲେ । ସେହି ସମୟରେ ସେ ମଣିମୁକ୍ତାଖଚିତ ନାନାସ୍ୱର୍ଣ୍ଣାଲଙ୍କାର ଅଙ୍ଗରେ ପିନ୍ଧିଥିଲେ । ଦସ୍ୟୁଦଳପତି ଏକ ବ୍ରାହ୍ମଣାଧମ ନିତ୍ୟାନନ୍ଦ ପ୍ରଭୁଙ୍କର ଶ୍ରୀଅଙ୍ଗରେ ଅଳଙ୍କାରମାନ ଦେଖି ଲୋଭପରବଶ ହୋଇ ତାହା ଅପହରଣ କରିବାକୁ ଅଭିଳାଷ କଲା । ଏବଂ ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ନବଦ୍ୱୀପରେ ହିରଣ୍ୟ ପଣ୍ଡିତଙ୍କ ଗୃହରେ ବାସ କରୁଥିବା କାଳରେ ଦସ୍ୟୁଦଳପତି ତାଙ୍କ ସହଚରମାନଙ୍କ ସଙ୍ଗେ ପରାମର୍ଶ କଲେ, ଏହି ଏକ ପରମସୁଯୋଗ ମା ଚଣ୍ଡୀ ଘଟାଇ ଅଛନ୍ତି । ଏକା ଏହି ନିତ୍ୟାନନ୍ଦଙ୍କ, ସଙ୍ଗେ ତାଙ୍କ ସେବକ ଏ ସମସ୍ତ ମହାମୂଲ୍ୟ ଅଳଙ୍କାରମାନ

ଅପହରଣ କରିପାରିଲେ ଚିରଜୀବନ ଆମ୍ଭେମାନେ ସୁଖରେ କଟାଇବା, ଅନ୍ତ ଚୋରି ବା ଡ଼କାଏତି କରିବାକୁ ଆବଶ୍ୟକ ହେବ ନାହିଁ । ଏହି ପରାମର୍ଶ କରି ଶ୍ରୀମନ୍ ନିତ୍ୟାନନ୍ଦଙ୍କ ଶ୍ରୀଅଙ୍ଗରୁ ଅଳଙ୍କାରାପହରଣ ଚେଷ୍ଟାରେ ରହିଲେ ଜଣକୁ ପଠାଇଲେ ସେ ଯାଇ ଦେଖି ଆସିଲେ ଶ୍ରୀପାଦ ନିତ୍ୟାନନ୍ଦ ଭୋଜନ ଲୀଳାରେ ମଗ୍ନ ଅଛନ୍ତି । ଦସ୍ୟୁଗଣ ଭାବିଲେ, ଏ ଉତ୍ତମ ଅବସର, ଏମାନେ ଭୋଜନାନ୍ତେ ଶୟନ କଲେ ଆମ୍ଭେମାନେ ଯାଇ ଦ୍ରବ୍ୟାପହରଣ କରିବା । ଏହି ରୂପେ ଆନନ୍ଦରେ ବିହ୍ୱଳ ହୋଇ ଦସ୍ୟୁଗଣଙ୍କ ମଧ୍ୟରେ କିଏ କହିଲା ! ମୁଁ କଣ୍ଠିର କୁଣ୍ଡଳ ନେବି, କିଏ କହିଲା ମୁଁ ହାର ନେବି, କିଏ କହିଲା ମୁଁ ନୂପୁର ନେବି ଇତ୍ୟାଦି । ଏହି ପରି କଳ୍ପନା କରୁ କରୁ ନିତ୍ୟାନନ୍ଦଙ୍କ ମାୟାରୁ ସମସ୍ତେ ନିଦ୍ରାଶକ୍ତ ହୋଇ ଶୋଇ ପଡ଼ିଲେ, ଉଠି ଦେଖନ୍ତି; ନିଶି ପ୍ରଭାତ ହୋଇଅଛି । ଦିବା ଆଗମନ ଦେଖି ଅସ୍ତ୍ର ଶସ୍ତ୍ର ଲୁଚାଇଦେଇ ଦସ୍ୟୁଗଣ ପଳାଇଗଲେ ଏବଂ ପଳାଇବା ସମୟରେ ପରସ୍ପର ପରସ୍ପରକୁ ଦୋଷ ଦେବାକୁ ଲାଗିଲେ । ଜଣେ ଅପରକୁ କହିଲା, ତୁ ତ ଆଗେ ଶୋଇଥିଲୁ ସେ ଉତ୍ତର କଲା, ତୁ ତ ଖୁବ ଜାଗ୍ରତ ଥିଲୁ । ଦସ୍ୟୁଦଳପତି ସେମାନଙ୍କୁ ପ୍ରବୋଧ ଦେଇ କହିଲେ, ତୁମ୍ଭେମାନେ ବିବାଦ କର ନାହିଁ, ଦିନେ ଉଦ୍ୟମ ବିଫଳ ହେଲା ବୋଲି କି ସବୁଦିନ ବିଫଳ ହେବ । ମା ଚଣ୍ଡୀ ଅବଶ୍ୟ କୃପା କରିବେ । ଆମ୍ଭେମାନେ ତାଙ୍କୁ ପୂଜା ନ କରି ଯାଇଥିଲେ କୃତକାର୍ଯ୍ୟ ହୋଇନୁ କିପରି ? ଆଜି ଅତି ଭଲରୂପେ ମଦ ଓ ମାଂସ ଦେଇ ଚଣ୍ଡୀଙ୍କ ଅର୍ଚ୍ଚନା କରିବା । ଏହିରୂପ ପରାମର୍ଶ କରି ସେ ଦିନ ମଦ ମାଂସରେ ଉତ୍ତମ ରୂପେ ଚଣ୍ଡୀଙ୍କର ଅର୍ଚ୍ଚନା ପୂର୍ବକ ରାତିରେ ଅସ୍ତ୍ର ଶସ୍ତ୍ର ଘେନି ଡକାଏତି କରିବାକୁ ବାହାରିଲେ । ସେ ଦିନ ଯାଇ ଦେଖନ୍ତି, ନିତ୍ୟାନନ୍ଦଙ୍କ ବାସଗୃହ ପାଦୁକଗଣ କର୍ତ୍ତୃକ ବେଷ୍ଟିତ । ସେମାନେ ଅସ୍ତ୍ରଧାରଣ ପୂର୍ବକ ସୁସଜ୍ଜିତ ହୋଇ ଗୃହରକ୍ଷା କରୁଅଛନ୍ତି ଏବଂ ହରିନାମ ଉଚ୍ଚାରଣ କରୁଅଛନ୍ତି । ସେ ପାଦୁକଗଣଙ୍କର ତେଜ ଦେଖି ଦସ୍ୟୁଗଣ ଚମତ୍କୃତ ହେଲେ । ଏବଂ ନାନା ରୂପ ବିତର୍କ କରିବାକୁ ଲାଗିଲେ । ଦସ୍ୟୁଦଳପତି କହିଲେ, ଏ ନିତ୍ୟାନନ୍ଦ ବଡ଼ ପ୍ରଭାବ ଶାଳୀ । ଅନେକ ବଡ଼ ବଡ଼ ଲୋକମାନେ ଏହାଙ୍କ ଦର୍ଶନକୁ

ଅଛନ୍ତି । ଆଜ ବୋଧହୁଏ କେହି ବଜାର ଉତ୍କର୍ମଗୃହୀ ଏ ପାଯୁକଗଣ ସଙ୍ଗେ ଏହାଙ୍କ ଦର୍ଶନକୁ ଆସି ଅଛନ୍ତି ଓ ପାଯୁକମାନେ ପହରା ଦେଉଅଛନ୍ତି ଅତଏବ ଆଜ ଚାଲ ଆମ୍ଭେମାନେ ଫେରିଯିବା । ଦିନ ୧୦-୧୫ ଦିନ ଛାଡିଦେଇ ପୁଣି ଆସିବା । ଏହି ଯୁକ୍ତି ସ୍ଥିର କରି ଦସ୍ୟୁଗଣ ସେ ଦିନ ଫେରିଗଲେ ଓ କିଛିଦିନ ପରେ ପୁନର୍ବାର ଡକାଏତି କରିବାକୁ ଆସିଲେ । ସେମାନେ ଆସି ନିତ୍ୟାନନ୍ଦ ପ୍ରଭୁଙ୍କ ରହିଥିବା ପୁରରେ ପ୍ରବେଶ କଲାପରେ ହଠାତ୍ ଘୋର ବୃଷ୍ଟି ଓ ଝଡ ଆରମ୍ଭ ହେଲା । ଦସ୍ୟୁଗଣ ସମସ୍ତେ ଅନ୍ଧ ହୋଇଗଲେ କାହାରିକୁ କିଛି ଦିଶିଲା ନାହିଁ । ଝଡ଼ି ଓ ବୃଷ୍ଟିରେ ପଥ ଭ୍ରମ ହୋଇ କିଏ କଣ୍ଟାରେ ପଡିଲା, କିଏ ଗର୍ତ୍ତ ମଧ୍ୟରେ ପଡ଼ିଲା । କାହାର ହାତ ଗୋଡ଼ ଭାଙ୍ଗିଗଲା । ( କୀଟ ) ଦଂଶନରେ ଦସ୍ୟୁଗଣ ମହାଯାତନା ଭୋଗ କରିବାକୁ ଲାଗିଲେ । ଏହିରୂପ ହଠାତ୍ ବ୍ୟାଘାତ ଯୋଗ ଉପସ୍ଥିତ ହୁଅନ୍ତେ ଦସ୍ୟୁଦଳପତି ଭାବିଲେ, ଏ କି ପ୍ରକାର, ପ୍ରଥମ ଦିନ ଆମ୍ଭେମାନେ ସମସ୍ତେ ଶୋଇପଡ଼ିଲୁଁ ଦ୍ୱିତୀୟ ଦିନ ତେଜସ୍ୱୀ ପଦାତିକଗଣଙ୍କୁ ଗୃହରକ୍ଷା କରିବାର ଦେଖିଲୁଁ । ଆଜି ଆମ୍ଭମାନଙ୍କର ଏ ଦୁର୍ଦ୍ଦଶା । ଅତଏବ ଏ ନିତ୍ୟାନନ୍ଦ ମନୁଷ୍ୟ ନୁହନ୍ତି । ଆମ୍ଭେମାନେ ତାଙ୍କୁ ଚିହ୍ନି ନ ପାରି ତାଙ୍କ ଦ୍ରବ୍ୟ ଅପହରଣ କରିବାକୁ ଆସିଅଛୁଁ । ଅତଏବ ଆମ୍ଭମାନଙ୍କର ଏ ମହାଦୁର୍ଗତି ଘଟି ଅଛି । ଏହିରୂପ ଭାବି ମନେ ମନେ ଶ୍ରୀନିତ୍ୟାନନ୍ଦଙ୍କ ଶରଣାପନ୍ନ ହୋଇ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ । ସମସ୍ତ ଦସ୍ୟୁଙ୍କର ଏକ କାଳରେ ଯେହପରି ସୁମତି ଆସି ପହଞ୍ଚିଲା ଓ ସମସ୍ତେ ପରିତାପ କରିବାକୁ ଲାଗିଲେ । ପ୍ରଭୁ ଶ୍ରୀନିତ୍ୟାନନ୍ଦଙ୍କ ଇଚ୍ଛା ମାତ୍ର ସେମାନଙ୍କର ଚକ୍ଷୁରେ ଦୃଷ୍ଟିଶକ୍ତି ପ୍ରବେଶ କଲା । ଝଡ଼ ଓ ବୃଷ୍ଟି ବନ୍ଦ ହୋଇଗଲା । ସେମାନେ ଗୃହକୁ ଫେରି ଯାଇ ଗଙ୍ଗାରେ ସ୍ନାନ କଲେ ଓ ପର ଦିବସ ପ୍ରାତଃକାଳରେ ଆସି ପ୍ରଭୁ ଶ୍ରୀନିତ୍ୟାନନ୍ଦଙ୍କର ଶ୍ରୀଚରଣରେ ଶରଣ ପଶିଲେ । ଦୟାସାଗର ପ୍ରଭୁ ଶ୍ରୀନିତ୍ୟାନନ୍ଦ ସେମାନଙ୍କୁ କରୁଣା କରି କହିଲେ ।—

ଶୁନ ଦ୍ୱିଜ ଯେତେକ ପାତକ କୈଲା ତୁଇ
ଆର ଯଦି ନା କରିସ୍ ସବ ନିଲୁ ମୁଇଁ ।

ପରହିଂସା ଡ଼ାକା ଚୁରି ସବ ଅନାଚାର
ଛାଡ଼ ଗିୟା ଇହା ତୁମି ନା କରିହ ଆର
ଧର୍ମପଥେ ଗିୟା ତୁମି ଲଓ ହରିନାମ
ତବେ ତୁମି ଅନ୍ୟେର କରିବା ପରିତ୍ରାଣ !
ଯତ ସବ ଦସ୍ୟୁ ଚୋର ଡ଼ାକାୟ୍ତା ଅଛୟ୍ତା
ଧର୍ମପଥେ ସବାରେ ଲଓୟାଓ ତୁମି ଗିୟା ।
ଏତବୋଲି ଆପନ ଗଲାର ମାଲା ଆନି
ତୁଷ୍ଟ ହଇ ବ୍ରାହ୍ମଣେରେ ଦିଲେନ ଆପନି ।
( ଚୈ: ଭାଃ ଅନ୍ତ୍ୟ ୫ମପର )

ଅହୋ ! କି ଅଦ୍ଭୁତ କରୁଣା । ଦସ୍ୟୁ ଦଳପତି ଆଜ ବ୍ରହ୍ମାର ଦୁର୍ଲ୍ଲଭ ଉପହାର ଶ୍ରୀହସ୍ତରୁ ପ୍ରାପ୍ତ ହେଲେ, ପ୍ରଭୁ ଶ୍ରୀନିତ୍ୟାନନ୍ଦ ଦସ୍ୟୁ ଦଳପତିଙ୍କୁ ଉଦ୍ଧାର କରି ତାହାଦ୍ୱାରା ସମସ୍ତ ଦସ୍ୟୁ ଉଦ୍ଧାରର ପନ୍ଥାସ୍ଥିର କଲେ । ଦସ୍ୟୁ ମାନଙ୍କର ଦୁର୍ଦ୍ଦଶା ଦେଖି ପ୍ରଭୁଙ୍କର ହୃଦୟ ଦ୍ରବୀଭୂତ ହୋଇଗଲା । ସେ ସମସ୍ତଦସ୍ୟୁଙ୍କର ଉଦ୍ଧାରର ବାଟ ଫିଟାଇ ଦେଲେ । ହାୟ ! ଅଦୋଷ ଦର୍ଶୀ ନିତ୍ୟାନନ୍ଦ, ଏ ଅଧମ କି ଭବଦୀୟ ସେ ଅଦ୍ଭୁତ କରୁଣାରୁ କଣାଏ ମାତ୍ର ପାଇବ ନାହିଁ ।



ଚତୁର୍ବିଂଶ ପରିଚ୍ଛେଦ ।

ଶ୍ରୀମଦ୍ ଭାଗବତ ।

ଶ୍ରୀମଦ୍‌ଭାଗବତର ମହିମା ଅବର୍ଣ୍ଣନୀୟ । ଶ୍ରୀମନ୍ ବ୍ୟାସଦେବ ମହା-ଭାରତ ଓ ନାନା ପୁରାଣାଦି ରଚନା କରି ତାଙ୍କର ମନ ପ୍ରସନ୍ନ ହୋଇ ନାହିଁ, ସେ ସେଥିରେ ବିମ୍ମିତ ହୋଇ ମହାମୁନି ନାରଦଙ୍କୁ ତାହାର କାରଣ ପଚ୍ଚ-ରନ୍ତେ, ନାରଦ କହିଲେ ତୁମ୍ଭେ ନାନା ଶାସ୍ତ୍ର ପ୍ରଣୟନ କରିଥିଲେହେଁ । ଶ୍ରୀକୃଷ୍ଣଙ୍କ ଯଶୋରାଶି ସୁବିସ୍ତୀର୍ଣ୍ଣ ଭାବରେ କାହିଁରେ ବର୍ଣ୍ଣନ କରି ନାହିଁ, ତେଣୁ ତୁମ୍ଭ ମନରେ ପ୍ରସନ୍ନତା ଆସୁନାହିଁ, ଏହାକହି ଶ୍ରୀମଦ୍‌ଭାଗବତ ରଚନା କରିବାକୁ ତାଙ୍କୁ ଉପଦେଶ ଦେଲେ । ଶ୍ରୀଲ କବିରାଜ ଗୋସ୍ୱାମୀ ଭାଗବତ ଶାସ୍ତ୍ରର ମହିମା ସ୍ଥାନେ୨ ବର୍ଣ୍ଣନ କରି ଅଛନ୍ତି । ତାଙ୍କର କେତେକ ଉକ୍ତି ଆଲୋଚନା କରାଯାଉ, ସେ ଏକ ସ୍ଥାନରେ କହି ଅଛନ୍ତି—

ଏକ ଭାଗବତ ବଡ ଭାଗବତ ଶାସ୍ତ୍ର
ଆର ଭାଗବତ ଭକ୍ତ, ଭକ୍ତିରସପାତ୍ର,

( ଚୈଃ ଚଃ ଆଦି )

ଶ୍ରୀମଦ୍ ଭାଗବତ ଓ ଶ୍ରୀକୃଷ୍ଣ ଏଥିରେ ଭିନ୍ନ ନାହିଁ । ଶ୍ରୀଲସନାତନ ଗୋସ୍ୱାମୀଙ୍କୁ ମହାପ୍ରଭୁ ନିଜେ ଭାଗବତ ଶାସ୍ତ୍ରର ମର୍ମପକଳ ' ଶ୍ରୀକାଶୀଧାମରେ ଶିକ୍ଷା ଦେଇଥିଲେ, ତହିଁ ସମ୍ବନ୍ଧେ ଶ୍ରୀଲକବିରାଜ ଗୋସ୍ୱାମୀ କହି ଅଛନ୍ତି ।—

ଶ୍ରୀଭାଗବତ ତତ୍ତ୍ୱରସ କରିଲ ପ୍ରଚାର
କୃଷ୍ଣ ତୁଲ୍ୟ ଭାଗବତ ଜାନାଇଲ ସଂସାର,

( ଚୈଃ ଚଃ ମଧ୍ୟ ୨୫ ପରି )

ଅଥାତ୍—ମହାପ୍ରଭୁ ସନାତନଙ୍କୁ ଶିକ୍ଷାଦେଇ ସଂସାରକୁ ଏହା ଜଣାଇଲେ ଯେ ଶ୍ରୀକୃଷ୍ଣ ଓ ଶ୍ରୀମଦ୍‌ଭାଗବତ ଏକ, ସେଥିରେ ଭିନ୍ନ ନାହିଁ,

ଶ୍ରୀଲବୃନ୍ଦାବନଦାସ ମଧ୍ୟ ଶ୍ରୀମଦ୍‌ଭାଗବତ ସମ୍ବନ୍ଧରେ ସେହିକଥା କହିଅଛନ୍ତି—ଯଥା—

ମୁଞି ମୋର ଦାସ ଆର ଗ୍ରନ୍ଥ ଭାଗବତେ,
ଯାର ଭେଦ ଅଛେ ତାର ନାଶ ଭାଲ ମତେ ।

( ଚୈ: ଭା: ମଧ ୨୧ ଅ )

ସେ ଅନ୍ତୁର ଏକ ସ୍ଥାନରେ କହି ଅଛନ୍ତି
ପ୍ରେମମୟ ଭାଗବତ ଶ୍ରୀକୃଷ୍ଣେର ଅଙ୍ଗ
ତାହାତେ କହେନ ଯତ ଗୋପ୍ୟ କୃଷ୍ଣରଙ୍ଗ,

( ଚୈ: ଭା: ଅନ୍ତ୍ୟ ୩ୟ )

ଭାଗବତ ଯେ ବେଦର ସାର, ଯେବେ ମହାପ୍ରଭୁ ନଗର ଭ୍ରମଣ କରୁ କରୁ ଦେଖିଲେ ଏକସ୍ଥାନରେ ଦେବାନନ୍ଦ ପଣ୍ଡିତ ଶ୍ରୀମଦ୍‌ଭାଗବତ ବ୍ୟାଖ୍ୟା କରି ଛାତ୍ରମାନଙ୍କୁ ପଢ଼ାଉ ଅଛନ୍ତି । ଭକ୍ତି ଅଭାବରୁ ସେତେବେଳେ ଦେବାନନ୍ଦ ଠାକୁର ଭାଗବତର ପ୍ରକୃତ ତାତ୍ପର୍ଯ୍ୟ ହୃଦୟଙ୍ଗମ କରି ପାରି ନ ଥିଲେ ! ମହାପ୍ରଭୁ ତାଙ୍କର ବ୍ୟାଖ୍ୟା ଶୁଣି କୋପ ପ୍ରକାଶ ପୂର୍ବକ କହିଥିଲେ ଏହାଙ୍କର ଭାଗବତ ବ୍ୟାଖ୍ୟା କରିବାର କି ଅଧିକାର ଅଛି ! ଏ ମହା ବିଦ୍ୱାନ ହେଲେହେଁ କୃଷ୍ଣଭକ୍ତି ଅଭାବରୁ ଭାଗବତ ମର୍ମରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଭାଗବତ ଯେ ଶ୍ରୀକୃଷ୍ଣଙ୍କ ସ୍ୱରୂପ, ଭାଗବତର ସମସ୍ତ ଅର୍ଥଭକ୍ତି । ଭକ୍ତିଛଡା ଭାଗବତ କିଛି ନୁହେଁ ! ଶ୍ରୁତିବେଦ ଦଧି ଓ ଶୁକଦେବ ଗୋସ୍ୱାମୀ ସେ ଦଧି ମନ୍ଥନ ପୂର୍ବକ ଭାଗବତରୂପ ଲବଣୀ ସେଥିରୁ ବାହାର କରିଅଛନ୍ତି ଓ ମହାରାଜା ପରୀକ୍ଷିତ ତାହାର ଆସ୍ୱାଦକ । ଯଥା—

ଏ ବେଟାର ଭାଗବତେ କୋନ ଅଧିକାର
ଗ୍ରନ୍ଥରୂପେ ଭାଗବତ କୃଷ୍ଣ ଅବତାର
ସବ ପୁରୁଷାର୍ଥ ଭକ୍ତି ଭାଗବତେ ହୟ,
ପ୍ରେମରୂପ ଭାଗବତ ଶ୍ରୁତି ବେଦେ କୟ,

ଗୃହ ବେଦ ଦଧି, ଭାଗବତ ନବନୀତ
ମଥିଲେନ ଶୁକେ, ଖାଇଲେନ ପରୀକ୍ଷିତ,
( ଚୈଃ ଭାଃ ମଧ୍ୟ ୨୧ ପର )

ବାଲ୍ୟ କାଳରେ ନିଜ ନାମ କରଣ ସମୟରେ ମହାପ୍ରଭୁ ଜଗତକୁ ଶ୍ରୀମଦ୍‌ଭାଗବତର ମାହାତ୍ମ୍ୟ ଛଳରେ ଉପଦେଶ ଦେଇଥିଲେ । ଦେଶୀୟପ୍ରଥା ଅନୁସାରେ ମହାପ୍ରଭୁଙ୍କ ନାମ କରଣ ସମୟରେ ଧାନ୍ୟ, ପୋଥି. ଖଇ, କଉଡ଼ି, ସ୍ୱର୍ଣ୍ଣ, ରୌପ୍ୟ ପ୍ରଭୃତି ନାନା ଦ୍ରବ୍ୟ ତାହାଙ୍କ ସମ୍ମୁଖରେ ରକ୍ଷିତହେଲା । ମହାପ୍ରଭୁଙ୍କ ଜନକ ଶ୍ରୀଜଗନ୍ନାଥ ମିଶ୍ର ଶିଶୁ ନିମାଇଙ୍କୁ ସମ୍ବୋଧନ ପୂର୍ବକ କହିଲେ, "ଏ ଦ୍ରବ୍ୟ ସମୂହ ମଧ୍ୟରୁ ତୋର କେଉଁଦ୍ରବ୍ୟରେ ଅଭିରୁଚି ତାହା ହସ୍ତରେ ଧାରଣ କର ।" ନିମାଇ ସେ ସକଳ ଦ୍ରବ୍ୟ ମଧ୍ୟରୁ କୌଣସି ରୌପ୍ୟାଦି ଗ୍ରହଣ ନ କରି ବସୁମାନ ନ ଧରି ଶ୍ରୀମଦ୍ ଭାଗବତ ଗ୍ରନ୍ଥକୁ ଆଲିଙ୍ଗନ କଲେ, ଯଥା ।

ସକଳ ଛାଡ଼ିୟା ପ୍ରଭୁ ଶ୍ରୀଶଚୀନନ୍ଦନ
ଭାଗବତ ଧରିୟା ଦିଲେନ ଆଲିଙ୍ଗନ,
( ଚୈଃ ଭାଃ ଆଦି ୪ ର୍ଥ )

ଶ୍ରୀଲବୃନ୍ଦାବନଦାସ ଭାଗବତଶାସ୍ତ୍ରର ମହିମା ବର୍ଣ୍ଣନ କରି କହି ଅଛନ୍ତି ଯେ, ଯାହାର ଘରେ ଶ୍ରୀମଦ୍‌ଭାଗବତ ବିରାଜମାନ ସେଠାକୁ ଅମଙ୍ଗଳ ଯାଇ ନ ପାରେ, ଶ୍ରୀମଦ୍‌ଭାଗବତଙ୍କ ପୂଜାକଲେ ଶ୍ରୀକୃଷ୍ଣଙ୍କର ପୂଜା କରାଯାଏ । ଯଥା –

ଭାଗବତ ପୁସ୍ତକ ଥାକୟେ ଯା'ର ଘରେ
କୋନ୍ ଅମଙ୍ଗଳ ନାହିଁ ଯାୟ ତଥା କାରେ,
ଭାଗବତ ପୂଜିଲେ କୃଷ୍ଣେର ପୂଜା ହୟ
ଭାଗବତ ପଠନ ଶ୍ରବଣ ଭକ୍ତିମୟ,
( ଚୈଃ ଭାଃ ଅନ୍ତ୍ୟ ୩ ଅ )

ଶ୍ରୀମଦ୍‌ଭାଗବତ ଭକ୍ତିଗ୍ରନ୍ଥ । ତାହାଙ୍କର ପ୍ରତି ଅକ୍ଷର ପ୍ରେମରସ ପୂର୍ଣ୍ଣ । ରସିକ ଭକ୍ତହିଁ ସେ ରସ ଆସ୍ୱାଦନରେ ସମର୍ଥ । ଜ୍ଞାନ ଦ୍ୱାରା ଭାଗବତର

ତାତ୍ପର୍ଯ୍ୟ ଜଣାଯାଏ ନାହିଁ । କଥିତ ଅଛି, ଶ୍ରୀକୃଷ୍ଣ ସ୍ୱୟଂ କହି ଅଛନ୍ତି ଯେ, "ଶ୍ରୀଭାଗବତର ପ୍ରକୃତ ଅର୍ଥ ମୁଁ ଜାଣେ, ଶୁକଦେବ ଗୋସ୍ୱାମୀ ଜାଣନ୍ତି, ବ୍ୟାସଦେବ ଭାଗବତ ପ୍ରଣେତା ହୋଇ ମଧ ଜାଣନ୍ତି ବା ନ ଜାଣନ୍ତି, କେବଳ ଶ୍ରୀନୃସିଂହଙ୍କ ପ୍ରସାଦରୁ ଟିକାକାର ଶ୍ରୀଧର ତାହା ଉତ୍ତମରୂପେ ବୁଝି ଅଛନ୍ତି " ଅତଏବ ଭାଗବତର ପ୍ରକୃତ ତାତ୍ପର୍ଯ୍ୟ ଗ୍ରହଣକରିବା ଯେ କେତେ ଦୂର ସୁକଠିନ ଏଥିରୁ ବୁଝା ଯାଉଅଛି । ଶ୍ରୀମନ୍ ମହାପ୍ରଭୁ ଏହିସମ୍ବନ୍ଧରେ ସ୍ଥାନେ୨ କଣ କହି ଅଛନ୍ତି ଆଲୋଚନା କରାଯାଉ,

ମହାପ୍ରଭୁ ଶ୍ରୀପୁରୁଷୋତ୍ତମରେ ବାସ କରୁଥିବା କାଳରେ ସତତ ପ୍ରେମୋନ୍ମତ୍ତ । କୌଣସି ଶାସ୍ତ୍ର ଶ୍ରବଣ କରିବେ ଏପରି ସମୟ ତାଙ୍କର ନ ଥାଏ । ସେଥିପାଇଁ ସେ ଏହି ନିୟମ କରିଥାଅନ୍ତି ଯେ, ଯଦି କୌଣସି ଶାସ୍ତ୍ର କେହି ମହାପ୍ରଭୁଙ୍କୁ ଶୁଣାଇବାକୁ ଇଚ୍ଛା କରିବ, ତାହା ସେ ଅଗ୍ରେ ସ୍ୱରୂପ ଗୋସାଇଁଙ୍କୁ ଶୁଣାଇବ ।

ଯଦି ସ୍ୱରୂପ ଦେଖନ୍ତି ଯେ ଗ୍ରନ୍ଥ ରସାଭାସ ଦୋଷରେ ଦୋଷିତ ନୁହେ, ମହାପ୍ରଭୁଙ୍କର ଶୁଣିବାର ଉପଯୁକ୍ତ ତେବେ ତାଙ୍କ ଅନୁମୋଦନକ୍ରମେ ସେ ଗ୍ରନ୍ଥ ମହାପ୍ରଭୁଙ୍କଠାରେ ପଠିତ ହେବ । ଅର୍ଥାତ୍ ଯେ ସେ ଶାସ୍ତ୍ର ଶୁଣି ବୃଥା ସମୟ ନଷ୍ଟ କରିବା ମହାପ୍ରଭୁଙ୍କର ଅଭିପ୍ରାୟ ନ ଥିଲା । ରସାତ୍ମକ କାବ୍ୟ ହେଲେ ମହାପ୍ରଭୁ ତା ଅଗ୍ରହ ସହ ଶ୍ରବଣ କରୁଥିଲେ । ଯେମନ୍ତି ଶ୍ରୀରୂପଙ୍କର ବିଦଗ୍ଧ ମାଧବ ଓ ଲଳିତ ମାଧବ ନାଟକ ।

ଏକ ସମୟରେ ଏକ ବଙ୍ଗଦେଶୀୟ କବି ମହାପ୍ରଭୁଙ୍କ ଚରିତ ସମ୍ବଳିତ ଖଣ୍ଡିଏ ନାଟକରଚନା କରି ଶ୍ରୀପୁରୁଷୋତ୍ତମକୁ ଆସିଲେ । ଭକ୍ତବର ଶ୍ରୀଭଗବାନ୍ ଆଚାର୍ଯ୍ୟଙ୍କ ସହି ତାଙ୍କର ପରିଚୟ ଥିଲା । ସେ କବି ପ୍ରଥମେ ଶ୍ରୀଭଗବାନ ଆଚାର୍ଯ୍ୟଙ୍କ ଘରେ ରହି ତାଙ୍କୁ ନିଜ କୃତ ନାଟକ ଶୁଣାଇଲେ । ଶ୍ରୀଭଗବାନ ଆଚାର୍ଯ୍ୟ ଓ ଅନ୍ୟ କେତେକ ବୈଷ୍ଣବ ସେ ନାଟକ ଶ୍ରବଣ କରି ତାହାର ଭୂୟସୀ ପ୍ରଶଂସା କଲେ, ଏବଂ ମହାପ୍ରଭୁଙ୍କୁ ତାହା ଶୁଣାଇବାକୁ ସମସ୍ତଙ୍କର ଇଚ୍ଛା ହେଲା । ଶ୍ରୀଭଗବାନ ଆଚାର୍ଯ୍ୟ ତହୁଁ ସ୍ୱରୂପ ଗୋସାଇଁଙ୍କୁ ନାଟକ ଶୁଣିବାକୁ ଅନୁରୋଧ କଲେ । ସ୍ୱରୂପ ଗୋସାଇଁ ମହା-

ପଣ୍ଡିତ ଓ ରସ ଶାସ୍ତ୍ର ବେତ୍ତା । ଟୀସ୍ବଶ୍ଳୋଦ୍ଧାରେ ଅତି ନିପୁଣ । ସେ କବିଙ୍କର ନାମ ଓ ବ୍ୟବହାରକୁ ବୁଝିପାରିଲେ, ସେ ଭକ୍ତିଗ୍ରନ୍ଥ ରଚନାର ଉପଯୁକ୍ତ ପାତ୍ର ନୁହନ୍ତି । ତେଣୁ ସେ ଉଦାର ସ୍ବଭାବ ଭଗବାନ ଅଗ୍ରଜଙ୍କୁ ସରଳ ଭାବରେ କହିଲେ " ଆଚାର୍ଯ୍ୟ " ତୁମ୍ଭେ ଗୋପଜାତ ଓ ପରମ ଉଦାର; ଯେ ସେ ଶାସ୍ତ୍ର ଶୁଣିବାରେ ତୁମ୍ଭର ଇଚ୍ଛା ହୁଏ, କିନ୍ତୁ ରସାଭାସ କିମ୍ବା ସିଦ୍ଧାନ୍ତ ବିରୁଦ୍ଧ ଗ୍ରନ୍ଥ ଶ୍ରବଣର ଯୋଗ୍ୟ ନୁହେ । ତାହା ଶୁଣିବାକୁ ମନରେ କଷ୍ଟ ହୁଏ । ଯେଉଁ ଲୋକର ରସ ଓ ରସାଭାସ ଜ୍ଞାନ ନାହିଁ, ସେ ଭକ୍ତି ସିଦ୍ଧାନ୍ତ ସିନ୍ଧୁର ଗମ୍ଭୀରତା କି ବୁଝିବ । ରସାତ୍ମକ କାବ୍ୟ ଦେଖିବାକୁ ନହିଲେ ଉତ୍ତମରୂପେ ବ୍ୟାକରଣ ଓ ଅଳଙ୍କାର ଶାସ୍ତ୍ରରେ ଜ୍ଞାନ ଥିବା ଆବଶ୍ୟକ । ବିନା ଅଳଙ୍କାର ଜ୍ଞାନରେ କି କେହି ମଧୁର ଶ୍ରୀକୃଷ୍ଣଲୀଳା ବର୍ଣ୍ଣନ କରି ପାରେ । ଶ୍ରୀକୃଷ୍ଣ ଚୈତନ୍ୟ ଲୀଳାତ ଅଧିକତର ଦୁର୍ଗମ । ଯେ ଶ୍ରୀଗୌର ପାଦପଦ୍ମରେ ଏକାନ୍ତ ଆଶ୍ରିତ ସେହି କେବଳ ଶ୍ରୀକୃଷ୍ଣଲୀଳା ଓ ଶ୍ରୀଗୌର ଲୀଳା ବର୍ଣ୍ଣନ କରିବାରେ ସକ୍ଷମ । ଅନ୍ୟ କବିର କବିତ୍ୱ ଶୁଣିବାକୁ କଷ୍ଟ ବୋଧ ହୁଏ ।

ଯଥା ;—

ସ୍ୱରୂପ କହେ ତୁମି ଗୋପ ପରମ ଉଦାର,
ଯେ ସେ ଶାସ୍ତ୍ର ଶୁନିତେ ଇଚ୍ଛା ଉପଜେ ତୋମାର ।

ଯଦ୍ଵା ତଦ୍ଵା କବିର ବାକ୍ୟେ ହୟ ରସାଭାସ,
ସିଦ୍ଧାନ୍ତ ବିରୁଦ୍ଧ ଶୁନିତେ ନା ହୟ ଉଲ୍ଲାସ ।

ରସ ରସାଭାସ ଯାର ନାହିଁକ ବିଚାର,
ଭକ୍ତି ସିଦ୍ଧାନ୍ତ ସିନ୍ଧୁ ନାହି ପାୟ ପାର ।

ବ୍ୟାକରଣ ନା ଜାନେ, ନା ଜାନେ ଅଳଙ୍କାର,
ନାଟକାଲଙ୍କାରେ ଜ୍ଞାନ ନାହିକ ଯାହାର ।

କୃଷ୍ଣଲୀଳା ବର୍ଣ୍ଣିତେ ନା ଜାନେ ସେଇ ଛାର,
ବିଶେଷ ଦୁର୍ଗମ ଏଇ ଚୈତନ୍ୟ ବିହାର ।

କୃଷ୍ଣଲୀଳା ଗୌରଲୀଳା ସେ କରେ ବର୍ଣ୍ଣନ,
ଗୌର ପାଦପଦ୍ମ ଯାର ହୃଦୟ ପ୍ରାଣଧନ ।
ଗ୍ରାମ୍ୟ କବିର କବିତ୍ୱ ଶୁଣିତେ ହୃଦୟ ଦୁଃଖ,
ବିଦଗ୍ଧ ଆତ୍ମୀୟ କାବ୍ୟ ଶୁଣି ହେଇ ସୁଖ ।
ରୂପଯୈଛେ ଦୁଇ କାବ୍ୟ କରି ଅଛେ ଅରମ୍ଭ,
ଶୁଣିତେ ଆନନ୍ଦବାଢ଼େ ଯାର ମୁଖବନ୍ଧ ।

( ଚୈଃ ଚଃ ଅନ୍ତ୍ୟ ୫ମ ପରି )

ଏହା ଶୁଣି ମଧ୍ୟ ଶ୍ରୀଳ ଭଗବାନ ଆଚାର୍ଯ୍ୟ ବଙ୍ଗଦେଶୀୟ କବିଙ୍କ ନାଟକ ପଦରେ ଶୁଣିବାକୁ ସ୍ୱରୂପଙ୍କୁ ଅନୁରୋଧ କଲେ । ସ୍ୱରୂପ ତାଙ୍କ ଅନୁରୋଧରେ ଶୁଣିବାକୁ ସମ୍ମତ ହେଲେ । ଅନେକ ବୈଷ୍ଣବ ଉପସ୍ଥିତ । ସମସ୍ତଙ୍କ ସମକ୍ଷରେ କବି ନାନ୍ଦୀ ଶ୍ଳୋକ ପାଠ କଲେ । ସେ ଶ୍ଳୋକ ଓ କବିଙ୍କ ମୁଖରୁ ତାହାର ବ୍ୟାଖ୍ୟା ଶୁଣି ସମସ୍ତେ ଶ୍ଳୋକର ପ୍ରଶଂସାକରି ଆନନ୍ଦିତ ହେଲେ । କେବଳ ରସଜ୍ଞ ଚୂଡ଼ାମଣି ସ୍ୱରୂପ ସେ ଶ୍ଳୋକ ଶୁଣି ମନରେ କଷ୍ଟାନୁଭବ କଲେ, ଏବଂ ସଙ୍କୋଚ ବଚନରେ କବିଙ୍କୁ ଭର୍ତ୍ସନା ପୂର୍ବକ ଶ୍ଳୋକର ଦୋଷମାନ ଦେଖାଇ ଦେଲେ । ସ୍ୱରୂପ ଗୋସ୍ୱାମୀ ଶ୍ଳୋକର ଦୋଷମାନ ଦେଖାଇ ଦେବାରୁ ଉପସ୍ଥିତ ଭକ୍ତବୃନ୍ଦ ତାହା ବୁଝିପାରିଲେ । ଏବଂ ନିଜ ଭ୍ରମ ବୁଝି ପାରି ଓ ଶ୍ଳୋକରେ ଯେ ଏତେ ଦୋଷ ଥିଲା ତାହାଦେଖି ଚମତ୍କୃତ ହେଲେ । ତତ୍ପରେ ପରମକରୁଣ ସ୍ୱରୂପ ସେ କବିଙ୍କୁ ସଦୁପଦେଶ ପ୍ରଦାନ ପୂର୍ବକ କହିଲେ, ତୁମ୍ଭେ ଶ୍ରୀମନ୍ ମହାପ୍ରଭୁଙ୍କ ଶ୍ରୀଚରଣ ଏକାନ୍ତ ଭାବରେ ଆଶ୍ରୟ କର ଏବଂ ବୈଷ୍ଣବଙ୍କଠାରୁ ଶ୍ରୀମଦ୍‌ଭାଗବତ ପାଠ କର । ମହାପ୍ରଭୁଙ୍କ ଭକ୍ତଗଣଙ୍କ ସଙ୍ଗ କର, ତେବେ ଯାଇ ସିଦ୍ଧାନ୍ତ ସମୁଦ୍ର ତରଙ୍ଗ ଅନୁଭବ କରି ପାରିବ ।

ଯଥା ।—

ଯାହ ଭାଗବତ ପଢ ବୈଷ୍ଣବେର ସ୍ଥାନେ,
ଏକାନ୍ତ ଆଶ୍ରୟ କର ଚୈତନ୍ୟ ଚରଣେ ।

ଚୈତନ୍ୟେର ଭକ୍ତଗଣେର ନିତ୍ୟ କର ସଙ୍ଗ,
ତବେ ଜାନିବେ ସିଦ୍ଧାନ୍ତ ସମୁଦ୍ର ତରଙ୍ଗ ।
ତବେତ ପାଣ୍ଡିତ୍ୟ ତୋମାର ହଇବେ ସଫଳ,
କୃଷ୍ଣେର ସ୍ୱରୂପ ଲୀଳା ବର୍ଣ୍ଣିବେ ନିର୍ମ୍ମଳ ।
( ଚୈଃ ଚଃ ଅନ୍ତ୍ୟ ୫ମ ପରି )

ଶ୍ରୀଳ ରଘୁନାଥ ଭଟ୍ଟଙ୍କୁ ମଧ୍ୟ ବୈଷ୍ଣବ ପଣ୍ଡିତଙ୍କ ନିକଟରୁ ଶ୍ରୀମଦ୍ ଭାଗବତ ଅଧ୍ୟୟନ କରିବାପାଇଁ ମହାପ୍ରଭୁ ଆଦେଶ କରିଥିଲେ । ଯଥା ।—

ବୃଦ୍ଧମାତାପିତାର ଯାଇ କରହ ସେବନ
ବୈଷ୍ଣବ ପାଶ ଭାଗବତ କର ଅଧ୍ୟୟନ ।
( ଚୈଃ ଚଃ ଅନ୍ତ୍ୟ ୧୩ )

ଭକ୍ତଭିନ୍ନ ଅନ୍ୟର ଭାଗବତରେ ପ୍ରବେଶାଧିକାର ନାହିଁ । ଭକ୍ତ ଭକ୍ତିମାନ ହୋଇ ଶ୍ରୀଭଗବାନ୍ ଓ ଶ୍ରୀମଦ୍‌ଭାଗବତଙ୍କର ଶରଣାପନ୍ନ ହୁଅନ୍ତି । ତେଣୁ ତାଙ୍କ ହୃଦୟରେ ଶ୍ରୀମଦ୍‌ଭାଗବତର ଅର୍ଥ ସ୍ଫୁରିତ ହୁଏ । ଜ୍ଞାନଗର୍ବରେ ମତ୍ତ ମହାପଣ୍ଡିତ ଗଣ ମଧ୍ୟ ଶ୍ରୀମଦ୍‌ଭାଗବତର ଅର୍ଥ ଜାଣିବାକୁ ସକ୍ଷମ ହୁଅନ୍ତି ନାହିଁ । ବଲ୍ଲଭଭଟ୍ଟ ସେଥିର ଏକ ଉତ୍ତମ ଉଦାହରଣ । ବଲ୍ଲଭଭଟ୍ଟଙ୍କ ମନରେ ଏହି ଗର୍ବ ଥିଲା ଯେ ମୁଁ ଶ୍ରୀମଦ୍‌ଭାଗବତ ଉତ୍ତମବ୍ୟାଖ୍ୟା କରିପାରେ । ଭାଗବତ ସମ୍ବନ୍ଧୀୟ ଭକ୍ତିସିଦ୍ଧାନ୍ତରେ ମୁଁ ଅତିପଟୁ । ଥରେ ବଲ୍ଲଭଭଟ୍ଟ ମହାପ୍ରଭୁଙ୍କୁ କହିଲେ । "ପ୍ରଭୋ ! ମୁଁ ଶ୍ରୀମଦ୍‌ଭାଗବତର ଏକଟୀକା ଲେଖିଅଛି, ଆପଣ ଅନୁଗ୍ରହ ପୂର୍ବକ ଥରେ ତାହା ଶ୍ରବଣ କରନ୍ତୁ" । ଅନ୍ତର୍ଯାମୀ ମହାପ୍ରଭୁଙ୍କୁ କିଛି ଅଜଣା ନ ଥିଲା । ସେ ଭଟ୍ଟଙ୍କର ବ୍ୟାଖ୍ୟା ଭ୍ରମାତ୍ମକ ଜାଣି ଛଳନାକରି କହିଲେ, ଶ୍ରୀମଦ୍‌ଭାଗବତର ଅର୍ଥ ବୁଝିବାର ମୋର ଅଧିକାର ନାହିଁ । ଅତଏବ ଆପଣଙ୍କର ବ୍ୟାଖ୍ୟା ଶୁଣିଲେ କି ଲାଭ ହେବ । ମୁଁ ହରିନାମ ସଂଖ୍ୟାକରି ଜପକରେଁ ଓ ସେ ସଂଖ୍ୟା ମଧ୍ୟ ପୂର୍ଣ୍ଣହୋଇ ପାରୁନାହିଁ । ମୁଁ ଶ୍ରୀମଦ୍‌ଭାଗବତର ବ୍ୟାଖ୍ୟା ଅବା ଶୁଣିବି କେତେବେଳେ" । ଭଟ୍ଟ କହିଲେ "ପ୍ରଭୋ ! ଯଦି ସମସ୍ତ ଭାଗବତର ବ୍ୟାଖ୍ୟା ଶୁଣିବାକୁ ଆପଣଙ୍କୁ ସମୟ ନାହିଁ ତେବେ ଶ୍ରୀକୃଷ୍ଣନାମର ଅର୍ଥ ମୁଁ ବିସ୍ତାରରୂପେ ବ୍ୟାଖ୍ୟା କରିଅଛି

ତେଡକ ମାତ୍ର ଶୁଣିବା ହେଉନ୍ତୁ ।” ମହାପ୍ରଭୁ କହିଲେ “ଯଶୋଦାନନ୍ଦନ ଶ୍ୟାମସୁନ୍ଦର” କୃଷ୍ଣନାମରତ ଏହି ମାତ୍ର ଅର୍ଥ ମୋତେ ଜଣା । ଏତଦ୍ ବ୍ୟତୀତ ଅନ୍ୟ ଅର୍ଥତ ମୋତେ ଜଣା ନାହିଁ । ଅତଏବ କୃଷ୍ଣନାମର ବିସ୍ତାରିତ ଅର୍ଥରୁ ମୁଁ କି ବୁଝିବି ? ମହାପ୍ରଭୁଙ୍କର ଏହି ଉପେକ୍ଷା ବଚନ ଶ୍ରବଣ କରି ବଲ୍ଲଭଭଟ୍ଟଙ୍କ ମନରେ କଷ୍ଟ ହେଲା । ଏବଂ ମହାପ୍ରଭୁଙ୍କଠାରେ ତାଙ୍କର ପୂର୍ବ ଭକ୍ତିର କିଛି ହ୍ରାସ ହୋଇଗଲା । ଭଟ୍ଟ ତହୁଁ ଭାଗବତାର୍ଥଜ୍ଞ ଶ୍ରୀଳ ଗଦାଧର ପଣ୍ଡିତଙ୍କ ଆଶ୍ରୟ ନେଲେ ଓ ନିଜ କୃତ ଅର୍ଥ ତାଙ୍କୁ ଶୁଣିବାକୁ ବାରମ୍ବାର ଅନୁରୋଧ କଲେ । କିନ୍ତୁ ମହାପ୍ରଭୁଙ୍କ ଗଣମାନେ ସେଥିରେ ତାଙ୍କୁ ଦୋଷ ଦେବେ ଏହି ଭୟରେ ଗଦାଧର ପଣ୍ଡିତ ସେଥିରେ ସମ୍ମତ ହେଲେ ନାହିଁ । ମହାପ୍ରଭୁ ଓ ତାଙ୍କଗଣଙ୍କର ଭଟ୍ଟଙ୍କ ପ୍ରତି ତାଚ୍ଛଲ୍ୟ ବ୍ୟବହାରରେ ଭଟ୍ଟଙ୍କର ବିଶେଷ ମନୋବେଦନା ଉପସ୍ଥିତ ହେଲା । ସେ ବିଜହଂସମାନଙ୍କମଧ୍ୟରେ ବକପ୍ରାୟ ହୋଇ ରହିଲେ । ତଥାପି ସେ ମାନସିକ ଅହଂକାର ଛାଡ଼ି ପାରି ନ ଥିଲେ । ଦିନକରେ ସେ ଶ୍ରୀମନ ଅଦ୍ୱୈତାଚାର୍ଯ୍ୟଙ୍କୁ ପଚାରିଲେ “ଜୀବ ତ ପ୍ରକୃତି, ଏବଂ କୃଷ୍ଣ ପୁରୁଷ ଓ ପତି, ପତିବ୍ରତା ସ୍ତ୍ରୀ ପକ୍ଷରେ ପତିନାମ ଗ୍ରହଣ ନିଷିଦ୍ଧ । ଆପଣମାନେ ପତିରନାମ ସତତ ଜପକରୁ ଅଛନ୍ତି, ଏ କେଉଁ ଶାସ୍ତ୍ରର ବିଧି ।”

ଆଚାର୍ଯ୍ୟ ମହାପ୍ରଭୁଙ୍କୁ ଦେଖାଇ ଦେଇ କହିଲେ, “ମହାଶୟ ଆପଣଙ୍କ ସମ୍ମୁଖରେତ ସାକ୍ଷାତ ଧର୍ମ ବିରାଜମାନ, ତାହାଙ୍କୁ ଏହାର ଅର୍ଥ ପଚାରନ୍ତୁ ନା” ? ଭଟ୍ଟ ତହୁଁ ମହାପ୍ରଭୁଙ୍କୁ ଉକ୍ତ ପ୍ରଶ୍ନ ପଚାରନ୍ତେ ମହାପ୍ରଭୁ କହିଲେ, “ପତିର ଆଜ୍ଞା ପତ୍ନୀର ସର୍ବତୋଭାବେ ପାଳନୀୟ । ପତି ଯେତେବେଳେ ନିଜ ନାମ ନେବାକୁ ଆଦେଶ କରିଅଛନ୍ତି ପତ୍ନୀର ସେ ନାମ ନେବାରେ ଅଉ ଦୋଷକଣ” । ଭଟ୍ଟ ଏ ଉତ୍ତର ଶ୍ରବଣ କରି ମୌନାବଲମ୍ବନ କଲେ । କିନ୍ତୁ ସର୍ବଦା ପରାଜିତ ହେବାରୁ ଅଭିମାନୀ ଭଟ୍ଟଙ୍କ ହୃଦୟରେ ମର୍ମାନ୍ତିକ ପୀଡ଼ା ହେବାକୁ ଲାଗିଲା । ସେ ଗର୍ବଭରରେ ଅନ୍ଧ ହୋଇ ନିଜର ଦୋଷ ଦେଖିବାକୁ ସକ୍ଷମ ହେଲେ ନାହିଁ । ପୁଣି ଏକଦିନ ମହାପ୍ରଭୁ ସଙ୍ଗୀଗଣରେ ବେଷ୍ଟିତ ହୋଇ ବସି ଅଛନ୍ତି, ଭଟ୍ଟଆସି ସେ

ସଭାରେ ଉପସ୍ଥିତ ହେଲେ ଏବଂ ମହାପ୍ରଭୁଙ୍କୁ ନମସ୍କାର ପୂର୍ବକ ଉପବେଶନ କଲେ । ସେ ଦିନ ସେ କହିଲେ । ଶ୍ରୀଧରଗୋସ୍ୱାମୀଙ୍କର ଶ୍ରୀମଦ୍‌ଭାଗବତ ବ୍ୟାଖ୍ୟାରେ ଏକ ବାକ୍ୟତା ନାହିଁ । ଯେତେବେଳେ ଯାହା ସୁବିଧା ଜନକ ସେ ମନେକରି ଅଛନ୍ତି ତାହା ସେ ଲେଖି ଅଛନ୍ତି । ଏକ ଭାବର ଭିନ୍ନ ସ୍ଥାନରେ ସେ ଭିନ୍ନ ଅର୍ଥ କରିଅଛନ୍ତି । ମୁଁ ତାଙ୍କ ବ୍ୟାଖ୍ୟା ଗ୍ରହଣ କରି ନ ପାରି ତାହା ଖଣ୍ଡନ କରି ସମୀଚୀନ ନୂତନ ବ୍ୟାଖ୍ୟା କରିଅଛି । ରସିକ ଚୂଡ଼ାମଣି ମହାପ୍ରଭୁ ଏଥିରେ ହାସ୍ୟ କରି କହିଲେ ଯେଉଁ ଲୋକ ସ୍ୱାମୀଙ୍କୁ ସ୍ୱୀକାର ନକରେ ସେ ବେଶ୍ୟା ମଧ୍ୟରେ ପରିଗଣିତ । ଯଥା :—

ପ୍ରଭୁ ହାସି କହେ, ସ୍ୱାମୀନାମାନେ ଯେଇ ଜନ
ବେଶ୍ୟାର ଭିତରେ ତାରେ କରୟେ ଗଣନ ।

( ଚୈଃ ଚଃ ଅନ୍ତ୍ୟ ୭ ମ ପରି )

ଅନ୍ୟଦିନମାନଙ୍କରେ ଭଟ୍ଟ ନିଜକଥା ସମର୍ଥିତ ନ ହେବାରୁ ଲଜ୍ଜିତ ହେଉଥିଲେ । କିନ୍ତୁ ଏଦିନ ମହାପ୍ରଭୁଙ୍କ ଏହି ଭଙ୍ଗ୍ୟୁକ୍ତିରେ ନିରତିଶୟ ମର୍ମାହତ ହେଲେ ଏବଂ ତତ୍‌ମନରେ ଘରକୁ ଫେରି ଆସିଲେ । ପୂର୍ବେ ମହାପ୍ରଭୁ ମୋତେ ପ୍ରୟାଗଠାରେ ମହାକୃପା ପ୍ରକାଶ କରିଥିଲେ, ବର୍ତ୍ତମାନ ଏରୂପ ଅପମାନ ଦେଉଅଛନ୍ତି କାହିଁକି ? ଏହିରୂପ ଭାବୁଁ ଭାବୁଁ ତାଙ୍କ ମନରେ ବିଶୁଦ୍ଧ ଜ୍ଞାନ ଉଦୟ ହେଲା । ନିଜଗର୍ବ ଯେ ପରାଭବର କାରଣ ସେ ଏହା ବୁଝିପାରିଲେ । ଏବଂ ତତ୍ପର ଦିବସ ପ୍ରାତଃ କାଳରେ ଆସି ମହାପ୍ରଭୁଙ୍କ ଶ୍ରୀଚରଣରେ ପ୍ରଣାମ ପୂର୍ବକ ନିଜ ଦୋଷର କ୍ଷମା ଭିକ୍ଷା କଲେ । କ୍ଷମାସାଗର ମହାପ୍ରଭୁ ସଦୟ ହୋଇ କହିଲେ । “ଦେଖ, ତୁମ୍ଭେ ପଣ୍ଡିତ ଓ ଭକ୍ତ । ଏ ଦୁଇଗୁଣ ଯାହାଠାରେ ବର୍ତ୍ତମାନ ତାହାଙ୍କର ମନରେ ଗର୍ବ ଉଦୟ ହେବା ଏକାନ୍ତ ଅନୁଚିତ । ଶ୍ରୀଧରସ୍ୱାମୀହିଁ ଭାଗବତର ପ୍ରକୃତ ମର୍ମଜ୍ଞ । ତାଙ୍କୁ ଅବହେଳା କରିବା ମହା ଅପରାଧ ଜନକ । ଶ୍ରୀଧରସ୍ୱାମୀଙ୍କ ଅନୁଗତରେ ଶ୍ରୀମଦ୍‌ଭାଗବତ ପଠନ କରି ଓ ଅର୍ଥ ବୁଝିବାର ଚେଷ୍ଟାକର । ତେବେ ଯାଇ ଶ୍ରୀମଦ୍‌ଭାଗବତର ଅର୍ଥ ତୁମ୍ଭେ ହୃଦୟଙ୍ଗମ କରିପାରିବ ।” ଯଥା ,—

ପ୍ରଭୁ କହେ "ତୁମି ପଣ୍ଡିତ ମହାଭାଗବତ ।
ଦୁଇଗୁଣ ଯାହାଁ ତାହାଁ ନାହି ଗର୍ବ ପର୍ବତ ।
ଶ୍ରୀଧର ସ୍ୱାମୀ ନିନ୍ଦ ନିଜ ଟୀକା କର
ଶ୍ରୀଧର ସ୍ୱାମୀ ନାହିଁ ମାନ ଏତ ଗର୍ବଧର ?
ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି
ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ, ଗୁରୁ କରି ମାନି ।
ଶ୍ରୀଧର ଉପରେ ଗର୍ବେ ଯେ କିଛୁ ଲିଖିବେ,
ଅର୍ଥ ବ୍ୟସ୍ତ ଲିଖନ ସେଇ ଲୋକ ନା ମାନିବେ ।
ଶ୍ରୀଧରେର ଅନୁଗତ ଯେ କରେ ଲିଖନ,
ସବଲୋକ ମାନ୍ୟ କରି କରିବେ ଗ୍ରହଣ ।
ଶ୍ରୀଧରାନୁଗତେ କର ଭାଗବତ ବ୍ୟାଖ୍ୟାନ
ଅଭିମାନ ଛାଡ଼ ଭଜ କୃଷ୍ଣ ଭଗବାନ ।
ଅପରାଧ ଛାଡ଼ି କର କୃଷ୍ଣ ସଂକୀର୍ତ୍ତନ
ଅଚିରାତ୍ ପାବେ ତବେ କୃଷ୍ଣେର ଚରଣ ।

( ଚୈଃ ଚଃ ଅନ୍ତ୍ୟ ୭ ପରି )

ଅତଏବ କାରୁପଭାବେ ଶ୍ରୀମଦ୍ ଭଗବତ ଅଧ୍ୟୟନ କଲେ ଭଗବତର ପ୍ରକୃତ ତାତ୍ପର୍ଯ୍ୟ ଲୋକ ବୁଝି ପାରିବ, ମହାପ୍ରଭୁଙ୍କର ଏହି ସମସ୍ତ ଉପଦେଶରୁ ତାହାର ଉତ୍ତମ ଶିକ୍ଷା ମିଳୁ ଅଛି । ତେବେ ସତତ ଭକ୍ତମାନଙ୍କର ଶ୍ରୀମଦ୍‌ଭଗବତ ଆଲୋଚନା ଏକାନ୍ତ କର୍ତ୍ତବ୍ୟ । ସେଥିପାଇଁ ମହାପ୍ରଭୁ ନିଜପ୍ରିୟ ରଘୁନାଥଭଟ୍ଟଙ୍କୁ କହିଥିଲେ ।

ଆମାର ଆଜ୍ଞାୟ ରଘୁନାଥ ଯାଓ ବୃନ୍ଦାବନେ
ତାହାଯାଇ ରହ ରୂପସନାତନ ସ୍ଥାନେ
ଭଗବତ ପଡ଼ ସଦା ଲଓ କୃଷ୍ଣନାମ
ଅଚିରେ କରିବେନ କୃପା କୃଷ୍ଣ ଭଗବାନ୍ ।

( ଚୈଃ ଚଃ ଅନ୍ତ୍ୟ ୧୩ ପରି

ମହାପ୍ରଭୁ ନିଜପ୍ରିୟ ରଘୁନାଥଙ୍କୁ ଦାର ପରିଗ୍ରହ କରିବାକୁ ବାରଣ କରି ପ୍ରଧାନ ତୀର୍ଥ ଶ୍ରୀଧାମ ବୃନ୍ଦାବନକୁ ପଠାଇ ଦେଲେ ଓ ସେଠାରେ ଭକ୍ତ ଚୂଡ଼ାମଣି ରୂପସନାତନଙ୍କ ଠାରୁ ଭାଗବତ ଶାସ୍ତ୍ର ଶିକ୍ଷା କରିବାର ଉପଦେଶ ଦେଲେ । ଏହାହିଁ ସକଳ ଭକ୍ତମାନଙ୍କ ପ୍ରତି ଉଚିତ ଶିକ୍ଷା ।



## ଚତୁର୍ବିଂଶ ପରିଚ୍ଛେଦ ।

### ଶ୍ରୀ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କର ତତ୍ତ୍ୱ ।

ଶ୍ରୀ କୃଷ୍ଣ ଚୈତନ୍ୟ ପୂର୍ଣ୍ଣତମ ଭଗବାନ । ସେ ଅଂଶାବତାର କିମ୍ବା ଯୁଗାବତାର ନୁହନ୍ତି । ସେ ପୂର୍ଣ୍ଣତମ, ଲୀଳା ନିମନ୍ତେ ତାଙ୍କର ଏ ଧରାକୁ ଆଗମନ । ରାଧା ପ୍ରେମ ଆସ୍ୱାଦନ ତାଙ୍କର ନିଜ କାର୍ଯ୍ୟ । କିନ୍ତୁ ସେ ଯେତେବେଳେ ରାଧା ପ୍ରେମ ଆସ୍ୱାଦନ ପାଇଁ ଶ୍ରୀ ରାଧାର ଭାବକାନ୍ତି ଗ୍ରହଣ ପୂର୍ବକ ଧରାରେ ଅବତୀର୍ଣ୍ଣ ହେଲେ, ଯୁଗାବତାରର କର୍ମ ନାମ ପ୍ରେମ ପ୍ରଚାର ସେହି ସମୟରେ ଉପସ୍ଥିତ ହେଲା । ଏବଂ ସେ ଏଣେ ରାଧାପ୍ରେମ ଆସ୍ୱାଦନ ସଙ୍ଗେ ସଙ୍ଗେ ହରିନାମ ଜଗତରେ ପ୍ରଚାର କରିଗଲେ । ଯଥା—

ଏଇ ମତ ଚୈତନ୍ୟକୃଷ୍ଣ ପୂର୍ଣ୍ଣଭଗବାନ୍ ।
ଯୁଗଧର୍ମ ପ୍ରବର୍ତ୍ତନ ନହେ ତାର କାମ ।
କୋନ କାରଣେ ହୈଲ ଯବେ ଅବତାରେ ମନ
ଯୁଗଧର୍ମ କାଲ ହୈଲ ସେକାଲେ ମିଲନ ।

( ଚୈଃ ଚଃ ଆଦି ୪ର୍ଥ ପରି )

ବ୍ରଜରେ ଭଗବାନ ରାଧାକୃଷ୍ଣ ଏକ ଆତ୍ମା, ଦୁଇ ଦେହ ଧରି ରସ ଆସ୍ୱାଦନ କରନ୍ତି । ନବଦ୍ୱୀପରେ ଏ ଦୁହେଁ ଏକ ହୋଇ ଶ୍ରୀକୃଷ୍ଣ ଚୈତନ୍ୟ ନାମ ଧାରଣ ପୂର୍ବକ ରାଧାଭାବ ଆସ୍ୱାଦନରେ ରତ । ଯଥା ।—

ରାଧାକୃଷ୍ଣ ଏକ ଆତ୍ମା ଦୁଇ ଦେହଧରି
ଅନ୍ୟୋନ୍ୟେ ବିଳାସରସ ଆସ୍ୱାଦନ କରି ।
ସେଇ ଦୁଇ ଏକ ଏବେ ଚୈତନ୍ୟ ଗୋସାଇଁ ।
ଭାବ ଆସ୍ୱାଦିତେ ଦୋହେଁ ହୈଲା ଏକ ଠାଇଁ ।

ଶ୍ରୀଲ କବିରାଜ ଗୋସ୍ୱାମୀ ଆହୁରି ବିଷଦ କରି ଏହା ବୁଝାଇ ଦେଇ ଅଛନ୍ତି । ଯଥା ।—

ରାଧା ପୂର୍ଣ୍ଣ ଶକ୍ତି କୃଷ୍ଣ ପୂର୍ଣ୍ଣଶକ୍ତିମାନ
ଦୁଇ ବସ୍ତୁ ଭେଦ ନାହିଁ ଶାସ୍ତ୍ର ପରମାଣ।
ମୃଗମଦ ତାର ଗନ୍ଧ ଯୈଛେ ଅବଚ୍ଛେଦ,
ଅଗ୍ନି ଜ୍ୱାଲାତେ ଯୈଛେ କଭୁ ନାହିଁ ଭେଦ।
ରାଧାକୃଷ୍ଣ ଐଛେ ସଦା ଏକଇ ସ୍ୱରୂପ
ଲୀଳାରସ ଆସ୍ୱାଦିତେ ଧରେ ଦୁଇରୂପ।
ପ୍ରେମ ଭକ୍ତି ଶିଖାଇତେ ଆପନ ଅବତରି
ରାଧାଭାବ କାନ୍ତି ଦୁଇ ଅଙ୍ଗୀକାର କରି।
ଶ୍ରୀ କୃଷ୍ଣ ଚୈତନ୍ୟ ରୂପେ କୈଲ ଅବତାର
ଏଇତ ପଞ୍ଚମ ଶ୍ଲୋକେର ଅର୍ଥ ପରଚାର।
(ଚୈଃ ଚଃ ଆଦି ୪ର୍ଥ ପରି)

କିନ୍ତୁ ଏହି ଯେ ପ୍ରେମଭକ୍ତି ଶିକ୍ଷା ଉଲ୍ଲେଖ ହେଲା ଏହା ବାହାରର କଥା। ମୂଳ ଅନ୍ତରିକ ଭାବ ତିନ ଗୋଟି। ପ୍ରଥମ କୃଷ୍ଣ ମନେ କଲେ ମୁଁ ରସର ନିଧାନ, ପୂର୍ଣ୍ଣ ନନ୍ଦମୟ ଚନ୍ଦ୍ର ପୂର୍ଣ୍ଣତତ୍ତ୍ୱ। କିନ୍ତୁ ଏ ବଡ଼ ଆଶ୍ଚର୍ଯ୍ୟ ଯେ ଶ୍ରୀ ରାଧିକାର ପ୍ରେମ ମୋତେ ଉନ୍ମତ୍ତ କରାୟ।

କୃଷ୍ଣ କହେ ଆମି ହଇ ରସେର ନିଧାନ
ପୂର୍ଣ୍ଣାନନ୍ଦମୟ ଆମି ଚିନ୍ମୟ ପୂର୍ଣ୍ଣ ତତ୍ତ୍ୱ
ରାଧିକାର ପ୍ରେମେ ଆମା କରାୟ ଉନ୍ମତ୍ତ।
(ଚୈଃ ଚଃ ଅନ୍ତ୍ୟ ୪ର୍ଥ ପରି)

ସେଇ ଅଦ୍ଭୁତ ପ୍ରେମର ଶ୍ରୀରାଧିକାହିଁ ଆଶ୍ରୟ ଓ ମୁଁ ବିଷୟ। ମୁଁ ବିଷୟ ଜାତୀୟ ସୁଖ ଲାଭ କରେଁ, କିନ୍ତୁ ଆଶ୍ରୟ ଜାତୀୟ ସୁଖରୁ ବଞ୍ଚିତ। ଚିନି ଯେ ଖାଏ ସେ ଚିନିର ସ୍ୱାଦ ଜାଣେ, କିନ୍ତୁ ନିଜ ଆସ୍ୱାଦ ଉପରେ ତାହା ଚିନି ଜାଣେ ନାହିଁ। ଯଥା।—

ସେଇ ପ୍ରେମାର ରାଧିକା ପରମ ଆଶ୍ରୟ
ସେଇ ପ୍ରେମାର ଆମି ହଇ କେବଳ ବିଷୟ

ଏଛୟ ଜାତୀୟ ସୁଖ ଅମାର ଅସ୍ୱାଦ
ଅମା ହୈତେ କୋଟି ଗୁଣ ଅଣଯ୍ୟେ ଅହ୍ଲାଦ
ଅଣୟ ଜାତୀୟ ସୁଖ ପାଇତେ ମନ ଧାୟ
ଯତ୍ନେ ନାରି ଅସ୍ୱାଦତେ, କି କରି ଉପାୟ ।
କଭୁ ଯଦି ଏଇ ପ୍ରେମାର ହଇୟେ ଅଣୟ
ତବେ ଏଇ ପ୍ରେମାନନ୍ଦେର ଅନୁଭବ ହୟ ।
( ଚୈ: ଚ: ଅଦ ୪ର୍ଥ ପରି )

ଅତଏବ ସେହି ରାଧିକାର ପ୍ରଣୟ ମହିମା କିଦୃଶୀ ତାହା ଜାଣିବାର ଇଚ୍ଛା ପ୍ରଥମ କାରଣ । ଶ୍ରୀକୃଷ୍ଣ ବିଚାର କଲେ ।—

ଶ୍ରୀରାଧା ମୋର ଯେଉଁ ମଧୁରିମା ଅସ୍ୱାଦନ କରି ସତତ ବିହ୍ୱଳ ମୋର ସେହି ମଧୁରିମା ବା କିଦୃଶ । ମୁଁ ରାଧାସ୍ୱରୂପ ଧରଣ ନ କଲେ ଏ ମଧୁରିମା ଅସ୍ୱାଦନର ଅନ୍ୟ ଉପାୟ ନାହିଁ ଯଥା ।—

କୃଷ୍ଣ ମାଧୁର୍ଯ୍ୟେର ଏକ ସ୍ୱାଭାବିକ ବଳ
କୃଷ୍ଣ ଆଦି ନରନାରୀ କରୟେ ଚଞ୍ଚଳ ।
ଶ୍ରବଣେ ଦର୍ଶନେ ଅକର୍ଷୟେ ସର୍ବମନ
ଆପନା ଅସ୍ୱାଦତେ କୃଷ୍ଣ କରେନ ଯତନ ।

× × × + × × × × × × × ×

କୃଷ୍ଣେର ମାଧୁର୍ଯ୍ୟ କୃଷ୍ଣେ ଉପଜାୟ ଲୋଭ
ସମ୍ୟକ୍ ଅସ୍ୱାଦତେ ନାରେ ମନେ ରହେ କ୍ଷୋଭ ।
( ଚୈ: ଚ: ଅଦ ୪ର୍ଥ ପରି )

ଏ ଦ୍ୱିତୀୟ କାରଣ—

ଏବଂ ଶ୍ରୀକୃଷ୍ଣ ମନେ କଲେ ମୋର ମାଧୁର୍ଯ୍ୟ ଆସ୍ୱାଦନ କରି ଶ୍ରୀରାଧା କି ଜାତୀୟ ସୁଖ ଅନୁଭବ କରେ ମୁଁ ତାହା କିରୂପ ଜାଣିବ । ସେଥିପାଇଁ ରାଧାଭାବ ଗ୍ରହଣ ପୂର୍ବକ ତାଙ୍କର ଅବତାର । ସେଥିପାଇଁ ଶ୍ରୀଲକବିରାଜ ଗୋସ୍ୱାମୀ ଲେଖି ଅଛନ୍ତି ।—

ଶ୍ରୀକୃଷ୍ଣ ଚୈତନ୍ୟ ଗୋସାଇଁ ବ୍ରଜେନ୍ଦ୍ର କୁମାର
ରସମୟ ମୂର୍ତ୍ତି, କୃଷ୍ଣ, ସାକ୍ଷାତ୍ ଶୃଙ୍ଗାର ।
ସେଇ ରସ ଆସ୍ୱାଦିତେ କୈଲ ଅବତାର
ଆନୁଷଙ୍ଗେ କୈଲ ସବ ରସେର ପ୍ରଚାର ।

( ଚୈଃ ଚଃ ଆଦି ୪ର୍ଥ ପରି )

ଅତଏବ ଶ୍ରୀରାଧାଙ୍କ ଭାବ ଓ କାନ୍ତି ଧାରଣପୂର୍ବକ ଶ୍ରୀକୃଷ୍ଣଚନ୍ଦ୍ରପୂର୍ଣ୍ଣ ଇନ୍ଦୁ ନବଦ୍ୱୀପରେ ଶଚୀଗର୍ଭରୂପ କ୍ଷୀର ସମୁଦ୍ରରେ ଉଦୟ ହେଲେ । ଯଥା ।—

ରାଧିକାର ଭାବକାନ୍ତି ଅଙ୍ଗୀକାର କରି
ନବଦ୍ୱୀପେ ଶଚୀଗର୍ଭ ଶୁଦ୍ଧ ଦୁଗ୍ଧ ସିନ୍ଧୁ
ତାହାତେ ପ୍ରକଟ ହୈଲ. କୃଷ୍ଣ ପୂର୍ଣ୍ଣଇନ୍ଦୁ ।

( ଚୈଃ ଚଃ ଅଦି ୪ର୍ଥ ପରି )

ଏହି ଯେ ନଦୀୟାର ଅବତାର ଶ୍ରୀକୃଷ୍ଣ ଚୈତନ୍ୟ ଏ ସକଳ ଅବତାରର ସାର । ଶ୍ରୀଲ ଲୋଚନ ଦାସ ତାହାଙ୍କୁ ଅବତାର ଶିରୋମଣି ବୋଲି ଅର୍ଘ୍ୟ ପ୍ରଦାନ କରିଅଛନ୍ତି । ଯଥା ।—

ସବ ଅବତାର ସାର ଚୈତନ୍ୟ ଗୋସାଓି,
ଏ ହେନ କରୁଣା କଥି ଆର ହେବେ ନାଓି.

× × × × × × × × × × × × ×

ଚୈତନ୍ୟ ଗୋସାଞି ଏଇ ତ ବଡ,
ତେତ୍ରି ଅବତାର ଶିବ ବଲି ଦଡ,

( ଚୈ. : ମଙ୍ଗଳ )

ମହାପ୍ରଭୁଙ୍କର ପ୍ରକଟାବସ୍ଥାରେ ବଙ୍ଗଦେଶୀୟ ମୁସଲମାନଗଣ ମଧ୍ୟ ସେ ଯେ ସ୍ୱୟଂ ଭଗବାନ ଧରାରେ ଅବତୀର୍ଣ୍ଣ ହୋଇଥିଲେ ଏହା ବିଶ୍ୱାସ କରୁଥିଲେ, ଗୌଡ଼ର ତଦାନୀନ୍ତନ ବାଦଶାହା ହୋସେନ ସାହା ତାଙ୍କ କର୍ମଚାରୀ-ମାନଙ୍କୁ କହିଥିଲେ,

ହିନ୍ଦୁ ଯାରେ ବଲେ କୃଷ୍ଣ ଖୋଦାଯ ଯବନେ
ସେଇ ତିହ ନିଶ୍ଚୟ ଜାନିହ ସର୍ବଜନେ,

ଅପନାର ସର୍ବଲୋକ ଯେ ଅନ୍ମାର ଅଭୀବଦନ୍ଦେ
ତାଙ୍କର ଆଜ୍ଞା ଶିରେ କରି ଧର୍ମଦେଶେ ବନ୍ଦେ,
( ଚୈଃ ଭାଃ ଅନ୍ତ୍ୟ ୪ )

ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ସମୟରେ ତାଙ୍କର ସନ୍ନ୍ୟାସ ଗୁରୁ ଶ୍ରୀମନ୍ କେଶବଭାରତୀ ତାଙ୍କର ଯେ ଶ୍ରୀକୃଷ୍ଣଚୈତନ୍ୟ ବୋଲି ନାମ ରଖିଥିଲେ, ସେତେବେଳେ ଭାରତୀଙ୍କ ମନରେ ଯେଉଁ ଭାବ ଉଦୟ ହୋଇଥିଲା ତାହା ମହାପ୍ରଭୁଙ୍କର ଅବତାରର ପ୍ରକୃତ କାରଣ ପ୍ରକାଶ କରୁଅଛି । ସେ ନାମଟି ତଦୁଦ୍ଦେଶ୍ୟକ ହୋଇଅଛି । ଯଥା—

ଯତ ଜଗତେତରେ ତୁମି କୃଷ୍ଣ ବୋଲାଇଲା,
କରାଇଲା ଚୈତନ୍ୟ କୀର୍ତ୍ତନ ପ୍ରକାଶିଲା,
ଏତେକେ ତୋମାର ନାମ ଶ୍ରୀକୃଷ୍ଣ ଚୈତନ୍ୟ
ସର୍ବଲୋକ ତୋମା ହଇତେ ହଇଲେନ ଧନ୍ୟ,
( ଚୈଃ ଭାଃ ମଧ୍ୟ ୨୭ )

ମହାପ୍ରଭୁହିଁ ସର୍ବ ଅଦି, ସର୍ବକାରଣର କାରଣ ପୁରୁଷୋତ୍ତମ ପୂର୍ଣ୍ଣ, ଅନ୍ୟ ସମସ୍ତେ ତାଙ୍କର ଅଂଶ ଅବା କଳା । ଏମନ୍ତକି ଶ୍ରୀମନ୍ ନିତ୍ୟାନନ୍ଦ,ସ୍ୱୟଂ ଧରଣୀଧର ଅନନ୍ତଦେବ ଯାହାଙ୍କର ଅଂଶ, ସେ ସୁଦ୍ଧା ମହାପ୍ରଭୁଙ୍କର ଅଭିନ୍ନ-କାୟ । ପ୍ରେମ ପ୍ରଚାର ପାଇଁ ନିତ୍ୟାନନ୍ଦ ଅନେକ ଧର୍ମକୁ ଅତି ମଧ୍ୟ ନିଜେ ପ୍ରଚାର କାର୍ଯ୍ୟ ଅରମ୍ଭ ନ କରି ମହାପ୍ରଭୁଙ୍କ ଆଜ୍ଞାକୁ ଅପେକ୍ଷା କରି ରହିଥିଲେ । ଯଥା—

ଯଦ୍ୟପିଓ ନିତ୍ୟାନନ୍ଦ ଧରେ ସର୍ବ ଶକ୍ତି,
ତଥାପିଓ କାରେ ହଇତେ ନା ପାରେନ ଭକ୍ତି ।
ଯବେ ଗୌରଚନ୍ଦ୍ର ପ୍ରଭୁ କରିବ ପ୍ରକାଶ,
ତାହାଁର ଆଜ୍ଞାୟ ଭକ୍ତିଦାନେର ବିଳାସ ।
( ଚୈଃ ଭାଃ ଆଦ ୮ ମ )

ଅତଏବ ଏହି ସମସ୍ତ ପ୍ରମାଣରୁ ମହାପ୍ରଭୁ ଯେ ସ୍ୱୟଂ ଭଗବାନ୍ ଏହା ଉତ୍ତମପ୍ରମାଣିତ ହେଉଅଛି । ସେ ଅଂଶ ବା କଳା ନୁହନ୍ତି ସେ ପୂର୍ଣ୍ଣତମ, ପ୍ରେମାସ୍ୱାଦନ ପାଇଁ ଧରାକୁ ଅସିଥିଲେ ।

———÷———

## ପଞ୍ଚମ ପରିଚ୍ଛେଦ ।

### ମହାପ୍ରଭୁଙ୍କର ଗୁଣ

ମହାପ୍ରଭୁ ସ୍ୱୟଂ ଭଗବାନ । ସମସ୍ତ ଗୁଣରେ ଅକର, ସମସ୍ତ ଗୁଣ ତାଙ୍କ-ଠାରୁ ଉତ୍ପତ୍ତି ଓ ସମସ୍ତ ତାଙ୍କଠାରେ ଶେଷ । ତାଙ୍କର ଗୁଣ ବର୍ଣ୍ଣନ କରିବା ମନୁଷ୍ୟର କି ସାଧ୍ୟ ଅଛି । ମହାପଣ୍ଡିତ ହେଲେ ମଧ୍ୟ ମହାପ୍ରଭୁଙ୍କ ଗୁଣ ସାଗ-ରରୁ କଣାମାତ୍ର ସ୍ପର୍ଶ କରି ପାରିବ ନାହିଁ । ମୁଁ ଭକ୍ତିହୀନ ମୂର୍ଖ ତାଙ୍କର ଗୁଣ କ'ଣ ବର୍ଣ୍ଣନ କରିବି । ଶ୍ରୀକବିରାଜ ଗୋସ୍ୱାମୀ ଓ ଶ୍ରୀବୃନ୍ଦାବନ ଦାସଙ୍କ ଲେଖାରୁ କିଞ୍ଚିତ ଉଦ୍ଧୃତ କରିବାକୁ ବସିଅଛି ମାତ୍ର ।

ପଣ୍ଡିତ ପ୍ରବର ଶ୍ରୀଲ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ବଡ ତାର୍କିକ ଥିଲେ । ମହାପ୍ରଭୁଙ୍କ କୃପାରୁ ସେ ପରମ ଭକ୍ତରେ ପରିଣତ ହେଲେ । ଶେଷରେ ଶ୍ରୀକୃଷ୍ଣଚୈତନ୍ୟହିଁ ତାଙ୍କର ଧ୍ୟାନ ଜପ ସମସ୍ତ ହୋଇଥିଲେ । ଯଥା—

ଶ୍ରୀକୃଷ୍ଣ ଚୈତନ୍ୟ ଶଚୀସୁତ ଗୁଣଧାମ<br>
ଏଇ ଧ୍ୟାନ ଏଇ ଜପ ଲୟ ଏଇ ନାମ ।

( ଚୈଃ ଚଃ ମଧ୍ୟ ୬ ମ ପରି )

ସେ ଥରେ ମହାପ୍ରଭୁଙ୍କୁ ଶ୍ରୀମଦ୍ଭାଗବତର ବ୍ରହ୍ମସ୍ତୁତି ମଧ୍ୟରୁ ଗୋଟିଏ ଶ୍ଳୋକ ପାଠ କରି ମହାପ୍ରଭୁଙ୍କୁ ପ୍ରଣାମ କଲେ, କିନ୍ତୁ ସେ ଶ୍ଳୋକ ମଧ୍ୟରେ ମୁକ୍ତିପଦ ବୋଲି ଗୋଟିଏ ଭଗବାନଙ୍କର ବିଶେଷ ଶବ୍ଦ ଥିଲା । ଶ୍ଳୋକପାଠ କାଳରେ ସାର୍ବଭୌମ ତାକୁ ମୁକ୍ତିପଦ ନ ପଢ଼ି ଭକ୍ତି ପଦ ବୋଲି ପାଠ କଲେ । ମହାପ୍ରଭୁ ସେତେବେଳେ ଭଟ୍ଟାଚାର୍ଯ୍ୟଙ୍କର ପୂର୍ଣ୍ଣ ବୈଷ୍ଣବତାର ଲକ୍ଷଣ ଦେଖି ଆନନ୍ଦିତ ହୋଇ କୌତୁକରେ କହିଲେ, " ଭଟ୍ଟାଚାର୍ଯ୍ୟ !

ତୁମ୍ଭେ ଶ୍ଳୋକର ମୁକ୍ତିପଦ ସ୍ଥାନରେ ଭକ୍ତିପଦ ଏରୂପ ପାଠ କଲ କପାଇଁ ?" ଭଟ୍ଟାଚାର୍ଯ୍ୟ କହିଲେ, " ପ୍ରଭୋ ! ଭକ୍ତିର ଫଳ ମୁକ୍ତି ନୁହେ, ଭଗବତ୍ ଭକ୍ତି ବିମୁଖ ଜନର ଦଣ୍ଡହିଁ ମୁକ୍ତି, ଯେ ଶ୍ରୀକୃଷ୍ଣଙ୍କର ବିଗ୍ରହ ସତ୍ୟ ଏହା ସ୍ୱୀକାର ନ କରେ ଏବଂ ଯେ ଶ୍ରୀକୃଷ୍ଣଙ୍କ ସଙ୍ଗ ଯୁଦ୍ଧାଦିରେ ପ୍ରବୃତ୍ତ ହୁଏ ସେମାନେ ବ୍ରହ୍ମସାଯୁଜ୍ୟମୁକ୍ତି ଲାଭ କରନ୍ତି । ଭକ୍ତିର ଫଳ ଏହାଠାରୁ ଅନେକ ଉଚ୍ଚରେ ଅବସ୍ଥିତ ।

ମହାପ୍ରଭୁ କହିଲେ, " ଭଟ୍ଟାଚାର୍ଯ୍ୟ ! ତୁମ୍ଭେ ମୁକ୍ତିପଦର ଯେଉଁ ଅର୍ଥ ଗ୍ରହଣ କରିଅଛ, ତାହା ଛଡ଼ା ମୁକ୍ତି ପଦର ଯେ ଅନ୍ୟ ଅର୍ଥ ଅଛି, ଅର୍ଥାତ୍ ଯାହାର ପଦହିଁ ମୁକ୍ତି, ଏହା ଯେ ଶ୍ରୀକୃଷ୍ଣଙ୍କୁ ବୁଝାଉ ଅଛି । ତେବେ ଶ୍ଳୋକର ମୁକ୍ତିପଦ ଶବ୍ଦ ପରିବର୍ତ୍ତନ କରିବାର କି ଆବଶ୍ୟକ ।" ସାର୍ବଭୌମ କହିଲେ, "ପ୍ରଭୋ ! ଆପଣ ଯାହା କହିଲେ ତାହା ସତ୍ୟ ତଥାପି ମୁକ୍ତିପଦ କହିବା ମାତ୍ର ପ୍ରଥମେ ମୁକ୍ତି ବିଷୟ ସାଧାରଣ ମନରେ ଉଦୟ ହୁଏ, ଏବଂ ଭକ୍ତିଶବ୍ଦ ଉଚ୍ଚାରଣରେ ମନରେ ଯେପରି ଉଲ୍ଲାସ ହୁଏ, ମୁକ୍ତି ଶବ୍ଦରେ ତାହା ହୁଏ ନାହିଁ, ବରଂ ଘୃଣା ଓ ତ୍ରାସ ଆସି ଉପସ୍ଥିତ ହୁଏ । ତେଣୁ ମୁକ୍ତିପଦ ଉଚ୍ଚାରଣ ନ କରି ଭକ୍ତି ପଦ ଉଚ୍ଚାରଣ କଲି । ମହାପ୍ରଭୁ ଏଥିରେ ପରମ ସନ୍ତୁଷ୍ଟ ହୋଇ ଭଟ୍ଟାଚାର୍ଯ୍ୟଙ୍କୁ ଆଲିଙ୍ଗନ କଲେ । ମହାପ୍ରଭୁଙ୍କର ଏହି ସାର୍ବଭୌମ ଉଦ୍ଧାର ରୂପ କୀର୍ତ୍ତି ବର୍ଣ୍ଣନ କରି କବିରାଜ ଗୋସ୍ୱାମୀ ଲେଖି ଅଛନ୍ତି ।

ଯେଇ ଭଟ୍ଟାଚାର୍ଯ୍ୟ ପଢ଼େ ପଢ଼ାୟ ମାୟାବାଦ
ତାର ଐଛେ ବାକ୍ୟ ସ୍ଫୁରେ ଚୈତନ୍ୟ ପ୍ରସାଦ ।
ଲୋହାକେ ଯାବତ୍ ସ୍ପର୍ଶି ହେମ ନାହିଁ କରେ
ତାବତ୍ ସ୍ପର୍ଶମଣି କେହ ଚିନିତେ ନା ପାରେ ।
ଭଟ୍ଟାଚାର୍ଯ୍ୟେର ବୈଷ୍ଣବତା ଦେଖି ସର୍ବଜନ
ପ୍ରଭୁକେ ଜାନିଲ ସାକ୍ଷାତ୍ ବ୍ରଜେନ୍ଦ୍ର ନନ୍ଦନ ।

[ ଚୈଃ ଚଃ ମଧ୍ୟ ୬ମ ]

ଅତଏବ ଶ୍ରୀବଲ୍ଲଭ ଗୋସ୍ୱାମୀଙ୍କ ଏହି ଉକ୍ତିରୁ ମହାପ୍ରଭୁ ଯେ କିରୂପ ସ୍ୱର୍ଣ୍ଣମଣି ତାହା ଉତ୍ତମ ଜଣାଯାଉଅଛି ।

ମହାପ୍ରଭୁ ପରମ ସ୍ୱତନ୍ତ୍ର । ତଥାପି ପ୍ରେମାଧୀନ । ସେ ଭକ୍ତ ପ୍ରେମରେ ବଶ ହୋଇ ଭକ୍ତଠାରେ ବନ୍ଧା ପଡନ୍ତି । କିମ୍ବଦନ୍ତୀ ଘଟଣାଟି ତାଙ୍କର ପ୍ରେମବଶତାର ପରିଚାୟକ ।

ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ପୂର୍ବକ ଶ୍ରୀପୁରୁଷୋତ୍ତମରେ ବାସ କରିବା ପରେ ଗୌଡ ଦେଶରୁ ତାଙ୍କ ପ୍ରିୟ ଭକ୍ତଗଣ ପ୍ରତିବର୍ଷ ରଥଯାତ୍ରା ସମୟରେ ପୁରୀକୁ ଯାଇ ତାଙ୍କ ସହ ମିଳୁଥିଲେ । ଏକବର୍ଷ ଶ୍ରୀଶିବାନନ୍ଦ ସେନଙ୍କର ଭଣଜା ଶ୍ରୀକାନ୍ତ ଏକାକୀ ଆଗେ ଶ୍ରୀପୁରୁଷୋତ୍ତମ ଯାଇଥିଲେ । ସେ ଯାଇ ମହାପ୍ରଭୁଙ୍କ ଶ୍ରୀଚରଣ ଦର୍ଶନ କଲେ । ମହାପ୍ରଭୁ ତାଙ୍କୁ ବହୁ କୃପା ପ୍ରଦର୍ଶନ କରି ଦୁଇମାସ ନିଜ ନିକଟରେ ରଖାଇଲେ ଓ ତତ୍ପରେ ବିଦାୟ ଦେଇ ତାଙ୍କୁ କହିଲେ, " ଶ୍ରୀକାନ୍ତ ! ତୁମ୍ଭେ ଏଥର ମୋର ପ୍ରିୟ ଭକ୍ତମାନଙ୍କୁ ଏତେଦୂର କଷ୍ଟ ସ୍ୱୀକାର ପୂର୍ବକ ଏଠାକୁ ଆସିବାକୁ ବାରଣ କରିବ । ମୁଁ ନିଜେ ଗୌଡକୁ ଯାଇ ସେମାନଙ୍କ ସହ ମିଳନ କରିବି । ତୁମ୍ଭର ମାମୁଙ୍କୁ କହିବ, ମୁଁ ଆସନ୍ତା ପୌଷ ମାସରେ ସେଠାକୁ ଅବଶ୍ୟ ଯିବି ।" ଶ୍ରୀକାନ୍ତ ଗୌଡ଼ଦେଶକୁ ଫେରିଯାଇ ମହାପ୍ରଭୁଙ୍କ ଆଜ୍ଞା ସମସ୍ତଙ୍କୁ ଜଣାଇଲେ । ଏଥର ମହାପ୍ରଭୁ ଆମ୍ଭ ଦେଶକୁ ଆସିବେ । ଏହି ସମ୍ବାଦରେ ଗୌଡବାସୀ ଭକ୍ତବୃନ୍ଦ ପରମାନନ୍ଦ ଲାଭକଲେ । ପୌଷମାସ ଉପସ୍ଥିତ ହୁଅନ୍ତେ ଶିବାନନ୍ଦ ପ୍ରଭୃତି ମହାପ୍ରଭୁଙ୍କ ନିମିତ୍ତ ନାନା ସାମଗ୍ରୀ ପ୍ରସ୍ତୁତ କରି ରଖିଲେ । କିନ୍ତୁ ପୌଷମାସ ଆସି ଅତିବାହିତ ହେବାକୁ ବସିଲା, ମହାପ୍ରଭୁଙ୍କର ଆସିବାର କିଛିମାତ୍ର ସମ୍ବାଦ ସେମାନେ ପାଇଲେ ନାହିଁ । ଶ୍ରୀମନ୍ ନୃସିଂହାନନ୍ଦ ଏହି ସମୟରେ ଶ୍ରୀଶିବାନନ୍ଦ ସେନଙ୍କ ଘରେ ଉପସ୍ଥିତ ହେଲେ । ଶ୍ରୀନୃସିଂହାନନ୍ଦଙ୍କ ଅସୀମ ପ୍ରଭାବ ସମସ୍ତଙ୍କୁ ଜଣା । ଶିବାନନ୍ଦ ଓ ଜଗଦାନନ୍ଦ ତାଙ୍କୁ ନିଜ ମନୋ-ବେଦନା ଜ୍ଞାପନ କଲେ । ଶ୍ରୀନୃସିଂହାନନ୍ଦ ସେମାନଙ୍କୁ ଆଶ୍ୱାସନା ପୂର୍ବକ କହିଲେ, " ତୁମ୍ଭେମାନେ ଚିନ୍ତା କର ନାହିଁ । ତିନିଦିନ ମଧ୍ୟରେ ମୁଁ ମହାପ୍ରଭୁଙ୍କୁ ଏଠାକୁ ଆଣିବି ଅଛି । ମହାପ୍ରଭାବଶାଳୀ ନୃସିଂହାନନ୍ଦଙ୍କ କଥାରେ

କାହାରି ଅବସ୍ଥା ଦେଖି ନାହିଁ । ନୃସିଂହାନନ୍ଦ ଧ୍ୟାନରେ ନିମଗ୍ନ ହେଲେ ଏବଂ କ୍ଷଣାନ୍ତେ ପରେ ସେ ଶିବାନନ୍ଦଙ୍କୁ କହିଲେ " ଶିବାନନ୍ଦ ! ମହାପ୍ରଭୁ ଅଦ୍ୟ ପାଣିହାଟି ଗ୍ରାମପର୍ଯ୍ୟନ୍ତ ଆସିଅଛନ୍ତି, କାଲି ଏଠାକୁ ଆସିବେ । ତୁମ୍ଭେ ପାକସାମଗ୍ରୀମାନ ମୋ ପାଖକୁ ଆଣ, ମୁଁ ପାକର ଆୟୋଜନ କରେଁ ।" ଶ୍ରୀଶିବାନନ୍ଦ ପୂର୍ବସମ୍ମତ ପାକ ସାମଗ୍ରୀମାନ ଆଣି ନୃସିଂହାନନ୍ଦଙ୍କ ନିକଟରେ ଦେଲେ ଏବଂ ଶ୍ରୀନୃସିଂହାନନ୍ଦ ନାନାପ୍ରକାରପାଞ୍ଚଗଣ୍ଡ ପାକ କରିବାକୁ ଲାଗିଲେ । ପାକ ସମାଧାନ କରି ଅନ୍ନ, ବ୍ୟଞ୍ଜନ, ପିଠା, କ୍ଷୀର ସମସ୍ତ ତିନି ସ୍ଥାନରେ ପୃଥକ ବାଢ଼ି, ଏକ ପବସ୍ଥ ଭୋଜ୍ୟ ଶ୍ରୀ ଜଗନ୍ନାଥଙ୍କୁ, ଦ୍ୱିତୀୟ ଶ୍ରୀମନ୍ ମହାପ୍ରଭୁଙ୍କୁ ଓ ତୃତୀୟ ତାଙ୍କର ଇଷ୍ଟଦେବ ଶ୍ରୀନୃସିଂହଙ୍କୁ ସମର୍ପଣ ପୂର୍ବକ ବାହାରେ ଧ୍ୟାନ କରିବାକୁ ଲାଗିଲେ । ସେ ଦେଖିଲେ ମହାପ୍ରଭୁ ଆସି ଉପସ୍ଥିତ ହେଲେ ଏବଂ ଆସନରେ ବସି ତିନି ପାତ୍ରସ୍ଥ ଭୋଗ ସମସ୍ତ ଭୋଜନ କରିବାକୁ ଲାଗିଲେ । ଏହା ଦେଖି ଶ୍ରୀନୃସିଂହାନନ୍ଦଙ୍କର ଆନନ୍ଦର ପରିସୀମା ରହିଲା ନାହିଁ ! ସେ କେବଳ ପ୍ରେମରେ ଆକ୍ଷେପ କରି କହିବାକୁ ଲାଗିଲେ, "ପ୍ରଭୋ ! ଶ୍ରୀ ଜଗନ୍ନାଥ ଓ ଆପଣ ଏକ, ତାହାଙ୍କ ଭୋଗ ଆପଣ ଏବା ଖାଇଲେ ମନା ନାହିଁ । କିନ୍ତୁ ଶ୍ରୀନୃସିଂହଦେବଙ୍କର ଭୋଗ ଯେ ଆପଣ ଖାଇଲେ ସେଥିରେ ମୋର ଇଷ୍ଟ ଶ୍ରୀନୃସିଂହଦେବ ଯେ ଉପବାସୀ ରହିଲେ ।" ଶ୍ରୀନୃସିଂହାନନ୍ଦଙ୍କର ପ୍ରେମବିହ୍ୱଳ ଅବସ୍ଥାରେ ଏହି ଶବ୍ଦମାତ୍ର ଶୁଣି ଶିବାନନ୍ଦ ପଚାରିଲେ ଏରୂପ କାହାରେ କି ଶବ୍ଦମାତ୍ର କରୁଅଛନ୍ତି । ଶ୍ରୀନୃସିଂହାନନ୍ଦ ସେହିରୂପ ପ୍ରେମ ବିହ୍ୱଳ ଭାବରେ କହିଲେ, "ଶିବାନନ୍ଦ ? ତୁମ୍ଭ ପ୍ରଭୁଙ୍କର ବ୍ୟବହାର ଦେଖୁଛ । ସେ ତିନିଜଣଙ୍କର ଭୋଗ ଏକାକୀ ସବୁ ଭୋଜନ କରୁଅଛନ୍ତି ।" 'ମହାପ୍ରଭୁ ପ୍ରକୃତ ଆସି ଭୋଜନ କରୁଅଛନ୍ତି କିମ୍ବା ଏ ( ନୃସିଂହାନନ୍ଦ ) ପ୍ରେମବିହ୍ୱଳ ହୋଇ ଏରୂପ ପ୍ରଳାପ କରୁଅଛନ୍ତି ।' ଶିବାନନ୍ଦ ଏହିରୂପ ଭାବି ସନ୍ଦିଗ୍ଧ ହେଲେ । ତତ୍ପରେ ନୃସିଂହାନନ୍ଦ ଶିବାନନ୍ଦଙ୍କୁ ପୁନର୍ବାର ପାକ ସାମଗ୍ରୀ ଆଣିବାକୁ କହିଲେ । ଶ୍ରୀଶିବାନନ୍ଦ ତାହା ପୁନଃ ଯୋଗାଇ ଦିଅନ୍ତେ ଶ୍ରୀନୃସିଂହାନନ୍ଦ ପୁନର୍ବାର ତାହା ପାକ କରି ନିଜ ଇଷ୍ଟ ଶ୍ରୀନୃସିଂହଦେବଙ୍କୁ ସମର୍ପଣ କଲେ ।

ଏହି ଘଟଣାର ଏକବର୍ଷ ପରେ ଶ୍ରୀ ଶିବାନନ୍ଦ ସେନ ଶ୍ରୀପୁରୁଷୋତ୍ତମକୁ ଯାତ୍ରା କଲେ, ଏବଂ ମହାପ୍ରଭୁଙ୍କ ଶ୍ରୀଚରଣଦର୍ଶନ କଲେ । ଦିନକରେ ମହାପ୍ରଭୁ ସମସ୍ତଙ୍କ ସମ୍ମୁଖରେ ଶ୍ରୀନୃସିଂହାନନ୍ଦଙ୍କର ଗୁଣ ବର୍ଣ୍ଣନ ପୂର୍ବକ କହିଲେ, ଗତବର୍ଷ ପୌଷମାସରେ ସେ ମୋତେ ଭୋଜନ କରାଇଥିଲେ । ଖାଦ୍ୟ ସାମଗ୍ରୀମାନ ଏତେ ସୁନ୍ଦର ହୋଇଥିଲା ଯେ ଏମନ୍ତ ମିଷ୍ଟାନ୍ନ ମୁଁ ଆଉ କେବେହେଁ ଖାଇନାହିଁ । ମହାପ୍ରଭୁଙ୍କ ଶ୍ରୀମୁଖରୁ ଏହି ଭଙ୍ଗୀବାଣୀ ଶ୍ରବଣକରି ଶ୍ରୀ ଶିବାନନ୍ଦ ସେନ ବୁଝି ପାରିଲେ ଯେ ମହାପ୍ରଭୁ ପ୍ରକୃତରେ ଗତବର୍ଷ ପୌଷମାସରେ ତାଙ୍କ ଗୃହକୁ ଯାଇ ଶ୍ରୀନୃସିଂହାନନ୍ଦ କର୍ତ୍ତୃକ ପ୍ରସ୍ତୁତ ଅନ୍ନାଦି ଭୋଜନ କରି ଅଛନ୍ତି । ଯଥା —

ଏକଦିନ ସଭାତେ ପ୍ରଭୁ ବାତ ଚାଲାଇଲା,
ନୃସିଂହାନନ୍ଦେର ଗୁଣ କହିତେ ଲାଗିଲା ।
ଗତ ପୌଷେ ମୋରେ କରାଇଲ ଭୋଜନ,
କଭୁ ନାହିଁ ଖାଇ ଐଛେ ମିଷ୍ଟାନ୍ନ ବ୍ୟଞ୍ଜନ ।
ଶୁନି ଭକ୍ତଗଣ ମନେ ଆଶ୍ଚର୍ଯ୍ୟ ମାନିଲ,
ଶିବାନନ୍ଦେର ମନେ ତବେ ପ୍ରତ୍ୟୟ ଜନ୍ମିଲ ।
ଏଇମତ ଶଚୀ ଗୃହେ ସତତ ଭୋଜନ,
ଶ୍ରୀବାସେର ଗୃହେ କରେନ କୀର୍ତ୍ତନ ଦର୍ଶନ ।
ନିତ୍ୟାନନ୍ଦେର ନୃତ୍ୟଦେଖେ ଆସେ ବାରେ ବାରେ,
ନିରନ୍ତର ଆବିର୍ଭାବ ରାଘବେର ଘରେ ।
ପ୍ରେମବଶ ଗୌରପ୍ରଭୁ ଯାହାଁ ପ୍ରେମୋତ୍ତମ,
ପ୍ରେମବଶ ହଇ ତାହାଁ ଦେନ ଦରଶନ ।

( ଚୈଃ ଚଃ ଅନ୍ତ୍ୟ ୨ୟ ପଃ )

ମହାପ୍ରଭୁ ଏରୂପ ଏକଲୀଳା କଲେ କିପାଇଁ । ଯେତ ଇଚ୍ଛା କଲେ ଶ୍ରୀଶିବାନନ୍ଦ ସେନ ଓ ଶ୍ରୀଜଗଦାନନ୍ଦଙ୍କ ପରି ପ୍ରିୟ ପାର୍ଷଦମାନଙ୍କୁ ସାକ୍ଷାତ୍ ଦର୍ଶନ ଦେଇ ସେଠାରେ ଭୋଜନ କରିପାରି ଥାଆନ୍ତେ । ମହାପ୍ରଭୁଙ୍କ ସମସ୍ତ କାର୍ଯ୍ୟ ଉଦ୍ଦେଶ୍ୟପୂର୍ଣ୍ଣ । ସେ ଜୀବମାନଙ୍କୁ ଭକ୍ତି ଶିକ୍ଷାଦେବେ । ଏହା ତାଙ୍କର

ଅବତାରର ଏକ ହେତୁ । ଅତଏବ ଏହି ଏକଲାବାଦ୍ୱାରା ସେ ଯୁଗ ଯୁଗାନ୍ତର ପାଇଁ ଏକ ପ୍ରଧାନ ଶିକ୍ଷା ଛାଡ଼ିଯାଇ ପାଇଁ ରଖିଗଲେ । ଏହି ଘଟନାଦ୍ୱାରା ସମସ୍ତ ଭକ୍ତଙ୍କର ଏହି ବିଶ୍ୱାସ ଦୃଢ଼ୀଭୂତ ହେବ ଯେ ପ୍ରେମିକ ଭକ୍ତ ତାଙ୍କୁ ପ୍ରାଣପଣ ଡାକିଲେ ସେ ନିଶ୍ଚୟ ସେଠାରେ ଆସି ଉପସ୍ଥିତ ହୁଅନ୍ତି ।

ଅପାର କୃପା ପ୍ରଦର୍ଶନ ପୂର୍ବକ ମହାପ୍ରଭୁ ଯେ ଭକ୍ତମାନଙ୍କ ଅନ୍ତରର ଡ଼ାକଶୁଣି ସେମାନଙ୍କ ନିକଟରେ ଶୀଘ୍ର ଆସି ଉପସ୍ଥିତ ହୁଅନ୍ତି ଶ୍ରୀରଘୁନାଥ ଦାସଙ୍କ ଜୀବନୀରୁ ଏହାର ଏକ ଉଦାହରଣ ନିମ୍ନରେ ଉଲ୍ଲେଖ କଲି ।

ଶ୍ରୀରଘୁନାଥ ଦାସ ବିଷୟବାସନା ଏକାବେଳକେ ତ୍ୟାଗକରି ମହାପ୍ରଭୁଙ୍କ ଶ୍ରୀଚରଣ ଲାଭରେ ଏକାନ୍ତ ଉତ୍କଣ୍ଠିତ । ସେ ଶୁଣିଲେ ଯେ ଶ୍ରୀମନ୍ ପ୍ରଭୁ ନିତ୍ୟାନନ୍ଦ ପାଣିହାଟିକୁ ଆସି ଅଛନ୍ତି । ତାଙ୍କର କୃପାଭିକ୍ଷା କରିବା ମାନସରେ ଶ୍ରୀରଘୁନାଥ ଦାସ ସେଠାକୁ ଦଉଡ଼ିଲେ । ଯାଇ ଦେଖିଲେ ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ଗଣ ସହ ଗଙ୍ଗାତୀରରେ ତରୁ ମୂଳରେ ପିଣ୍ଡି ଉପରେ ଉପବେଶନ କରି ଅଛନ୍ତି । ସୂର୍ଯ୍ୟସମ ତେଜ ତାଙ୍କ ଶ୍ରୀଅଙ୍ଗରୁ ନିଃସୃତ ହେଉଅଛି । ଶ୍ରୀରଘୁନାଥ ପ୍ରଭୁଙ୍କ ଦର୍ଶନ ପାଇ ଆନନ୍ଦବିହ୍ୱଳ ହୋଇ ଦୂରରୁ ପ୍ରଣାମ କଲେ । ସେବକ ଗଣ ପ୍ରଭୁଙ୍କୁ କହିଲେ "ପ୍ରଭୋ" ରଘୁନାଥ ଆପଙ୍କୁ ପ୍ରଣାମ କରୁଅଛି । ରଘୁନାଥଙ୍କୁ ଦେଖି ଆନନ୍ଦ ଅନ୍ତଃକରଣରେ ନିତ୍ୟାନନ୍ଦ ତାଙ୍କୁ ସମ୍ବୋଧନ ପୂର୍ବକ କହିଲେ "ଚୋର ଏବେ ଦେଖା ଦେଲୁ ପରା । ଆସ ଆସ ତୋରଦଣ୍ଡ ବିଧାନ କରିବି ।" ରଘୁନାଥ ଦାସ ଲଜ୍ଜିତ ହୋଇ ନିକଟକୁ ଯାଇ ନଥାନ୍ତି । ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ବଳେ ବଳେ ତାଙ୍କୁ ଆକର୍ଷଣ କରି ତାଙ୍କ ମସ୍ତକରେ ଚରଣ ଅର୍ପଣ କଲେ ଏବଂ କହିଲେ "ରଘୁନାଥ" ତୁ ଚୋରପରି ଲୁଚି ଲୁଚି ବୁଲୁଅଛୁ । ଆଜି ମୋର ଗଣଙ୍କୁ ଦହି ଚୂଡ଼ା ଭୋଜନ କରା ଏହି ତୋର ଦଣ୍ଡ । ପ୍ରଭୁ ଶ୍ରୀ ନିତ୍ୟାନନ୍ଦଙ୍କର ଏହି ସ୍ନେହ ସୂଚକ ବାକ୍ୟ ଶୁଣି ରଘୁନାଥଦାସଙ୍କର ଆନନ୍ଦର ପରିସୀମା ରହିଲା ନାହିଁ । ସେ ପ୍ରଭୁଙ୍କର ଏକ ସେବାପାଇଲେ ବୋଲି ନିଜକୁ ସୌଭାଗ୍ୟଶାଳୀ ମନେକଲେ ଏବଂ ସଙ୍ଗର ପରିଜନମାନଙ୍କୁ ନିକଟସ୍ଥ ଗ୍ରାମମାନଙ୍କରୁ ଦୁଧ, ଦହି, ଚୂଡ଼ା, ଚିନି, ପାଚିଲାକଦଳୀ, ସନ୍ଦେଶମାନ

ଆଣାଇବାକୁ ଆଦେଶ କଲେ । ସେମାନେ ଯାଇ ଗ୍ରାମମାନଙ୍କରୁ ବହୁ ପରିମାଣରେ ଭକ୍ଷ୍ୟଦ୍ରବ୍ୟମାନ ଆଣାଇଲେ । ରଘୁନାଥ ଦାସ ଚୂଡ଼ା ମହୋତ୍ସବ କରାଉ ଅଛନ୍ତି ଏହି ବାର୍ତ୍ତା ପ୍ରଚାରିତ ହୁଅନ୍ତେ ଅନେକ ବ୍ରାହ୍ମଣ, ବୈଷ୍ଣବ ଓ ଅପରାପର ଲୋକ ଆସି ଉପସ୍ଥିତ ହେଲେ । ଚୂଡ଼ାକୁ ଧୌତ କରାଇ ବଡ଼ ବଡ଼ ମୃତପାତ୍ରରେ କେତେକ ଦଧିସଙ୍ଗେ ଓ କେତେକ ଦୁଗ୍ଧସଙ୍ଗେ ମିଶାଇଲେ । ଚିନି ଓ ପାଚିଲାକଦଳୀ ତହିଁରେ ମିଶ୍ରିତ କରି ଉତ୍କୃଷ୍ଟ ଖାଦ୍ୟ ପ୍ରସ୍ତୁତ କଲେ ।

ତତ୍ପରେ ସାତଗୋଟି ପାତ୍ରରେ ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କ ପାଇଁ ପିଣ୍ଡି ଉପରେ ସଜାଡ଼ି ରଖିଲେ । ଚଉତରା ଉପରେ ପ୍ରଭୁଙ୍କର ନିଜଗଣ ମଣ୍ଡଳୀ ବନ୍ଧନକରି ବସନ୍ତେ, ପ୍ରତ୍ୟେକ ଲୋକଙ୍କ ପାଖରେ ଦୁଇଗୋଟି ଲେଖାଏଁ ମୃତ୍ପାତ୍ର ରଖି ଏକପାତ୍ରରେ ଦୁଗ୍ଧ ଚୂଡ଼ା ଏକ ପାତ୍ରରେ ଦହିଚୂଡ଼ା ଦିଆଇଲେ । ଅପର ସମସ୍ତ ଲୋକଙ୍କୁ ଧାଡ଼ି ଧାଡ଼ି କରି ବସାଇ ପ୍ରତ୍ୟେକ ଲୋକଙ୍କୁ ଉକ୍ତ ପ୍ରକାରର ଦୁଇପାତ୍ର ଅର୍ପିତ ହେଲା । ଏତେ ଅଧିକ ଲୋକ ସମାଗତ ହୋଇଥିଲେ ଯେ ସ୍ଥାନାଭାବରୁ କାହାର କାହାରିକୁ ଗଙ୍ଗା ମଧ୍ୟରେ ଠିଆ ହୋଇ ଚୂଡ଼ାଦହି ଭୋଜନ କରିବାକୁ ହୋଇଥିଲା । କୋଡ଼ିଏ ଜଣ ଲୋକ ପରିବେଷଣ କରିବାକୁ ଲାଗିଲେ । ରାଘବ ପଣ୍ଡିତ କେତେକ ନିଯୁକ୍ତ ପ୍ରସାଦ ସଙ୍ଗେ ଆସି ସେଠାରେ ଉପସ୍ଥିତ ହେଲେ । ପ୍ରଭୁ ଶ୍ରୀନିତ୍ୟାନନ୍ଦଙ୍କୁ କିଛି ଦେଇ ଅବଶିଷ୍ଟ ସମସ୍ତ ଭୋଗ ଅପର ସମସ୍ତଙ୍କୁ ବଣ୍ଟାଇ ଦେଲେ । ସମସ୍ତଙ୍କୁ ଚୂଡ଼ା ପରିବେଷଣ ସମାପ୍ତ ହୁଅନ୍ତେ ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ଧ୍ୟାନରେ ମହାପ୍ରଭୁଙ୍କୁ ସେଠାକୁ ଆହ୍ୱାନ କଲେ । ନିତ୍ୟାନନ୍ଦଙ୍କ ଆକର୍ଷଣରେ ଶ୍ରୀରଘୁନାଥ ଦାସଙ୍କୁ କୃପାକରି ସମସ୍ତ ଲୋକଙ୍କ ଅଲକ୍ଷିତରେ ମହାପ୍ରଭୁ ସେଠାରେ ଆସି ଉପସ୍ଥିତ ହେଲେ । ମହାପ୍ରଭୁଙ୍କୁ ଉପଗତ ଦେଖି ଶ୍ରୀମନ୍ ନିତ୍ୟାନନ୍ଦପ୍ରଭୁ ଆସନରୁ ଉଠି ମହାପ୍ରଭୁଙ୍କ ସଙ୍ଗେ ନେଇ ସମସ୍ତଙ୍କ ପରିବେଷିତ ଚୂଡ଼ା ପରିଦର୍ଶନ କରିବାକୁ ଲାଗିଲେ । ପ୍ରତ୍ୟେକ ପାତ୍ରରୁ ଏକ ଏକ ଗ୍ରାସ ମହାପ୍ରଭୁଙ୍କ ମୁଖରେ ଦେବାକୁ ଲାଗିଲେ । ମହାପ୍ରଭୁ ରଘୁନାଥଙ୍କ ପ୍ରତି ଅଶେଷ କୃପା ପ୍ରକାଶ ପୂର୍ବକ ହସି ହସି ତାହା ଭୋଜନ କରିବାକୁ ଲାଗିଲେ । କିନ୍ତୁ ଶ୍ରୀମନ୍ ନିତ୍ୟା-

ନିତ୍ୟାନନ୍ଦ ପ୍ରଭୁ ଯେ କି ଭାବରେ ପ୍ରତ୍ୟେକଙ୍କ ଲୋକ ଅଗ୍ରରେ ଭ୍ରମଣ କରୁଅଛନ୍ତି, ଏହା କେହି ବୁଝି ପାରିଲେ ନାହିଁ । କେବଳ କେହି କେହି ମହା ସୌଭାଗ୍ୟଶାଳୀ ବ୍ୟକ୍ତି ମହାପ୍ରଭୁଙ୍କର ଆଗମନ ଓ ଚିଡ଼ା ଭୋଜନ ଅନୁଭବ କରିପାରିଲେ । ଶ୍ରୀମନ୍ ନିତ୍ୟାନନ୍ଦ ଏହିରୂପେ ଭ୍ରମଣ ଶେଷ କରି ଅନ୍ତରେ ଉପବେଶନ କଲେ ଏବଂ ମହାପ୍ରଭୁଙ୍କୁ ନିଜ ଦକ୍ଷିଣ ପାର୍ଶ୍ୱରେ ବସାଇ ଦୁଇକୁଣ୍ଡ ଦୁଧ ଚିଡ଼ା ଓ ଦଧିଚିଡ଼ା ତାଙ୍କ ସମ୍ମୁଖରେ ରଖିଲେ ଏବଂ ଦୁଇ ଭାଇ ପରମାନନ୍ଦରେ ଭୋଜନ କରିବାକୁ ଲାଗିଲେ । ଭୋଜନ କାଳରେ ଜୟ ହରି ଧ୍ୱନିରେ ଭୁବନ ଗଗନ ନିନାଦିତ ହେଲା । ଏହି ଭୋଜନରେ ପ୍ରଭୁ ନିତ୍ୟାନନ୍ଦ ଓ ତାଙ୍କର ଗଣ ସକଳ ଶ୍ରୀ ବୃନ୍ଦାବନର ପୁଳିନ ଭୋଜନ ସୁଖ ଅନୁଭବ କରି-ବାକୁ ଲାଗିଲେ । ଭୋଜନାନ୍ତେ ଶ୍ରୀ ନିତ୍ୟାନନ୍ଦ, ନିଜର ଓ ମହାପ୍ରଭୁଙ୍କର ଭୁକ୍ତାବଶେଷ ରଘୁନାଥଙ୍କୁ ଅର୍ପଣ କଲେ । ଭୋଜନାନ୍ତେ ଫୁଲମାଳ ଓ ଚନ୍ଦନ ପ୍ରଭୁ ନିଜେ ଆଗେ ଗ୍ରହଣ କରି ସମସ୍ତଙ୍କୁ ବିତରଣ କରାଇ ଦେଲେ । ଏ ମହୋତ୍ସବାନ୍ତେ ଶ୍ରୀରାଘବ ପଣ୍ଡିତଙ୍କ ଗୃହରେ କୀର୍ତ୍ତନ ଆରମ୍ଭ ହେଲା । ଭକ୍ତମାନଙ୍କୁ ନେଇ ପ୍ରଭୁ ନିତ୍ୟାନନ୍ଦ ଅତି ମଧୁର ନୃତ୍ୟ କରିବାକୁ ଲାଗିଲେ । ସେ ନୃତ୍ୟର କି ଉପମା ଦିଆଯାଇ ପାରେ । ମହାପ୍ରଭୁ ଉପସ୍ଥିତ ଥାଇ ଶ୍ରୀନିତ୍ୟାନନ୍ଦଙ୍କ ଅଦ୍ଭୁତ ନୃତ୍ୟ ଦର୍ଶନ କରିବାକୁ ଲାଗିଲେ । କବିରାଜ ଗୋସ୍ୱାମୀ ସେ ନୃତ୍ୟକୁ ବର୍ଣ୍ଣନ କରି ନପାରି କହିଅଛନ୍ତି ।

ନିତ୍ୟାନନ୍ଦେର ନୃତ୍ୟ ଯେନ ତାହାରି ନର୍ତ୍ତନ,
ଉପମାଦିବାରେ ନାହିଁ ଏତିନ ଭୁବନ ।
ନୃତ୍ୟେର ମାଧୁରୀ କେବା ପାରେ ବର୍ଣ୍ଣିବାରେ
ମହାପ୍ରଭୁ ଆଇସେ ଯାର ନୃତ୍ୟ ଦେଖିବାରେ ।

( ଚୈ: ଚ: ଅନ୍ତ୍ୟ ଷଷ୍ଠ ପରି )

ନୃତ୍ୟାନ୍ତେ ପ୍ରଭୁନିତ୍ୟାନନ୍ଦ ରାଘବ ପଣ୍ଡିତଙ୍କ ଗୃହରେ ଭୋଜନ କଲେ ଓ ସେଠାରେ ମଧ୍ୟ ମହା ପ୍ରଭୁଙ୍କ ନିମିତ୍ତ ଦକ୍ଷିଣରେ ଏକ ଆସନ ପକାଇଲେ ।

ମହାପ୍ରଭୁ ଅଲକ୍ଷିତରେ ସେଠାରେ ଉପବେଶନ କଲେ । ଅପର ଲୋକ ତାହା ଦେଖି ପାରି ନଥିଲେ କିନ୍ତୁ ଶ୍ରୀରାଘବପଣ୍ଡିତ ତାହା ଲକ୍ଷକରି ପରମାନନ୍ଦ ଲାଭ କଲେ । ସେ ପ୍ରସାଦର ସ୍ୱାଦୁ କଣ ବର୍ଣ୍ଣନ କରିବ । କବିରାଜ ଗୋସ୍ୱାମୀ କହିଅଛନ୍ତି ।—

ରାଘବଠାକୁରେର ପ୍ରସାଦ ଅମୃତେର ସାର
ମହାପ୍ରଭୁ ଯାହା ପାଇତେ ଆଇସେ ବାରବାର ।
( ଚୈ: ଚ: ଅନ୍ତ୍ୟ ୬ଷ୍ଠ ପରି )

ପ୍ରଭୁଙ୍କର ଭୋଜନାନ୍ତେ ଶ୍ରୀରାଘବ ପଣ୍ଡିତ ସେ ଦୁଇଭାଇଙ୍କ ଅଧରାମୃତ ପାନ ରଘୁନାଥ ଦାସଙ୍କୁ ଅର୍ପଣ କଲେ ଏବଂ କହିଲେ " ବତ୍ସ ! ମହାପ୍ରଭୁ ସ୍ୱୟଂ ଆସି ଏହା ଭୋଜନ କରି ଅଛନ୍ତି । ତାଙ୍କ ଭୁକ୍ତାବଶେଷ ତୁମ୍ଭେ ଆଜି ଭୋଜନ କଲ । ଅତଏବ ତୁମର ସମସ୍ତ ବିଷୟବନ୍ଧନ ଅନ୍ତରରୁ ଛୁଟି ଗଲା । ମହାପ୍ରଭୁଙ୍କ ଏହି ଅପୂର୍ବ ଲୀଳାକୁ ଲକ୍ଷ୍ୟକରି ଶ୍ରୀଳ କବିରାଜ ଗୋସ୍ୱାମୀ ଲେଖିଅଛନ୍ତି ।

ଭକ୍ତ ଚିତ୍ତେ, ଭକ୍ତ ଗୃହେ ପ୍ରଭୁର ସଦା ଅବସ୍ଥାନ
କଭୁ ଗୁପ୍ତ କଭୁ ବ୍ୟକ୍ତ ସ୍ୱତନ୍ତ୍ର ଭଗବାନ ।
ସର୍ବତ୍ରବ୍ୟାପକ ପ୍ରଭୁ ସଦା ସର୍ବତ୍ର ବାସ
ଇହାତେ ସଂଶୟ ଯାର ସେଇ ଯାଏ ନାଶ ।
( ଚୈ: ଚ: ଅନ୍ତ୍ୟ ୬ଷ୍ଠ ପରି )

ମହାପ୍ରଭୁ ଗୁଣଗ୍ରାହୀ । ସେ ଲୋକର ଦୋଷ ଗ୍ରହଣ କରନ୍ତି ନାହିଁ । କିନ୍ତୁ ସାମାନ୍ୟ ଗୁଣକୁ ଅତି ଆଦରର ସହ ଗ୍ରହଣ କରନ୍ତି । ମହାପ୍ରଭୁ ଭକ୍ତମାନଙ୍କର ଦୁଃଖମାନ ଅଶୁ ବିମୋଚନ କରନ୍ତି । ମହାପ୍ରଭୁଙ୍କର ଏହି ଗୁଣକୁ ଲକ୍ଷ୍ୟ କରି ଶ୍ରୀଲବୃନ୍ଦାବନ ଦାସ କହିଅଛନ୍ତି ।

ପ୍ରଭୁ ସେ ଜାନେନ ଭକ୍ତ ଦୁଃଖ ଖଣ୍ଡାଇତେ
ହେନ ପ୍ରଭୁ ଦୁଃଖୀ ଜୀବ ନା ଭଜେ କେମତେ ।
କରୁଣା ସାଗର ଗୌରଚନ୍ଦ୍ର ମହାଶୟ
ଦୋଷ ନାହିଁ ଦେଖେ ପ୍ରଭୁ ଗୁଣ ମାତ୍ର ଲୟ ।
( ଚୈ: ଭା: )

ଜୀବ ଯେ ଏମନ୍ତ ଗୁଣଗ୍ରାହୀ ମହାପ୍ରଭୁଙ୍କୁ କପରି ଭୁଲି ରହନ୍ତି ଶ୍ରୀଲ ବୃନ୍ଦାବନ ଦାସ ଏଥିରେ ଅଧୈର୍ଯ୍ୟ ଭାବ ପ୍ରକାଶ କରିଅଛନ୍ତି । ଗୌରଗତ ଜୀବନ ଶ୍ରୀ ବୃନ୍ଦାବନ ଦାସଙ୍କର ଏଥିରେ ଅଧୈର୍ଯ୍ୟ ହେବାର କଥା । କିନ୍ତୁ ଆମ୍ଭେମାନେ ସତତ ଧନ, ଜନ, ଦାରା, ସୁତରେ ମାତି ମହାପ୍ରଭୁଙ୍କୁ ଭୁଲି ରହିଅଛୁଁ ।

ଆମ୍ଭମାନଙ୍କର ଶ୍ରୀଭଗବାନଙ୍କୁ ସେରୂପ ଭୁଲି ରହିବା ଉଚିତ ନୁହେ । ତାଙ୍କୁ ସ୍ମରଣ କରିବାହିଁ ଆମ୍ଭମାନଙ୍କ ପକ୍ଷରେ ଉଚିତ । ମହାପ୍ରଭୁଙ୍କର ଗୁଣ ଗ୍ରାହି-ତାର ଗୋଟିଏ ପ୍ରମାଣ ନିମ୍ନରେ ପ୍ରଦର୍ଶିତ ହେଲା । ଶ୍ରୀରୂପ ଗୋସ୍ୱାମୀ ପୁରୁ-ଷୋତ୍ତମକୁ ଆସି ଠାକୁର ଶ୍ରୀହରିଦାସଙ୍କ ସଙ୍ଗେ ତାଙ୍କ କୁଟୀରରେ ବାସ କରୁଥିଲେ । ସେ ସେହି ସମୟରେ ଲଳିତ ମାଧବ ଓ ବିଦଗ୍ଧ ମାଧବ ନାଟକ ଲେଖୁଥିଲେ । ଏକ ଦିନକରେ ସେ ନାଟକ ଲେଖୁଅଛନ୍ତି ଓ ଠାକୁର ଶ୍ରୀହରିଦାସ ତାଙ୍କ ପାଖରେ ବସି ହରି ନାମ ଜପ କରୁଅଛନ୍ତି ଏମନ୍ତ ସମୟରେ ମହାପ୍ରଭୁ ଆସି ସେଠାରେ ଉପସ୍ଥିତ ହେଲେ । ଗଦାଧର ପଣ୍ଡିତ କହିଲେ " ପ୍ରଭୋ ! ଆପଣ ଯେଉଁଠାରେ ବିଦ୍ୟମାନ ରହିବେ ସେ କି ନୀଳାଚଳ ନୁହେଁ । ହେଉ, କ୍ଷେତ୍ରସନ୍ନ୍ୟାସରୂପ ବ୍ରତ ପଛେ ମୋର ଭଙ୍ଗ ହେଉ, ମୁଁ ଆପଣଙ୍କୁ ଛାଡ଼ି ରହି ପାରିବି ନାହିଁ । "

ମହାପ୍ରଭୁଙ୍କୁ ଉପଗତ ଦେଖି ସେ ଦୁହେଁ ଉଠି ପ୍ରଣାମ କଲେ । ମହାପ୍ରଭୁ ସେ ଦୁହିଁଙ୍କି ପ୍ରେମାଲିଙ୍ଗନ ଦାନ କରି ଆସନରେ ଉପବେଶନ କଲେ ଏବଂ ରୂପଗୋସ୍ୱାମୀଙ୍କର ଲେଖୁଥିବା ପୋଥିର ଏକ ପତ୍ର ଟାଣିନେଇ ସେଥିରେ ଲିଖିତ ଅକ୍ଷରକୁ ସ୍ତୁତି କରିବାକୁ ଲାଗିଲେ । ଯଥା —

ତାହାଁ ପୁଥି ଲେଖ ବନ୍ଧ ଏକ ପତ୍ର ନିଲ
ଅକ୍ଷର ଦେଖିଯା ପ୍ରଭୁ ମନେ ସୁଖୀ ହୈଲ ।
ଶ୍ରୀରୂପେର ଅକ୍ଷର ଯେନ ମୁକୁତାର ପାନ୍ତି
ପ୍ରୀତ ହଞା କରେ ପ୍ରଭୁ ଅକ୍ଷରେର ସ୍ତୁତି ।

( ଚୈଃ ଚଃ ଅନ୍ତ୍ୟ ୧ମ ପରି )

ସୁତରାଂ ଶ୍ରୀ ଭଗବାନ ଶ୍ରୀଗୌରଚନ୍ଦ୍ର ଭକ୍ତମାନଙ୍କର ଯେ ଗୁଣ ଗ୍ରହଣ କରିଥିବେ ସେଥିରେ ଆଉ ବିଚିତ୍ରତା କି ଅଛି । ସେ ସ୍ୱୟଂ ନିଜେ ସେହି ଭକ୍ତମାନଙ୍କର ସେବା କରି ସେମାନଙ୍କ ଆଶୀର୍ବାଦପର୍ଯ୍ୟନ୍ତ ସାଦରେ ଗ୍ରହଣ କରୁଥିଲେ ।

ସାଜବତେ ଯତ ବଡ଼ ଲଜ୍ଜା ନାହିଁ କରେ
ସମ୍ମାନ ବୈଷ୍ଣବଗଣ ହାତେ ଅର୍ଥ ଧରେ ।
ଦେଖି ବିଶ୍ୱମ୍ଭରେର ବିନୟ ଭକ୍ତଗଣ
ଅଲକ୍ଷିତରେ ଆଶୀର୍ବାଦ କରେ ସର୍ବକ୍ଷଣ ।
ଭକ୍ତ ଆଶୀର୍ବାଦ ପ୍ରଭୁ ଶିରେ କରି ଲୟ
ଭକ୍ତ ଆଶୀର୍ବାଦେ ସେ କୃଷ୍ଣେତେ ଭକ୍ତି ହୟ ।
( ଚୈଃ ଭାଃ ମଧ ୨ୟ ଅ )

ଯେ କେହି ଲୋକ ଯେ କୌଣସି ପ୍ରକାରରେ ମହାପ୍ରଭୁଙ୍କ ସଂସର୍ଗକୁ ଆସିଥିଲେ ସେମାନେହିଁ ମହାଭାଗ୍ୟବାନ । ଏମନ୍ତ କି ଦୁଷ୍ଟବୃତ୍ତିପୂର୍ଣ୍ଣ ଚୋରମାନେ ମଧ ମହାପ୍ରଭୁଙ୍କ ବାଲ୍ୟକାଳରେ ତାଙ୍କ ଶ୍ରୀଅଙ୍ଗରେ ଅଳଙ୍କାର ଦେଖି ଚୋରି କରିବା ଅଭିପ୍ରାୟରେ ତାଙ୍କୁ ସ୍କନ୍ଧରେ ବହନ କରି ନେଇ ବୈଷ୍ଣବୀ ମାୟାରେ ପଥଭ୍ରଷ୍ଟ ହୋଇ ପ୍ରଭୁଙ୍କ ନିଜ ଗୃହ ସମ୍ମୁଖକୁ ଆସି ତାଙ୍କୁ ଅବତରଣ କରାଇଲେ ଏବଂ ଅଳଙ୍କାର ଖୋଲିବାକୁ ଯାଇ ଦେଖିଲେ ଏ ସେମାନଙ୍କ ନିଜ ଘର ନୁହେଁ, ମହାପ୍ରଭୁଙ୍କର ଘର । ଅତଏବ ସେମାନେ ଭୟରେ ବ୍ୟସ୍ତ ହୋଇ ପଳାଇ ଗଲେ ' କିନ୍ତୁ ସେମାନେ ଯେ ମହାପ୍ରଭୁଙ୍କୁ ସ୍କନ୍ଧରେ ବହନ କରିଥିଲେ ଏହି ସଂସର୍ଗ ପ୍ରଭାବରୁ ସେମାନଙ୍କର ଭକ୍ତି ଉଦୟ ହେଲା ସେମାନଙ୍କ ସମ୍ବନ୍ଧରେ ଶ୍ରୀଲବୃନ୍ଦାବନ କହିଅଛନ୍ତି ।

ପରମାର୍ଥେ ଦୁଇ ଚୋର ମହାଭାଗ୍ୟବାନ୍
ନାରାୟଣ ଯାର ସ୍କନ୍ଧେ କରିଲା ଉତ୍ଥାନ ।
( ଚୈଃ ଭାଃ ୪ର୍ଥ ଅ)

ଯେଉଁ ବିଶ୍ୱମ୍ଭରଙ୍କର ଭକ୍ତିଶୂନ୍ୟ ଚୋରମାନଙ୍କ ପ୍ରତି ଏଡ଼େ ଦୟା ସେ ଯେ ଅଲକ୍ଷିତରେ ଭକ୍ତମାନଙ୍କ ପ୍ରତି ଅନୁଗ୍ରହ କରିବେ ତହିଁରେ ଆଉ ବିଚିତ୍ରତା କି ଅଛି ।

ମହାପ୍ରଭୁଙ୍କ ଅଗ୍ରଜ ଶ୍ରୀମାନ୍ ବିଶ୍ୱରୂପ ଭକ୍ତିଚର୍ଚ୍ଚା କରିବାପାଇଁ ସତତ ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କ ସଭାକୁ ଯାଉଥିଲେ । ସେଠାରେ ସକଳେ କୃଷ୍ଣ କଥାରେ ସତତ ବିହ୍ୱଳ । ତେଣୁ ବିଶ୍ୱରୂପଙ୍କର ଗୃହକୁ ଅସିବା ଡେରି ହେଉଥିଲା । ଶ୍ରୀମତୀ ଶଚୀ ତାଙ୍କୁ ଭୋଜନାର୍ଥ ଡାକି ଅଣିବା ପାଇଁ ତାଙ୍କ କନିଷ୍ଠ ନିମାଇଙ୍କୁ ପଠାଉଥିଲେ । ଦିଗମ୍ବର ଶିଶୁ ନିମାଇଁ ଯେ ସଭାରେ ଉପସ୍ଥିତ ହୁଅନ୍ତେ ସେଠାରେ ଉପସ୍ଥିତ ଭକ୍ତବୃନ୍ଦ ଚକିତ ନୟନରେ ସେହି ବାଳକ ଅଙ୍ଗକୁ ଏକ ଦୃଷ୍ଟିରେ ଗ୍ରହିଁଥିଲେ । ନିମାଇଁଙ୍କ ରୂପ ଲାବଣ୍ୟ ଓ ବାଲ୍ୟ ଭଙ୍ଗିରେ ସେମାନେ ଶ୍ରୀକୃଷ୍ଣଙ୍କୁ ଭୁଲି ଯାଉଥିଲେ । ଶ୍ରୀଲବୃନ୍ଦାବନଦାସ ତେଣୁ ଲେଖି ଅଛନ୍ତି ।

ପ୍ରଭୁ ଦେଖି ଭକ୍ତ ମୋହ ସ୍ୱଭାବେଇ ହୟ
ଦିନ ଅନୁଭବେଓ ଦାସେର ଚିତ୍ତଲୟ ।

(ଚୈଃ ଭାଃ ଆଦ ୭ମ ଅ)

ଭକ୍ତଗଣ ସେତେବେଳେ କିଛି ଜାଣି ନ ଥିଲେ ଏ ଧୂଳି ଧୂସରିତ ଦିଗମ୍ବର ଶିଶୁଟି ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣ । କିନ୍ତୁ ଭଗବାନ ନିଜ ଗୁଣରେ ଭକ୍ତମାନଙ୍କ ଚିତ୍ତକୁ ଆକର୍ଷଣ କରୁଥିଲେ । ବାଳ ଗୋପାଳ ଶ୍ରୀକୃଷ୍ଣଙ୍କ ପ୍ରତି ଗୋପ ଗୋପୀମାନଙ୍କର ଏହି ରୂପ ସ୍ୱାଭାବିକ ଆକର୍ଷଣ ବିଷୟ ଶୁକଦେବ ଗୋସ୍ୱାମୀ ଶ୍ରୀମଦ୍ଭାଗବତରେ ବର୍ଣ୍ଣନ କରିଅଛନ୍ତି ।

ଏତ ଗଲା ବୁଦ୍ଧି ଜୀବୀ ସଦ୍‌ଜ୍ଞାନ ବିଶିଷ୍ଟ ମନୁଷ୍ୟମାନଙ୍କ କଥା । ଶ୍ରୀଲ ବୃନ୍ଦାବନଦାସ ଆହୁରି କହି ଅଛନ୍ତି ଯେ ପଶୁପକ୍ଷୀ ହୋଇ ଯେ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ନାମ ନେବ ସେ ମଧ୍ୟ ତାଙ୍କର ନିଜ ଧାମ ପ୍ରାପ୍ତ ହେବ । ଯଥା —

ପକ୍ଷୀ ମାତ୍ର ଯଦି ଲୟ ଚୈତନ୍ୟେର ନାମ
ସେଇ ସତ୍ୟ ଯାଇବେକ ଚୈତନ୍ୟେର ଧାମ ।

ମହାପ୍ରଭୁ ଝାଡ଼ିଖଣ୍ଡପଥରେ ଶ୍ରୀବୃନ୍ଦାବନକୁ ଯିବା ସମୟରେ ହିଂସ୍ର ଜନ୍ତୁମାନଙ୍କର ଯେ ପ୍ରେମ ପ୍ରକାଶ, ପଶୁ ପକ୍ଷୀ ମାନଙ୍କର ଯେ ହରିନାମ ଗ୍ରହଣ ପୂର୍ବକ ନୃତ୍ୟ ତାହା ଏହି ଉକ୍ତି ସମର୍ଥନର ଉତ୍ତମ ପ୍ରମାଣ ।

ହାୟ ! ମୁଁ ସେହି ଝାଡ଼ଖଣ୍ଡ ପ୍ରଦେଶରେ ବର୍ତ୍ତମାନ ରହି ଏହା ଲେଖୁଅଛି କିନ୍ତୁ ଦୁରଦୃଷ୍ଟ ବଶତଃ ମୋର କଠିନ ହୃଦୟତ ତାହିଁ କେଶମାତ୍ର ଦ୍ରବୀଭୂତ ହେଉନାହିଁ । ହେ କରୁଣାମୟ ମହାପ୍ରଭୁ ! ତୁ ଏହି ଝାଡ଼ଖଣ୍ଡର ପଶୁ ପକ୍ଷୀ-ମାନଙ୍କୁ ଯେ ଅଦ୍ଭୁତ ପ୍ରେମ ବିତରଣ କରି ହରିନାମରେ ଉନ୍ମତ୍ତ କରଇଥିଲୁ ସେ ପ୍ରେମରୁ କଣାମାତ୍ର କି ମୋତେ ଦେବୁନାହିଁ । ମୁଁ କି ମନୁଷ୍ୟ ହୋଇ ପତିତ ପଶୁଠାରୁ ହୀନ ପ୍ରବୃତ୍ତି ଧାରଣ କରି ରହିଥିବି । ମୋର ଏ ଅଶ୍ରୁ ତୋର କର୍ଣ୍ଣଯ୍ୟରେ ଥରେ ମାତ୍ର ପ୍ରବେଶ କରୁ ନାହିଁ । ନା ଶାସ୍ତ୍ରରେ ଶୁଣିଛି ତୁ ପୁଷ୍ପଠାରୁ ଅଧିକ କୋମଳ ହେଲେ ମଧ୍ୟ ସମୟ ସମୟରେ ବଜ୍ରଠାରୁ ଅଧିକ କଠୋରଭାବ ଧାରଣ କରୁ ।

ଏହି କାଠିନ୍ୟ ହେତୁ ତୁ ସ୍ନେହମୟୀ ଜନନୀ ଶଚୀଦେବୀ ଓ ପ୍ରାଣସମ ଭାର୍ଯ୍ୟା ବିଷ୍ଣୁପ୍ରିୟାଙ୍କୁ ପରିତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିଥିଲୁ । ଏହି କାଠିନ୍ୟ ହେତୁ ତୁ ସାର୍ବଭୌମରୂପ ପ୍ରିୟ ଭକ୍ତଙ୍କୁ ପରିତ୍ୟାଗକରି ନୀଳାଚଳ ଛାଡ଼ି ଦକ୍ଷିଣ ଦେଶକୁ ଗମନ କରିଥିଲୁ, ଏବଂ ତୋର ସେକାଳର କଠିନ ସ୍ୱଭାବକୁ ଲକ୍ଷ୍ୟ କରି ଶ୍ରୀଲ କବିରାଜ ଗୋସ୍ୱାମୀ ଲେଖିଥିଲେ ।

ମହାନୁଭାବେର ଚିତ୍ତେର ସ୍ୱଭାବ ଏଇ ହୟ
ପୁଷ୍ପସମ କୋମଳ, କଠିନ ବଜ୍ରମୟ ।

ସେ ସବୁ କାଠିନ୍ୟର ଅଭ୍ୟନ୍ତରରେ ଉଚ୍ଚ ଉଦ୍ଦେଶ୍ୟ ନିହିତ ଥିଲା । କିନ୍ତୁ ମୋ ପ୍ରତି ଯେ କାଠିନ୍ୟ ଏଥିରେତ ସେରୂପ ଗଭୀର ଉଦ୍ଦେଶ୍ୟ କିଛି ଦେଖୁ ନାହିଁ । ଏଥିରେ ଯେ ତୋର ଦୟାସାଗର, କ୍ଷମାସାଗର, ପତିତପାବନ ପ୍ରଭୃତି ନାମର କଳଙ୍କ ହେବ । ହେଉ ଇଚ୍ଛାମୟ ଭଗବାନ ଗୌରଚନ୍ଦ୍ର, ତୋର ଉଦ୍ଦେଶ୍ୟ ତୋତେହିଁ ଜଣା । ମୁଁ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ପ୍ରଭୃତି ରିପୁଗଣଙ୍କ ଆକ୍ରମଣରେ ବଶ ହୋଇଅଛି । ତୋର ସେ ଉଦ୍ଦେଶ୍ୟ କି ବୁଝିବି ।

ମହାପ୍ରଭୁଙ୍କର ମାତୃଭକ୍ତି ସମ୍ବନ୍ଧରେ ଗୋଟିଏ କଥା ଉଲ୍ଲେଖ କରି ଏ ପରିଚ୍ଛେଦ ସମାପ୍ତ କରିବି । ମହାପ୍ରଭୁ ପ୍ରଥମେ କେତେକ ଭକ୍ତଙ୍କ

ଯାହା କରୁଥିଲେ । ବହୁଲୋକ ସଂଘଟ୍ଟ ହେବାରୁ ସନାତନ ଗୋସ୍ୱାମୀ ଏକ ପ୍ରହେଳିକା କହି ବିଦାୟ ନେଲେ । ମହାପ୍ରଭୁ ପରେ ମନେ ମନେ ଉକ୍ତ ପ୍ରହେଳିକାର ମର୍ମ୍ମ ବଗ୍ଧରପୂର୍ବ୍ବକ କହ୍ନେଇ ନାଟଶାଳାଠାରୁ ଶ୍ରୀବୃନ୍ଦାବନ-ଗମନରୁ ପ୍ରତିନିବୃତ୍ତ ହେଲେ ଏବଂ ନୀଳାଚଳକୁ ଫେରିବା ସମୟରେ ଯେ ଶାନ୍ତିପୁରସ୍ଥ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ଗୃହରେ କେତେକ ଦିବସ ବାସ କରିଥିଲେ । ମହାପ୍ରଭୁଙ୍କ ଜନନୀ ଶଚୀଦେବୀ ପୁତ୍ରଦର୍ଶନ ବାସନାରେ ସେଠାକୁ ଆସିଥିଲେ । ଜନନୀଙ୍କ ଆସିବା ଶୁଣି ମାତୃଭକ୍ତ ଶିରୋମଣି ଶ୍ରୀକୃଷ୍ଣଚୈତନ୍ୟ ଯାଇ ତାଙ୍କ ପାଦମୂଳରେ ପ୍ରଣତ ହେଲେ ଓ ଜନନୀଙ୍କୁ ସ୍ତୁତି ପୂର୍ବ୍ବକ ପ୍ରଦକ୍ଷିଣ କଲେ । ସେହି ସମୟରେ ମହାପ୍ରଭୁ ଜନନୀଙ୍କୁ କହିଥିଲେ " ମା ! ମୋର ଯେ କୃଷ୍ଣଭକ୍ତି ସେ କେବଳ ତୋର ପ୍ରସାଦରୁ, ତୁ ମୋତେ ଯେରୂପ ସ୍ନେହ ପୂର୍ବ୍ବକ ପ୍ରତିପାଳନ କରିଅଛୁ ତାହା ମୁଁ ପରିଶୋଧ କରି ପାରିବି ନାହିଁ, ଯଥା ।—

"ପ୍ରଭୁ ବଲେ କୃଷ୍ଣଭକ୍ତି ଯେ କିଛୁ ଆମାର
କେବଳ ଏକାନ୍ତ ସବ ପ୍ରସାଦେ ତୋମାର,
କୋଟି ଦାସ ଦାସେର ଯେ ସମ୍ବନ୍ଧ ତୋମାର
ସେଇ ଜନ ପ୍ରାଣ ହୈତେ ବଲ୍ଲଭ ଆମାର,
ବାରେକ ଯେ ଜନ ତୋମା କରିବେ ସ୍ମରଣ
ତାର କଭୁ ନହିବେକ ସଂସାର ବନ୍ଧନ,
ସକଳ ପବିତ୍ର କରେ ଯେ ଗଙ୍ଗା ତୁଳସୀ
ତାହାଓ ହଇଲେନ ଧନ୍ୟ ତୋମାରେ ପରଶି,
ତୁମି ଯତ କରିଯାଛ ଆମାର ପାଳନ
ଆମାର ଶକ୍ତିତେ ତାହା ନହିବ ଶୋଧନ,
ଦଣ୍ଡେ ଦଣ୍ଡେ ଯତ ସ୍ନେହ କରିଲେ ଆମାରେ
ତୋମାର ସଦ୍‌ଗୁଣ ସେ ତାହାର ପ୍ରତିକାରେ.

(ଚୈଃ ଭାଃ ଅନ୍ତ୍ୟ ୪ର୍ଥ (ଅ)

———

## ଷଡ଼୍‌ବିଂଶ ପରିଚ୍ଛେଦ ।

### ମହାପ୍ରଭୁଙ୍କ ସ୍ନେହ ।

ମହାପ୍ରଭୁ ସ୍ନେହର ମୂଳ ଆଧାର, ସମସ୍ତ ସ୍ନେହ ତାଙ୍କଠାରୁ ପ୍ରସୂଅଛି, ତାଙ୍କର ସ୍ନେହ ବିଷୟ କି ବର୍ଣ୍ଣନା କରାଯାଇ ପାରେ ? କେବଳ କେତେକ ବିଶେଷ ଘଟଣା ସ୍ଥଳରେ ସେ ନିଜ ପ୍ରିୟଜନମାନଙ୍କ ପ୍ରତି ଯେ ଅପାର ସ୍ନେହ ପ୍ରଦର୍ଶନ କରିଅଛନ୍ତି ତାହାର କେତେକ ଗୋଟି ଉଦାହରଣ ମାତ୍ର ଏ ପରିଚ୍ଛେଦରେ ପ୍ରଦର୍ଶିତ ହେବ ।

ମହାପ୍ରଭୁ ଶ୍ରୀଗୁଣ୍ଡିଚାଯାତ୍ରାରେ "ଯଃ କୌମାରହରଃ ଇତ୍ୟାଦି" ଗୋଟିଏ ଶ୍ଳୋକ ପାଠକରି ଶ୍ରୀଜଗନ୍ନାଥଙ୍କୁ ନିବେଦନ କରନ୍ତି ତାହା କେବଳ ସେ ଜାଣନ୍ତି, ଭାବନିଧି ଶ୍ରୀ ଗୌରାଙ୍ଗଙ୍କର ଏ ଶ୍ଳୋକର ମର୍ମ୍ମ ଅନ୍ୟ କେହି ଜାଣି ନ ଥିଲେ, ଅତୀବ ଅନ୍ତରଙ୍ଗ ହେତୁ ଏକା ଶ୍ରୀସ୍ୱରୂପ ଗୋସ୍ୱାମୀ ତାହାର ମର୍ମ୍ମ ଜାଣିଥିଲେ । କିନ୍ତୁ ଯେଉଁବର୍ଷ ଶ୍ରୀରୂପ ଗୋସ୍ୱାମୀ ଶ୍ରୀପୁରୁଷୋତ୍ତମକୁ ଆସିଥିଲେ ସେ ଶୁଣିଲେ ମହାପ୍ରଭୁ ରଥ ଆଗରେ ଛିଡ଼ା ହୋଇ ଶ୍ରୀଜଗନ୍ନାଥ ଦେବଙ୍କୁ ନିବେଦନପୂର୍ବ୍ବକ ସେହି ଶ୍ଳୋକଟି ପାଠ କରୁ ଅଛନ୍ତି । ଶ୍ରୀରୂପ ଭାବିଲେ ମହାପ୍ରଭୁଙ୍କ ଉଚ୍ଚାରିତ ଅସଂଲଗ୍ନ କିମ୍ବା ଅପ୍ରାସଙ୍ଗିକ ହେବାର ନୁହେଁ; ଏହାର କିଛି ବିଶେଷ ମର୍ମ୍ମ ଅଛି, ଏହା ଭାବନ୍ତେ ସେ ମହାପ୍ରଭୁଙ୍କ ଅନ୍ତରଙ୍ଗ ଥିବାରୁ ଶ୍ଳୋକର ପ୍ରକୃତ ଅର୍ଥ ତାଙ୍କ ହୃଦୟରେ ସ୍ଫୂର୍ତ୍ତି ହେଲା, ସେ ତହିଁ ସେ ଶ୍ଳୋକର ପ୍ରକୃତ ମର୍ମ୍ମ ସ୍ପଷ୍ଟ ପ୍ରକାଶ କରି ଗୋଟିଏ ନୂତନ ଶ୍ଳୋକ ରଚନା କଲେ ଓ ତାଳ ପତ୍ରରେ ଲିଖିତ ସେ ଶ୍ଳୋକଟିକୁ ଚାଳରେ ଖୋସିଦେଇ ସ୍ନାନାର୍ଥ ସମୁଦ୍ରକୁ ଗମନ କଲେ । ମହାପ୍ରଭୁ ଶ୍ରୀହରିଦାସ ଓ

ଶ୍ରୀରୂପଙ୍କୁ ମିଳିବାପାଇଁ ନିତ୍ୟ ଶ୍ରୀହରିଦାସଙ୍କ କୁଟୀରକୁ ଆସନ୍ତି, ସେଦିନ ଆସି ଦେଖିଲେ ଯେ ଗୃହଚାଳରେ ଏକ ତାଳପତ୍ର ଗୁଞ୍ଜା (ଖୋସା) ହୋଇଅଛି । ସେ ତାହା ବାହାର କରି ଆଣି ଦେଖିଲେ, ଯେଉଁଥିରେ ଗୋଟିଏ ଶ୍ଲୋକ ଲେଖାଅଛି ଏବଂ ସେ ଶ୍ଲୋକଟିରେ ନିଜ ମନୋଗତ ଭାବ ପ୍ରକାଶ ପାଇଅଛି । ଶ୍ରୀରୂପଙ୍କର କବିତା ମାଧୁର୍ଯ୍ୟ ଓ ଭାବ ଚାତୁର୍ଯ୍ୟରେ ମହାପ୍ରଭୁ ମୁଗ୍ଧ ହେଲେ । ସେ ସେହି ଶ୍ଲୋକ ପାଠକରି ପ୍ରେମାବିଷ୍ଟ ହୋଇ ରହି ଅଛନ୍ତି, ଏହି ସମୟରେ ଶ୍ରୀରୂପ ଗୋସ୍ୱାମୀ ସ୍ନାନ ସାରି ସେଠାରେ ଆସି ପହଞ୍ଚିଲେ ମହାପ୍ରଭୁ ତାଙ୍କ ଉପରେ ପରମ ସନ୍ତୁଷ୍ଟ ହୋଇ ପ୍ରେମରେ ତାଙ୍କୁ ଏକ ଚାପୁଡ଼ା ମାରିଲେ ଏବଂ କହିଲେ, "ରୂପ ! ମୋହର ଶ୍ଲୋକର ଅର୍ଥ ଅନ୍ୟ କେହି ଜାଣେନାହିଁ, ତୁ ମୋ ମନୋଗତ ଭାବ ଜାଣିଲୁ କିପରି ? ଯଥା :—

"ଉଠି ମହାପ୍ରଭୁ ତାଁରେ ଚାପଡ଼୍ ମାରିୟା,
କହିତେ ଲାଗିଲ ତାଙ୍କୁ କୋଲେତେ କରିୟା ।
ମୋର ଶ୍ଲୋକେର ଅଭିପ୍ରାୟ କେହ ନାହିଁ ଜାନେ,
ମୋର ମନେର କଥା ତୁଇ ଜାନିଲ କେମନେ ।

( ଚୈ: ଚ: ମଧ୍ୟ ୧ମ ପରିଚ୍ଛେଦ )

ଅହା ସ୍ୱୟଂ ମହାପ୍ରଭୁଙ୍କ ହାତରୁ ଏରୂପ ପ୍ରେମ ଚାପୁଡ଼ା କେତେଜଣଙ୍କ ଭାଗ୍ୟରେ ଘଟିଥାଏ ? ଧନ୍ୟ ରୂପ, ତୁମ୍ଭେହିଁ ତୁମ୍ଭର ତୁଳନା, ଶ୍ରୀରୂପ ଏଥିରେ କି ଉତ୍ତର ଦେବେ; ଅବନତ ମୁଖ ହୋଇ ରହିଲେ । ମହାପ୍ରଭୁ ତାଙ୍କୁ ଦୃଢ଼ାଲିଙ୍ଗନ ପ୍ରଦାନ କଲେ । କିନ୍ତୁ ଏତିକରେ ମହାପ୍ରଭୁ କ୍ଷାନ୍ତ ହୋଇ ରହି ନ ଥିଲେ । ସେ ପୁଣି ସେହି ଶ୍ଲୋକଟିକୁ ନେଇ ନିଜ ପ୍ରିୟବନ୍ଧୁ ଶ୍ରୀ ସ୍ୱରୂପ ଗୋସାଇଁଙ୍କୁ ଦେଖାଇ ପଚାରିଲେ "ସ୍ୱରୂପ ! ମୋର ଅନ୍ତର କଥା ରୂପ ଜାଣିଲା କିପରି ? ଏହାର ଏହି ଶ୍ଲୋକରେ ଯେ ମୋର ମନୋଗତ-ଭାବ ସୁନ୍ଦର ରୂପେ ପ୍ରକାଶିତ ହୋଇଅଛି । ଶ୍ରୀଲ ସ୍ୱରୂପ ଗୋସ୍ୱାମୀ କହିଲେ

" ପ୍ରଭୋ ! ଭବଦୀୟ କୃପା ବ୍ୟତିରେକେ ଭବଦୀୟ ଅନ୍ତରଭାବ ଜାଣିବାର କାହାରି ଶକ୍ତି ଅଛି ? ଅତଏବ ଏଥିରୁ ଅନୁମିତ ହେଉଅଛି ଯେ ଆପଣ ରୂପଙ୍କୁ ବିଶେଷ କୃପା କରି ଅଛନ୍ତି ।" ମହାପ୍ରଭୁ କହିଲେ " ସ୍ୱରୂପ ! ତୁମ୍ଭେ ଠିକ ଅନୁମାନ କରିଅଛ, ପ୍ରୟାଗଠାରେ ରୂପ ମୋଠାକୁ ଆସନ୍ତେ ମୁଁ ତାହାଙ୍କୁ ଯୋଗ୍ୟପାତ୍ର ଦେଖି ଶକ୍ତି ସଞ୍ଚାର ପୂର୍ବକ ଶାସ୍ତ୍ରୋପଦେଶ ଦେଇଥିଲି, ରସଶାସ୍ତ୍ର ବିଷୟରେ ତୁମ୍ଭେ ମଧ୍ୟ ତାଙ୍କୁ ଉପଦେଶ ଦେବ" ! ସ୍ୱରୂପ କହିଲେ " ପ୍ରଭୋ ! ଏହି ଶ୍ଳୋକଟି ଦେଖିବା ମାତ୍ର ବୁଝି ପାରିଅଛି ଯେ ଆପଣ ରୂପଙ୍କୁ ଅଶେଷ କୃପା କରିଅଛନ୍ତି, ନଚେତ୍ ବା ଏମନ୍ତ ମଧୁର ଭାବରେ ଭବଦୀୟ ମନୋଗତ ଭାବ ଅନ୍ୟ କିଏ ପ୍ରକାଶ କରି ପାରନ୍ତା ।"

ଶ୍ରୀରୂପ ଗୋସ୍ୱାମୀଙ୍କ ପ୍ରତି ମହାପ୍ରଭୁଙ୍କର ଯେ କେତେ ଅପାର ସ୍ନେହ ତାହା କୋଳି ଯାଇ ନ ପାରେ । ମହାପ୍ରଭୁ ରୂପକୃତ ନାଟକମାନ ପ୍ରଭୁ ଶ୍ରୀ ନିତ୍ୟାନନ୍ଦ, ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟ, ଶ୍ରୀରାୟ ରାମାନନ୍ଦ ଓ ଶ୍ରୀସ୍ୱରୂପ ପ୍ରଭୃତିଙ୍କୁ ଶୁଣାଇ ଆସ୍ୱାଦନ କରୁଥିଲେ । ସେ ନାଟକ ଦ୍ୱୟ ଶ୍ରବଣାନ୍ତର ରସିକଭକ୍ତ-ଚୂଡ଼ାମଣି କବିକୁଳତିଳକ ଶ୍ରୀରାୟରାମାନନ୍ଦ ସେ କବିତାକୁ ପ୍ରଶଂସା କରି କହିଥିଲେ "ପ୍ରଭୋ ! ଏ କି କବିତା, ନା, ଏହା ଅମୃତର ଧାର ବହିଯାଉ ଅଛି । ଏଥିରେ ନାଟକର ଲକ୍ଷଣମାନ ପୂର୍ଣ୍ଣମାତ୍ରାରେ ରହିଅଛି ଓ କୃଷ୍ଣତତ୍ତ୍ୱର ସାର ସିଦ୍ଧାନ୍ତମାନ ସନ୍ନିବେଶିତ ହୋଇଅଛି । ଆପଣ ଶକ୍ତିସଞ୍ଚାର କରି ନ ଥିଲେ ଜୀବର ଏପରି ରଚନା ସମ୍ଭବପର ନୁହେ ।" ମହାପ୍ରଭୁ କହିଲେ " ହଁ, ମୁଁ ଏହାଙ୍କ ଗୁଣରେ ସନ୍ତୁଷ୍ଟ ହୋଇ ଏହାଙ୍କୁ ଶକ୍ତି ପ୍ରଦାନ କରିଅଛି; ଏପରି ମଧୁର କବିତା ନ ହେଲେ ରସ ପରିସ୍ଫୁଟ ହୋଇ ପାରନ୍ତା ନାହିଁ । ତୁମ୍ଭେମାନେ ସମସ୍ତେ ଏହାଙ୍କୁ କୃପା କରି ଏହି ବର ଦିଅ ଯେପରି ସେ ବ୍ରଜଲୀଳା ପ୍ରେମରସ ନିରନ୍ତର ବର୍ଣ୍ଣନ କରୁ । ଯଥା :—

" ପ୍ରଭୁ କହେ ଆମାସନେ ଇହାର ହଇଲ ମିଳନ,
ଇହାର ଗୁଣେ ଇହାୟ ଆମାର ତୁଷ୍ଟ ହୈଲ ମନ ।

ମଧୁର ପ୍ରସଙ୍ଗ ଇଁହାର କାବ୍ୟ ସାଲଙ୍କାର,
ଐଚ୍ଛେ କବିତ୍ୱ ବିନା ନହେ ରସେର ପ୍ରଚାର ।
ସବେ କୃପା କରି ଇଁହାରେ ଦେହ ଏଇ ବର,
ବ୍ରଜଲୀଳା ପ୍ରେମରସ ବର୍ଣ୍ଣେ ନିରନ୍ତର । "

( ଚୈଃ ଚଃ ମଧ୍ୟ ୧୯ ପରି )

ମହାପ୍ରଭୁ ନିଜେ ଅଶେଷ କୃପା କରି ମଧ୍ୟ ସେଥିରେ ସନ୍ତୁଷ୍ଟ ନ ହୋଇ ଶ୍ରୀନିତ୍ୟାନନ୍ଦ ପ୍ରଭୃତି ସମସ୍ତଙ୍କର କୃପା ଭିକ୍ଷା କରୁଅଛନ୍ତି । ଏହାଠାରୁ ଅଧିକ ସୌଭାଗ୍ୟର କଥା କି ଅଛି । ଧନ୍ୟ ଧନ୍ୟ ରୂପ, ତୁମ୍ଭରହିଁ ଜୀବନ ଧାରଣ କରିବା ସାର୍ଥକ, ଆଜି ତୁମ୍ଭ ବିଷୟରେ ଏ କତିପୟ ଧାଡ଼ି ଲେଖିବାକୁ ପାଇ ମୁଁ ମୋର ଜୀବନକୁ ସଫଳ ମନେ କରୁଅଛି ।

ଶ୍ରୀରୂପ ଗୋସ୍ୱାମୀଙ୍କ ପ୍ରତି ତ ମହାପ୍ରଭୁ ଏହିରୂପ ସ୍ନେହ ପ୍ରକାଶ କରିଥିଲେ, ଏବେ ଶ୍ରୀଲ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ପ୍ରତି ତାଙ୍କର ସ୍ନେହ କିରୂପ ଦେଖାଯାଉ ।

ଶ୍ରୀଳ ବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ମହାପଣ୍ଡିତ, ଏମନ୍ତକି ପୃଥିବୀ ମଧ୍ୟରେ ସେତେବେଳେ ଅଦ୍ୱିତୀୟ କିନ୍ତୁ ସେ ମାୟାବାଦୀ । ଭଗବଦ୍‌ଭକ୍ତିରେ ତାଙ୍କର ବିଶ୍ୱାସ ନଥିଲା । ମହାପ୍ରଭୁ ତାଙ୍କୁ କୃପା କରିବା ପାଇଁ ତାଙ୍କଠାରୁ ବେଦାନ୍ତ ଶ୍ରୀମଦ୍ଭାଗବତ ଶ୍ରବଣ କଲେ । ତତ୍ପରେ ତାଙ୍କଠାରୁ ଆତ୍ମାରାମ ଶ୍ଳୋକର ୯ ପ୍ରକାର ବ୍ୟାଖ୍ୟା ଶ୍ରବଣ କରି ସେଥିରେ ସନ୍ତୁଷ୍ଟ ନ ହୋଇ ନିଜେ ଆଉ ୧୮ ପ୍ରକାର ଅର୍ଥ କରି ପଣ୍ଡିତ ପ୍ରବରଙ୍କୁ ଶୁଣାଇଲେ । ସାର୍ବଭୌମ ଭାବିଲେ, ମୁଁ ମହାପଣ୍ଡିତ, ମୁଁ ଯେଉଁ ଅର୍ଥ କଲି ଏହା ଛଡ଼ା ଏ ଶ୍ଳୋକର ଅନ୍ୟ ଅର୍ଥ ହୋଇ ନ ପାରେ । କିନ୍ତୁ ଏହାଙ୍କ ମୁଖରୁ ମୋର ଅର୍ଥବ୍ୟତୀତ ଆଉ ୧୮ ପ୍ରକାର ନୂତନ ଅର୍ଥ ଶ୍ରବଣ କଲି ଏକି ଚମତ୍କାର, ପଣ୍ଡିତପ୍ରବରଙ୍କର ଗର୍ବ ଏକାବେଳେ ଚୂର୍ଣ୍ଣ ହୋଇଗଲା । ପଣ୍ଡିତପ୍ରବରଙ୍କୁ ପାଣ୍ଡିତ୍ୟଦ୍ୱାରା ପରାସ୍ତ କରି ମହାପ୍ରଭୁ ତାଙ୍କପ୍ରତି କୃପା ପ୍ରଦର୍ଶନ ପୂର୍ବକ ନିଜ ଐଶ୍ୱର୍ଯ୍ୟ ପ୍ରଦର୍ଶନ କରାଇଲେ । ଏହିରୂପେ ସାର୍ବଭୌମ ନିଜମତ ପରିତ୍ୟାଗ କରି ଭକ୍ତିପଥରେ

ପତିତ ହେଲେ ଓ ମହାପ୍ରଭୁଙ୍କ ଶ୍ରୀଚରଣ କମଳରେ ଶରଣ ନେଲେ । ଏହି ମହାପରିବର୍ତ୍ତନର କଛଦିନ ପରେ ମହାପ୍ରଭୁ ତାଙ୍କୁ ପରୀକ୍ଷା କରିବା ନିମନ୍ତେ ପ୍ରତ୍ୟୁଷରେ ଶ୍ରୀଜଗନ୍ନାଥ ଦର୍ଶନ କରି ସେବକମାନଙ୍କ ପ୍ରଦତ୍ତ କିଛି ମହାପ୍ରସାଦ ଅଞ୍ଚଳରେ ବାନ୍ଧି ସାର୍ବଭୌମଙ୍କ ମନ୍ଦିରରେ ଉପସ୍ଥିତ ହେଲେ । ମହାପ୍ରଭୁଙ୍କ ଆଗମନ ଜାଣି ସାର୍ବଭୌମ ଶଯ୍ୟାରୁ ଉଠି ଅସ୍ତବ୍ୟସ୍ତ ହୋଇ ଆସି ମହା-ପ୍ରଭୁଙ୍କୁ ପ୍ରଣାମ କଲେ, ଏବଂ ମହାପ୍ରଭୁଙ୍କୁ ବସିବାପାଇଁ ଆସନ ପ୍ରଦାନ କଲେ । ମହାପ୍ରଭୁ ନିଜ ଅଞ୍ଚଳ ଖୋଲି ମହାପ୍ରସାଦ ସାର୍ବଭୌମଙ୍କୁ ପ୍ରଦାନ କଲେ । ସାର୍ବଭୌମ ଦନ୍ତଧାବନ ଓ ସ୍ନାନାହ୍ନିକ ସାରି ନ ଥିଲେହେଁ ସେ ମହାପ୍ରସାଦ ପ୍ରଫୁଲ୍ଲଚିତ୍ତରେ ସେବନ କଲେ । ମହାପ୍ରଭୁ ଯେ ନିମିତ୍ତ ପ୍ରତ୍ୟୁଷ କାଳରେ ଆସି ସାର୍ବଭୌମଙ୍କ ମନ୍ଦିରରେ ଉପସ୍ଥିତ ହୋଇଥିଲେ ତାହା ସିଦ୍ଧ ହେଲା । ମହାପ୍ରଭୁ ପ୍ରେମବିହ୍ୱଳ ହୋଇ ସାର୍ବଭୌମଙ୍କୁ ଆଲିଙ୍ଗନ ପୂର୍ବକ ନାଚିବାକୁ ଲାଗିଲେ । ଦୁହିଁଙ୍କର ଅଙ୍ଗରେ ଅଷ୍ଟସାତ୍ତ୍ୱିକ ଭାବର ତରଙ୍ଗ ଖେଳା କଲା । ମହାପ୍ରଭୁ ପ୍ରେମାବିଷ୍ଟ ହୋଇ କହିଲେ, ମୁଁ ଆଜି ଅନାୟାସରେ ତ୍ରିଭୁବନ ଜୟ କଲି, ଆଜି ମୁଁ ବୈକୁଣ୍ଠାରୋହଣ କଲି, ଆଜି ମୋର ସର୍ବ ଅଭିଳାଷ ପୂର୍ଣ୍ଣ ହେଲା ।" ଯଥା ।—

"ଆଜି ମୁଞି ଅନାୟାସେ ଜିନିନୁ ତ୍ରିଭୁବନ,
ଆଜି ମୁଞି କରିନୁ ବୈକୁଣ୍ଠ ଆରୋହଣ ।
ଆଜି ମୋର ପୂର୍ଣ୍ଣ ହୈଲ ସର୍ବ ଅଭିଳାଷ,
ସାର୍ବଭୌମେର ହୈଲ ମହାପ୍ରସାଦେ ବିଶ୍ୱାସ ।
ଆଜି ତୁମି ନିଷ୍କପଟେ ହୈଲେ କୃଷ୍ଣାଶ୍ରୟ,
କୃଷ୍ଣ ନିଷ୍କପଟେ ତୋମା ହଇଲ ସଦୟ ।
ଆଜି ସେ ଖଣ୍ଡିଲ ତୋମାର ଦେହାଦିବନ୍ଧନ,
ଆଜି ତୁମି ଛିନ୍ନକୈଲେ ମାୟାର ବନ୍ଧନ ।
ଆଜି କୃଷ୍ଣ ପ୍ରାପ୍ତି ଯୋଗ୍ୟ ହୈଲ ତୋମାର ମନ,
ବେଦ ଧର୍ମ ଲଂଘି କୈଲେ ପ୍ରସାଦ ଭକ୍ଷଣ ।

( ଚୈ: ଚ: ମଧ୍ୟ ୬ଷ୍ଠ ପରି )

ଅଧ୍ୟାଙ୍କ ଅପୂର୍ବ ସ୍ନେହ । ମହାପ୍ରଭୁ ସମସ୍ତ ବିଷୟରେ ନିର୍ଲିପ୍ତ ହେଲେହେଁ ଅଜ ଭକ୍ତବାତ୍ସଲ୍ୟ ଗୁଣରେ ବିମୁଗ୍ଧ ହୋଇ ସାର୍ବଭୌମଙ୍କ କୃଷ୍ଣଭକ୍ତି ପୂର୍ଣ୍ଣମାତ୍ରାରେ ଉଦୟ ଦେଖି କହୁଅଛନ୍ତି, ଅଜ ମୁଁ ତ୍ରିଭୁବନ ଜୟ କଲି, ଅଜ ମୁଁ ବୈକୁଣ୍ଠାରୋହଣ କଲି । ଏକା ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କର କୃଷ୍ଣଭକ୍ତି ଜାତ କରାଇବା ଦ୍ୱାରା ମହାପ୍ରଭୁଙ୍କର ଧର୍ମପ୍ରବର୍ତ୍ତକରୂପ ଅବତାର କାର୍ଯ୍ୟର ପ୍ରାୟ ପଦରପଣ ସମ୍ପାଦିତ ହେଲାବୋଲି ବୋଲିବାକୁ ହେବ । କାରଣ ସାର୍ବଭୌମ ତେତେବେଳେ ପୃଥିବୀର ଅଦ୍ୱିତୀୟ ପଣ୍ଡିତ । ସହସ୍ର ମେଧାବୀ ଶିଷ୍ୟ ତାଙ୍କର ଅନୁଗତ । ପ୍ରବଳପ୍ରତାପୀ ଉତ୍କଳର ମହାରାଜା ପ୍ରତାପରୁଦ୍ରଙ୍କର ତାଙ୍କ ପ୍ରତି ଅଟଳ ବିଶ୍ୱାସ । ମହାରାଜାଙ୍କର ତାଙ୍କପ୍ରତି ଏରୂପ ଭକ୍ତି ଦେଖି ସମସ୍ତ ଉତ୍କଳବାସୀଙ୍କର ମଧ୍ୟ ତାଙ୍କ ପ୍ରତି ଭକ୍ତି ହୋଇଅଛି । ଅତଏବସେ ଯେଉଁପଥ ଅବଲମ୍ବନ କରିବେ, ମହାରାଜାସହ ଅପର ସମସ୍ତ ପ୍ରଜାବର୍ଗ ମଧ୍ୟ ତାହା ଅନୁସରଣ କରିବେ । ଦେଶଦେଶାନ୍ତରରୁ ଅସୁଥିବା ଶ୍ରୀଜଗନ୍ନାଥଙ୍କ ଦର୍ଶକବୃନ୍ଦ ମଧ୍ୟ ତାହା ଅନୁକରଣ କରିବେ । ଏହିରୂପେ ସର୍ବତ୍ର ବୈଷ୍ଣବ ଧର୍ମ ପ୍ରବର୍ତ୍ତିତ ହେବ । ସାର୍ବଭୌମଙ୍କର ପ୍ରଗାଢ଼ କୃଷ୍ଣଭକ୍ତି ଜାତ ହେବାର ଦେଖି ମହାପ୍ରଭୁ ଯେ ଏତେ ଆନନ୍ଦ ଲାଭ କରିଥିଲେ ତାହାର ମଧ୍ୟ ଏହା ଏକ କାରଣ ଥିବାର ଅନୁମିତ ହୁଏ ।

ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ପ୍ରତି ମହାପ୍ରଭୁଙ୍କର ଯେ କି ପ୍ରଗାଢ଼ ସ୍ନେହ ତାଙ୍କ ଜାମାତା ଅମୋଘର ଉଦ୍ଧାର ମଧ୍ୟ ସେଥିର ଅନ୍ୟ ଏକ ଉଦାହରଣ । ମହାପ୍ରଭୁ ସନ୍ନ୍ୟାସଧର୍ମ ଅବଲମ୍ବନ କରିଥିବାରୁ ଲୋକଶିକ୍ଷା ନିମିତ୍ତ ସତତ ମିତାହାର କରୁଥିଲେ । ବିଶେଷତଃ ନିନ୍ଦୁକ ସ୍ୱଭାବ ଶ୍ରୀରାମଚନ୍ଦ୍ର ପୁରୀଙ୍କ ଭୟରେ ସେହି ଭିକ୍ଷାର ପରିମାଣ ମଧ୍ୟ ତାଙ୍କୁ ସଙ୍କୋଚ କରିବାକୁ ହୋଇଥିଲା । କିନ୍ତୁ ଶ୍ରୀ ଗଦାଧର ପଣ୍ଡିତ, ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ପ୍ରଭୃତି କତିପୟ ଅନ୍ତରଙ୍ଗଙ୍କ ନିମନ୍ତ୍ରଣରେ ସେମାନଙ୍କ ମାନସ ପୂର୍ଣ୍ଣ କରିବା ନିମନ୍ତେ ଉକ୍ତ ନିୟମ ରକ୍ଷା କରିପାରୁ ନ ଥିଲେ ।

ମହାପ୍ରଭୁଙ୍କୁ ମନୋମତ ଖୁଆଇବା ପାଇଁ ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ତାଙ୍କ ପାକଶାଳାର ଫଲଗ୍ନରେ ଗୋଟିଏ ଗୃହ ନିର୍ମାଣ କରାଇଥିଲେ, ସେଠାରେ ନିଭୃତରେ ଭୋଜନ କରାନ୍ତି । ଏକଦିନ ପଣ୍ଡିତ ନିଜେ ଓ ତାଙ୍କ ପତ୍ନୀ ଦୁହେଁ ନାନାପ୍ରକାର ବ୍ୟଞ୍ଜନ ଓ ପିଠାପଣା ପ୍ରସ୍ତୁତ କରାଇ ମହାପ୍ରଭୁଙ୍କୁ ଏହା ନିମନ୍ତ୍ରଣ କଲେ । ମହାପ୍ରଭୁ ଆସି ଦେଖିଲେ ପ୍ରଚୁର ପରିମାଣରେ ଅନ୍ନ-ବ୍ୟଞ୍ଜନାଦି ବଢ଼ା ହୋଇ ରହିଅଛି । ମହାପ୍ରଭୁ ଏହାଦେଖି କହିଲେ "ଭଟ୍ଟାଚାର୍ଯ୍ୟ ! ମୋତେ ଅଳ୍ପ ପରିମାଣରେ ପ୍ରସାଦ ଦିଅ, ଏତେ କିଏ ଭୋଜନ କରିବ ।" ସାର୍ବଭୌମ କହିଲେ "ପ୍ରଭୋ ! ଆପଣ ଶ୍ରୀଜଗନ୍ନାଥ ରୂପରେ ପ୍ରତି-ଥର ଯେଉଁ ଭୋଗ ସାମଗ୍ରୀମାନ ଭୋଜନ କରୁଅଛନ୍ତି, ତାହା ସହିତ ତୁଳନା କଲେ ଏ ଏକଗ୍ରାସ ମଧ୍ୟ ନୁହେ । ଦ୍ୱାରକାରେ ଓ ବ୍ରଜରେ ଆପଣ କି ପରି-ମାଣରେ ଭୋଜନ ନ କରନ୍ତି ! ଗୋବର୍ଦ୍ଧନ ଯଜ୍ଞ କାଳରେ ଯେଉଁ ରାଶି୨ ଅନ୍ନ ଭୋଜନ କରିଥିଲେ ସେ କଥାକି ଆଜି ଭୁଲିଗଲେ ? ଏ ଭିକ୍ଷୁକ ବ୍ରାହ୍ମଣ ଘରେ ଏକଗ୍ରାସ ମାଧୁକରି ଗ୍ରହଣ ପୂର୍ବକ ମୋତେ କୃତାର୍ଥ କରନ୍ତୁ ।" ଭଟ୍ଟାଚାର୍ଯ୍ୟଙ୍କୁତ ଫାଙ୍କି ଦେବାର ଶକ୍ତି ନାହିଁ, ଅତଏବ ବାଧ୍ୟ ହୋଇ ଭୋଜନ କରିବାକୁ ଲଗିଲେ । କିନ୍ତୁ ତାଙ୍କ ଭୋଜନ ସମୟରେ କାଳେ ନିଜ ଜାମାତା ନିନ୍ଦୁକସ୍ୱଭାବ ଅମୋଘ ଆସି ପ୍ରବେଶ କରେ ଓ ମହାପ୍ରଭୁଙ୍କ ନିନ୍ଦା କରେ ଏହି ଭୟରେ ଭଟ୍ଟାଚାର୍ଯ୍ୟ ଏକ ବାଡ ଧରି ଦ୍ୱାର-ପାଶରେ ବସିଥିଲେ । ସେ ମହାପ୍ରଭୁଙ୍କ ପତ୍ରରେ ଆଉ କିଛି ପ୍ରସାଦ ଦେବାକୁ ଯାଆନ୍ତେ, ଇତ୍ୟବସରେ ଅମୋଘ ସେଠାରେ ପ୍ରବେଶ କରି କହିଲେ "ମଲ ? ଏତେ ଅନ୍ନ ଯାହାକି ୧୦।୧୨ ଜଣ ଖାଇ ସନ୍ତୁଷ୍ଟ ହେବେ ଏକଲା ଏ ସନ୍ନ୍ୟାସୀ ତାହା ସମସ୍ତ ଭୋଜନ କରୁଅଛି ?"

ଅମୋଘର ଏହି ସ୍ୱର ଶୁଣି ଭଟ୍ଟାଚାର୍ଯ୍ୟ ବାଡହସ୍ତରେ ମାରିବାକୁ ଦଉଡ଼ି ଯାଆନ୍ତେ ଅମୋଘ ଭୟରେ ପଳାୟନ କଲେ । ଅମୋଘତ ପଳାଇ ଗଲେ କିନ୍ତୁ ଭଟ୍ଟାଚାର୍ଯ୍ୟ ଓ ତାଙ୍କ ଗୃହିଣୀ ଦୁହିଙ୍କର ଦୁଃଖର ପରିସୀମା ରହିଲା ନାହିଁ । ପୁତ୍ର ହେଉ ବା ପିତା ହେଉ ଯେ କୃଷ୍ଣଭକ୍ତିର ବାଧକ ସେ ଶତ୍ରୁ । ଅତଏବ ସେ ପତି ପତ୍ନୀ ଉଭୟ ଅମୋଘକୁ ଅଭିଶାପ ଦେବାକୁ

ଲାଗିଲେ । ଏମନ୍ତ କି ନିଜକନ୍ୟା ପଟ୍ଟେ ବିଧବା ହେଉ ମହାପ୍ରଭୁଙ୍କ ନିନ୍ଦାରେ ବାଧା ନ ହେଉ ଏରୂପ ଅଭିଶାପ ମଧ୍ୟ ସେମାନଙ୍କ ମୁଖରୁ ବାହାରିଲା। ମହାପ୍ରଭୁ ସେମାନଙ୍କୁ ବହୁତ ସାନ୍ତ୍ୱନା କଲେ ଏବଂ ଭୋଜନାନ୍ତେ ନିଜ-ସ୍ଥାନକୁ ପ୍ରସ୍ଥାନ କଲେ । ଭଟ୍ଟାଚାର୍ଯ୍ୟ ମହାପ୍ରଭୁଙ୍କୁ ତାଙ୍କ ନିଜ ମନ୍ଦିରରେ ଛାଡ଼ିଆସି, ପତ୍ନୀଙ୍କୁ ଡାକି କହିଲେ "ଦେଖ ଯେଉଁ ଜନ ମହାପ୍ରଭୁଙ୍କର ନିନ୍ଦା କରେ ସେ ବଧାର୍ହ କିମ୍ବା ମହାପ୍ରଭୁଙ୍କ ନିନ୍ଦା ଶ୍ରବଣେ ନିଜ ପ୍ରାଣ ତ୍ୟାଗ କରିବା ଉଚିତ୍ । କିନ୍ତୁ ଏ ସ୍ଥଳରେ ଅମ୍ଭେ ଦୁହେଁ ତ ବ୍ରାହ୍ମଣ ଅତଏବ କେହି ବଧଯୋଗ୍ୟ ନୁହେ । ଅତଏବ ଏରୂପ ମହାପାପୀ ଜାମାତାର ଆଉ ମୁଖ ଦର୍ଶନ କରିବା ନାହିଁ । ଅମ୍ଭ କନ୍ୟା ଷାଠୀକୁ କହ ସେ ତାହାର ସ୍ୱାମୀକୁ ତ୍ୟାଗ କରୁ, କାରଣ ସେ ପତିତ ହୋଇଅଛି, ପତିତ ସ୍ୱାମୀ ତ୍ୟାଜ୍ୟ ।" ଏହି କଥାବାର୍ତ୍ତା ହୋଇ ମନ ଶୋକରେ ସେମାନେ ଭୋଜନ କଲେ ନାହିଁ । ଏଣେ ଗୁରୁଜନଙ୍କଠାରେ ଅପରାଧିହେତୁ ଅମୋଘ ସେହି ରାତ୍ରରେ ବିସୂଚିକା ରୋଗରେ ଆକ୍ରାନ୍ତ ହେଲା । ଭଟ୍ଟାଚାର୍ଯ୍ୟ ତାହାଶୁଣି କହିଲେ "ବେଶ ହୋଇଅଛି, ସ୍ୱୟଂ ଈଶ୍ୱରଙ୍କ ଠାରେ ଯାହାର ଅପରାଧ ତାହାର ଫଳ କି ଅଣୁ ଫଳନ୍ତା ନାହିଁ ।"

ମହାପ୍ରଭୁ ଶୁଣି ପାରିଲେ, ଦୁଇଦିନ ହେବ ଭଟ୍ଟାଚାର୍ଯ୍ୟ ଓ ତାଙ୍କ ଗୃହିଣୀ ଜଳାହାର କରି ନାହାନ୍ତି ଓ ତାଙ୍କ ଜାମାତା ଅମୋଘ ବିସୂଚିକା ରୋଗରେ ଶେଷ ଦଶାରେ ପଡ଼ିଅଛି। ମହାପ୍ରଭୁ ଏହା ଶୁଣିବା ମାତ୍ରେ ଭଟ୍ଟାଚାର୍ଯ୍ୟଙ୍କ ଗୃହକୁ ଆସି ଅମୋଘ ପଡ଼ିଥିବା ସ୍ଥାନକୁ ଯାଇ ତାହାର ହୃଦୟରେ ହସ୍ତାର୍ପଣ ପୂର୍ବକ କହିଲେ, ଏ ବ୍ରାହ୍ମଣ ହୃଦୟ, ତେଣୁ ଶ୍ରୀକୃଷ୍ଣଙ୍କର ବସିବାର ଉପଯୁକ୍ତ । ଏଥିରେ ମାତ୍ସର୍ଯ୍ୟ ଚଣ୍ଡାଳକୁ କିପାଇଁ ବସାଇ ଅଛ ? ତୁମ୍ଭେ ଭଟ୍ଟାଚାର୍ଯ୍ୟଙ୍କ ଜାମାତା । ଯେ ଏରୂପ ପରମ ବୈଷ୍ଣବଙ୍କ ସଙ୍ଗରେ ଥାଏ, ତାହାର କି ଆଉ ପାପ ରହେ । ଏବେ ଉଠ ଏବଂ କୃଷ୍ଣନାମ ଗ୍ରହଣ କର । କୃପାସାଗର ଶ୍ରୀକୃଷ୍ଣ ତୁମ୍ଭକୁ ଅବଶ୍ୟ କୃପା କରିବେ ।" ସ୍ୱୟଂ ଶ୍ରୀକୃଷ୍ଣ ଆସି ଯାହାକୁ କୃଷ୍ଣ କହିବାକୁ ଉପଦେଶ କରୁଅଛନ୍ତି ତାର କି ଆଉ ପାପ ରହି ପାରେ ? ମହାପ୍ରଭୁଙ୍କ କୃପାରେ ତତ୍‌କ୍ଷଣାତ୍ ଅମୋଘ ରୋଗରୁ ମୁକ୍ତ

ହେଲା, ତାହାଙ୍କ ଅଙ୍ଗରେ ଅଷ୍ଟସାତ୍ତ୍ୱିକ ଭାବ ପ୍ରକାଶ ପାଇଲା । କମ୍ପ, ଅଶ୍ରୁ, ପୁଲକ, ସ୍ତମ୍ଭ, ସ୍ୱେଦ, ସ୍ୱରଭଙ୍ଗ ଏହିସବୁ ଭାବବିକାର ତାହାଙ୍କ ଅଙ୍ଗରେ ପ୍ରକାଶିତ ଦେଖି ମହାପ୍ରଭୁ ହସିବାକୁ ଲାଗିଲେ । ସେ ମହାପ୍ରଭୁଙ୍କ ଶ୍ରୀଚରଣ କମଳ ଧାରଣ ପୂର୍ବକ ଅତ୍ୟନ୍ତନିର୍ବେଦଙ୍କର କହିଲେ "ପ୍ରଭୋ ? ମୁଁ ମହାପରାଧୀ, ଏହି ଛାର ମୁଖରେ ଆପଣଙ୍କର ନିନ୍ଦା କଲି ।" ଏହା କହି ସେ ନିଜ ଗାଲରେ ଚପ୍ପଡ଼ ମାରିବାକୁ ଲାଗିଲେ । ମହାପ୍ରଭୁ ତାଙ୍କୁ ସାନ୍ତ୍ୱନାପୂର୍ବକ କହିଲେ "ଅମୋଘ ! ପରିତାପ ପରିତ୍ୟାଗ କର । ସାର୍ବଭୌମଙ୍କ ଘରର କୁକ୍କୁର ପର୍ଯ୍ୟନ୍ତ ମୋର ପ୍ରିୟ । ତୁମ୍ଭେ ତ ତାଙ୍କର ଜାମାତା ।" ଯଥା :—

ପ୍ରଭୁ ଅଶ୍ୱାସନ କରେ ସ୍ପର୍ଶି ତାର ଗାତ୍ର,
ସାର୍ବଭୌମ ସମ୍ବନ୍ଧେ ତୁମି ମୋର ସ୍ନେହ ପାତ୍ର ।
ସାର୍ବଭୌମ ଗୃହେ ଦାସଦାସୀ ଯେ କୁକ୍କୁର,
ସେହ ମୋର ପ୍ରିୟ ଅନ୍ୟଜନ ବହୁ ଦୂର ।

( ଚୈଃ ଚଃ ମଧ୍ୟ ୧୫ ପରି )

ଏହିରୂପ ଅମୋଘଙ୍କୁ କୃପାକରି ମହାପ୍ରଭୁ ଆସି ସାର୍ବଭୌମଙ୍କୁ ସାନ୍ତ୍ୱନା କଲେ । ଏବଂ କହିଲେ "ଅମୋଘ ଶିଶୁ, ତାହାର ଦୋଷ କି ଧରିବ୍ୟ, ଏବେ ଉଠି ସ୍ନାନ କର ଓ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କର । ତୁମ୍ଭେ ଶ୍ରୀ ଜଗନ୍ନାଥ ଦର୍ଶନାନନ୍ତର ପ୍ରସାଦ ସେବନ କରିବା ଯାଏ ମୁଁ ଏଠାରେ ବସିଲି ।" ସାର୍ବଭୌମ କହିଲେ "ପ୍ରଭୋ ! ମୁଁ କି ଆପଣଙ୍କ ବାକ୍ୟ ଲଂଘନ କରି ପାରେ । ଆପଣ ଶ୍ରୀ ଜଗନ୍ନାଥ ଦର୍ଶନ କରିବାକୁ ଯାଉନ୍ତୁ । ମୁଁ ସ୍ନାନ କରି ସେଠାକୁ ଯାଉଅଛି ।" ମହାପ୍ରଭୁ ଏଥିରେ ସନ୍ତୁଷ୍ଟ ନ ହୋଇ ଗୋପୀନାଥ ଆଚାର୍ଯ୍ୟଙ୍କୁ ଡାକି କହିଲେ "ଗୋପୀନାଥ ! ତୁମ୍ଭେ ଏହିଠାରେ ଥାଅ, ଭଟ୍ଟାଚାର୍ଯ୍ୟ ପ୍ରସାଦ ପାଇ ସାରିଲେ ମୋତେ ସେ ଖବର ଦେବ ।" ଅହା କି ଅପୂର୍ବ ସ୍ନେହ ।

କୁଳୀନଗ୍ରାମବାସୀ ଶ୍ରୀ ଗୁଣରାଜ ଖାନଙ୍କ ପ୍ରତି ମହାପ୍ରଭୁଙ୍କର ଅଦ୍ଭୁତ ସ୍ନେହ ତାହା ଏହି ନିମ୍ନୋକ୍ତ କତିପୟ ଧାଡ଼ିରୁ ଉତ୍ତମ ପରିଚୟ ମିଳୁଅଛି ।

"କୁଳୀନ ଗ୍ରାମୀରେ କହେ ସମ୍ମାନ କରିୟା,
ପ୍ରତ୍ୟବ୍ଦ ଆସିବେ ଯାତ୍ରାୟ ପଟ୍ଟଡୋରୀ ଲଞା ।
ଗୁଣରାଜ ଖାନ କୈଲ ଶ୍ରୀକୃଷ୍ଣ ବିଜୟ,
ତାହା ଏକବାକ୍ୟ ତାଁର ଆଛେ ପ୍ରେମମୟ ।
ନନ୍ଦନନ୍ଦନ କୃଷ୍ଣ ମୋର ପ୍ରାଣନାଥ,
ଏଇ ରୂପେ ବିକାଇନୁ ତାଁର ବଂଶେର ହାତ ।
ତୋମାର କି କଥା ତୋମାର ଗ୍ରାମେର କୁକ୍କୁରି,
ସେହ ମୋର ପ୍ରିୟ, ଅନ୍ୟଜନ ରହୁ ଦୂର ।"

( ଚୈଃ ଚଃ ମଧ୍ୟ ୧୫ ପଦ )

ଯେ ମହାପ୍ରଭୁଙ୍କର ପ୍ରିୟ, ତାହାର ସମ୍ପର୍କୀୟ ସମସ୍ତହିଁ ପ୍ରିୟ, ଏମନ୍ତ କି ଘୃଣ୍ୟ ଅସ୍ପୃଶ୍ୟ ଯେ କୁକ୍କୁର ସେ ମଧ୍ୟ ପ୍ରିୟ । ଏଥିଲାଗିହିଁ ହରିଦାସ ବର୍ଯ୍ୟ ଠାକୁର ଶ୍ରୀହରିଦାସ ଭକ୍ତ ଗୃହରେ କୁକ୍କୁର ହୋଇ ଜନ୍ମ ହେବାର ପ୍ରାର୍ଥନା କରିଥିଲେ । ସେହି ଠାକୁର ଶ୍ରୀ ହରିଦାସଙ୍କ ପ୍ରତି ମହାପ୍ରଭୁଙ୍କର ଯେ କି ଅପୂର୍ବ ସ୍ନେହଥିଲା ତାହାର ଗୋଟିଏ ଉଦାହରଣ ନିମ୍ନରେ ବିବୃତ କଲୁ ।

ଠାକୁର ଶ୍ରୀ ହରିଦାସ ମହାପ୍ରଭୁଙ୍କୁ ନିବେଦନ କଲେ "ପ୍ରଭୋ ! ଭବଦୀୟ ସମ୍ମୁଖରେ ଯେପରି ମୋର ଦେହ ପିଞ୍ଜରରୁ ପ୍ରାଣପକ୍ଷୀ ଉଡ଼ିଯାଏ ।" ମହାପ୍ରଭୁ ହରିଦାସ ବିରହ ଭୟ କାତର ହେଲେ ମଧ୍ୟ ଭକ୍ତ ବାତ୍ସଲ୍ୟ ଗୁଣରେ ହରିଦାସଙ୍କ ପ୍ରାର୍ଥନା ଏଡ଼ାଇ ପାରିଲେ ନାହିଁ । ମହାପ୍ରଭୁଙ୍କ ଆକର୍ଷଣରେ ବହୁଭକ୍ତ ଆସି ହରିଦାସଙ୍କ କୁଟୀର ନିକଟରେ ଉପସ୍ଥିତ ହେଲେ । ମହାପ୍ରଭୁଙ୍କ ଆଦେଶରେ ମହା ସଂକୀର୍ତ୍ତନ ଆରମ୍ଭ ହେଲା । ସ୍ୱରୂପ ଗୋସାଇଁ ସୁମଧୁର କଣ୍ଠରେ ଗାଇବାକୁ ଲାଗିଲେ, ନର୍ତ୍ତନପଟୁ ପ୍ରେମମୟ କଳେବର ବକ୍ରେଶ୍ୱର ଅପୂର୍ବ ଭଙ୍ଗୀରେ ନାଚିବାକୁ ଲାଗିଲେ । ମହାପ୍ରଭୁ ଶ୍ରୀ ରାୟ ରାମାନନ୍ଦ ଓ ଶ୍ରୀ ସାର୍ବଭୌମଙ୍କ ଆଗରେ ଠାକୁର ହରିଦାସଙ୍କ ଗୁଣ ପ୍ରଶଂସା କରିବାକୁ ଲାଗିଲେ । ଠାକୁର ହରିଦାସ ମହାପ୍ରଭୁଙ୍କୁ ନିଜ

ସମ୍ମୁଖରେ ବସାଇ ଅନିମେଷଲୋଚନରେ ତାଙ୍କ ମୁଖ କମଳ ନିରୀକ୍ଷଣ କଲେ ଓ ମହାପ୍ରଭୁଙ୍କ ଚରଣ ଆଣି ନିଜ ହୃଦୟୋପରେ ଧାରଣ କଲେ ଏବଂ ଭକ୍ତ-ମାନଙ୍କ ପଦରେଣୁ ମସ୍ତକରେ ନେଇ "ଶ୍ରୀ କୃଷ୍ଣ ଚୈତନ୍ୟ" ପଦ ଉଚ୍ଚା-ରଣ କରୁଁ କରୁଁ ଏବଂ ମହାପ୍ରଭୁଙ୍କ ମୁଖମାଧୁରୀ ଦର୍ଶନ କରୁଁ କରୁଁ ତାଙ୍କର ପ୍ରାଣ ନାମ ସଙ୍ଗେ ସଙ୍ଗେ ବାହାରି ଗଲା । ମହାପ୍ରଭୁ ହରିଦାସଙ୍କ ଦେହକୁ କୋଳରେ ଘେନି ପ୍ରେମାବିଷ୍ଟ ହୋଇ ନାଚିବାକୁ ଲଗିଲେ । ତତ୍ପରେ ହରିଦାସଙ୍କ ଶରୀରକୁ ବିମାନରେ ଚଢ଼ାଇ କୀର୍ତ୍ତନସହ ସମୁଦ୍ର-ତୀରକୁ ଘେନି ଗଲେ । ଏବଂ ସମୁଦ୍ରରେ ତାଙ୍କୁ ସ୍ନାନ କରାଇ ମହା-ପ୍ରଭୁ ସମୁଦ୍ରକୁ ବର ପ୍ରଦାନ କଲେ । ଯଥା :—

"ହରିଦାସ ସମୁଦ୍ର ଜଲେ ସ୍ନାନ କରାଇଲ,
ପ୍ରଭୁ କହେ ସମୁଦ୍ର ଏଇ ମହାତୀର୍ଥ ହୈଲ ।

( ଚୈଃ ଚଃ ଅନ୍ତ୍ୟ ୧୧ ପରି )

ତତ୍ପରେ ହରିଦାସଙ୍କ ଅଙ୍ଗକୁ ପ୍ରସାଦ ଚନ୍ଦନରେ ଲିପ୍ତକରି ବାଲୁକା ମଧ୍ୟରେ ଗର୍ତ୍ତଖନନ କରାଇ ସେ ଶରୀରକୁ ଶୋଆଇଲେ ଏବଂ ମହାପ୍ରଭୁ ସ୍ୱହସ୍ତରେ ତାହା ଉପରେ ବାଲୁକା ପ୍ରଦାନ କଲେ ଓ ପିଣ୍ଡି ବନ୍ଧାଇଲେ । ମହାପ୍ରଭୁ ତତ୍ପରେ ଶ୍ରୀଜଗନ୍ନାଥଙ୍କ ଦେଉଳର ସିଂହଦ୍ୱାରକୁ ଆସି ନିଜ କାନ-ପତାଇ ପସାରୀମାନଙ୍କଠାରୁ ମହାପ୍ରସାଦ ଭିକ୍ଷା କଲେ । ସ୍ୱରୂପ ଗୋସାଇଁ ମହାପ୍ରଭୁଙ୍କୁ ସେଥିରୁ ବାରଣ କରାଇ ନିଜେ କତିପୟ ଭକ୍ତଙ୍କ ସଙ୍ଗେ ମହାପ୍ରସାଦ ସଂଗ୍ରହ କଲେ ।

ଏହାରୂପେ ଶ୍ରୀ ହରିଦାସଠାକୁରଙ୍କ ମହୋତ୍ସବ ଶେଷ କରାଇ ମହାପ୍ରଭୁ ନିଜହସ୍ତରେ ଭକ୍ତମାନଙ୍କୁ ଫୁଲହାର ଅର୍ପଣ ପୂର୍ବକ ଚନ୍ଦନ ଲେପନ କଲେ ଏବଂ ଶେଷରେ ମହାପ୍ରଭୁ ସେ ଉତ୍ସବରେ ଯୋଗ ଦେଇଥିବା ସମସ୍ତ ଭକ୍ତ-ମାନଙ୍କୁ କୃଷ୍ଣପ୍ରେମଭକ୍ତି ବର ପ୍ରଦାନ କଲେ । ଏହି ସମସ୍ତ ଘଟଣା ବର୍ଣ୍ଣନ ପୂର୍ବକ ଶ୍ରୀଲ କବିରାଜ ଗୋସ୍ୱାମୀ ଶେଷରେ ଲେଖିଅଛନ୍ତି ;—

"ଚୈତନ୍ୟେର ଭକ୍ତବାତ୍ସଲ୍ୟ ଇହାତେଇ ଜାନି,
ଭକ୍ତବାଞ୍ଛା ପୂର୍ଣ୍ଣ କୈଲ ନ୍ୟାସୀଶିରୋମଣି ।
ଛୋଟକାଳେ ହଲେ ତାଁରେ ଦର୍ଶନ ସ୍ପର୍ଶନ,
ତାଁରେ କୋଲେ କରି କୈଲ ଆପନ ନର୍ତ୍ତନ ।
ଆପନ ଶ୍ରୀହସ୍ତେ କୃପାୟ ବାଲ୍ୟ ତାଁରେ ଦିଲ,
ଆପନ ପ୍ରସାଦମାରି ମହୋତ୍ସବ କୈଲ ।"

( ଚୈଃ ଚଃ ଅନ୍ତ୍ୟ ୧୧ ପରି )

ଶ୍ରୀ ଶିବାନନ୍ଦ ସେନ ସମସ୍ତ ଗୌଡ ଭକ୍ତମାନଙ୍କର ସମସ୍ତ ଖର୍ଚ୍ଚ ବହନ ପୂର୍ବକ ବହୁଯତ୍ନ ସହ ସେମାନଙ୍କୁ ପ୍ରତିବର୍ଷ ଶ୍ରୀ ପୁରୁଷୋତ୍ତମକୁ ଘେନି ଆସୁଥିଲେ । ତାଙ୍କର ଏହି ମହତ୍ ବୈଷ୍ଣବସେବାରେ ମହାପ୍ରଭୁ ତାଙ୍କୁ ଅତିଶୟ ସ୍ନେହ କରୁଥିଲେ । ଶ୍ରୀ ଶିବାନନ୍ଦଙ୍କ ୪ବର୍ଷର ପୁତ୍ର କବିକର୍ଣ୍ଣ ପୁରଙ୍କୁ ସେ ନିଜପଦାଙ୍ଗୁଳି ଲେହନ କରାଇ ଶକ୍ତିସଞ୍ଚାର କରିଥିଲେ । ଯେଉଁ କୃପାଶକ୍ତି ବଳରେ କବିକର୍ଣ୍ଣପୂର ଚୈତନ୍ୟ ଚନ୍ଦ୍ରୋଦୟ ନାଟକ ଓ ଚୈତନ୍ୟ ଚରିତାମୃତ କାବ୍ୟ ଆଦି ରଚନା କରିଥିଲେ । ମହାପ୍ରଭୁ ନିଜ ଅଧରାମୃତ କିମ୍ବା ଚରଣାମୃତ କାହାରିକୁ ଦେଉ ନଥିଲେ । କେବଳ ଯେଉଁମାନେ ତାଙ୍କର ଅତି ସ୍ନେହର ପାତ୍ର, ସେମାନଙ୍କୁ ନିଜ ଅଧରାମୃତ ପ୍ରଦାନ କରୁଥିଲେ । କାଶୀଧାମରେ ଶ୍ରୀଳ ସନାତନ ଗୋସ୍ୱାମୀଙ୍କୁ ନିଜ ଅଧରାମୃତ ଦେବାକୁ ବଳଭଦ୍ର ଭଟ୍ଟାଚାର୍ଯ୍ୟଙ୍କୁ ଆଦେଶ କରିଥିଲେ । ଶ୍ରୀ ପୁରୁଷୋତ୍ତମରେ ସେ ଶିବାନନ୍ଦର ସମସ୍ତ ପରିବାରଙ୍କ ପାଇଁ ଅଧରାମୃତ ପ୍ରଦାନ କରିବାକୁ ଗୋବିନ୍ଦଙ୍କୁ ଆଦେଶ କରିଥିଲେ । ଯଥା ;—

"ଶିବାନନ୍ଦେର ପ୍ରକୃତି ପୁତ୍ର ଯାବତ୍ ଏଥାୟ,
ଆମାର ଅବଶେଷ ପାତ୍ର ତାରା ଯେନ ପାୟ ।

ଏକା ଶିବାନନ୍ଦଙ୍କୁ ଯେ ଅଧରାମୃତ ଦେବାକୁ ଆଜ୍ଞାଦେଲେ ଏମନ୍ତ ନୁହେଁ, ତାଙ୍କ ସମସ୍ତ ପରିବାରକୁ ଦେବାକୁ ଆଦେଶ କଲେ । ଏବଂ କେବଳ ଯେ ଥରେମାତ୍ର ତାହାହିଁ ନୁହେଁ, ଯେତେଦିନ ସେମାନେ ଶ୍ରୀପୁରୁ-

ଶୋଭୁମରେ ରହନ୍ତେ, ପ୍ରତ୍ୟହ ଯେପରି ସେମାନେ ଅଧରାମୃତ ପାଆନ୍ତି । ଏପରି ସୌଭାଗ୍ୟ କେତେ ଜଣଙ୍କର ଘଟିଥିଲା । ଧନ୍ୟ ଶିବାନନ୍ଦ ! ତୁମ୍ଭେହିଁ ମହାପ୍ରଭୁଙ୍କର ସ୍ନେହ ପୂର୍ଣ୍ଣମାତ୍ରାରେ ଆକର୍ଷଣ କରିବାକୁ ସକ୍ଷମ ହୋଇଥିଲ ।

ଶ୍ରୀବାସ ପଣ୍ଡିତ ଭକ୍ତପ୍ରବର ନାରଦଙ୍କ ଅବତାର । ଏହି ଭାଗ୍ୟବାନ ଶ୍ରୀବାସଙ୍କ ମନ୍ଦିରରେହିଁ ମହାପ୍ରଭୁଙ୍କର ସମସ୍ତ ଲୀଳା ଖେଳା । ଅତଏବ ଶ୍ରୀବାସଙ୍କର ସୌଭାଗ୍ୟର କି ସୀମା ଅଛି । ତେବେ ତାଙ୍କ ସମ୍ବନ୍ଧରେ ଗୋଟିଏ ଘଟଣା ଏଠାରେ ବ୍ୟକ୍ତ କରି ନିଜ ଲେଖନୀ ଚରିତାର୍ଥ କରେଁ ।

ମହାପ୍ରଭୁ ଏକଦିନରେ ରଙ୍ଗକରି କହିଲେ, " ଶ୍ରୀବାସ ! ତୁମ୍ଭେତ ଅତି ଉଦାର । ସଂସାରର ଗତି କାଣ ଭଲ ବୁଝୁନା । ତୁମ୍ଭେ ଯେ ଏ ନିତ୍ୟାନନ୍ଦଙ୍କୁ ସତତ ଘରେ ରଖି ଖାଇବାକୁ ଦେଉଅଛ, ଏମନ୍ତ କି ତୁମ୍ଭର ସ୍ତ୍ରୀ ତାହାଙ୍କୁ ଭାତପର୍ଯ୍ୟନ୍ତ ଖୁଆଇ ଦେଉଅଛନ୍ତି, ଏଥିରେ ବ୍ରାହ୍ମଣମାନେ ତୁମ୍ଭଙ୍କୁ ଯେ ଜାତିଚ୍ୟୁତ କରିବେ । ଏ ଅବଧୂତ ନିତ୍ୟାନନ୍ଦଙ୍କର ଯେ ଜାତିକୁଳ କିଛି ଠିକ୍ ନାହିଁ । ଭବିଷ୍ୟତରେ ତୁମ୍ଭେ ବିପଦରେ ପଡ଼ିବ । ମୁଁ ତୁମ୍ଭ ହିତକଥା କହୁଅଛି, ଏହାଙ୍କୁ ତୁମ୍ଭେ ଶୀଘ୍ର ଗୃହରୁ ବାହାର କରିଦିଅ ।" ଶ୍ରୀବାସପଣ୍ଡିତ ମହାପ୍ରଭୁଙ୍କ ଏହି ପରିହାସବାକ୍ୟ ଶୁଣି ହସିକରି କହିଲେ, " ପ୍ରଭୋ ! ମୋତେ ଏରୂପ ପରୀକ୍ଷା କରିବା ଆପଣଙ୍କର ଉଚିତ ନୁହେ । ଯେଉଁ ଲୋକ ଦିନେମାତ୍ର ଭବଦୀୟ ଶ୍ରୀଚରଣ ଭଜନ କରେ ସେ ମୋର ପ୍ରାଣସ୍ୱରୂପ । କିନ୍ତୁ ନିତ୍ୟାନନ୍ଦ ଯେ ତୋର ଦେହ ଏହାର ମୁଁ ଉତ୍ତମ ପ୍ରମାଣ ପାଇଅଛି । ନିତ୍ୟାନନ୍ଦ ପଛେ ମଦିରା ପାନ କରନ୍ତୁ କିମ୍ବା ମୋର ଜାତି କୁଳଧର୍ମ ସମସ୍ତ ଧ୍ୱଂସ କରନ୍ତୁ ତଥାପି ମୁଁ ତିନିବାର ସତ୍ୟକରି କହୁଅଛି, ସେ ନିତ୍ୟାନନ୍ଦଙ୍କ ଚରଣକମଳରୁ ମୋର ମତି ବିଚଳିତ ହେବ-ନାହିଁ ।" ଶ୍ରୀବାସଙ୍କ ମୁଖରୁ ଏହିବାକ୍ୟ ଶ୍ରବଣ କରି ମହାପ୍ରଭୁ ପ୍ରେମରେ ଗର୍ଜ୍ଜନ କରି ଉଠିଲେ ଏବଂ ଶ୍ରୀବାସଙ୍କୁ କୁଣ୍ଢାଇ ଉଚ୍ଚରେ କହିଲେ " କଣ କହିଲୁ ପଣ୍ଡିତ ! ନିତ୍ୟାନନ୍ଦ ପ୍ରତି ତୋର ଏରୂପ ଦୃଢ଼ ବିଶ୍ୱାସ । ଅନ୍ତତଃ ଶ୍ରୀମନ୍ ନିତ୍ୟାନନ୍ଦଙ୍କୁ ତୁ ଏତେଦୂର ବୁଝିଅଛୁ ? ଅତଏବ ମୁଁ ତୋତେ ଆଜି ଏହି ବର ଦେଉଛି, ଗ୍ରହଣକର, ଯଦି ସମ୍ପତ୍ତିର ଅଧିଷ୍ଠାତ୍ରୀ ଦେବୀ ଶ୍ରୀଲକ୍ଷ୍ମୀ-

ଠାକୁରାଣୀ ନଗରେ ୨ ଭିକ୍ଷା କରନ୍ତି ତଥାପି ତୋ ଘରେ ଦାରିଦ୍ର୍ୟ ପ୍ରବେଶ କରିପାରିବ ନାହିଁ । ତୋ ଘରେ ଥିବା ବିଡ଼ାଳ କୁକ୍କୁର ପର୍ଯ୍ୟନ୍ତ ଅଣ୍ଡି ପଶୁଙ୍କର ମୋ ପ୍ରତି ସ୍ଥିରଭକ୍ତି ଜାତ ହେବ । ଯଥା ;—

"ଯଦି ଲକ୍ଷ୍ମୀଭିକ୍ଷାକରେ ନଗରେ ନଗରେ,
ତଥାପିଓ ଦାରିଦ୍ର୍ୟ ତୋର ନହିବେକ ଘରେ ।
ବିଡ଼ାଲ କୁକ୍କୁର ଆଦି ତୋମାର ବାଡ଼ିର,
ସବାର ଆମାତେ ଭକ୍ତି ହଇବେକ ସ୍ଥିର ।"

( ଚୈଃ ଭାଃ ମଧ୍ୟ ୮ ମ )

ଧନ୍ୟ ଶ୍ରୀବାସ, ତୁମ୍ଭେ ସତତ ପ୍ରେମଡ଼ୋରରେ ମହାପ୍ରଭୁଙ୍କୁ ବାନ୍ଧିର-ଖିଅଛ । ମହାପ୍ରଭୁ ଓ ପ୍ରଭୁ ଶ୍ରୀନିତ୍ୟାନନ୍ଦ ସତତ ତୁମ୍ଭ ଘରେ ଦୁଇସନ୍ତାନବତ୍ ରହି କ୍ରୀଡ଼ା କରୁଅଛନ୍ତି । ସେ କଥାଟି ମଧ୍ୟ ବିଶେଷ ଉଲ୍ଲେଖର ଯୋଗ୍ୟ ।

ଏକଦିନରେ ଶ୍ରୀବାସଙ୍କ ଗୃହରେ ମହାପ୍ରଭୁ ଭକ୍ତଗଣ ସହ ସଂକୀର୍ତ୍ତନ କରୁଅଛନ୍ତି ଏହି ସମୟରେ ଶ୍ରୀବାସଙ୍କର ପୁତ୍ର ପ୍ରାଣତ୍ୟାଗ କରନ୍ତି । ଗୃହା-ଭ୍ୟନ୍ତରରୁ ସ୍ତ୍ରୀମାନଙ୍କର କ୍ରନ୍ଦନଶବ୍ଦ ଶୁଣିପାରି ଶ୍ରୀବାସ ଶୀଘ୍ର ଅଭ୍ୟନ୍ତରରେ ପ୍ରବେଶ କଲେ ଏବଂ ସ୍ତ୍ରୀମାନଙ୍କୁ ପ୍ରବୋଧ ଦେଇ କହିଲେ, "ଦେଖ ଯାହାଙ୍କ ନାମ ବାରେମାତ୍ର ଲୋକ ଅନ୍ତିମ କାଳରେ ଶୁଣିଲେ ମହାପାତକୀ ମଧ୍ୟ ଶ୍ରୀକୃଷ୍ଣଧାମ ପ୍ରାପ୍ତ ହୁଏ, ସେହି ଭଗବାନ୍ ସ୍ୱୟଂ ଆମ୍ଭ ଅଗଣାରେ ନୃତ୍ୟ କରୁ ଅଛନ୍ତି ଏବଂ ପୁତ୍ର ଯେ ତାଙ୍କ ଶ୍ରୀମୁଖ ନିସୃତ ହରି ନାମ ଶ୍ରବଣ କରି ପ୍ରାଣତ୍ୟାଗ କରିଅଛି, ଏହା ମଧ୍ୟ ତାହାର ପରମ-ସୌଭାଗ୍ୟ । ଅତଏବ ତୁମ୍ଭେମାନେ ଆଜ ବୃଥାରେ କ୍ରନ୍ଦନ କରନାହିଁ । ଯଦି ନିତାନ୍ତ ସଂସାର ଧର୍ମରେ ତୁମ୍ଭେମାନେ ଶୋକସଂବରଣ କରିପାରୁ ନାହିଁ ଓ କ୍ରନ୍ଦନ ପ୍ରବଳ ହୋଇ ବାହାରି ପଡ଼ୁଅଛି, ତେବେ ମୋର ଏତିକି ଅନୁରୋଧ, ତୁମ୍ଭେମାନେ ବର୍ତ୍ତମାନ ପାଇଁ ଶୋକାବେଗ ହୃଦୟରେ ରୁଦ୍ଧକର, ମହାପ୍ରଭୁଙ୍କର କୀର୍ତ୍ତନରେ ଯେପରି ବାଧା ନ ଘଟୁ । ଅନ୍ୟ କାହାରିକି ଏ ଶୋକ ଘଟଣା ବର୍ତ୍ତମାନ ଜଣାଅ ନାହିଁ । ଯଦି ନିତାନ୍ତ ମୋକଥା

ନ ମାନ ତୁମ୍ଭେମାନେ କ୍ରନ୍ଦନ କର ଓ ତଦ୍ଦ୍ୱାରା ମହାପ୍ରଭୁଙ୍କ ନୃତ୍ୟସୁଖ ଭଙ୍ଗ-ହୁଏ ତେବେ ନିଶ୍ଚୟ ଜାଣିଥାଅ, ମୁଁ ଗଙ୍ଗାରେ ପ୍ରବେଶ କରି ପ୍ରାଣ ହରାଇବି ।” ଶ୍ରୀବାସଙ୍କ ଏହି ବାକ୍ୟରେ ପରିବାର ବର୍ଗ ସମସ୍ତେ ଶୋକାବେଗ ହୃଦୟରେ ଧାରଣ କରି ଚୁପ କରି ରହିଲେ ।

ଶ୍ରୀବାସ କୀର୍ତ୍ତନରେ ଯୋଗ ଦେଇ ଅଧିକତର ଉଲ୍ଲାସରେ ନୃତ୍ୟ କରିବାକୁ ଲାଗିଲେ । କିନ୍ତୁ ଭକ୍ତଗଣଙ୍କ ମଧ୍ୟରେ କେହି କେହି କ୍ରମେ ଉକ୍ତ ଶୋକାବହ ଘଟଣା ଶୁଣି ପାରିଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ଏ ସମସ୍ତ ଜାଣି ପାରି ଭକ୍ତଗଣଙ୍କୁ ପଚାରିଲେ “ ଆଜି ଶ୍ରୀବାସଙ୍କ ଘରେ କି ଦୁର୍ଘଟଣା ହୋଇ ଅଛି କି ? ମୋର ମନ କୀର୍ତ୍ତନରେ ଉଲ୍ଲାସ ହେଉ ନାହିଁ କାହିଁକି ?” ଶ୍ରୀବାସ କହିଲେ “ ପ୍ରଭୋ ? ଯାହା ଘରେ ଆପଣ ସୁପ୍ରସନ୍ନ ହୋଇ ବିରାଜମାନ, ତାହାର ଘରେ ଅଉ ଦୁଃଖ କଣ ।” କିନ୍ତୁ ଅପର ଭକ୍ତମାନେ ପ୍ରକୃତ ଘଟଣା ମହାପ୍ରଭୁଙ୍କଠାରେ ବିବୃତ କଲେ । ମହାପ୍ରଭୁ ପଚାରି ବୁଝିଲେ ୨ ୧/୨ ପ୍ରହର ପୂର୍ବରୁ ଉକ୍ତ ଶୋକାବହ ଘଟଣା ଘଟିଅଛି ।

ଏହା ଶୁଣି ମହାପ୍ରଭୁ ବିସ୍ମିତ ହେଲେ । ତତ୍ପରେ ସତ୍କାର ନିମିତ୍ତ ମୃତଶିଶୁର ଦେହ ବାହାରକୁ ଆନୀତ ହୁଅନ୍ତେ, ମହାପ୍ରଭୁ ତାକୁ ପଚାରିଲେ ତୁମ୍ଭେ ଶ୍ରୀବାସଭବନ ପରିତ୍ୟାଗ କରି ଯାଉଅଛ କାହିଁକି ? ମୃତଶିଶୁ ଉତ୍ତର କଲା “ ପ୍ରଭୋ ! ଏ ସମସ୍ତ ଆପଣଙ୍କର ନିର୍ବନ୍ଧ । ତାହା ଲଂଘନ କରିବାର ଶକ୍ତି କାହାର ଅଛି । ଯେତେଦିନ ଶ୍ରୀବାସଙ୍କଘରେ ରହିବାର ମୋର ଭାଗ୍ୟରେ ଥିଲା ତେତେଦିନ ମୁଁ ତାଙ୍କର ପୁତ୍ରରୂପେ ତାଙ୍କ ଗୃହରେ ଥିଲି । ବର୍ତ୍ତମାନ ଅନ୍ୟ ପୁରକୁ ଯାଉଅଛି ।” ଏହା କହି ମୃତ ପୁତ୍ର ନିରବ ହେଲା । ମୃତ ପୁତ୍ର ମୁଖରୁ ଏହି ବାକ୍ୟ ଶ୍ରବଣ କରି ସମସ୍ତେ ଚମତ୍କୃତ ହେଲେ । ପ୍ରେମାନନ୍ଦର ଲହରୀ ଆଜି ଶ୍ରୀବାସଭବନରେ ଖେଳା କରିବାକୁ ଲାଗିଲା । ସମସ୍ତ ଗୋଷ୍ଠୀ ସହ ଶ୍ରୀବାସ ମହାପ୍ରଭୁଙ୍କ ଶ୍ରୀଚରଣ କମଳରେ ପତିତ ହୋଇ କହିଲେ “ ଜନ୍ମ , ତୁମ୍ଭେ ଆମ୍ଭର ପିତା, ମାତା, ପୁତ୍ର ଓ ବନ୍ଧୁ; ତୁମ୍ଭେହିଁ ସମସ୍ତ ! ତୁମ୍ଭର ଶ୍ରୀଚରଣ କମଳ ଯେରୂପ ଆମ୍ଭେମାନେ ଭୁଲି ନ ଯାଉଁ ।

ଯେଉଁଠାରେ ଅମ୍ଭେମାନେ ଜନ୍ମଗ୍ରହଣ କରୁଁ ନା କାହିଁକି ଶ୍ରୀଚରଣରେ ଯେ ହୁଏ ଅମ୍ଭମାନଙ୍କର ମତି ରହେ ।” ମହାପ୍ରଭୁ ଶ୍ରୀବାସଙ୍କୁ ସାନ୍ତ୍ୱନାପୂର୍ବକ କହିଲେ “ମୁଁ ଓ ନିତ୍ୟାନନ୍ଦ ତୁମର ଦୁଇପୁତ୍ର ବର୍ତ୍ତମାନ, ତୁମେ ଚିତ୍ତରୁ ବ୍ୟଥା ପରିତ୍ୟାଗ କର ।” ଯଥା :—

“ଆମି ନିତ୍ୟାନନ୍ଦ ଦୁଇ ନନ୍ଦନ ତୋମାର,
ଚିତ୍ତେ ତୁମି ବ୍ୟଥା କିଛୁ ନା ଭାବିହ ଆର,”

( ଚୈଃ ଭାଃ ମଧ୍ୟ ୨୫ )

ପ୍ରକୃତରେ ମହାପ୍ରଭୁ ଓ ପ୍ରଭୁ ଶ୍ରୀନିତ୍ୟାନନ୍ଦ ଶ୍ରୀଲ ଶ୍ରୀବାସଙ୍କର ଘରେ ତାଙ୍କର ପୁତ୍ରତୁଲ୍ୟ ବ୍ୟବହାର କରୁଥିଲେ ! ଏଥିପାଇଁ ଶ୍ରୀଲ ବୃନ୍ଦାବନ ଦାସ କହିଅଛନ୍ତି ।—

“ଶ୍ରୀବାସେର ଚରଣେ ରହୁକ ନମସ୍କାର,
ଗୌରଚନ୍ଦ୍ର ନିତ୍ୟାନନ୍ଦ ନନ୍ଦନ ଯାହାର,”

( ଚୈଃ ଭାଃ ମଧ୍ୟ ୨୫ )

ଶ୍ରୀମାନ୍ ଶ୍ରୀଧରଙ୍କର ସୌଭାଗ୍ୟ ମଧ୍ୟ କମ ନୁହେ ! ତାଙ୍କସହ ମହାପ୍ରଭୁ ଯୌବନୌଦ୍ଧତ୍ୟରେ ଯେଉଁ ପ୍ରେମକଳହ କରୁଥିଲେ ତାହାଅତି ସୁମଧୁର !

ଶ୍ରୀମାନ୍ ଶ୍ରୀଧର ଗରିବ ବ୍ରାହ୍ମଣ, ବଜାରରେ ବସି କଦଳୀ, ମଞ୍ଜା, ଭଣ୍ଡା, ଓ କଦଳୀପତ୍ର ବିକ୍ରୟ କରନ୍ତି । ମହାପ୍ରଭୁ ଯେତେବେଳେ ବିଦ୍ୟାବିଳାସରେ ମତ୍ତଥିଲେ ଓ ନିଜକୁ ଭଗବାନ ବୋଲି ପରିଚୟ ଦେଇ ନ ଥିଲେ, ସେ ପ୍ରତ୍ୟହ ଶ୍ରୀଧରଙ୍କ ସଙ୍ଗେ ଯାଇ ପ୍ରେମକଳହ କରୁଥିଲେ ! ସେ ତାଙ୍କ ପସରାରୁ ମଞ୍ଜା, କଦଳୀମାନ ନିଜେ ଉଠାଇ ପ୍ରକୃତ ମୂଲ୍ୟ ନ ଦେଇ ଅର୍ଦ୍ଧମୂଲ୍ୟ ପ୍ରଦାନ କରୁଥିଲେ । ସେଥିରେ ଶ୍ରୀଧର ତାଙ୍କ ହାତରୁ ଦ୍ରବ୍ୟମାନ ଛଡ଼ାଇ ରଖୁଥିଲେ ! ମହାପ୍ରଭୁ କଳହକରି କହୁଥିଲେ “ଶ୍ରୀଧର? ତୁମେ ପରମତପସ୍ୱୀ, ତୁମେ କି ଏତେଦିନ ମୋତେ ଚିହ୍ନି ନାହଁ ଯେ ମୋ-ହାତରୁ ମଞ୍ଜା, କଦଳୀ ଛଡ଼ାଇ ନେଉଅଛ ?” ଶ୍ରୀଧର ମହାପ୍ରଭୁଙ୍କ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ କହୁଥିଲେ “ ପଣ୍ଡିତ ! ହାଟରେ ଏତେ ପସରା ଅଛି,

ଅନ୍ୟତ୍ର ଯାଇ କଣ ନା ।" ମହାପ୍ରଭୁ କହିଥିଲେ "ଶ୍ରୀଧର ! ମୁଁ ତ ତୁମ-ଠାରୁ ପ୍ରତ୍ୟହ ନେଉଅଛି, ନିତ୍ୟ ଯେ ଯୋଗାଡ଼ୁ ଅଛି ତାକୁ ଛାଡ଼ି ଅନ୍ୟତ୍ର ଯିବି କାହିଁକି? "ଶ୍ରୀଧର କହୁଥିଲେ "ହେ ବ୍ରାହ୍ମଣଠାକୁର ! ମୁଁ ତୁମର କୁକ୍କୁର-ବିଶେଷ, ମୋତେ କ୍ଷମା କର ।" ମହାପ୍ରଭୁ କହୁଥିଲେ "ଶ୍ରୀଧର ! ତୁମେ ବଡ଼ ଚତୁର, କଦଳୀ, କଦଳୀପତ୍ର ବିକ୍ରୟକରି ଢ଼େର ଧନ ଅର୍ଜି କଲଣି, ସେମାନ ପୋତି ରଖିଅଛ । ମୁଁ ଦିନେ ସେ ପୋତାଧନ ସମସ୍ତ ବାହାର କରିବି । ଯଦି ନିଜର ଭଲ ଚାହଁ ତେବେ ମୋତେ କିଛି ଦିଅ । ତୁମେ ନିତ୍ୟ ଗଙ୍ଗାମାତାଙ୍କର ପୂଜାକର ତାଙ୍କୁ କିଛି ଦିଅ, ମୋତେ ବା ଅର୍ଦ୍ଧମୂଲ୍ୟରେ କିଛି ଦ୍ରବ୍ୟ ଦେଲ । ଯେଉଁ ଗଙ୍ଗାଙ୍କୁ ତୁମେ ନିତ୍ୟ ପୂଜାକର, ମୁଁ ସେ ତାହାଙ୍କର ପିତା ।" ଶ୍ରୀଧର ଏଥିରେ କାନରେ ହସ୍ତପ୍ରଦାନ ପୂର୍ବକ ବିଷ୍ଣୁ ସ୍ମରଣ କରନ୍ତି ଏବଂ କହନ୍ତି "ବିପ୍ରବର ! ତୁମଠାରେ ମୋର ହାର, ଅଛି ମୁଁ ପ୍ରତ୍ୟହ ତୁମକୁ ଖଣ୍ଡେ ମଞ୍ଜା ଓ ଗୋଟିଏ ଭଣ୍ଡା ଓ ଖଣ୍ଡେ ପତ୍ର ଦେବି । ତୁମେ ମୋ ସଙ୍ଗରେ ଆଉ ଏତେ କଳହ କରିବ ନାହିଁ ।" ମହା-ପ୍ରଭୁ କହନ୍ତି, ଆଉ କଳହ କାହିଁକି । ମୋର ପ୍ରାପ୍ୟ ମୁଁ ପାଇଲେ ତ ହେଲା ମହାପ୍ରଭୁଙ୍କର ଶ୍ରୀଧରଙ୍କ ପ୍ରତି ଈଦୃଶ ବ୍ୟବହାରକୁ ଲକ୍ଷ୍ୟକରି ଶ୍ରୀଳ ବୃନ୍ଦା-ବନ ଦାସ ଲେଖିଅଛନ୍ତି ।

"ଭକ୍ତେର ପଦାର୍ଥ ପ୍ରଭୁ ହେନ ମତେ ଖାୟ,
କୋଟି ହେଲେ ଅଭକ୍ତେର ଉଲଟି ନା ଚାୟ"

(ଚୈଃ ଭାଃ ମଧ ୯)

ଏହି ଶ୍ରୀଧରଙ୍କୁ ମହାପ୍ରଭୁ ମହାପ୍ରକାଶ ସମୟରେ ନିଜେ ଡ଼କାଇ ପୂର୍ବ-କଥା ସ୍ମରଣ କରାଇ ତାଙ୍କ ଦିବ୍ୟ ଦ୍ୱିଭୁଜ ମୁରଲୀଧର ଶ୍ୟାମସୁନ୍ଦରରୂପ ଦେଖାଇ ଥିଲେ । ମହାପ୍ରଭୁ ଯେତେବେଳେ ଭକ୍ତିମନ୍ଦାକିନୀରେ ଜଗତକୁ ପ୍ଲାବିତ କରି କାଜୀ ଉଦ୍ଧାର କରିବାକୁ ମହା ସଙ୍କୀର୍ତ୍ତନ ଆରମ୍ଭ କରି ବାହାରିଥିଲେ, ସେ ଦିନ କାଜୀ ଉଦ୍ଧାର ପରେ ମହାପ୍ରଭୁ ସଂକୀର୍ତ୍ତନ ସଙ୍ଗେ ନଗରସ୍ଥ ଶଙ୍ଖବଣିକ, ତନ୍ତୁବାୟ ପ୍ରଭୃତି କତିପୟ ଲୋକଙ୍କ ଗୃହ ପବିତ୍ର କରି ଶେଷରେ ଶ୍ରୀଧର ଆବାସରେ ଉପସ୍ଥିତ ହେଲେ । ଗୋଟିଏ ଭଙ୍ଗାଘର ଓ ଦୁଆରେ ଗୋଟିଏ

ତାଳ ପକା ଲୌହପାତ୍ର । ମହାପ୍ରଭୁ ଶ୍ରୀଧର ଅଙ୍ଗନରେ ଯାଇ ନୃତ୍ୟ କଲେ ଏବଂ ଦେଖିଲେ ଯେ ଲୌହ ପାତ୍ରରେ ଜଳପୂର୍ଣ୍ଣ ହୋଇ ରହିଅଛି, ମହାପ୍ରଭୁ ସେ ପାତ୍ର ଉଠାଇ ସେଥିରୁ ଜଳପାନ କରିବାକୁ ଲାଗିଲେ । ମହାପ୍ରଭୁ ଭକ୍ତ-ବାତ୍ସଲ୍ୟଗୁଣରେ ଶ୍ରୀଧରଙ୍କ ବାହାରସ୍ଥିତ ତାଳପକା ଲୌହ କଳସୀରୁ ଜଳପାନ କରୁଅଛନ୍ତି ସେଥିରୁ ତାଙ୍କୁ କିଏ ନିବୃତ୍ତ କରି ପାରୁଅଛି । ଶ୍ରୀଧର ଦୁଃଖରେ ହାୟ୍ ହାୟ୍ କରି ମୂର୍ଚ୍ଛିତ ହେଲେ, କିନ୍ତୁ ମହାପ୍ରଭୁ ପ୍ରେମବିହ୍ୱଳ ହେଲେ । ତାଙ୍କ ନୟନରୁ ଦର ଦର ଧାରରେ ପ୍ରେମାଶ୍ରୁ ବିଗଳିତ ହେଲା । ସେ କହିବାକୁ ଲାଗିଲେ " ଶ୍ରୀଧରଙ୍କ ଏହି ଜଳ ପାନକରି ଆଜ ମୋର ଦେହ ପବିତ୍ର ହେଲା, ଆଜ ଶ୍ରୀକୃଷ୍ଣଚରଣାରବିନ୍ଦରେ ମୁଁ ଭକ୍ତି ଲାଭ କଲି, ଯଥା :—

"ଆଜ ମୋର ଭକ୍ତି ହୈଲ କୃଷ୍ଣେର ଚରଣେ,
ଶ୍ରୀଧରେର ଜଲପାନ କରିଲ ଯଖନେ"
( ଚୈଃ ଭାଃ ମଧ୍ୟ ୨ ସୃ )

ଅହା ସ୍ୱୟଂ ଭଗବାନ ଶ୍ରୀଗୌରଚନ୍ଦ୍ର ଆଜ ଶ୍ରୀଧରଙ୍କ ପ୍ରତି ନିଜ ଭକ୍ତ ବାତ୍ସଲ୍ୟଗୁଣ ଦେଖାଇ ତାଙ୍କ ବାହାର କଳସୀରୁ ଜଳପାନ କଲେ । ଏରୂପ ଗୁଣଗ୍ରାହୀ ପ୍ରଭୁର ଚରଣକମଳ ଛାଡ଼ି ଆମ୍ଭେମାନେ ବିଷୟ-ବିଷକୁ ଏତେ ଆଦର କରି ଭଜୁଅଛୁଁ । ଅତଏବ ଆମ୍ଭମାନଙ୍କର ଏ ଜୀବନକୁ ଶତ-ବାର, ସହସ୍ରବାର ଧିକ୍ ।

ଶ୍ରୀଲ ପରମାନନ୍ଦପୁରୀ ମହାପ୍ରଭୁଙ୍କ ସଙ୍ଗସୁଖ ଇଚ୍ଛାରେ ଶ୍ରୀପୁରୁଷୋ-ତ୍ତମରେ ବାସ କରୁଥିଲେ । ମହାପ୍ରଭୁ ସତତ ତାଙ୍କୁ ଗୁରୁଜ୍ଞାନରେ ଭକ୍ତି କରୁଥିଲେ । ଦିନକରେ ମହାପ୍ରଭୁ ଶ୍ରୀପୁରୀଗୋସ୍ୱାମୀଙ୍କୁ ପଚାରିଲେ "ଶ୍ରୀପାଦ! ଆପଣଙ୍କ କୂପର ଜଳ କିପରି ହେଲା ?" ପୁରୀଗୋସ୍ୱାମୀ ଉତ୍ତରକଲେ "ସେ କୂପଟି ବଡ଼ ଅଭାଗିଆ ତାହାର ଜଳ କର୍ଦ୍ଦମମୟ ଗୋଳିଆ ହୋଇଅଛି ।" ମହାପ୍ରଭୁ ଏହା ଶୁଣି ଦୁଃଖିତ ହେଲେ ଏବଂ ଛିଡ଼ା ହୋଇ ଶ୍ରୀଜଗନ୍ନାଥ ଦେବଙ୍କୁ ପ୍ରାର୍ଥନା ପୂର୍ବକ କହିଲେ "ପ୍ରଭୋ ! ମୋତେ ଏହି ବର ପ୍ରଦାନ କରନ୍ତୁ ଏ କୂପରେ ସ୍ୱୟଂ ଗଙ୍ଗାଦେବୀ ଆସି ପ୍ରବେଶ କରନ୍ତୁ । ହେ ପ୍ରଭୋ

ପାତାଳସ୍ଥ ଭୋଗବତୀଙ୍କୁ ଏ କୂପରେ ପ୍ରବେଶ କରିବାକୁ ଆଦେଶ ଆଜ୍ଞା କରନ୍ତୁ" । ମହାପ୍ରଭୁଙ୍କର ଏ ପ୍ରାର୍ଥନା ଶୁଣି ସମସ୍ତେ ଜୟହରି ଧ୍ୱନି କରିବାକୁ ଲାଗିଲେ, ତତ୍ପର ଦିବସ ଦେଖାଗଲା, ସେ କୂପର ଜଳ ଅତି ନିର୍ମଳ ହୋଇଅଛି । ଶ୍ରୀପୃଶିଗୋସ୍ୱାମୀ ଏହା ଦେଖି ପ୍ରେମରେ ଅଚେତନ ହେଲେ । ସକଳ ବୈଷ୍ଣବଗଣ ଜାଣିପାରିଲେ ମହାପ୍ରଭୁଙ୍କ ଆଜ୍ଞାରେ ଏ କୂପରେ ଶ୍ରୀଗଙ୍ଗାଦେବୀ ବିରାଜମାନ କରିଅଛନ୍ତି ଏବଂ ସେମାନେ କୂପକୁ ପ୍ରଦକ୍ଷିଣ କରିବାକୁ ଲାଗିଲେ । ଏ ସଂବାଦପାଇ ମହାପ୍ରଭୁ ସେଠାରେ ଆସି ଉପସ୍ଥିତ ହେଲେ ଏବଂ ଜଳଦେଖି କହିଲେ, ସତ୍ୟ ସତ୍ୟ ଏଥିରେ ଶ୍ରୀଗଙ୍ଗାଦେବୀଙ୍କର ଆବିର୍ଭାବ ହୋଇଅଛି, ଯେ ଏ ଜଳରେ ସ୍ନାନ କରିବ କିମ୍ବା ଏହା ପାନ କରିବ ତାହାର ପରମ ନିର୍ମଳ କୃଷ୍ଣଭକ୍ତି ଉଦୟ ହେବ । ଏହାଶୁଣି ସମସ୍ତେ ଜୟ ହରିଧ୍ୱନି କରିବାକୁ ଲାଗିଲେ । ଯଥା :—

"ପ୍ରଭୁ ବୋଲେ ଶୁଣହ ସକଳ ଭକ୍ତଗଣ
ଏ କୂପର ଜଳେ ଯେ କରିବ ସ୍ନାନପାନ ।
ସତ୍ୟ ସତ୍ୟ ହେବ ତାର ଗଙ୍ଗାସ୍ନାନ ଫଳ
କୃଷ୍ଣଭକ୍ତି ହେବ ତାର ପରମ ନିର୍ମଳ ।"

( ଚୈ: ଭା: ଅନ୍ତ୍ୟ ୩ ଅ )

ଏହି କୂପଟି ବଡ଼ଦେଉଳ ପଶ୍ଚିମ ପାର୍ଶ୍ୱ ଶ୍ରୀଲୋକନାଥ ଦର୍ଶନ ଯିବା ପଥରେ ଅବସ୍ଥିତ । ଏହା ନିକଟରେ ବର୍ତ୍ତମାନ ଗୋଟିଏ ପୋଲିସ ଆଉଟ୍‌ପୋଷ୍ଟ ହୋଇଅଛି । କିନ୍ତୁ ଦୁଃଖର ବିଷୟ ଯହିଁରେ ମହାପ୍ରଭୁଙ୍କ ଶ୍ରୀମୁଖ ଆଜ୍ଞାରେ ସ୍ୱୟଂ ଗଙ୍ଗାଦେବୀଙ୍କ ଅଧିଷ୍ଠାନ ହୋଇଥିଲା, ତାହାର ପ୍ରକୃତ ସମାଦର ହେଉନାହିଁ । ତେବେ କେହି ଭକ୍ତ ସନ୍ମାନାର୍ଥ ଏହି ଘଟଣା-ସ୍ମାରକ ଲିପି ସେ କୂପର ପ୍ରସ୍ତରରେ ଖୋଳାଇ ଦେଇଅଛନ୍ତି । ସେ ଭକ୍ତଙ୍କ ଉପରେ ପୁଷ୍ପବର୍ଷଣ ହେଉ । ଆଜିକାଲି ଦୋଳପୂର୍ଣ୍ଣିମା ସମୟରେ ଏହି କୂପରୁ ଜଳ ନେଇ ମହାପ୍ରଭୁଙ୍କ ଗମ୍ଭୀରାରେ ( କାଶୀମିଶ୍ରାଳୟରେ ) ୧୪ ପ୍ରହର କୀର୍ତ୍ତନର ଅଧିବାସ କରନ୍ତି ।

ଶ୍ରୀଗଦାଧର ପଣ୍ଡିତ ମହାପ୍ରଭୁଙ୍କ ମନଶକ୍ତି । ସେଥିପାଇଁ ଗଦାଇ ଗୌରାଙ୍ଗ ବୋଲି ଭକ୍ତଗଣ ଗାଇଥାଆନ୍ତି । ଶ୍ରୀଗଦାଧରଙ୍କ ପ୍ରତି ମହାପ୍ରଭୁଙ୍କର ଯେ ସ୍ନେହ ସେ କି ଅଳ୍ପ କହିବାର କଥା । ତେବେ ଗଦାଧରପ୍ରାଣନାଥଙ୍କ ପ୍ରୀତି ନିମିତ୍ତ ଗଦାଧରଙ୍କ ପ୍ରତି ମହାପ୍ରଭୁଙ୍କର ଅପାର ସ୍ନେହର ଗୋଟିଏ ଉଦାହରଣ ଏଠାରେ ଲିପିବଦ୍ଧ କଲି ।

ଶ୍ରୀମନ୍ ପ୍ରଭୁ ନିତ୍ୟାନନ୍ଦଙ୍କର ଗଦାଧରଙ୍କ ସହ ଅସୀମ ପ୍ରୀତି । ତେଣୁ ବଙ୍ଗଦେଶରୁ ଗଦାଧରଙ୍କ ପୂଜ୍ୟ ଶ୍ରୀଗୋପୀନାଥଙ୍କ ଲାଗି ଏକମହଣ ଦିବ୍ୟ ଶୁକ୍ଲଚାଉଳ ଓ ଖଣ୍ଡିଏ ଦିବ୍ୟ ରଙ୍ଗବସ୍ତ୍ର ଉପହାର ଆଣିଥିଲେ । ସେ ଏମାନ ଆଣି ଗଦାଧରଙ୍କୁ ଅର୍ପଣ କରନ୍ତେ ଶ୍ରୀଗଦାଧର ପ୍ରଭୁ ନିତ୍ୟାନନ୍ଦଙ୍କୁ ସେଦିନ ସେଠାରେ ପ୍ରସାଦାନ୍ନ ଭିକ୍ଷାର ଆମନ୍ତ୍ରଣ କଲେ । ଶ୍ରୀଗଦାଧର ସେ ବସ୍ତ୍ର ନେଇ ଶ୍ରୀଗୋପୀନାଥଙ୍କୁ ଦେଲେ ଏବଂ ସୁବାସିତ ଚାଉଳରୁ କିଛି ନେଇ ପାକ ଆରମ୍ଭ କଲେ । ତୋଟାରୁ କିଛି ଶାକ ତୋଳିଆଣି ବ୍ୟଞ୍ଜନ ପ୍ରସ୍ତୁତ କଲେ ଏବଂ ତେନ୍ତୁଳି ବୃକ୍ଷର ନୂତନ ପତ୍ର ଆଣି ତହିଁରେ ଲବଣ ଜଳ ଦେଇ ଏକପ୍ରକାର ଅମ୍ଳ ପ୍ରସ୍ତୁତ କଲେ । ରନ୍ଧନ ଶେଷରେ ପଣ୍ଡିତ ଗଦାଧର ତାହା ଶ୍ରୀଗୋପୀନାଥଙ୍କୁ ଅର୍ପଣ କଲେ । ଏହି ସମୟରେ ହଠାତ୍ ଶ୍ରୀଗୌରଚନ୍ଦ୍ର ସେଠାରେ ଆସି ଉପସ୍ଥିତ ହେଲେ ଏବଂ ଗଦାଧରଙ୍କୁ ତାଙ୍କ ମୃଦୁ ହସି କହିଲେ "ଗଦାଧର ମୁଁ କି ଏ ନିମନ୍ତ୍ରଣରେ ନାହିଁ ? ମୁଁ କି ତୁମ୍ଭ ଦୁହିଁଙ୍କଠାରୁ ଭିନ୍ନ ? ଶ୍ରୀନିତ୍ୟାନନ୍ଦଙ୍କ ଆଣିତ ଦ୍ରବ୍ୟ, ତୁମ୍ଭେ ପାକକର୍ତ୍ତା ଓ ଶ୍ରୀଗୋପୀନାଥଙ୍କ ପ୍ରସାଦ । ଅତଏବ ଏଥିରେ ତୁମ୍ଭେ ନଡାକିଲେ ମଧ୍ୟ ମୋର ଏଥିରେ ଭାଗ ନ୍ୟାଯ୍ୟତଃ ପ୍ରବର୍ତ୍ତୁଅଛି । ଯଥା :—

"ହାସିୟା ବଲେନ ପ୍ରଭୁ ଶୁନ ଗଦାଧର,
ଆମି କି ନାହିଁ ନିମନ୍ତ୍ରଣେର ଭିତର ।
ଆମିତ ତୋମାର ଦୁଇ ହୈତେ ଭିନ୍ନ ନଇ,
ନା ଦିଲେଓ ତୋମରା ବଲେତେ ଆମି ଲଇ ।
ନିତ୍ୟାନନ୍ଦ ଦ୍ରବ୍ୟ ଗୋପୀନାଥେର ପ୍ରସାଦ,
ତୋମାର ରନ୍ଧନ ମୋର ଇଥେ ଆଛେ ଭାଗ ।"
( ଚୈ ଭ )

ଅହୋ ! ଏହାଠାରୁ ବଳି ସ୍ନେହବାକ୍ୟ କି ଅଉଅଛି । ଏଯେ ମହାପ୍ରଭୁଙ୍କର ସ୍ନେହାମୃତ ବର୍ଷଣ । ଏଥିରେ ନିତ୍ୟାନନ୍ଦ ଓ ଗଦାଧର ସ୍ନାନ କରିଥିଲେ । ଶ୍ରୀବୃନ୍ଦାବନ ଦାସ କୃପାକରି ଏ ସ୍ନେହାମୃତ ସଞ୍ଚୟ କରି ରଖିଥିବାରୁ କେତେ କେତେ ଲୋକ ଯେ ଏଥିରେ ସ୍ନାନ କରି ପବିତ୍ର ହେଉଅଛନ୍ତି ତାହାର ସୀମା ନାହିଁ । ମୋର ମଧ୍ୟ ପରମ ସୌଭାଗ୍ୟ ଯେ ମୁଁ ଆଜି ଏ ଅମୃତରେ ସ୍ନାନ କଲି ।

ଜଗଦାନନ୍ଦଙ୍କ ପ୍ରତି ମହାପ୍ରଭୁଙ୍କର ଯେ ଅପୂର୍ବ ସ୍ନେହ ତାହାର ତୁଳନା ସେହିମାତ୍ର, ତାହାର ତୁଳନା ଅନ୍ୟତ୍ର ନାହିଁ । ଯେ ପ୍ରଣୟର ଗତି ସର୍ପଗତି ତୁଲ୍ୟ ସତତ ବକ୍ର କିନ୍ତୁ ସେହି ବକ୍ରତାହିଁ ତାହାର ମାଧୁର୍ଯ୍ୟ । ତାହା ସରଳ ହୋଇଥିଲେ ଏତେ ବିଚିତ୍ର ଶୋଭନୀୟ ହୋଇ ନ ଥାନ୍ତା ।

ଜଗଦାନନ୍ଦ ମହାପ୍ରଭୁଙ୍କ ଆଜ୍ଞା ନେଇ ଶ୍ରୀନବଦ୍ୱୀପକୁ ଯାଇଥିଲେ । ସେଠାରୁ ଫେରିବା ସମୟରେ ମହାପ୍ରଭୁଙ୍କ ବ୍ୟବହାରପାଇଁ ଏକ କଳସୀ ସୁଗନ୍ଧ ଚନ୍ଦନାଦି ତୈଳ ପ୍ରସ୍ତୁତ କରାଇ ଆଣିଥିଲେ ଏବଂ ତାହା ମହାପ୍ରଭୁଙ୍କର ସେବକ ଭାଗ୍ୟବାନ୍ ଶ୍ରୀଗୋବିନ୍ଦଙ୍କୁ ଦେଇ କହିଲେ, "ଦେଖ, ମହାପ୍ରଭୁ ଏହା ଯେପରି ଶ୍ରୀଅଙ୍ଗରେ ବ୍ୟବହାର କରନ୍ତି ତାହାର ଯତ୍ନ କରିବ ।" ଗୋବିନ୍ଦ ସେ ତୈଳ ରଖି ଦିନେ ଅବସର କ୍ରମେ ମହାପ୍ରଭୁଙ୍କୁ ନିବେଦନ କଲେ, "ପ୍ରଭୋ ! ଜଗଦାନନ୍ଦ କଳସେ ଚନ୍ଦନାଦି ତୈଳ ଆପଣଙ୍କ ପାଇଁ ଆଣି ଅଛନ୍ତି । ତାଙ୍କର ଇଚ୍ଛା, ଆପଣ ଏହା ମସ୍ତକରେ ଓ ଶ୍ରୀଅଙ୍ଗରେ ବ୍ୟବହାର କରିବେ ଏବଂ ତହିଁରେ ଆପଣଙ୍କର ପିତ୍ତ, ବାୟୁ ପ୍ରଭୃତିର ପ୍ରକୋପ ନିବାରିତ ହେବ ।" ଗୋବିନ୍ଦଙ୍କର ଏହି ବାକ୍ୟ ଶ୍ରବଣ କରି ମହାପ୍ରଭୁ କହିଲେ "ଗୋବିନ୍ଦ ! ମୁଁ ସନ୍ନ୍ୟାସୀ, ମୋ ପକ୍ଷରେ ତୈଳ ବ୍ୟବହାର ଏକବାରେ ନିଷିଦ୍ଧ । ଏ ପୁଣି ସୁଗନ୍ଧ ତୈଳ ଅତଏବ ସନ୍ନ୍ୟାସୀ ପକ୍ଷରେ ନିତାନ୍ତ ଅଯୋଗ୍ୟ । ସେ ତୈଳକୁ ଶ୍ରୀଜଗନ୍ନାଥ ଦେବଙ୍କ ଭଣ୍ଡାରରେ ଦିଅ, ତାହା ତାଙ୍କଠାରେ ପ୍ରଦୀପରେ ଜଳିଲେ ତାହାର ପ୍ରକୃତ ସଦ୍‌ବ୍ୟବହାର କରା ହେବ ଏବଂ ଜଗଦାନନ୍ଦଙ୍କର ପରିଶ୍ରମ ସଫଳ ହେବ ।" ଗୋବିନ୍ଦ ଜଗଦାନନ୍ଦଙ୍କୁ ଏହି କଥା କହନ୍ତେ, ସେ ମନଦୁଃଖରେ ମୌନାବଲ-

ମ୍ଭନ କଲେ । ଜଗଦାନନ୍ଦଙ୍କ ଅନ୍ତର ବେଦନା ଅନୁଭବ କରି ଗୋବିନ୍ଦ କଛି ଦିନ ପରେ ପୁଣି ମହାପ୍ରଭୁଙ୍କୁ ନିବେଦନ କଲେ, "ପ୍ରଭୋ ! ଜଗଦାନନ୍ଦର ଏକାନ୍ତ ଇଚ୍ଛା, ଆପଣ ସେ ତୈଳ ଅଙ୍ଗୀକାର କରନ୍ତୁ ।" ମହାପ୍ରଭୁ ଏଥିରେ କ୍ରୋଧ ପ୍ରକାଶ ପୂର୍ବକ କହିଲେ, "ତୈଳ ଖାଲି ଲଗାଇବା କପର, ତେବେ ଜଣେ ମର୍ଦ୍ଦନିଆ ନିଯୁକ୍ତ କର, ଯେ ମୋ ଅଙ୍ଗରେ ନିତ୍ୟ ତୈଳମର୍ଦ୍ଦନ କରିବ । ତୁମ୍ଭେମାନେ ମୋହର ଏହି ସବୁ ସୁଖ ବାଞ୍ଛା କରୁଅଛ, ମୋର ସର୍ବନାଶ ହେଲେ ତୁମ୍ଭମାନଙ୍କର ବଡ଼ ଆନନ୍ଦ ହେବ । ମୁଁ ଏ ସୁଗନ୍ଧ ତୈଳ ଅଙ୍ଗରେ ଲଗାଇ ଯେତେବେଳେ ପଥ ମଧ୍ୟରେ ଯାଉଥିବି, ମୋ ଅଙ୍ଗରୁ ତୈଳଗନ୍ଧ ପାଇ ଲୋକେ ଯେତେବେଳେ ମୋତେ ଦାସୀ ସନ୍ନ୍ୟାସୀ ବୋଲି କହିବେ ତେତେବେଳେ ତାହା ବଡ଼ ପ୍ରଶଂସାର କଥା ହେବ ।" ଏହା ଶୁଣି ଗୋବିନ୍ଦ ମୌନାବଲମ୍ବନ କଲେ । ପର ଦିବସ ପ୍ରାତଃକାଳରେ ଜଗଦାନନ୍ଦ ମହାପ୍ରଭୁଙ୍କ ନିକଟକୁ ଆସନ୍ତେ, ମହାପ୍ରଭୁ କହିଲେ, "ଜଗଦାନନ୍ଦ ! ମୁଁ ସନ୍ନ୍ୟାସୀ, ତୈଳ ବ୍ୟବହାରରେ ମୋର ଅଧିକାର ନାହିଁ, ତୁମ୍ଭେ ଗୌଡ଼ ଦେଶରୁ ଯେ ତୈଳ ଆଣିଅଛ, ତାହା ଶ୍ରୀ ଜଗନ୍ନାଥଙ୍କୁ ଦିଅ । ତାଙ୍କଠାରେ ସେ ତୈଳ ଦୀପରେ ଜଳିଲେ, ତୁମ୍ଭର ଏତେ ଦୂର ଆଣିବାର ଶ୍ରମ ସଫଳ ହେବ ।" ଏହାଶୁଣି ପ୍ରଣୟକୋପଭରେ ଜଗଦାନନ୍ଦ ଉତ୍ତର କଲେ, " ପ୍ରଭୋ ! କିଏ ଆପଣଙ୍କୁ ମିଥ୍ୟା କଥା କହିଲା ? ମୁଁ ତ ଗୌଡ଼ ଦେଶରୁ କୌଣସି ତୈଳ ଆଣି ନାହିଁ ।" ଯଥା :—

ପଣ୍ଡିତ କହେନ ତୋମାକେ କହେ ମିଥ୍ୟାବାଣୀ,
ଆମି ଗୌଡ଼ ହଇତେ ତୈଲ କଭୁ ନାହିଁ ଆନି ।

( ଚୈ ଚ: ଅନ୍ତ୍ୟ ୧୨ ପରି )

ଏହା କହି ସେ ତୈଳକଳସୀ ଗୃହମଧ୍ୟରୁ ଆଣି ପ୍ରଭୁଙ୍କ ସମ୍ମୁଖରେ ପ୍ରାଙ୍ଗଣ ଉପରେ କଚାଡ଼ି ଦେଲେ ଓ ନିଜ କୁଠରିକୁ ଯାଇ ଭିତରୁ କବାଟ ବନ୍ଦକରି ମନ ଦୁଃଖରେ ଶୋଇ ରହିଲେ ।

ମହାପ୍ରଭୁଙ୍କର ପ୍ରଣୟପାତ୍ର କୋଟି କୋଟି । କାହାର ପ୍ରୀତି କେତେ ଦୂର ଗଭୀର ଓ କାହାର ପ୍ରୀତି କେଉଁ ଜାତୀୟ, ମହାପ୍ରଭୁ ତାହା ଉତ୍ତମରୂପେ

ଜାଣୁଥିଲେ ଏବଂ ପ୍ରୀତିର ଅନୁରୂପ ବ୍ୟବହାର କରୁଥିଲେ । ଏ କପଟ୍ଟିତ ଘଟଣାରେ ମହାପ୍ରଭୁ ସ୍ୱଗତ ମନେ କଲେ, ଏ ଗୁରୁ ମାନ ସହଜରେ ଭାଙ୍ଗିବ ନାହିଁ । ଏ ମାନ ପରିପାକ ହେବାକୁ କିଛି ସମୟ ଆବଶ୍ୟକ କରିବ । ତେଣୁ ଦୁଇ ଦିନ ଗଡ଼େଇ ଦେଇ ତୃତୀୟ ଦିବସ ମହାପ୍ରଭୁ ଜଗଦାନନ୍ଦଙ୍କ କୁଟୀର ଦ୍ୱାରରେ ଉପସ୍ଥିତ ହେଲେ ଏବଂ ପ୍ରୀତିପୂର୍ଣ୍ଣ ସୁଧା-ମଧୁର ବାକ୍ୟରେ ଡାକିଲେ, "ପଣ୍ଡିତ, ପଣ୍ଡିତ ! ଏବେ ଉଠ, ମୁଁ ବର୍ତ୍ତମାନ ଶ୍ରୀଜଗନ୍ନାଥ ଦେବଙ୍କ ଦର୍ଶନକୁ ଯାଉଅଛି, ଦର୍ଶନରୁ ଫେରି ମଧ୍ୟାହ୍ନରେ ତୁମ୍ଭ ଏଠାରେ ଭିକ୍ଷା କରିବି । ତୁମ୍ଭେ ଶୀଘ୍ର ଉଠି ପାକ ପ୍ରସ୍ତୁତ କର ।" ମହାପ୍ରଭୁଙ୍କର ଏହିରୂପ ପ୍ରଶସ୍ତ ବାକ୍ୟରେ ଜଗଦାନନ୍ଦଙ୍କ ପ୍ରଗାଢ଼ ମାନ ସକଳ ଚୂନା ହୋଇ ଗଲା । ସେ ତତ୍‌କ୍ଷଣାତ୍ ଶଯ୍ୟାରୁ ଉଠି ଶୀଘ୍ର ଶୀଘ୍ର ସ୍ନାନାଦି ସମାପନ କରି ନାନା ପ୍ରକାର ବ୍ୟଞ୍ଜନ ଓ ଅନ୍ନ ପ୍ରସ୍ତୁତ କଲେ । ମହାପ୍ରଭୁ ଶ୍ରୀ ଜଗନ୍ନାଥ ଦର୍ଶନାନନ୍ତର ମଧ୍ୟାହ୍ନକାଳରେ ଜଗଦାନନ୍ଦଙ୍କ ବାସ ଗୃହରେ ଉପସ୍ଥିତ ହେଲେ ଏବଂ ପାଦ ପ୍ରକ୍ଷାଳନ କରି ଆସନରେ ଉପବେଶନ କଲେ । ଜଗଦାନନ୍ଦ କଦଳୀ-ପତ୍ରରେ ଅନ୍ନ ବାଢ଼ି ତାହାର ଚାରିପଟରେ ଦୋନାମାନଙ୍କରେ ବ୍ୟଞ୍ଜନମାନ ସଜାଡ଼ି ଦେଲେ । ପିଠା ପଣା ଶ୍ରୀଜଗନ୍ନାଥଦେବଙ୍କ ନାନା ପ୍ରକାର ମହାପ୍ରସାଦ ମଧ୍ୟ ପାତ୍ର ପାଖରେ ଥୋଇଲେ । ତାହା ଦେଖି ମହାପ୍ରଭୁ କହିଲେ, "ଜଗଦାନନ୍ଦ ! ଆଉ ଖଣ୍ଡିଏ ପତ୍ରରେ ଅନ୍ନ ବ୍ୟଞ୍ଜନ ବାଢ଼ । ଆଜି ଦୁହେଁ ଏକତ୍ରରେ ବସି ଭୋଜନ କରିବା ।" ଏହା କହି ମହାପ୍ରଭୁ ଜଗଦାନନ୍ଦଙ୍କ ପାଇଁ ଅପେକ୍ଷା କରି ରହିଲେ । ତାହା ଦେଖି ଜଗଦାନନ୍ଦ ପ୍ରେମଗଦ୍‌ଗଦ୍ ହୋଇ କହିଲେ, "ପ୍ରଭୋ ! ଆପଣ ସେବନ କରନ୍ତୁ ମୁଁ ଅଧରାମୃତ ସେବନ କରିବି । ଆପଣଙ୍କ ଏ ଭଳି ଅନୁରୋଧ କି ମୁଁ ଲଙ୍ଘନ କରିପାରେଁ ?" ତତ୍ପରେ ମହାପ୍ରଭୁ ଭୋଜନ କରିବାକୁ ଲାଗିଲେ । ସେ ଦିନ ବ୍ୟଞ୍ଜନ ମାନଙ୍କର ଅପୂର୍ବ ସ୍ୱାଦୁ ଅନୁଭବ କରି କହିଲେ, "ପଣ୍ଡିତ, କ୍ରୋଧାବେଶରେ ରନ୍ଧନ କଲେ ଏତେ ସୁସ୍ୱାଦୁ ହୁଏ । ଶ୍ରୀକୃଷ୍ଣ ନିଜେ ଭୋଜନ କରିବାପାଇଁ ତୁମ୍ଭ ହସ୍ତରେ ଏତେ ସୁନ୍ଦର ରୂପେ ପାକ ସମ୍ପନ୍ନ କରାଇ ଅଛନ୍ତି ।" ଜଗଦାନନ୍ଦ କହିଲେ, "ଯେ ଭୋଜନ କରୁଅଛନ୍ତି ସେ,

ନହେଁ ପାକକର୍ତ୍ତା । ଆମ୍ଭେମାନେ ପାକସାମଗ୍ରୀ ଆହରଣ କରିଅଛୁଁ ମାତ୍ର" । ତେଣୁ ବ୍ୟଞ୍ଜନମାନ ଶେଷ ନ ହେଉଣୁ ଜଗଦାନନ୍ଦ ପୁନଃ ପୁନଃ ସେମାନ ପୂରଣ କରିବାକୁ ଲାଗିଲେ । ଯଦି ବାରଣ କରେଁ ଜଗଦାନନ୍ଦ କାଳେ ପୁନର୍ବାର ମାନ କରିବ, ଏହି ଭୟରେ ମହାପ୍ରଭୁ ତାଙ୍କୁ ସେଥିରୁ ବାରଣ କରିବାକୁ ସାହସୀ ହେଲେ ନାହିଁ । ଆନନ୍ଦରେ ସମସ୍ତ ଭୋଜନ କରିବାକୁ ଲାଗିଲେ । ଜଗଦାନନ୍ଦଙ୍କ ଆଗ୍ରହରେ ମହାପ୍ରଭୁ ଯେ ଦିନ ଦଶଗୁଣଠାରୁ ଅଧିକ ଆହାର୍ଯ୍ୟ ଅନ୍ନ ବ୍ୟଞ୍ଜନାଦି ଭୋଜନ କଲେ । ଆହାରାନ୍ତେ ମହାପ୍ରଭୁ ଜଗଦାନନ୍ଦଙ୍କୁ କହିଲେ- " ଜଗଦାନନ୍ଦ ! ଆଜି ତୁମ୍ଭେ ମୋ ଆଗରେ ଭୋଜନ କର । ମୁଁ ଏହିଠାରେ ବସିଅଛି ।" ଜଗଦାନନ୍ଦ କହିଲେ, "ପ୍ରଭୋ ! ମୁଁ କି ଆପଣଙ୍କର ଇଦୃଶ ଆଗ୍ରହ ଅବହେଳା କରିପାରେଁ ! ମୋ ନିମିତ୍ତ ଅପେକ୍ଷା କଲେ ଆପଣଙ୍କର କଷ୍ଟ ହେବ । ଆପଣ ଯାଇ ସୁଖରେ ବିଶ୍ରାମ କରନ୍ତୁ ; ମୁଁ ଏଠା କାର୍ଯ୍ୟ ସମାଧାନ କରି ଭକ୍ତମାନଙ୍କୁ ପ୍ରସାଦ ଦେଇ ଅଧରାମୃତ ସେବନ କରୁଅଛି ।" ମହାପ୍ରଭୁ ସେଥିରେ ସ୍ପଷ୍ଟ ସନ୍ତୁଷ୍ଟ ନ ହୋଇ ଗୋବିନ୍ଦଙ୍କୁ କହିଲେ, "ଗୋବିନ୍ଦ ! ତୁମ୍ଭେ ଏହିଠାରେ ରହିଥାଅ, ଜଗଦାନନ୍ଦ ପ୍ରସାଦ ସେବନ କଲାପରେ ଯାଇ ସେ ସମ୍ବାଦ ମୋତେ ଜଣାଇବ ।" ଏହା କହି ମହାପ୍ରଭୁ ପ୍ରସ୍ଥାନ କରନ୍ତେ ଗୋବିନ୍ଦଙ୍କୁ ଜଗଦାନନ୍ଦ କହିଲେ, " ଗୋବିନ୍ଦ ! ତୁମ୍ଭେ ମହାପ୍ରଭୁଙ୍କ ପାଦ ସମ୍ବାହନ କରିବାକୁ ଶୀଘ୍ର ଯାଅ ଏବଂ କହିବ ଜଗଦାନନ୍ଦ ଭୋଜନ କରିବାକୁ ବସିଅଛି । ମୁଁ ତୁମ୍ଭପାଇଁ ମହାପ୍ରଭୁଙ୍କ ଅଧରାମୃତ ରଖିଅଛି । ତୁମ୍ଭେ ସେବା ସମାପନାନ୍ତେ ଆସି ଭୋଜନ କରିବ ।" ଗୋବିନ୍ଦଙ୍କୁ ଏହିରୂପେ ବିଦାୟ କରି ଜଗଦାନନ୍ଦ ଅଧରାମୃତ ପାନ କଲେ । କିନ୍ତୁ ତେଣେ ମହାପ୍ରଭୁଙ୍କର ମନ ସ୍ଥିର ହେଲା ନାହିଁ । ଜଗଦାନନ୍ଦଙ୍କ ପ୍ରତି ଅସୀମ ସ୍ନେହ ହେତୁ ତାଙ୍କୁ ନିଦ୍ରା ଆସିଲା ନାହିଁ । ସେ ଗୋବିନ୍ଦଙ୍କୁ ପାଦ ସମ୍ବାହନରୁ ନିବୃତ୍ତ କରାଇ ଜଗଦାନନ୍ଦ ପ୍ରସାଦ ସେବନ କଲେ କି ନା ଦେଖିବାକୁ ପଠାଇଲେ । ମହାପ୍ରଭୁଙ୍କ ଜିଦ୍‌ବେଗରେ ଗୋବିନ୍ଦ ବାଧ୍ୟ ହୋଇ ଜଗଦାନନ୍ଦଙ୍କ ଠାକୁ ଆସିଲେ ଓ ଫେରିଯାଇ ତାଙ୍କ ପ୍ରସାଦ ସେବନ କରିବାର ସମ୍ବାଦ ମହାପ୍ରଭୁଙ୍କୁ ଜଣାଇଲେ । ତେବେ ଯାଇ ମହାପ୍ରଭୁ ସ୍ୱଚ୍ଛନ୍ଦରେ ଶୟନ କଲେ । ଯଥା । :—

ଦେଖି ଜଗଦାନନ୍ଦ ପ୍ରସାଦ ପାୟ କି ନା ପ୍ରଭୁ
ଶୀଘ୍ର ଆସି ସମାଚାର କହିବେ ଆମାୟ ।
ଗୋବିନ୍ଦ ଆସି ଦେଖି କହିଲ ପଣ୍ଡିତେର ଭୋଜନ
ତବେ ମହାପ୍ରଭୁ ସ୍ୱାସ୍ଥ୍ୟେ କରିଲେନ ଶୟନ ।

(ଚୈଃ ଚଃ ଅନ୍ତ୍ୟ ୧୨ ପରି)

ଅହା କି ମଧୁର ସ୍ନେହ । ଏ ଅପୂର୍ବ ପ୍ରଣୟକୁ ବାକ୍ୟରେ ପ୍ରକାଶ କରିବ, ଏମନ୍ତ ସାଧ୍ୟ କାହାର । ଶ୍ରୀଳ କବିରାଜ ଗୋସ୍ୱାମୀ ସେଥିପାଇଁ କହିଅଛନ୍ତି ।

ଜଗଦାନନ୍ଦେର ସୌଭାଗ୍ୟେର କେ କହିବେ ସୀମା
ଜଗଦାନନ୍ଦେର ସୌଭାଗ୍ୟେର ତିଁହଇ ଉପମା ।
ଜଗଦାନନ୍ଦେର ପ୍ରେମ ବିବର୍ତ୍ତ ଶୁନେ ଯେଇ ଜନ
ପ୍ରେମେର ସ୍ୱରୂପ ଜାନେ ପାୟ ପ୍ରେମଧନ ।

(ଚୈଃ ଚଃ ଅନ୍ତ୍ୟ ୧୨ ପରି)

ହେ ଗୌରପ୍ରିୟତପ୍ରିୟ ଜଗଦାନନ୍ଦ ! ତୁମ୍ଭର ଏ ପ୍ରେମ ବିବର୍ତ୍ତ କିଞ୍ଚିତ୍ ଆସ୍ୱାଦନ କରିବାର ଶକ୍ତି ଏ ଅଧମକୁ କୃପାକରି ପ୍ରଦାନ କର । ଯେ ପ୍ରେମାମୃତ-ସାଗରରୁ କଣାମାତ୍ର ଆସ୍ୱାଦନ କରି ଏ ପାମର ନିଜ ଜୀବନକୁ ସାର୍ଥକ କରୁ । ତୁମ୍ଭର ସେ ତୈଳ କଳସୀ ଭଞ୍ଜନର ଶବ୍ଦଟି ଯେ କି ଚିତ୍ତହମାଧୁରୀପୂର୍ଣ୍ଣ ତାହା ମହାପ୍ରଭୁହିଁ ପୂର୍ଣ୍ଣମାତ୍ରାରେ ଅନୁଭବ କରିଥିବେ । ମୁଁ ନିଶ୍ଚୟ କରି କହୁଅଛି, ସେ ଅପୂର୍ବ ଶବ୍ଦଟି ଚିରଦିନ ତାଙ୍କ ଚିତ୍ତପଟରେ ଅଙ୍କା ହୋଇ ରହିଥିବ ଓ ଯେତେବେଳେ ସେ ସେଥିକି ଆଖି ପକାଉଥିବେ ତେତେବେଳେ ସେ ସେଥିରୁ ନବ ନବ ରସ ଆସ୍ୱାଦନ କରୁଥିବେ ॥



## ୨୭ଶ ପରିଚ୍ଛେଦ ।

### ( ମହାପ୍ରଭୁଙ୍କର ବଦାନ୍ୟତା । )

ପ୍ରେମାସ୍ୱାଦନ ଓ ପ୍ରେମବିତରଣ ମହାପ୍ରଭୁଙ୍କର ଏ ଅବତାରର ଦୁଇ ପ୍ରଧାନ କାର୍ଯ୍ୟ । ସ୍ୱୟଂ ମହାପ୍ରଭୁ ନିଜ ଆଚରଣ ଦ୍ୱାରା ଜୀବଙ୍କୁ ଶିକ୍ଷା ଦେଇଥିଲେ, ଦୟାହିଁ ପରମଧର୍ମ । ଜୀବର ଦୟା ନ ଥିଲେ ଧର୍ମ ପ୍ରତି-ପାଳିତ ହୋଇ ନ ପାରେ ଓ ମନୁଷ୍ୟ ଭିରବାଘ ପଶୁ ତୁଲ୍ୟ ଜୀବଗଚ୍ଛ୍ୟରେ ଭ୍ରମଣ କରେ । ଶିକ୍ଷାଦାତା ମହାପ୍ରଭୁ ନିଜ ଆଚରଣରେ ସତତ ସେହି ଦୟା ରୂପ ଧର୍ମର ଶିକ୍ଷା ଦେଇଥିଲେ । ଜୀବର ଦୁଇ ପ୍ରକାର ମଙ୍ଗଳ ସାଧନ କରାଯାଇ ପାରେ । ୧ ଐହିକ-୨-ପାରତ୍ରିକ । ପାରତ୍ରିକ ମଙ୍ଗଳହିଁ ପ୍ରକୃତ ମଙ୍ଗଳ । ତେବେ ଜୀବର ଐହିକ ମଙ୍ଗଳସାଧନ ମଧ୍ୟ ଧାର୍ମିକ ଲୋକ-ମାନଙ୍କର କର୍ତ୍ତବ୍ୟ । ଯେ ଦୁଃଖରେ କାତର ନୁହେଁ ତାହାର ହୃଦୟ ପାଷାଣଠାରୁ ଅଧିକ କଠିନ । ସେହି ହୃଦୟରେ ଭଗବତ୍‌ପ୍ରେମ ରହିବ କିପରି । ମହାପ୍ରଭୁ ଏଥି ନିମିତ୍ତ ଜୀବର ଐହିକ ଦୁଃଖରେ ମଧ୍ୟ ତାହାଙ୍କୁ କୃପାପୂର୍ବକ ଧନାଦି ବିତରଣ କରି ସୁଖୀ କରୁଥିଲେ । ଯଥା :—

ଦୁଃଖିତ ଦେଖିଲେ ପ୍ରଭୁ ବଡ ଦୟା କରି,
ଅନ୍ନ, ବସ୍ତ୍ର, କଡ଼ି, ପାଟ ଦେନ ଗୌରହରି ।
ନିରବଧି ଅତିଥି ଆଇସେ ପ୍ରଭୁ ଘରେ,
ଯାର ଯେନ ଯୋଗ୍ୟ ପ୍ରଭୁ ଦେନ ସବାକାରେ ।
ଗୃହସ୍ଥେରେ ମହାପ୍ରଭୁ ଶିଖାଇଲେନ ଧର୍ମ,
ଅତିଥିର ସେବା ଗୃହସ୍ଥେର ମୂଳ କର୍ମ ।

କୃଷ୍ଣଙ୍କୁ ହୃଦୟୁଁ ଯେବ ଅର୍ଥ ନା କରେ,
ପଶୁପକ୍ଷୀ ହଇତେ ଅଧମ ବୋଲ ତାରେ ।

( ଚୈଃ ଭାଃ ଅନ୍ତ ୧୨ଶ ଅ )

ଏତଦ୍‌ଭିନ୍ନ ସାମାନ୍ୟ ଧନରତ୍ନ ଦାନ, କିନ୍ତୁ ପ୍ରେମ ବିତରଣ କରିବାଁ ମହାପ୍ରଭୁଙ୍କର ପ୍ରକୃତ ବଦାନ୍ୟତାର ପ୍ରକାଶ । କେହି ମାଗୁ ବା ନ ମାଗୁ ମହାପ୍ରଭୁ ନିଜେ ଯାଚି ଯାଚି ପ୍ରେମ ବିତରଣ କରୁଥିଲେ । ଆପେ ଦେଉଥିଲେ ଏବଂ ଅପରଙ୍କୁ ବିତରଣ କରିବାରେ ନିଯୁକ୍ତ କରୁଥିଲେ । ମହାପ୍ରଭୁଙ୍କର ଅଦ୍ଭୁତ ବଦାନ୍ୟତା ଅନ୍ୟ କୌଣସି ଅବତାରଙ୍କ ସମ୍ବନ୍ଧରେ ଶୁଣାଯାଏ ନାହିଁ । କୃଷ୍ଣପ୍ରେମ ଅମୂଲ୍ୟ ରତ୍ନ, ମହାପ୍ରଭୁ ସେହି ଅମୂଲ୍ୟ ରତ୍ନକୁ ଅକାତରରେ ପାତ୍ରା ପାତ୍ର ବିବେଚନା ନ କରି ଦାନ କରୁଥିଲେ । ଯଥା :—

ମାଗେ ବା ନା ମାଗେ କେହ ପାତ୍ର ବା ଅପାତ୍ର,
ଇହାର ବିଚାର ନାହିଁ ଜାନେ ଦିବ ମାତ୍ର ।

ଏବଂ ଅପର ପ୍ରତି ଆଜ୍ଞା । ଯଥା :—

ଅତଏବ ସବେ ଫଳ ଦେହ ଯାରେ ତାରେ,
ଖାଇୟା ହଉକ ଲୋକ ଅଜର ଅମରେ ।

( ଚୈଃ ଚଃ ଆଦି )

ମହାପ୍ରଭୁ ଦାତା-ଶିରୋମଣି, ପୂର୍ବେ ଶ୍ରୀକୃଷ୍ଣ ଅବତାରରେ ସେ ପ୍ରେମଦାନ ବିଷୟରେ ଏରୂପ ମୁକ୍ତହସ୍ତ ନ ଥିଲେ । କେବଳ ଏହିଁ ଗୌରାଙ୍ଗ ଅବତାରରେ ସ୍ଥାନାସ୍ଥାନ ପାତ୍ରାପାତ୍ର ବିଚାର ନ କରି ବ୍ରହ୍ମାର ଦୁର୍ଲଭ କୃଷ୍ଣପ୍ରେମ ଯାହାକୁ ତାହାକୁ ବିତରଣ କରିଥିଲେ । ଯଥା :—

ନାହିଁ ଜାନେ ସ୍ଥାନାସ୍ଥାନ ଯାରେ ତାରେ କୈଲ ଦାନ
ମହାପ୍ରଭୁ ଦାତା ଶିରୋମଣି ।
ଏଇ ଗୁପ୍ତ ଭବ-ସିନ୍ଧୁ ବ୍ରହ୍ମା ନା ପାୟ ଏକ ବିନ୍ଦୁ
ହେନ ଧନ ବିଲାଇଲ ସଂସାରେ ।

ଐଛେ ଦୟାଳୁ ଅବତାର ଐଛେ ଦାତା ନାହିଁ ଆର
ଗୁଣ କେବା ପାରେ ବର୍ଣ୍ଣିବାରେ ।
( ଚୈଃ ଚଃ ମଧ୍ୟ ୨ ପରି )

ମହାପ୍ରଭୁ ନିଜେ ଯେପରି ବିତରଣ କଲେ, ସେ ପୁଣି ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ଓ ପ୍ରଭୁ ଶ୍ରୀ ଅଦ୍ୱୈତଙ୍କୁ ବି ଆଦେଶ କରିଥିଲେ ଦେଖଯାଏ । ରଥଯାତ୍ରା ସମୟରେ ପ୍ରତିବର୍ଷ ମହାପ୍ରଭୁଙ୍କ ଗୌଡ଼ୀୟ ପ୍ରିୟଜନମାନେ ଶ୍ରୀପୁରୁଷୋତ୍ତମକୁ ଆସୁଥିଲେ । ମହାପ୍ରଭୁ ସେମାନଙ୍କୁ ବିଦାୟ ଦେବା କାଳରେ ଶ୍ରୀ ନିତ୍ୟାନନ୍ଦ ଓ ଶ୍ରୀଅଦ୍ୱୈତଙ୍କୁ ଡ଼ାକି କହୁଥିଲେ, ତୁମ୍ଭେମାନେ ଆଚଣ୍ଡାଳଙ୍କୁ ଶ୍ରୀକୃଷ୍ଣଙ୍କ ପ୍ରେମ ବିତରଣ କର । ଯଥା :—

ଆଚାର୍ଯ୍ୟରେ ଆଜ୍ଞା ଦେଲ କରିଯା ସମ୍ମାନ,
ଆଚଣ୍ଡାଳ ଆଦି ଦିଅ କୃଷ୍ଣଭକ୍ତି ଦାନ ।
ନିତ୍ୟାନନ୍ଦେ ଆଜ୍ଞା ଦେଲ ଯାହ ଗୌଡ଼ ଦେଶେ,
ଅନର୍ଗଳ ପ୍ରେମଭକ୍ତି କରିଓ ପ୍ରକାଶେ ।
( ଚୈଃ ଚଃ ମଧ୍ୟ ୧୫ ପରି )

ମହାପ୍ରଭୁ ଶ୍ରୀପୁରୁଷୋତ୍ତମରୁ ଯେତେବେଳେ ଦକ୍ଷିଣ ଦେଶକୁ ତୀର୍ଥ ଭ୍ରମଣ କରିବାକୁ ଯାଇଥିଲେ, ତୀର୍ଥ ପର୍ଯ୍ୟଟନ ଏକ ଛଳନା ମାତ୍ର, କିନ୍ତୁ ତାଙ୍କର ପ୍ରକୃତ କାର୍ଯ୍ୟ ପ୍ରେମ ବିତରଣ । ଯେ ତାଙ୍କୁ ଦେଖୁଥିଲା ସେ କୃଷ୍ଣ ପ୍ରେମରେ ଭାସୁଥିଲା । ତାହାର ସଂସର୍ଗରେ ଅପର ଲୋକେ କୃଷ୍ଣ ପ୍ରେମ ଲାଭ କରୁଥିଲେ । ବନପଥରେ ଶ୍ରୀବୃନ୍ଦାବନକୁ ଗଲାବେଳେ ମଧ୍ୟ ସେହିପରି ଅନର୍ଗଳ ପ୍ରେମଦାନ । ଝାଡ଼ଖଣ୍ଡର ପଶୁ ପକ୍ଷୀ କୃଷ୍ଣପ୍ରେମ ଲାଭ କରି କୃଷ୍ଣ କୃଷ୍ଣ କହି ନାଚିଥିଲେ । ଶ୍ରୀବୃନ୍ଦାବନରୁ ଫେରିବା ସମୟରେ ମଧ୍ୟ ସେହିରୂପ ଅକାତରରେ ପ୍ରେମ ବିତରଣ । ପ୍ରେମ ବିତରଣରେ ଦେଶ ପ୍ଲାବିତ ହୋଇଥିଲା । ଯଥା :—

ଗଙ୍ଗା, ଯମୁନା, ପ୍ରୟାଗ ନାରିଲ ଡୁବାଇତେ,
ପ୍ରଭୁ ଡୁବାଇଲ କୃଷ୍ଣ ପ୍ରେମେର ବନ୍ୟାତେ ।

ମହାପ୍ରଭୁ ଯେଉଁ ପ୍ରେମତରୁ ଲଗାଇ ଗଲେ ତାହାର ଫଳ ଯେ ସମସ୍ତ ପୃଥିବୀବ୍ୟାପ୍ତ, ସେଥିର ଭବିଷ୍ୟତ୍ ବାଣୀ ମଧ୍ୟ ସେ ନିଜେ ପ୍ରଚାର-କରି ଯାଇ ଅଛନ୍ତି । ବର୍ତ୍ତମାନ ମହାତ୍ମା ଶିଶିରକୁମାର ଘୋଷଙ୍କ ଲଡ-ଗୌରାଙ୍ଗ ପାଠକରି ଇଉରୋପ ଓ ଅମେରିକାରେ ବୈଷ୍ଣବ ଧର୍ମର ସୂତ୍ରପାତ ହୋଇଅଛି ଏବଂ ଏହା ସେହି ଭବିଷ୍ୟତ୍ ବାଣୀ ପ୍ରତିଫଳିତ ହେବାର ପ୍ରଥମ ସୂଚନା । ମହାପ୍ରଭୁଙ୍କ ଉକ୍ତି ଏହିରୂପ ।

ପୃଥିବୀ ପର୍ଯ୍ୟନ୍ତ ଯତ ଅଛେ ଦେଶ ଗ୍ରାମ,
ସର୍ବତ୍ର ସଞ୍ଚାର ହଇବେକ ମୋର ନାମ ।

( ଚୈଃ ଭଃ ଅନ୍ତ୍ୟ ୪ଅ

ଅତଏବ ଅବତାର ଶିରୋମଣି ଶ୍ରୀକୃଷ୍ଣଚୈତନ୍ୟଙ୍କର ଏହାଠାରୁ ବଦାନ୍ୟତାର ଅଧିକ ପରିଚୟ ଅଉକ ହୋଇପାରେ ।



## ୨୮ଶ ପରିଚ୍ଛେଦ ।

### ( ମହାପ୍ରଭୁଙ୍କ କୃପା )

ମହାପ୍ରଭୁ କରୁଣାସାଗର, ସାଗରର ଜଳ କେହି ପରିମାଣ କରିବାକୁ ସକ୍ଷମ ହେଲେ ମଧ୍ୟ ମହାପ୍ରଭୁଙ୍କ କୃପାର କେହି ସୀମା ନିର୍ଦ୍ଦେଶ କରି ପାରିବେ ନାହିଁ । ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ମହାପଣ୍ଡିତ ଓ ଜ୍ଞାନୀ ହେଲେହେଁ ପ୍ରଥମ ଭକ୍ତିତତ୍ତ୍ୱରେ ସେ ଅଜ୍ଞ ଥିଲେ । ତାହାଙ୍କ ଭଗ୍ନୀପତି ଶ୍ରୀ ଗୋପୀନାଥ ଆଚାର୍ଯ୍ୟ ନିଜ ଜନର ହିତକାମନାରେ ମହାପ୍ରଭୁଙ୍କଠାରେ ସାର୍ବଭୌମଙ୍କ ମତ ଗତି ପରିବର୍ତ୍ତନର ଭିକ୍ଷା କଲେ । ମହାପ୍ରଭୁ ସାଧୁ ଚରିତ୍ର ଗୋପୀନାଥଙ୍କର ସେ ପ୍ରାର୍ଥନା ଗ୍ରହଣପୂର୍ବକ ସାର୍ବଭୌମଙ୍କ ପ୍ରତି ଅଶେଷ କରୁଣା ପ୍ରକାଶ କଲେ । ଏବଂ ସେହି କରୁଣାବଳରେ ସାର୍ବଭୌମ ମହାପ୍ରଭୁଙ୍କୁ ଚିହ୍ନି ତାଙ୍କ ଶ୍ରୀପାଦ-ପଦ୍ମରେ ଶରଣ ନେଲେ । ସାର୍ବଭୌମ ରାମାନନ୍ଦ ପ୍ରଭୃତିଙ୍କ ସହ ମହାପ୍ରଭୁ ମହାପ୍ରସାଦ ଭିକ୍ଷା କରୁଅଛନ୍ତି, ଗୋପୀନାଥ ଆଚାର୍ଯ୍ୟ ନିଜ ଶାଳକ ସାର୍ବଭୌମଙ୍କୁ ଲକ୍ଷ୍ୟ କରି ପରିହାସ ପୂର୍ବକ ସମସ୍ତଙ୍କ ସମ୍ମୁଖରେ କହିଲେ ଆପଣମାନେ ସାର୍ବଭୌମଙ୍କର ପୂର୍ବ ବ୍ୟବହାର ସଙ୍ଗେ ଆଜିକାର ମହାପ୍ରସାଦ ସେବନାନନ୍ଦ ତୁଳନା କରି ଦେଖନ୍ତୁ, କିଏ ସୁଖକର । ସାର୍ବଭୌମ ପ୍ରକୃତ ଆନନ୍ଦ ଯେ କଣ, ଆନନ୍ଦମୟଙ୍କ ସଂସର୍ଗରୁ ତାହା ବର୍ତ୍ତମାନ ବୁଝିପାରି ଅଛନ୍ତି । ସେ, ତେତେବେଳେ ଧନାଭିମାନ, ଜ୍ଞାନଗର୍ବ ତାଙ୍କ ହୃଦୟରୁ ଅନ୍ତର୍ହିତ ହୋଇଅଛି । ସେ ତହିଁରେ କହିଲେ " ଆଚାର୍ଯ୍ୟେ ? ପ୍ରକୃତରେ ମୁଁ ତୁମ୍ଭଠାରେ ଚିରକାଳପାଇଁ ଋଣୀ । ମୁଁ କୁବୁଦ୍ଧିରେ ପଡ଼ି ମହାତାର୍କିକ ଥିଲି, ତର୍କ

କାଳରେ ମୋର ସମସ୍ତ ସଦ୍‌ଜ୍ଞାନ ଢଙ୍କା ପଡ଼ିଥିଲା । ତୁମ୍ଭ ପ୍ରସାଦରୁ ସେ ଜାଲ ଅପସାରିତ ହୋଇଅଛି । ତୁମ୍ଭ ପ୍ରସାଦରୁ ମୁଁ ବର୍ତ୍ତମାନ ମହାପ୍ରଭୁଙ୍କ ସଙ୍ଗସୁଖ ପାଇ ପରମାନନ୍ଦ ଲାଭ କରୁଅଛି । ତୁମ୍ଭେ ମୋର ଏ ସୌଭାଗ୍ୟର ମୂଳକାରଣ ଅଟ । ଦୟାସାଗର ମହାପ୍ରଭୁହିଁ କାକକୁ ଗରୁଡ଼ କରିବାର ସକ୍ଷମ, ନତୁବା ମୋର ଏପରି ପରିବର୍ତ୍ତନ କିଏ ଘଟାଇ ପାରନ୍ତା । ମୁଁ ତାର୍କିକ ଶୃଗାଳ ପରି ଭେଜ୍ର ଭେଜ୍ର କରୁଥିଲି, ବହିର୍ମୁଖ ଶିଷ୍ୟବର୍ଗଙ୍କ ସଙ୍ଗେ ବୃଥା ତର୍କାଲୋଚନାରେ ଦିନ ଅତିବାହିତ କରୁଥିଲି । ବର୍ତ୍ତମାନ ମହାପ୍ରଭୁଙ୍କ ଅପାର କରୁଣାପ୍ରଭାବରୁ ସାଧୁସଙ୍ଗରୂପ ସମୁଦ୍ର ତରଙ୍ଗରେ ସନ୍ତରଣ କରୁଅଛି । ଯଥା,—

ସାର୍ବଭୌମ କହେ ଅମ୍ଭେ ତାର୍କିକ କୁବୁଦ୍ଧି,
ତୋମାର ପ୍ରସାଦେ ମୋର ଏ ସମ୍ପଦ ସିଦ୍ଧି ।
ମହାପ୍ରଭୁ ବିନା କେହ ନାହିଁ ଦୟାମୟ,
କାକେର ଗରୁଡ଼ କରେ ଐଛେ କୋନ ହୟ ।
ତାର୍କିକ ଶୃଗାଲ ସଙ୍ଗେ ଭେଉ ଭେଉ କରି,
ସେଇ ମୁଖେ ଏବେ ସଦା କହି କୃଷ୍ଣ ହରି ।
କାହାଁ ବହିର୍ମୁଖ ତାର୍କିକ ଶିଷ୍ୟଗଣ ସଙ୍ଗେ,
କାହାଁ ଏଇ ସାଧୁସଙ୍ଗ ସମୁଦ୍ର ତରଙ୍ଗେ ।

( ଚୈ: ଚ: ମଧ୍ୟ ୧୬ ପରି )

ପ୍ରକୃତରେ ମହାପ୍ରଭୁ ତାଙ୍କୁ ସ୍ୱୟଂ କୃପା କରି ନ ଥିଲେ, ତର୍କକୁଶଳ ଅଦ୍ୱିତୀୟ ପଣ୍ଡିତ ସାର୍ବଭୌମଙ୍କ ମତ ଅନ୍ୟ କେହି ଫେରାଇ ପାରି ନଥାନ୍ତେ । ଭକ୍ତି ଓ ମହାପ୍ରଭୁଙ୍କର ରଙ୍ଗରସ ସୀମା ନାହିଁ । ଗୁଣ୍ଡିଚା ଯାତ୍ରା ସମୟରେ ମହାପ୍ରଭୁ ନିଜଗଣ ସହ ଶ୍ରୀଜଗନ୍ନାଥଙ୍କ ଆଗରେ କୀର୍ତ୍ତନ କରନ୍ତି, ଏବଂ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ଅପୂର୍ବ ଜଳକେଳି ଆରମ୍ଭ କରନ୍ତି । ପୂର୍ବ ଯମୁନା ବିହାର ଲୀଳା ଶ୍ରୀପୁରୁଷୋତ୍ତମସ୍ଥ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ଅଭିନୀତ ହୁଏ । ଶତ ଶତ ଭକ୍ତ ଜଳରେ ସନ୍ତରଣ କରୁଅଛନ୍ତି । ଶତ ଶତ ଭକ୍ତ ଜଳରେ କୁମ୍ଭୀରବତ୍ ବୁଡ଼ୁଅଛନ୍ତି । କିଏ କାହା ଉପରକୁ ଜଳ ଫିଙ୍ଗୁଅଛି; ମହାପ୍ରଭୁ

ନିଜେ ଭକ୍ତମାନଙ୍କ ଉପରେ ଜଳସେଚନ କରୁଅଛନ୍ତି । ଭକ୍ତଗଣ ପ୍ରମୋଦରେ ମହାପ୍ରଭୁଙ୍କ ଉପରକୁ ଜଳ ଫିଙ୍ଗୁଅଛନ୍ତି । କେହି ବା କାହା ସଙ୍ଗରେ ଜଳଯୁଦ୍ଧରେ ମତ୍ତ ହୋଇଅଛି । ପ୍ରଭୁ ଶ୍ରୀଅଦ୍ୱୈତ ଆଚାର୍ଯ୍ୟଙ୍କ ସଙ୍ଗେ ପ୍ରଭୁ ଶ୍ରୀନିତ୍ୟାନନ୍ଦଙ୍କର ଯେ ଜଳଯୁଦ୍ଧ ତାହା ଅତି କୌତୁକାବହ । ଆଚାର୍ଯ୍ୟ ଚଞ୍ଚଳସ୍ୱଭାବ ନିତ୍ୟାନନ୍ଦଙ୍କ ସଙ୍ଗେ ଜଳଯୁଦ୍ଧରେ ହାରି ତାଙ୍କ ଉପରେ ଜଳବର୍ଷଣର ପରିବର୍ତ୍ତେ ଗାଳି ବର୍ଷଣ କରୁଅଛନ୍ତି । ମହାପ୍ରଭୁ ସେ ପ୍ରେମକଳହ ଦର୍ଶନ କରି ମୃଦୁ ମୃଦୁ ହସୁଅଛନ୍ତି । ପୁଣ୍ଡରିକ ବିଦ୍ୟାନିଧିଙ୍କ ପରି ପ୍ରବୀଣ ବ୍ୟକ୍ତି ଗାମ୍ଭୀର୍ଯ୍ୟ ହରାଇ ସ୍ୱରୂପଙ୍କ ସଙ୍ଗରେ ଜଳଯୁଦ୍ଧରେ ମାତିଅଛନ୍ତି । ଗଦାଧର ପଣ୍ଡିତ ବୃଦ୍ଧ ଶ୍ରୀବାସ ପଣ୍ଡିତଙ୍କ ସଙ୍ଗେ ଜଳେ ମଗ୍ନ ହୋଇ ଅଛନ୍ତି । ବକ୍ରେଶ୍ୱର ପଣ୍ଡିତ ରାଘବ ପଣ୍ଡିତଙ୍କ ଉପରେ ଜଳ ବର୍ଷଣ କରୁଅଛନ୍ତି । ସାର୍ବଭୌମ ଓ ରାମାନନ୍ଦ ଏମାନେ ମଧ୍ୟ ସେ ଆମୋଦରେ ଯୋଗ ନ ଦେଇ ସ୍ଥିର ହୋଇ ରହି ପାରି ନ ଥିଲେ । ପ୍ରାମାଣିକ ପଣ୍ଡିତଚୂଡ଼ାମଣି ସାର୍ବଭୌମ, ଗମ୍ଭୀରସ୍ୱଭାବ ରାୟ ରାମାନନ୍ଦଙ୍କ ସଙ୍ଗେ ଜଳଯୁଦ୍ଧରେ ପ୍ରବୃତ୍ତ ହୋଇ ଅଛନ୍ତି । ଦୁହେଁ ନିଜ ନିଜର ଗାମ୍ଭୀର୍ଯ୍ୟ ଭୁଲିଯାଇ ଅଛନ୍ତି ଓ ଦୁହେଁ ଶିଶୁବତ୍ ଜଳ ଫିଙ୍ଗାଫିଙ୍ଗି ହେଉଅଛନ୍ତି । ଏହା ଦେଖି ମହାପ୍ରଭୁ ଶ୍ରୀଗୋପୀନାଥ ଆଚାର୍ଯ୍ୟଙ୍କୁ ସମ୍ବୋଧନ କରି କହିଲେ "ଆଚାର୍ଯ୍ୟ ! ଏ ଦୁହେଁ ତ ପଣ୍ଡିତାଗ୍ରଗଣ୍ୟ, ଏମାନେ ପ୍ରାମାଣିକ ହୋଇ ନିଜ ଗାମ୍ଭୀର୍ଯ୍ୟ ପରିବର୍ଜନ ପୂର୍ବକ ଏରୂପ ଚାପଲ୍ୟ ପ୍ରକାଶ କରୁଅଛନ୍ତି । ଏମାନଙ୍କୁ ବାରଣ କରୁନାହିଁ" । ମହାପ୍ରଭୁଙ୍କର ସେହି ପରିହାସୋକ୍ତି ଶ୍ରବଣକରି ଗୋପୀନାଥ ଆଚାର୍ଯ୍ୟ କହିଲେ "ପ୍ରଭୋ ! ଆପଣଙ୍କ କୃପା ମହାସମୁଦ୍ର । ଯେଥିର ଏକ ବିନ୍ଦୁ ଉଚ୍ଛୁଳିତ ହେଲେ କେତେ କେତେ ଉଚ୍ଚ ପର୍ବତ ବୁଡ଼ିଯାଏ । ଏ ଦୁଇ ଖଣ୍ଡି ଖଣ୍ଡଶୈଳ ଯେ ସେଥିରେ ବୁଡ଼ିବେ ଏଥିରେ ବିଚିତ୍ର କଣ" । ଯଥା ;—

ଗୋପୀନାଥ କହେ ତୋମାର କୃପା ମହାସିନ୍ଧୁ,
ଉଚ୍ଛଳିତ କରେ ଯବେ ତାର ଏକବିନ୍ଦୁ ।

ମେରୁ ମନ୍ଦର ପର୍ବତ ଡୁବାଅ ଯଥା ତଥା,
ଏହି ଦୁଇଖଣ୍ଡ ଶୈଳ ଇହାର କି କଥା ॥
ଶୁଷ୍କତର୍କ ଖଲି ଖାଇତେ ଜନ୍ମ ଗେଲ ଯାର,
ତାରେ ଲୀଳାମୃତ ପିଆଓ ଏ କୃପା ତୋମାର ॥
( ଚୈଃ ଚଃ ମଧ୍ୟ ୧୪ ପର )

ଗଦାଧର ପଣ୍ଡିତ କ୍ଷେତ୍ରସନ୍ୟାସ ଗ୍ରହଣ କରିଥିଲେ । ସେଥିରେ ଏହି ବିଧି ଯେ ଶ୍ରୀକ୍ଷେତ୍ର ଛାଡ଼ି ସେ ଅନ୍ୟତ୍ର ଯାଇ ପାରିବେ ନାହିଁ । ମହାପ୍ରଭୁ ଯେତେବେଳେ ଶ୍ରୀପୁରୁଷୋତ୍ତମରୁ ଶ୍ରୀବୃନ୍ଦାବନ ଯିବା ଉଦ୍ଦେଶ୍ୟରେ ପ୍ରଥମେ ଯାତ୍ରାକଲେ, ଗଦାଧର ପଣ୍ଡିତ ମହାପ୍ରଭୁଙ୍କ ବିରହଜନିତ କଷ୍ଟ ସହି ନ ପାରି ତାଙ୍କ ସଙ୍ଗେ ସଙ୍ଗେ ଯିବାକୁ ଇଚ୍ଛାପ୍ରକାଶ କଲେ । ମହାପ୍ରଭୁ ତାଙ୍କୁ ବାରଣ କରି କହିଲେ " ଗଦାଧର ! ତୁମ୍ଭେ କ୍ଷେତ୍ର ସନ୍ୟାସ ଗ୍ରହଣ କରିଅଛ, କ୍ଷେତ୍ର ପରିତ୍ୟାଗ କରି ମୋ ସଙ୍ଗେ ଯିବା ତୁମ୍ଭର କି ଉଚିତ" ? ଗଦାଧର କହିଲେ "ପ୍ରଭୋ ! ଆପଣ ଯେଉଁଠାରେ ବର୍ତ୍ତମାନ ସେହି ସ୍ଥାନହିଁ ନୀଳାଚଳ । ମୋର କ୍ଷେତ୍ର ସନ୍ୟାସ ପଛେ ରସାତଳକୁ ଯାଉ, ମୁଁ ଭବଦୀୟ ସଙ୍ଗ ଛାଡ଼ି ରହି ପାରିବି ନାହିଁ ।" ମହାପ୍ରଭୁ କହିଲେ "ଗଦାଧର, ତୁମ୍ଭେ ଯେ ଶ୍ରୀଗୋପୀନାଥଙ୍କ ସେବା ସ୍ୱୀକାର କରିଅଛ, ତାହା ଛାଡ଼ିବା କି ତୁମ୍ଭର ଉଚିତ ।" ଗଦାଧର ଉତ୍ତର କଲେ "ପ୍ରଭୋ ଭବଦୀୟ ପଦଦର୍ଶନରେ କୋଟି ସେବାର ଫଳ ମିଳିବ" ।

ମହାପ୍ରଭୁ କହିଲେ ତୁମ୍ଭେ ମୋ ଲାଗି ଗୋପୀନାଥଙ୍କ ସେବା ପରିତ୍ୟାଗ କଲେ ମୁଁ ଯେ ସେଥିର ଦୋଷଭାଗୀ ହେବି । ମୋଠାରେ ଦୋଷ ଘଟାଇବା କି ଭଲ ମନେ କରୁଅଛ । ଗଦାଧର କହିଲେ ମୁଁ ଆପଣଙ୍କ ସଙ୍ଗେ ଗଲେ ସିନା ଆପଣଙ୍କର ଦୋଷ ହେବ । ମୁଁ ତେବେ ଆପଣଙ୍କ ସଙ୍ଗେ ଯିବିନାହିଁ । ଏକା ଏକା ଯିବି ଓ ଶ୍ରୀଶଚୀମାତାଙ୍କର ଶ୍ରୀଚରଣ ଦର୍ଶନ କରି ଆସିବି । ପ୍ରତିଜ୍ଞା ସେବା ଛାଡ଼ିବାର ଦୋଷ ମୋର, ଆପଣଙ୍କୁ ସେ ଦୋଷରେ ଭାଗୀ-ହେବାକୁ ପଡ଼ିବ ନାହିଁ । ଏହାକହି ମହାପ୍ରଭୁଙ୍କ ସଙ୍ଗରେ ନ ଯାଇ ସେ ଏକା, ଏକା, ଗମନ କରିବାକୁ ଲାଗିଲେ । କଟକଠାରେ ମହାପ୍ରଭୁ ତାଙ୍କୁ

ନିକଟକୁ ଡକାଇଲେ ଏବଂ ତାଙ୍କର ହସ୍ତଧାରଣ ପୂର୍ବକ ସ୍ନେହରେ କହିଲେ, “ଗଦାଧର ! ଏବେତ ପ୍ରତିଜ୍ଞା ସେବା ଛାଡିବା ସିଦ୍ଧହେଲା । ନିଜ ସୁଖ ବାଞ୍ଛାରେ ମୋ ସଙ୍ଗରେ ଯିବାର ଯେ ମାନସ କରିଅଛ ସେଥିରେ ତୁମ୍ଭ ଧର୍ମହାନି ହେଉଅଛି, ମୋତେ ଏହା ସହ୍ୟ ହେଉନାହିଁ, ଯଦି ମୋର ସୁଖ ତୁମ୍ଭର ତାତ୍ପର୍ଯ୍ୟ ହୁଏ,ତେବେ ମୋ କଥା ମାନି ନୀଳାଚଳକୁ ଫେରିଯାଅ । ମୋର ନିୟମ ଅଛି,ଯେପରି ତୁମ୍ଭେ ଏହା ଉପରେ ଆଉ କିଛି ନ କୁହ” । ଏହିପ୍ରକାର ଗଦାଧରଙ୍କୁ ଗମନରୁ ବିରତ କରି ନୌକାରୋହଣ କଲେ । ପଣ୍ଡିତ ଗଦା-ଧର ଏହା ଉପରେ ଆଉକିଛି କହି ନ ପାରି ମୂର୍ଚ୍ଛିତ ହେଲେ । ମହାପ୍ରଭୁ ପ୍ରସ୍ଥାନ କରନ୍ତେ ସାର୍ବଭୌମ ଗଦାଧରଙ୍କୁ ଉଠାଇ ପ୍ରବୋଧ ଦେଇ କହିଲେ, “ ଗଦାଧର ତୁମ୍ଭେତ ଜାଣ ଶ୍ରୀକୃଷ୍ଣ, ନିଜପ୍ରତିଜ୍ଞା ଲଙ୍ଘନ ପୂର୍ବକ ଭକ୍ତ ପ୍ରବର ଭୀଷ୍ମଙ୍କର ପ୍ରତିଜ୍ଞା ରକ୍ଷା କରିଥିଲେ, ସେହିରୂପ ତୁମ୍ଭ ବିରହଜନିତ କଷ୍ଟ ସ୍ୱୀକାର କରି ମହାପ୍ରଭୁ ତୁମ୍ଭର ପ୍ରତିଜ୍ଞା ରକ୍ଷା କରିଅଛନ୍ତି” । ଏହିରୂପ ପ୍ରବୋଧ ଦେଇ ତାଙ୍କୁ ଶ୍ରୀପୁରୁଷୋତ୍ତମକୁ ଫେରାଇନେଲେ । ଏହି ସ୍ଥାନରେ ଶ୍ରୀଳ କବିରାଜ ଗୋସ୍ୱାମୀ ଲେଖି ଅଛନ୍ତି,

ପ୍ରଭୁ ଲାଗି ଧର୍ମ, କର୍ମ ଛାଡ଼େ ଭକ୍ତଗଣ,
ଭକ୍ତ ଧର୍ମହାନି ପ୍ରଭୁର ନାହିଁ ସହନ,,

( ଚୈଃ ଚଃ ମଧ୍ୟ ୧୬ ପରି )

କୃପାସାଗର ଗୌରହରିଙ୍କର କୃପା ସତତ ଉଚ୍ଛୁଳି ପଡ଼ି ପାମରାଧମମାନଙ୍କୁ ପ୍ଲାବିତ କରୁଅଛି । ଯେ ମହାପ୍ରଭୁ ଅପାତ୍ର ପ୍ରତି ଏତେ କୃପା କରୁ-ଅଛନ୍ତି, ଯୋଗ୍ୟପାତ୍ର ପ୍ରତି ତାଙ୍କର କୃପାର ଆଉ ସୀମା କଣ । ଶ୍ରୀରୂପ ଗୋସ୍ୱାମୀ ସର୍ବଗୁଣ ସମ୍ପନ୍ନ, ସାଧୁ ପୁରୁଷ, ତେଣୁ ତାଙ୍କ ପ୍ରତି ମହାପ୍ରଭୁ ଯେ ସ୍ନେହ ଓ କୃପା ଦେଖାଇ ଅଛନ୍ତି ଅତି ଅଳ୍ପ ଲୋକଙ୍କର ସେ ସୌଭାଗ୍ୟ ଘଟି-ଥାଏ । ମହାପ୍ରଭୁ ଶ୍ରୀରୂପଙ୍କୁ ପ୍ରୟାଗଘାଟରେ ପାଇ ନିଜେ ତାଙ୍କୁ ଅଶେଷ କୃପା ପୂର୍ବକ ଶକ୍ତିସଞ୍ଚାର କରିଥିଲେ କିନ୍ତୁ ସର୍ବଶକ୍ତିମାନ୍ ଭଗବାନ୍ ଗୌରଚନ୍ଦ୍ର ଏତେକୃପା କରିମଧ୍ୟ ସେଥିରେ ତୃପ୍ତ ନ ହୋଇ ଯେ ଶ୍ରୀମାନ୍ ନିତ୍ୟାନନ୍ଦ ଓ

ଶ୍ରୀମାନ୍ ଅଦ୍ୱୈତ ଆଚାର୍ଯ୍ୟ ପ୍ରଭୁଙ୍କୁ ମିଳାଇ ତାଙ୍କୁ କୃପା କରିବା ପାଇଁ ସେ ଦୁହିଁଙ୍କୁ ପ୍ରାର୍ଥନା କରୁଅଛନ୍ତି, ଯଥା—

ଅଦ୍ୱୈତ ନିତ୍ୟାନନ୍ଦ ତୋମରା ଦୁଇଜନେ,
ପ୍ରଭୁ କହେ, ରୂପେ କୃପା କର କାୟମନେ ,
ତୋମା ଦୁହାର କୃପାୟ ଇହାର ଐଛେ ହଉକ ଶକ୍ତି,
ଯାତେ ବିବରିତେ ପାରେନ କୃଷ୍ଣ ରସଭକ୍ତି ।,

( ଚୈଃ ଚଃ ୧୯ ପର )

ଆହା କି ଅପାର କୃପା, ରୂପ କୃତ ନାଟକମାନ ରାୟ ରାମାନନ୍ଦ ପ୍ରଭୃତିଙ୍କୁ ଶୁଣାଇ ମହାପ୍ରଭୁ ପୁନର୍ବାର ସେହି ପ୍ରାର୍ଥନା କରି କହୁଅଛନ୍ତି ।

ସଭେ କୃପା କରି ଇହାରେ ଦେହ ଏଇ ବର
ବ୍ରଜଲୀଳା ପ୍ରେମରସ ବର୍ଣ୍ଣେ ନିରନ୍ତର,,

( ଚୈଃ ଚଃ ଅନ୍ତ୍ୟ, ୧ ପର )

ମହାରାଜ ପ୍ରତାପରୁଦ୍ର ମଧ୍ୟ ମହାପ୍ରଭୁଙ୍କର ଅଶେଷ କୃପାଲାଭ କରିଥିଲେ । ତାଙ୍କର ନିଜ ଉକ୍ତିହିଁ ତାହାର ଉତ୍ତମ ପ୍ରମାଣ, ସେ ତାଙ୍କ ଗୁରୁଜନ ଶ୍ରୀକାଶୀମିଶ୍ରଙ୍କଠାରେ ଏକସମୟରେ କହିଥିଲେ ,ଯଥା—

ଏକକ୍ଷଣ ପ୍ରଭୁର ଯଦି ପାଇଏ ଦର୍ଶନ
କୋଟି ଚିନ୍ତାମଣି ଲାଭ ନହେ ତାର ସମ,,

( ଚୈଃ ଚଃ ଅନ୍ତ୍ୟ ୯ ପର )

ମହାପ୍ରଭୁଙ୍କ ଅପାର କୃପା ଅନୁଭବ କରି ନ ଥିଲେ, ମହା ଐଶ୍ୱର୍ଯ୍ୟ-ଶାଳୀ ମହାରାଜାଙ୍କ ମୁଖରୁ ଏରୂପ ଦୈନ୍ୟୋକ୍ତି ବାହାରି ପାରନ୍ତା କି ? ମହାପ୍ରଭୁ ସମୟ ସମୟରେ ପ୍ରକାଶ୍ୟରେ କୃପା ନ କଲେହେଁ ପରୋକ୍ଷରେ ଅଶେଷ କୃପା କରିଥାଆନ୍ତି । ଶ୍ରୀଲ ରାୟ ରାମାନନ୍ଦଙ୍କ ଭ୍ରାତା ଶ୍ରୀଗୋପୀନାଥ ପଟ୍ଟନାୟକ ଓ ଶ୍ରୀ ବାଣୀନାଥ ପଟ୍ଟନାୟକ ତାହାର ଉଦାହରଣ । ଶ୍ରୀଗୋପୀନାଥ ପଟ୍ଟନାୟକ ରାଜ କର୍ମରେ ଥାଇ କିଛି ରାଜଧନ ଅପବ୍ୟୟ କରିଥିବାରୁ ଏବଂ ସେହି ସମ୍ବନ୍ଧରେ ରାଜପୁତ୍ର ପୁରୁଷୋ[illegible] ଜେନାଙ୍କୁ କିଛି ଅପମାନ ସୂଚକ ବାକ୍ୟପ୍ରୟୁକ୍ତ କରିଥିବା ପୁରୁଷୋ[illegible] ଜେନା କୌଶଳ ପୂର୍ବକ ଗୋପୀ-

ନାଥ ପଟ୍ଟନାୟକଙ୍କୁ ବନ୍ଧାଇନେଇ ପ୍ରାଣ ନେବାର ଭୟ ଦେଖାଇ ଶୃଙ୍ଗ ଉପରେ ଚଢ଼ାଇଲେ ଏବଂ ତାଙ୍କ ଭ୍ରାତା ବାଣୀନାଥ ପ୍ରଭୃତିଙ୍କୁ ମଧ୍ୟ ବନ୍ଧାଇ ନେଲେ । ସେମାନଙ୍କ ଲୋକମାନେ ଏହି ବିଷୟ ମହାପ୍ରଭୁଙ୍କୁ ଜଣାଇଲେ ଏବଂ ପରେ ସ୍ୱରୂପାଦି ପ୍ରିୟ ପାର୍ଷଦଗଣ ଏମାନେ ରାୟ ରାମାନନ୍ଦଙ୍କ ଭ୍ରାତା, ରାୟ ଭବାନନ୍ଦଙ୍କପୁତ୍ର ଏହି ଉପରୋଧରେ ମହାପ୍ରଭୁଙ୍କୁ ଏମାନଙ୍କ ମୁକ୍ତି-ନିମନ୍ତେ ଅନୁରୋଧ କଲେ ।

ସେଥିରେ ମହାପ୍ରଭୁ ଅତ୍ୟନ୍ତ ବିରକ୍ତ ହୋଇ କହିଲେ ମୁଁ ତ ଜଣେ ଭିକ୍ଷୁକ ସନ୍ନ୍ୟାସୀ, ମୋତେ ତୁମ୍ଭେମାନେ ଏସବୁ ବିଷୟ କହି ବ୍ୟସ୍ତ କରାଉ-ଅଛ କିପାଇଁ ? ଯେ ରାଜଧନ ଅପହରଣ କରି ଦାସୀ ଓ ନାଚୁଅମାନଙ୍କୁ ପ୍ରତିପୋଷଣ କରେ ତାହାର ଶାସ୍ତି ହେବାରକଥା । ମହାପ୍ରଭୁଙ୍କ ଏହି ନୈରପେକ୍ଷ୍ୟ ଶ୍ରବଣ କରି ସମସ୍ତେ ଚୁପ ହେଲେ, କିନ୍ତୁ ହରିଚନ୍ଦନ ମହାପ୍ରଭୁ-ଙ୍କର ଏହି ବିରକ୍ତି—ପୂର୍ଣ୍ଣ ବାକ୍ୟ ବ୍ୟବହାର ବିଷୟ ଶୁଣି ଏବଂ ରାୟ ରାମା-ନନ୍ଦଙ୍କ ବଂଶର ସମସ୍ତେ ମହାପ୍ରଭୁଙ୍କ ପ୍ରିୟ ପାତ୍ର ଏହା ଜାଣି ମହାରାଜାଙ୍କୁ ସମସ୍ତ ବିଷୟ ଗୋଚର କଲେ । ତାହା ଶୁଣି ମହାରାଜା ଗୋପୀନାଥ ପଟ୍ଟନାୟକ ଓ ବାଣୀନାଥ ପଟ୍ଟନାୟକଙ୍କୁ ମୋଚନ କରି ଦେବାର ଆଦେଶ ଦେଲେ । ଏମାନଙ୍କ ବନ୍ଧନ ବ୍ୟାପାର ଶୁଣି ମହାପ୍ରଭୁ ପଚାରିଥିଲେ ବାଣୀନାଥଙ୍କୁ ଯେତେବେଳେ ରାଜଦୂତମାନେ ବାନ୍ଧିନେଉଥିଲେ ବାଣୀନାଥ ସେତେ-ବେଳେ କଣ କରୁଥିଲେ ଏବଂ ଶୁଣିଲେ ଯେ ବାଣୀନାଥ ପଟ୍ଟନାୟକ ସେତେବେଳେ ନିରୁଦ୍ବେଗ ଚିତ୍ତରେ ଅଙ୍ଗୁଳିରେ ସଂଖ୍ୟାକରି ଶ୍ରୀକୃଷ୍ଣନାମ ଜପ କରୁଥିଲେ, ଏବଂ ସହସ୍ର ପୂର୍ଣ୍ଣହେଲେ ନାମ ସଂଖ୍ୟା ନିମିତ୍ତ ନିଜ ଅଙ୍ଗରେ ଗାର କାଟୁଥିଲେ । ଏହାଶୁଣି ମହାପ୍ରଭୁ ଆନନ୍ଦ ପ୍ରକାଶ କରିଥିଲେ । ଏହିରୂପ ପ୍ରକାଶ୍ୟରେ କୋପପ୍ରକାଶ କଲେ ମଧ୍ୟ ଅନ୍ତରରେ ସେମାନଙ୍କ ପ୍ରତି କୃପାଥିବାରୁ ଗୋପୀନାଥ ପଟ୍ଟନାୟକ ଓ ବାଣୀ-ନାଥ ପଟ୍ଟନାୟକ ଦଣ୍ଡରୁ ମୁକ୍ତ ହେଲେ, ଶେଷରେ ଗୋପୀନାଥଙ୍କ ପୂର୍ବ ବେତନ ଦ୍ୱିଗୁଣିତ ହେଲା । ମହାପ୍ରଭୁଙ୍କର ଏହି ଅପୂର୍ବ କୃପାକୁ ଲକ୍ଷ୍ୟକରି ଶ୍ରୀଳ କବିରାଜ ଗୋସ୍ୱାମୀ ଲେଖି ଅଛନ୍ତି,

ଶୁନ ମହାପ୍ରଭୁର ହୈଲ ପ୍ରେମ ଆନନ୍ଦ,
କେ ବୁଝିତେ ପାରେ ଗୌରେର କୃପା ଛନ୍ଦ ବନ୍ଧ,
( ଚୈଃ ଚଃ ଅନ୍ତ୍ୟ ୯ ପରି )

ମହାପ୍ରଭୁ ଯାହାକୁ ଦଣ୍ଡ ଦିଅନ୍ତି ସେ ମଧ୍ୟ ଅତି ସୌଭାଗ୍ୟଶାଳୀ । ତାଙ୍କର ଦଣ୍ଡ, ଦଣ୍ଡ ନୁହେଁ, ସେ କୃପାମୃତବର୍ଷଣ । ପଣ୍ଡିତ ଶ୍ରୀ ଦେବାନନ୍ଦ ଏହାର ଉଦାହରଣ । ପଣ୍ଡିତ ଦେବାନନ୍ଦ ମହାପଣ୍ଡିତ । ସେ ଧୀର ପ୍ରକୃତିର ଲୋକ ଥିଲେ । ଆକୁମାର ସଂନ୍ୟାସବ୍ରତ ଆଚରଣ କରୁଥିଲେ । ସହସ୍ର ସହସ୍ର ଛାତ୍ର ତାଙ୍କଠାରେ ଶ୍ରୀମଦ୍ଭାଗବତ ଶିକ୍ଷା କରୁଥିଲେ, କିନ୍ତୁ ମହାପଣ୍ଡିତ ହେଲେହେଁ ଦେବାନନ୍ଦ ତେତେବେଳେ ଭକ୍ତିମହିମା ଅବଗତ ନ ଥିଲେ । ସେ ଛାତ୍ରମାନଙ୍କୁ ଭାଗବତ ପଢ଼ାଉ ଅଛନ୍ତି, ଏମନ୍ତ ସମୟରେ ପରମଭାଗବତ ପଣ୍ଡିତ ଶ୍ରୀବାସ ଭାଗବତ ଶ୍ରବଣେଚ୍ଛାରେ ସେଠାରେ ଉପସ୍ଥିତ ହେଲେ । ଶ୍ରୀମଦ୍ଭାଗବତ ଅକ୍ଷରେ ଅକ୍ଷରେ ପ୍ରେମର ଆଧାର । ତାହା ଶ୍ରବଣ କରି ଭାଗବତୋତ୍ତମ ଶ୍ରୀବାସଙ୍କ ହୃଦୟ ପ୍ରେମରେ ଦ୍ରବୀଭୂତ ହେଲା, ସେ ଭାବ ସମ୍ବରଣ କରି ନ ପାରି ଉଚ୍ଚରେ କାନ୍ଦିବାକୁ ଲାଗିଲେ । ଅଷ୍ଟ ସାତ୍ତ୍ୱିକ ଭାବ ଯେ କଣ, ତେତେବେଳେ ପଣ୍ଡିତ ଦେବାନନ୍ଦ କିମ୍ବା ତାଙ୍କ ଶିଷ୍ୟମାନେ ଜାଣି ନ ଥିଲେ । ସେମାନେ ଶ୍ରୀବାସଙ୍କର ଭାବ ବୁଝି ନ ପାରି ଶାସ୍ତ୍ରପାଠରେ ଏହା ଏକ ବ୍ୟାଘାତ ବୋଲି ମନେ କଲେ ଏବଂ ଛାତ୍ରଗଣ ପ୍ରେମମୋହିତ ଶ୍ରୀବାସଙ୍କୁ ଘୋଷାରି ନେଇ ବାହାରେ ପକାଇଲେ । ପଣ୍ଡିତ ଦେବାନନ୍ଦ ମଧ୍ୟ ଏରୂପ ଗର୍ହିତ କାର୍ଯ୍ୟରୁ ଶିଷ୍ୟମାନଙ୍କୁ ବାରଣ କଲେ ନାହିଁ ; ବରଂ ଅନୁମୋଦନ କଲେ । ତାଙ୍କ ହୃଦୟ ତ ତେତେବେଳେ ଭକ୍ତିଶୂନ୍ୟ, ସେ ଭକ୍ତି ମହିମା ବୁଝିବେ କାହିଁ ଯେ ଶ୍ରୀବାସଙ୍କ ଅଦ୍ଭୁତ ପ୍ରେମବିକାର ହୃଦୟଙ୍ଗମ କରି ପାରିବେ । ମହାପ୍ରଭୁ ଅନ୍ତର୍ଯ୍ୟାମୀ, ସେତ ଏ ବିଷୟ ଜାଣିପାରିଥିଲେ । ସେ ପ୍ରେମ ପ୍ରଚାର କରିବା ସମୟରେ ଦିନେ ଦେବାନନ୍ଦଙ୍କୁ ପଥରେ ଦେଖି କ୍ରୋଧଭରେ କହିଲେ, ପଣ୍ଡିତ, ତୁମ୍ଭେ ଶ୍ରୀମଦ୍ଭାଗବତଶାସ୍ତ୍ରଜ୍ଞ ବୋଲି ମନେ ମନେ ଗର୍ବବହୁଳ କରି ଓ ଶ୍ରୀମଦ୍ଭାଗବତ ଶିଷ୍ୟମାନଙ୍କୁ ଶିକ୍ଷା ଦିଅ, କିନ୍ତୁ କୌଣସି ଜନ୍ମରେ ତୁମ୍ଭର ଭାଗବତ ଶାସ୍ତ୍ରରେ

ପ୍ରବେଶାଧିକାର ହୋଇ ନାହିଁ । ତୁମ୍ଭେ ଯଦି ଶ୍ରୀମଦ୍ଭାଗବତର ଲେଶମାତ୍ର ମର୍ମ ଗ୍ରହଣ କରିପାରି ଥାଆନ୍ତ ତେବେ ଭାଗବତ ଶୁଣି ପ୍ରେମରେ ଯେ ବ୍ୟକ୍ତି କ୍ରନ୍ଦନ କରୁଅଛନ୍ତି ତାଙ୍କୁ କି ମୋହିତାବସ୍ଥାରେ ଟାଣି ବାହାରେ ପକାଇ ଦେଇ ଥାଆନ୍ତ । ଯେଉଁ ମହାତ୍ମା ଶ୍ରୀବାସଙ୍କ ଦର୍ଶନ ଓ ସ୍ପର୍ଶନ ନିମନ୍ତେ ଗଙ୍ଗା ଦେବୀ ଇଚ୍ଛା କରନ୍ତି ଯେ ଭାଗବତ ଶ୍ରବଣରେ ପ୍ରେମରେ ବିହ୍ୱଳ ହୋଇ ଥିଲେ ତାଙ୍କର ଏ ଲାଞ୍ଛନା ! ପଣ୍ଡିତ ଦେବାନନ୍ଦଙ୍କର ଚେତେତବେଳେ ସଦ୍‌ଜ୍ଞାନ ଉଦୟ ହୋଇଥିଲା । ସେ ମହାପ୍ରଭୁଙ୍କର ଭର୍ତ୍ସନାକୁ ସାଦରେ ଗ୍ରହଣ ପୂର୍ବକ ଲଜ୍ଜାରେ ମୁଖ ଅବନତ କରି ରହିଲେ, କିଛି ଉତ୍ତର ଦାନରେ ସକ୍ଷମ ହେଲେ ନାହିଁ । ଦେବାନନ୍ଦଙ୍କ ପ୍ରତି ଏହି କୃପାଦଣ୍ଡକୁ ଲକ୍ଷକରି ଶ୍ରୀଲ ବୃନ୍ଦାବନ ଦାସ ଲେଖିଅଛନ୍ତି ।

ଚୈତନ୍ୟେର ଦଣ୍ଡ ମହା ସୁକୃତି ସେ ପାୟ
ଯାର ଦଣ୍ଡେ ତରିଲେ ବୈକୁଣ୍ଠେ ଲୋକ ଯାୟ ।
(ଚୈ: ଭା: ମଧ୍ୟ ୨୧)

ମହାପ୍ରଭୁଙ୍କର ଅଦ୍ଭୁତ କରୁଣା ଶ୍ରୀଲ ଲୋଚନଦାସ ଅତି ଅଳ୍ପାକ୍ଷରରେ ସୁନ୍ଦର ରୂପେ ଦର୍ଶାଇ ଅଛନ୍ତି । ଯଥା :—

ଚଣ୍ଡାଳ ପଣ୍ଡିତ କିବା ପରମ ଦୁର୍ଜ୍ଜନ
ସଭାରେ ଯାଚୟା ଦିଲ ହରିନାମ ରତ୍ନ
ଶୁଚି ବା ଅଶୁଚି କିବା ଅଗ୍ରର ବିଗ୍ରର
ନା ମାନିଲ ସଭାରେ କରିଲ ଭବପାର ।
ନିଜ ନାମ ସଙ୍କୀର୍ତ୍ତନ ନୌକା ସାଜାଇୟା
ଭବନଦୀ ପାର କୈଲ ଦୁଃଖିତ ଦେଖିୟା ।
(ଚୈ: ମ:)

ଅହୋ କି ଅପୂର୍ବ କୃପା ! ଚଣ୍ଡାଳ, ପତିତ ସମସ୍ତଙ୍କୁ ଯାଚି ଯାଚି ଅମୂଲ୍ୟ ପ୍ରେମରତନ ଦାନ ! ଏମନ୍ତ ଦାତା ଅଉ କିଏ ଅଛି, ମହାପ୍ରଭୁ ଅମୃତ ଦାତା ଶିରୋମଣି । ଆପେ ନାମର ନୌକା ସଜାଇ ଆପେ ମାଝି ହୋଇ ବିନା କଉଡ଼ିରେ ଦୁଃଖୀ କାଙ୍ଗାଳୀ ସମସ୍ତଙ୍କୁ ପାରି କଲେ । ତେବେ ସ

ଅମ୍ଭମାନଙ୍କର ତାଙ୍କ ନାମ ନେବାରେ ଏତେ ଶୈଥିଲ୍ୟ । ଶ୍ରୀଳ ଲୋଚନ ଦାସ ଅହ୍ମରି କଅଁଣ କହୁଛନ୍ତି ଦେଖାଯାଉ ।

ଯେ ଜନ ପଳାୟ ତାରେ ଧରି କୋଳ କରି
କାଣ୍ଡାରୀର ରୂପେ ପାର କଟଲ ଗୌରହରି ।

ଏବେ ଯେ ମୋର କଛି ଭରସା ହେଲା । ମୁଁ ସିନା ପଳାଇ ପଳାଇ ବୁଲୁଅଛି, କିନ୍ତୁ ସେ ଯେ ଗୋଡ଼ାଇ ଗୋଡ଼ାଇ ବଳେ ଧରି ପାର କରିବେ ।

ଶ୍ରୀଳ ଲୋଚନ ଦାସ ମିଥ୍ୟାବାଦୀ ନୁହନ୍ତି, ତାଙ୍କ ଉକ୍ତି ଯେ ଅକ୍ଷରେ ଅକ୍ଷରେ ସତ୍ୟ ଶ୍ରୀଳ ବୃନ୍ଦାବନ ଦାସ ଏଥିରେ ସାକ୍ଷୀ ପ୍ରଦାନ କରିଅଛନ୍ତି । ଅତଏବ କଥାଟି ସାକ୍ଷ୍ୟାଦ ଦ୍ୱାରା ଅକାଟ୍ୟ ରୂପେ ପ୍ରମାଣିତ ହୋଇଅଛି ।

ଶ୍ରୀଳ ବୃନ୍ଦାବନ ଦାସ ଲେଖିଅଛନ୍ତି, ଯେ ମହାପ୍ରଭୁ ଦିନେ ପ୍ରଭୁ ଶ୍ରୀନିତ୍ୟାନନ୍ଦ ଓ ଠାକୁର ଶ୍ରୀହରିଦାସଙ୍କୁ ଡ଼ାକି ଆଜ୍ଞା ଦେଲେ, ତୁମ୍ଭେମାନେ ପ୍ରତି ଘରେ ଘରେ ଭ୍ରମଣ ପୂର୍ବକ ଲୋକଙ୍କଠାରୁ ହରିନାମ ଭିକ୍ଷା ଗ୍ରହଣ କର, ଅର୍ଥାତ୍ ସମସ୍ତଙ୍କୁ ମଧୁର ହରି ନାମ କୀର୍ତ୍ତନର ଶିକ୍ଷା ପ୍ରଦାନ କର । ପ୍ରତ୍ୟହ ସମସ୍ତ ଦିନ ଏହିରୂପ ଭିକ୍ଷା କର କରି ସନ୍ଧ୍ୟା ସମୟରେ ମୋତେ ଆସି ଜଣାଅ । ଯଥା :—

ପ୍ରତି ଘରେ ଘରେ ଗିଯା କର ଏହି ଭିକ୍ଷା
ଭଜ କୃଷ୍ଣ ବଲ କୃଷ୍ଣ କର କୃଷ୍ଣ ଶିକ୍ଷା ।
ଇହା ବହି ଆର ନା ବଲାବେ ନା ବଲିବା
ଦିନ ଅବସାନେ ଆସି ଆମାରେ କହିବା ।

( ଚୈ: ଭା: ମଧ୍ୟ ୧୩ )

ଅତଏବ ବଳେ ଧରି ନାମ ପ୍ରେମ ଦେବାର ଉଦାହରଣ ଦେଖିଲେତ ! ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ ପରେ ଶ୍ରୀପୁରୁଷୋତ୍ତମରୁ ପ୍ରଭୁ ନିତ୍ୟାନନ୍ଦଙ୍କୁ ଗୌଡ଼କୁ ପଠାଇ କଣ ଆଦେଶ କରୁଅଛନ୍ତି, ତାହା ମଧ୍ୟ ଦେଖାଯାଉ ।

ପ୍ରଭୁ ବଲେ ଶୁନ ନିତ୍ୟାନନ୍ଦ ମହାମତି
ସତ୍ୱରେ ଚଲହ ତୁମି ନବଦ୍ୱୀପ ପ୍ରତି ।

ପ୍ରତିଜ୍ଞା କରିଲୁ ଆମି ଆପଣାର ମୁଖେ,
ମୂର୍ଖ ନୀଚ ଦରିଦ୍ରେ ଭସାବ ପ୍ରେମ ସୁଖେ ।
ତୁମିତ ଥାକିଲେ ଯଦି ମୁନି ଧର୍ମ କରି,
ଅପନ ଉଦ୍ଦାମ ଭାବ ସବ ପରିହରି !
ତବେ ମୂର୍ଖନୀଚ ଯତ ପତିତ ସଂସାର,
ବଲ ଦେଖି ଆର କେବା କରିବେ ଉଦ୍ଧାର ।

ଭକ୍ତି-ରସ ଦାତା ତୁମି ତୁମି ସମ୍ବରିଲେ,
ତବେ ଅବତାର କିବା ନିମିତ୍ତ କରିଲେ ।
ଏତେକ ଆମାର ବାକ୍ୟ ଯଦି ସତ୍ୟ ଗଣ,
ତବେ ଅବିଲମ୍ବେ ତୁମି ଗୌଡ଼ ଦେଶେ ଯାଓ ।
ମୂର୍ଖ ନୀଚ ପତିତ ଦୁଃଖିତ ଯତ ଜନ,
ଭକ୍ତି ଦିୟା କର ଗିୟା ସବାରେ ମୋଚନ ।

( ଚୈଃ ଭାଃ ଅନ୍ତ୍ୟ ୫ )

ଅହା ! ଏହାଠାରୁ ଅଧିକ କରୁଣାର ଚିହ୍ନ ଆଉ କି ହୋଇପାରେ ? ପ୍ରଭୁ ହେ, ସେହି କାଳର ଜୀବ କି ତୋର ନିଜଜନ ! ଆମ୍ଭେମାନେ କି ତୋର ନୋହୁଁ ? ଆମ୍ଭମାନଙ୍କ ପ୍ରତି ଏଡ଼େ ଉଦାସୀନ ଭାବ କାହିଁକି ? ଆମ୍ଭମାନଙ୍କର ଏ ଦୁର୍ଦ୍ଦଶା ଦେଖି ଆଉ ଥରେ କି ତୋର ମନ ଦ୍ରବୀଭୂତ ହେଉ ନାହିଁ । ଆମ୍ଭେମାନେ ଯେ ଧନ, ଜନ, ଜାତି, କୁଳ ପେନ ଅସ୍ଥ-ସୁଖରେ ସତତ ମତ୍ତ ହୋଇ ରହିଅଛୁଁ । ତୋର ନାମ ଯେ ଥରେ ହେଲା ଆମ୍ଭ ଜିହ୍ୱା କିମ୍ବା କାନକୁ ଆସୁ ନାହିଁ । କିନ୍ତୁ ଦେଖ ପ୍ରଭୁ, ଆମ୍ଭେମାନେ ପଛେ ଅଶେଷ ନରକ ଯାତନା ଭୋଗକରି ମରୁଁ, କିନ୍ତୁ ତୋ ପତିତ-ଦୟାଳୁ ନାମରେ ଯେପରି ଲେଶ ମାତ୍ର କଳଙ୍କ ନ ଲାଗେ । ଜଗନ୍ନାଥ ମାଧବଙ୍କ ଉଦ୍ଧାର ମହାପ୍ରଭୁଙ୍କ ଏ ଅବତାର ଲୀଳାରେ ଏକ ପ୍ରଧାନ ଘଟଣା । ତାହା ମହାପ୍ରଭୁଙ୍କ ଅଦ୍ଭୁତ କୃପାର ଡିଣ୍ଡିମ ଚିରକାଳ ପାଇଁ ବଜାଉଅଛି ଓ ବଜାଇବ ।

ଜଗାଇ ମାଧାଇ ମହାପାପୀ ଆଉ ମହାପ୍ରଭୁଙ୍କ ପ୍ରେମପ୍ରଚାର ଲୀଳାର ପରମ ସହାୟ ହୋଇ ଅଛନ୍ତି । ଭବିଷ୍ୟତ ପାଇଁ ସେମାନେ ଆମ୍ଭମାନଙ୍କ ପରି ମହାପାପୀଙ୍କର ଭରସାର ସ୍ଥଳ ହୋଇ ଚିର ବିରାଜମାନ । ତାଙ୍କ ଯୋଗୁଁ ଆଜି ଆମ୍ଭେମାନେ ମହା ନୈରାଶ୍ୟ-ସିନ୍ଧୁରେ ପଡି ମଧ୍ୟ ଆଶାର ତରଣୀ ବାନ୍ଧିଅଛୁଁ । ମହାପ୍ରଭୁଙ୍କର ସେମାନଙ୍କ ପ୍ରତି କୃପା ଜଗତର ଇତିହାସରେ ଉଜ୍ଜ୍ୱଳତମ ଛବି । ସେମାନେ ଗୋହତ୍ୟା ଓ ନରହତ୍ୟାଦି ସମସ୍ତ ମହାପାପରେ ଲିପ୍ତ । ପୃଥିବୀରେ ଏମନ୍ତ ପାପ ନାହିଁ, ଯାହା କି ସେମାନେ କରି ନ ଥିଲେ । ତାଙ୍କର ଏହି ନିରତିଶୟ ଦୁର୍ଦ୍ଦଶା ଦର୍ଶନ କରି ଦୟାଳୁ ପ୍ରଭୁ ଶ୍ରୀନିତ୍ୟାନନ୍ଦଙ୍କର ଅନ୍ତର ଦ୍ରବିଗଲା, ସେ ସେମାନଙ୍କ ଉଦ୍ଧାର ପାଇଁ ଦିନେ ନିଶାକାଳରେ ଏକାକୀ ଯାଇଁ ସେମାନଙ୍କ ନିକଟରେ ଉପସ୍ଥିତ ହେଲେ । ନିତ୍ୟାନନ୍ଦଙ୍କୁ ନିଜ ନିକଟରେ ଉପସ୍ଥିତ ଦେଖି ମଦିରାମତ୍ତ ଜଗାଇ ମାଧାଇ ରେ ରେ କାର ପୂର୍ବକ ତାଙ୍କୁ ଧରି ପଚାରିଲେ । ତୁ କିଏରେ ? ଏତେ ରାତିରେ ଏଠାକୁ ଆସି ଅଛୁ ? ପ୍ରେମମଦିରାରେ ପ୍ରମତ୍ତ ନିତ୍ୟାନନ୍ଦ ଉତ୍ତର କଲେ ମୁଁ ଅବଧୂତ । ମାଧାଇ କୁପିତ ହୋଇ କହିଲେ, ହିଁ, ଅବଧୂତ, ଏହା କହି ଖଣ୍ଡେ ଭଙ୍ଗା କଳସୀର ଖପରା ଉଠାଇ ତାଙ୍କ ଶିରରେ ସଜୋରରେ ଆଘାତ କଲେ । ନିତ୍ୟାନନ୍ଦଙ୍କ ଶିରରୁ ଦର ଦର ଧାରରେ ରକ୍ତ ବହିବାକୁ ଲାଗିଲା । ସେ ରକ୍ତ ଦେଖି ଜଗାଇ ମନରେ କିଞ୍ଚିତ କରୁଣା ସଞ୍ଚାର ହେଲା, ଏବଂ ମାଧାଇ ପୁନର୍ବାର ଆଘାତ କରିବାକୁ ବସନ୍ତେ ଜଗାଇ ତାକୁ ଧରି ବାରଣ କଲା । ନିଜ ଶିରରୁ ରକ୍ତ ଦର ଦର ଧାରରେ ବହି ଆସୁ ଥିଲେହେଁ ପ୍ରେମ ବିହ୍ୱଳ ନିତ୍ୟାନନ୍ଦଙ୍କର ସେଥି ପ୍ରତି ଲକ୍ଷ୍ୟ ନାହିଁ । ସେ ପ୍ରେମରେ ହସୁ ଅଛନ୍ତି । ଏମନ୍ତ ସମୟରେ ଲୋକ ମୁଖରୁ ସେ ସମାଚାର ଶ୍ରବଣ କରି ମହାପ୍ରଭୁ ସେଠାରେ ଆସି ଉପସ୍ଥିତ ହେଲେ । ଏବଂ ସେ ନିତ୍ୟାନନ୍ଦଙ୍କ ଶରୀରରେ ରକ୍ତ ଦର୍ଶନ କରି ଚକ୍ରବର ଶ୍ରୀ ସୁଦର୍ଶନଙ୍କୁ ଆହ୍ୱାନ କଲେ । କିନ୍ତୁ ପ୍ରଭୁ ନିତ୍ୟାନନ୍ଦ ମହାପ୍ରଭୁଙ୍କୁ ସେଥିରୁ ନିବାରଣ ପୂର୍ବକ ସେ ଦୁହିଙ୍କ ପ୍ରାଣଭିକ୍ଷା କଲେ । ମହାପ୍ରଭୁ ଏହିରୂପେ ନିତ୍ୟାନନ୍ଦଙ୍କ ମହିମା ଜଗତରେ ପ୍ରଚାର କରାଇ ସେ ଦୁଇ ମହା-

ପାପୀଙ୍କ ପ୍ରତି କରୁଣା ପ୍ରକାଶ କଲେ । ଏହିରୂପେ ସେ ଦୁହିଙ୍କର ଚୈତନ୍ୟ ଉଦୟ ହୁଅନ୍ତେ ସେମାନେ ମହାପ୍ରଭୁ ଓ ନିତ୍ୟାନନ୍ଦ ପ୍ରଭୁଙ୍କ ସ୍ତୁତି କରି-ବାକୁ ଲଗିଲେ । ମାଧାଇ ସ୍ତୁତି କାଳରେ କହିଥିଲେ, ପ୍ରଭୋ, ଅଜାମିଳ ଉଦ୍ଧାର ଆଦି ଭବଦୀୟ ପୂର୍ବ କୀର୍ତ୍ତିମାନ ବର୍ତ୍ତମାନ ଲଘୁତାକୁ ପ୍ରାପ୍ତ ହେଲା । ଅଜାମିଳ ମହାପାପୀ ହେଲେହେଁ ତୋର ନାରାୟଣ ନାମ ଉଚ୍ଚାରଣ କରିଥିଲା । କଂସ ଆଦି ତୋର ଶତ୍ରୁ ହେଲେହେଁ ଶତ୍ରୁ ଭାବରେ ସତତ ତୋ ଚିନ୍ତା କରୁଥିଲେ, ଏବଂ ସେମାନେ ମରଣାନ୍ତେ ମୁକ୍ତ ଲାଭକଲେ, ଏ ଦେହରେ ନୁହେ । କିନ୍ତୁ ତୁମ୍ଭ ଶ୍ରୀଅଙ୍ଗରୁ ରକ୍ତ-ପାତ କରି ମୁଁ ସାଙ୍ଗୋପାଙ୍ଗ ତୋର ଦୁର୍ଲ୍ଲଭ ଦର୍ଶନ ଲାଭ କଲି । ଯଥା—

ଆମି ଦେଖିଲାମ ତୋମା ରକ୍ତ ପାତ ଅଙ୍ଗେ,
ସାଙ୍ଗୋପାଙ୍ଗ ଅସ୍ତ୍ର ପାରିଷଦ ସବ ସଙ୍ଗେ ।

( ଚୈଃ ଭାଃ ମଧ୍ୟ ୧୩ )

ମହାପ୍ରଭୁ ମଧ୍ୟ ସେ ଦୁହିଁଙ୍କୁ ଅଶେଷ କୃପାପୂର୍ବକ ନିଜ ଦାସ ରୂପେ ଗ୍ରହଣ କଲେ । ଏବଂ ସେମାନଙ୍କର ସମସ୍ତ ମହାପାପମାନ ନିଜେ ଗ୍ରହଣ କଲେ । ସେମାନଙ୍କ ପ୍ରତ୍ୟୟ ପାଇଁ ମହାପାପ ଗ୍ରହଣର ପ୍ରମାଣ ସ୍ୱରୂପ ମହାପ୍ରଭୁଙ୍କ ଗୌର ଅଙ୍ଗ କିଛିକ୍ଷଣ ପାଇଁ କାଳିଆ ହୋଇଗଲା ।

ଯଥା—

ଦୁଇଜନ ଶରୀରେ ପାତକ ନାହିଁ ଆର,
ଇହା ବୁଝାଇତେ ହୈଲ କାଳିଆ ଆକାର ।

( ଚୈଃ ଭାଃ ମଧ୍ୟ ୧୩ )

ଅହା ! ଆଉ କିଏ ଜୀବର ପାପ ନିଜ ମୁଣ୍ଡରେ ବହନ କରିବ ଏ ଶକ୍ତି ଅବା ଆଉ କାହାର ଅଛି ।



## ଊନବିଂଶ ପରିଚ୍ଛେଦ ।

### ( ମହାପ୍ରଭୁଙ୍କ ଅଚିନ୍ତ୍ୟ ଶକ୍ତିର କାର୍ଯ୍ୟ )

ଶ୍ରୀଭଗବାନ ସର୍ବଶକ୍ତିସମ୍ପନ୍ନ । ଅତଏବ ତାହାଙ୍କ କାର୍ଯ୍ୟ ସକଳହିଁ ଚମତ୍କାରରେ ପୂର୍ଣ୍ଣ । ସେଥିରେ ଆଉ କେଉଁ ବିଶେଷ କାର୍ଯ୍ୟର ସଙ୍ଖ୍ୟା କରାଯିବ, ତେବେ ମହାପ୍ରଭୁ ପ୍ରକଟହୋଇ ନରବତ୍ ଲୀଳା କରୁଥିବା କାଳରେ ତାଙ୍କ ସଙ୍ଗୀଗଣ ତାଙ୍କ କାର୍ଯ୍ୟ ମଧ୍ୟରୁ ଯେ କେତେକ ଅଦ୍ଭୁତ କାର୍ଯ୍ୟମାନ ଲିପିବଦ୍ଧକରିଯାଇଛନ୍ତି ସେଥିରୁ କେତେକ ଗୋଟି କାର୍ଯ୍ୟ ଉଲ୍ଲେଖ କରୁଅଛି ମାତ୍ର ।

ମହାପ୍ରଭୁ ଶ୍ରୀପୁରୁଷୋତ୍ତମରୁ ବଳଭଦ୍ର ଭଟ୍ଟାଚାର୍ଯ୍ୟଙ୍କୁ ସଙ୍ଗେନେଇ ବନ ପଥରେ ଶ୍ରୀବୃନ୍ଦାବନକୁ ଯାଇଥିଲେ । ସେ ଯେଉଁ ବନପଥରେ ଯିବା ସମୟରେ ହିଂସ୍ର ପଶୁଗଣଙ୍କୁ ହରିନାମରେ ଉନ୍ମତ୍ତ କରାଇଥିଲେ । ବନର ବ୍ୟାଘ୍ର, ଜନ୍ତୁମାନେ ତାଙ୍କ କୃପାରୁ ହରିନାମ ଉଚ୍ଚାରଣକରି ନାଚିଥିଲେ । ବ୍ୟାଘ୍ର ଓ ମୃଗ ଏକତ୍ରିତ ହୋଇ ତାଙ୍କ ସଙ୍ଗେ ସଙ୍ଗେ ଦୌଡ଼ିଥିଲେ ଏବଂ ପରସ୍ପରକୁ ଆଲିଙ୍ଗନ କରିଥିଲେ । ପକ୍ଷୀଗଣ ହରିନାମ ଗାଇ ନୃତ୍ୟ କରିଥିଲେ । ମହାପ୍ରଭୁଙ୍କର ଏହି ବିଚିତ୍ରଲୀଳା ମୋହର କହିବାର ଶକ୍ତିନାହିଁ । ତେଣୁ ଶ୍ରୀଳ କବିରାଜ ଗୋସ୍ୱାମୀଙ୍କର ପଦାବଳୀ ଉଦ୍ଧୃତ କଲି । ଯଥା :—

ପ୍ରସିଦ୍ଧ ପଥଛାଡ଼ି ପ୍ରଭୁ ଉପପଥେ ଚଲିଲା,
କଟକ ଡାହିନେ କରି ବନେ ପ୍ରବେଶିଲା ।
ନିର୍ଜ୍ଜନ ବନେ ଚଲେ ପ୍ରଭୁ କୃଷ୍ଣନାମ ଲୟା,
ହସ୍ତୀ ବ୍ୟାଘ୍ର ପଥଛାଡ଼େ ପ୍ରଭୁକେ ଦେଖିୟା ।

ପାଲେ ପାଲେ ବ୍ୟାଘ୍ର ହସ୍ତୀ ଗଣ୍ଡାର ଶୂକର ଗଣ,
ତାର ମଧ୍ୟେ ଆବେଶେ ପ୍ରଭୁ କରେନ ଗମନ ।
ତାହାଦେଖି ଭଟ୍ଟାଚାର୍ଯ୍ୟେର ମହାଭୟ ହୟ,
ପ୍ରଭୁର ପ୍ରତାପେ ତାରା ଏକପାଶ ହୟ ।
ଏକଦିନ ପଥେ ବ୍ୟାଘ୍ର କରିଅଛେ ଶୟନ,
ଆବେଶେ ତାର ଗାୟେ ପ୍ରଭୁର ଲାଗିଲ ଚରଣ ।
ପ୍ରଭୁ କହେ କହ କୃଷ୍ଣ, ବ୍ୟାଘ୍ର ଉଠିଲ,
କୃଷ୍ଣ କୃଷ୍ଣ କହି ବ୍ୟାଘ୍ର ନାଚିତେ ଲାଗିଲ ।
ଆରଦିନେ ମହାପ୍ରଭୁ କରେ ନଦୀସ୍ନାନ,
ମତ୍ତ ହସ୍ତୀ ଯୂଥ ଆଇଲ କରିତେ ଜଲପାନ ।
ପ୍ରଭୁ ଜଲେ କୃତ୍ୟ କରେନ ଆଗେ ହସ୍ତୀ ଆଇଲା,
କୃଷ୍ଣକହ ବଲି ପ୍ରଭୁ ଜଲ ଫେଲି ମାରିଲା ।
ସେଇ ଜଲବିନ୍ଦୁ କଣା ଲାଗେ ଯାର ଗାୟ,
ସେଇ କୃଷ୍ଣ କୃଷ୍ଣ କହେ ପ୍ରେମେ ନାଚେ ଗାୟ ।
କେହ ଭୂମେ ପଡେ କେହ କରୟେ ଚିତ୍କାର,
ଦେଖି ଭଟ୍ଟାଚାର୍ଯ୍ୟେର ମନେ ହୟ ଚମତ୍କାର ।
ପଥେ ଯାଇତେ କରେ ପ୍ରଭୁ ଉଚ୍ଚ ସଂକୀର୍ତ୍ତନ,
ମଧୁର କଣ୍ଠଧ୍ୱନି ଶୁନି ଆଇସେ ମୃଗୀଗଣ ।
ଡାହିନେ ବାମେ ଧ୍ୱନି ଶୁନି ଯାୟ ପ୍ରଭୁ ସଙ୍ଗେ,
ପ୍ରଭୁ ତାର ଅଙ୍ଗ ମୁଛେ ଶ୍ଲୋକ ପଡେ ରଙ୍ଗେ ।
ହେନକାଲେ ବ୍ୟାଘ୍ର ତଥା ଆଇଲ ପାଞ୍ଚ ସାତ,
ବ୍ୟାଘ୍ର ମୃଗୀ ମିଲି ଚଲେ ମହାପ୍ରଭୁର ସାଥ ।
ଦେଖି ମହାପ୍ରଭୁର ବୃନ୍ଦାବନସ୍ମୃତି ହୈଲ,
ବୃନ୍ଦାବନ ଗୁଣବର୍ଣ୍ଣନ ଶ୍ଲୋକ ପଢ଼ିଲ,
କୃଷ୍ଣ କୃଷ୍ଣ କହ କରି ପ୍ରଭୁ ଯବେ କୈଲ,
କୃଷ୍ଣ କହି ବ୍ୟାଘ୍ର ମୃଗ ନାଚିତେ ଲାଗିଲ ।

ନାଚେ କାନ୍ଦେ ବ୍ୟାଘ୍ରଗଣ ମୃଗୀଗଣ ସଙ୍ଗେ,
ବଲଭଦ୍ର ଭଟ୍ଟାଚାର୍ଯ୍ୟ ଦେଖେ ଅପୂର୍ବ ରଙ୍ଗେ ।
ବ୍ୟାଘ୍ର ମୃଗ ଅନ୍ୟୋଽନ୍ୟ କରେ ଆଲିଙ୍ଗନ,
ମୁଖେ ମୁଖ ଦିଆ କରେ ଅନ୍ୟୋନ୍ୟ ଚୁମ୍ବନ ।
କୌତୁକ ଦେଖିଆ ପ୍ରଭୁ ହାସିତେ ଲାଗିଲା,
ତା ସବାକେ ତାହା ଛାଡ଼ି ଆଗେ ଚଲିଗେଲା ।
ମୟୂରାଦି ପକ୍ଷୀଗଣ ପ୍ରଭୁକେ ଦେଖିଆ,
ସଙ୍ଗେ ଚଲେ କୃଷ୍ଣବଲେ ନାଚେ ମତ୍ତହିଆ ।

ହରିବୋଲ ବଲି ପ୍ରଭୁ କରେ ଉଚ୍ଚଧ୍ୱନି,
ବୃକ୍ଷଲତା ପ୍ରଫୁଲ୍ଲିତ ସେଇଧ୍ୱନି ଶୁନି ।
ଝାରିଖଣ୍ଡେ ସ୍ଥାବର ଜଙ୍ଗମ ଆଛେ ଯତ,
କୃଷ୍ଣନାମ ଦିଆ ପ୍ରେମେ କୈଲ ଉନ୍ମତ୍ତ ।
ଯେଇ ଗ୍ରାମଦିଆ ଯାନ ଯାହାଁ କରେ ସ୍ଥିତି,
ସେ ସବ ଗ୍ରାମେର ଲୋକେର ହୟ ପ୍ରେମଭକ୍ତି ।
କେହ ଯଦି ତାର ମୁଖେ ଶୁନେ କୃଷ୍ଣନାମ,
ତାରମୁଖେ ଆନଶୁନେ ତାରମୁଖେ ଆନ ।
ସବେ କୃଷ୍ଣହରି ବଲି ନାଚେ କାନ୍ଦେ ହାସେ,
ପରମ୍ପରାୟ ବୈଷ୍ଣବ ହୈଲ ସର୍ବଦେଶେ ।

( ଚୈଃ ଚଃ ମଧ୍ୟ ୧୭ ପରି )

ଆହା ସେକାଳର ପଶୁ, ପକ୍ଷୀ ଗଛ ପତ୍ରର ସୌଭାଗ୍ୟ ସୁଦ୍ଧା ଆମ୍ଭମାନଙ୍କର ନାହିଁ । ହେ ଗୌରଚନ୍ଦ୍ର, ତୁମ୍ଭେ ଯେଉଁ ଝାଡ଼ଖଣ୍ଡକୁ ବୈକୁଣ୍ଠରେ ପରିଣତ କରି ଆନନ୍ଦରେ ଗମନ କରିଥିଲ, ମୁଁ ଯେ ତୁମ୍ଭର ସେହିପ୍ରିୟ ଝାଡ଼ଖଣ୍ଡରେ ବସି ଏହା ଲେଖୁଅଛି । ଥରେ ଭଲା ପୁନର୍ବାର ଆସି ପଶୁପକ୍ଷୀମାନଙ୍କୁ ହରିନାମରେ ନଚାଅ, ମୁଁ ଦେଖି ନୟନ ପବିତ୍ର କରେଁ । ଏ ବନ ଦେଶର ଗିରି ନଦୀ ପୁଷ୍କରିଣୀ ଓ ତରୁଲତାମାନଙ୍କର ମନୋହର

ଶୋଭା ତୁମ୍ଭର ମନରେ ବୃନ୍ଦାବନର ଛବି ଉଦ୍ରେକ କରାଇବ, ଅତଏବ ଏଠାକୁ ଆସିଲେ ତୁମ୍ଭେମାନେ ଅପାର ଆନନ୍ଦ ଲାଭ କରିବ ।

ପଶୁପକ୍ଷୀ ଯେ ମହାପ୍ରଭୁଙ୍କ କୃପାରେ କୃଷ୍ଣ୨ କହି ନାଚୁଥିଲେ, ଶ୍ରୀମନ୍ ଶିବାନନ୍ଦ ସେନଙ୍କ କୁକ୍କୁର ତାହାର ଏକ ଉଦାହରଣ । ଶିବାନନ୍ଦ ସେନ୍ ଗୌଡ଼ୀୟ ଭକ୍ତମାନଙ୍କୁ ସଙ୍ଗେ ଘେନି ଶ୍ରୀ ପୁରୁଷୋତ୍ତମକୁ ଆସିବାବେଳେ ତାଙ୍କ ସଙ୍ଗେ ଗୋଟିଏ କୁକ୍କୁର ଆସୁଥିଲା । ଏକଦିନ ଶିବାନନ୍ଦ ନଦୀଘାଟରେ କାର୍ଯ୍ୟ ବଶତଃ ଅଟକିଗଲେ ଓ ତାଙ୍କ ସେବକ ସେଦିନ କୁକ୍କୁରକୁ ଭାତ ଦେବାକୁ ଭୁଲିଗଲେ । ଶିବାନନ୍ଦ ଆସି କୁକ୍କୁରକୁ ନ ଦେଖି ୧୦ଜଣ ମନୁଷ୍ୟ ପଠାଇ ଗ୍ରାମଅଞ୍ଚଳେ ଅନ୍ୱେଷଣ କରାଇଲେ, କିନ୍ତୁ କୁକ୍କୁରର କିଛି ସନ୍ଧାନ ପାଇଲେ ନାହିଁ । ମନୋଦୁଃଖରେ ଶିବାନନ୍ଦ ସେ ରାତି ଉପବାସରେ କଟାଇଲେ । ତତ୍ପର ଦିବସ ମଧ୍ୟ କୁକ୍କୁରକୁ ନ ପାଇ ସେମାନେ ଶ୍ରୀପୁରୁଷୋତ୍ତମକୁ ଆସିଲେ ଏବଂ ମହାପ୍ରଭୁଙ୍କ ଶ୍ରୀଚରଣ ଦର୍ଶନ କଲେ । ପରଦିବସ ପ୍ରାତଃ କାଳରେ ଶିବାନନ୍ଦ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଯାଇ ଦେଖିଲେ ତାଙ୍କ ହଜି ଥିବା କୁକ୍କୁରଟି ମହାପ୍ରଭୁଙ୍କ ନିକଟ କିଛି ଦୂରରେ ବସିଅଛି । ମହାପ୍ରଭୁ କୌତୁକରେ ତାହାକୁ ପ୍ରସାଦ ନାରିକେଳ ଖଣ୍ଡେ ଖଣ୍ଡେ ଫିଙ୍ଗି ଦେଉ ଅଛନ୍ତି ଏବଂ କୃଷ୍ଣ, ରାମ, ହରି କହ ବୋଲି ତାକୁ କହୁ ଅଛନ୍ତି । ସେ କୁକ୍କୁର ମଧ୍ୟ ତାଙ୍କ ଆଜ୍ଞାରେ ରାମ, କୃଷ୍ଣ, ହରି ଉଚ୍ଚାରଣ କରୁଅଛି ଓ ପ୍ରସାଦ ନାରିକେଳ ଖାଉଅଛି । ଶିବାନନ୍ଦ କୁକ୍କୁରକୁ ଚିହ୍ନି ଏବଂ ତାହାର ଦିବ୍ୟ ଗତି ଦର୍ଶନ କରି ତାକୁ ଦଣ୍ଡବତ ହୋଇ ନିଜ ଅପରାଧର କ୍ଷମା ପ୍ରାର୍ଥନା କଲେ । ପରଦିବସଠାରୁ ସେ କୁକ୍କୁର ଅଦୃଶ୍ୟ ହେଲା ଏବଂ ମହାପ୍ରଭୁଙ୍କ କୃପାରେ ସିଦ୍ଧ ଦେହ ପାଇ ବୈକୁଣ୍ଠକୁ ଚାଲିଗଲା । ସେଥିପାଇଁ ଶ୍ରୀକ କବିରାଜ ଗୋସ୍ୱାମୀ କହି ଅଛନ୍ତି ।

ଐଛେ ଦିବ୍ୟଲୀଳା କରେ ଶଚୀର ନନ୍ଦନ,
କୁକ୍କୁରକେ କୃଷ୍ଣ କହାଇ କରିଲ ବିମୋଚନ ।
( ଚୈଃ ଚଃ ଅନ୍ତ୍ୟ ୪ )

ମହାପ୍ରଭୁ ନିଜ ବାଲ୍ୟାବସ୍ଥାରେ ସେହି କୁକ୍କୁର ସଙ୍ଗେ ନାନା ଖେଳା କରୁଥିଲେ । ତାଙ୍କର ଜନନୀ ଶଚୀଦେବୀ ଶିଶୁ ନିମାଇର ଏହି କୁକ୍କୁର ସଙ୍ଗେ ଖେଳାକୁ ଭଲ ପାଉ ନ ଥିଲେ, କାରଣ ହିନ୍ଦୁମତରେ କୁକ୍କୁର ଏକ ଅସ୍ପୃଶ୍ୟ ଜୀବ ଏବଂ ତାକୁ ଛୁଇଁଲେ ସ୍ନାନ କରିବା ବିଧେୟ । ତେଣୁ ସେ ନିମାଇକୁ ଡାକି କହିଲେ "ବାପ ନିମାଇ ! ଛି ଏ କୁକ୍କୁର" ଛୁଆକୁ ଛୁଅଁ ନା, ତାକୁ ଛାଡ଼ିଦେ, ବାପ ମା ଗଙ୍ଗାରେ ସ୍ନାନ କରି ଆସିବୁ । ନିମାଇଁ ତାହା ନ ଶୁଣିବାରୁ ଶଚୀଦେବୀ କହିଲେ, ବାପ! ଯଦି କୁକ୍କୁର ଛୁଆ ପ୍ରତି ତୋର ଏତେ ସ୍ନେହ ଯଦି ତାକୁ ନ ଛାଡ଼ିବୁ ତେବେ ତାକୁ ବାନ୍ଧିରଖ, ପରେ ଖେଳିବୁ ବର୍ତ୍ତମାନ ଯା ସ୍ନାନ କରି ଆସିବୁ । ନିମାଇ ଏଥିରେ ସନ୍ତୁଷ୍ଟ ହୋଇ କହିଲେ ମା, ମୁଁ କୁକ୍କୁର ଛୁଆ ବାନ୍ଧି ରଖି ସ୍ନାନ କରିବାକୁ ଯାଉଅଛି କିନ୍ତୁ ଯଦି ମୋର କୁକ୍କୁର ଛୁଆ ପଳାଇଯାଏ ତେବେ ତୋତେ ସେ କୁକ୍କୁର ଛୁଆ ଆଣିଦେବାକୁ ହେବ, ଏହା କହି ନିମାଇ ସ୍ନାନ କରିବାକୁ ଗଲେ । ଶଚୀଦେବୀ ଏଣେ କୁକ୍କୁର ଛୁଆକୁ ଫିଙ୍ଗାଇଦେଲେ । କେହି ବାଳକ ଯାଇ ନିମାଇଙ୍କୁ କହିଲେ ନିମାଇ ! ତୋର ମାତା କୁକ୍କୁର ଛୁଆ ଫିଙ୍ଗାଇଦେଲେଣି । ନିମାଇଁ ତତ୍କ୍ଷଣାତ୍ ଦୌଡ଼ି ଆସି ଦେଖିଲେ କୁକ୍କୁରଛୁଆ ତାର ସ୍ଥାନରେ ନାହିଁ ।

ତେଣୁ ସେ ବାଳୋଚିତ କ୍ରୋଧକରି ମାତାଙ୍କୁ ଗାଳିଦେବାକୁ ଲାଗିଲେ ଏବଂ କହିଲେ ମା ! ତୁ ମୋର ଏତେ ସୁନ୍ଦର କୁକ୍କୁର ଛୁଆକୁ କାହାକୁ ଦେଲୁ । ଶଚୀଦେବୀ ନାନାପ୍ରକାର ପ୍ରବୋଧ ଦେଇ ନିମାଇକୁ ସାନ୍ତ୍ୱନା କଲେ ଏବଂ ଗଙ୍ଗା ଜଳରେ ସ୍ନାନ କରାଇ ସନ୍ଦେଶ ପ୍ରଭୃତି ଖୁଆଇଲେ କିନ୍ତୁ ଏଣେ ସେହି ଭାଗ୍ୟବାନ କୁକ୍କୁରଶାବକ ଗୌରଅଙ୍ଗ ସ୍ପର୍ଶ ପାଇଥିବାରୁ ରାଧାକୃଷ୍ଣ ଗୋବିନ୍ଦ ଉଚ୍ଚାରଣ କରି ନାଚିବାକୁ ଲାଗିଲା । ନଦୀଆର ଲୋକମାନେ କୁକୁରର ଏ ଭାବ ଦେଖି ବିସ୍ମିତ ହେଲେ ଏବଂ ସେ କୁକୁର ଶାବକ ନିଜ ଦେହ ପରିତ୍ୟାଗ ପୂର୍ବକ ଦିବ୍ୟ ଦେହରେ ଗୋଲକଧାମକୁ ଚାଲିଗଲା । ଶ୍ରୀ ଲୋଚନ ଦାସ ଏହା ଅନୁଭବ କରି ଲେଖି ଅଛନ୍ତି ।

ଗୌରାଙ୍ଗ ପରଶେ କୁକୁର ଭାଗ୍ୟବାନ,
କୁକୁର ଛାଡ଼ିଯା ତାର ହଇଲ ଦିବ୍ୟଜ୍ଞାନ ।

ହାକୃଷ୍ଣ ଗୋବିନ୍ଦ ବଲିୟା ଡାକେ ନାଚେ,
ନବଦ୍ୱୀପର ଲୋକ ଦେଖି ସବ ଧାୟ ପାଛେ ।
କୃଷ୍ଣ ପ୍ରେମେର ଆବେଶ ଏମନ ସଭେ ଦେଖି
ପୁଲକିତ ସବ ଅଙ୍ଗ ଅଶ୍ରୁମୟ ଆଁଖି ।
ଆଚମ୍ବିତେ ସ୍ଥାନ ଦେଖ ଶୁଦ୍ଧ ଭାଗ୍ୟବାନ
କୃଷ୍ଣଲୋକ ଇଚ୍ଛା କରେ ଗୋଲୋକ ପ୍ରୟାଣ ।
ଆଚମ୍ବିତେ ଦିବ୍ୟ ଏକ ରଥ ଯେ ଆସିୟା
ଆକାଶେର ପଥେ ଯାୟ ତାହାରେ ଲଇୟା ।

( ଚୈଃ ମଃ )

ବାଲ୍ୟକାଳରେ ମଧ୍ୟ ମହାପ୍ରଭୁ ଏରୂପ ଅପୂର୍ବ ଲୀଳା କରୁଥିଲେ, କିନ୍ତୁ ଅତି ମହା ଧୃତିମାନ୍ ପୁରୁଷ ତାଙ୍କର ସେ ଅଲୌକିକ ଲୀଳା ସେତେବେଳେ ଅନୁଭବ କରୁଥିବେ । ସାଧାରଣଙ୍କର ତାହା ବୁଝିବାର ଶକ୍ତି ନ ଥିଲା । ଶ୍ରୀମନ୍ ମହାପ୍ରଭୁ କୃଷ୍ଣପ୍ରେମ ଦେବାପାଇଁ ଧରାରେ ଅବତୀର୍ଣ୍ଣ ହୋଇଥିଲେ । ଅତଏବ ସେ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ରୂପରେ ଯେଉଁ କୃପା ବିସ୍ତାର କରିଥିଲେ, ବର୍ତ୍ତମାନ କଳି କାଳରେ ଗୌରରୂପରେ ଅବତୀର୍ଣ୍ଣ ହୋଇ ତାହାଠାରୁ ବଳି କୃପା ବିସ୍ତାର କଲେ । ପଣ୍ଡିତପ୍ରବର ପ୍ରକାଶାନନ୍ଦ ସରସ୍ୱତୀ ତାଙ୍କ କୃତ ଚୈତନ୍ୟଚନ୍ଦ୍ରୋଦୟ ଗ୍ରନ୍ଥରେ ତାହା ସୁନ୍ଦର ରୂପେ ଦର୍ଶାଇ ଅଛନ୍ତି । ମହାପ୍ରଭୁଙ୍କ ଶକ୍ତି ଜାଣିବାର ସେ ଏକ ଅପୂର୍ବ ଗ୍ରନ୍ଥ । ଶ୍ରୀଳ କବିରାଜ ଗୋସ୍ୱାମୀ ମଧ୍ୟ ମହାପ୍ରଭୁଙ୍କ ଅଦ୍ଭୁତ କୃପା ବିଷୟରେ କଣ କହି ଯାଇ ଅଛନ୍ତି ଦେଖାଯାଉ ।—

ଏକ କୃଷ୍ଣନାମେ କରେ ସର୍ବ ପାପନାଶ
ପ୍ରେମେର କାରଣ ଭକ୍ତି କରଏ ପ୍ରକାଶ ।
ପ୍ରେମେର ଉଦୟେ ହୟ ପ୍ରେମେର ବିକାର
ସ୍ୱେଦ କମ୍ପ ପୁଲକାଦି ଗଦ୍ଗଦ ଅଶ୍ରୁଧାର, ।
ଅନାୟାସେ ଭବକ୍ଷୟ କୃଷ୍ଣେର ସେବନ
ଏକ କୃଷ୍ଣନାମ ଫଳେ ପାଇ ଏତ ଧନ ।

ହେନ କୃଷ୍ଣନାମ ଯଦି ଲୟ ବହୁବାର
ତବୁ ଯଦି ପ୍ରେମ ନହେ ନହେ ଅଶ୍ରୁଧାର,
ତବେ ଜାନି ଅପରାଧ ତାହାତେ ପ୍ରଚୁର,
କୃଷ୍ଣନାମ ବୀଜ ତାହାଁ, ନା କରେ ଅଙ୍କୁର ।
ଚୈତନ୍ୟ ନିତ୍ୟାନନ୍ଦେ ନାହି ଏ ସବ ବିଚାର
ନାମ ଲୈତେ ପ୍ରେମ ଦେନ ବହେ ଅଶ୍ରୁଧାର ।

( ଚୈଃ ଚଃ ଆଦି ୮ ପରି— ) .

ଏଥିର ମର୍ମ ଉଦ୍ଘାଟନ କରି ବୁଝାଇବା ମୋର ଶକ୍ତିର ବହିର୍ଭୂତ ।
ମହାନୁଭବ ଭକ୍ତଗଣ ଶ୍ରୀଳ କବିରାଜ ଗୋସ୍ୱାମୀଙ୍କର ଏ ଲେଖାର ତାତ୍ପର୍ଯ୍ୟ
ନିଜେ ନିଜେ ହୃଦୟଙ୍ଗମ କରିବେ ।

ଶ୍ରୀମନ୍ ମହାପ୍ରଭୁଙ୍କର କାର୍ଯ୍ୟମାନ ବୁଝିବା ମନୁଷ୍ୟର କି ସାଧ୍ୟଅଛି ! ତାଙ୍କର ନିଜ ଅନ୍ତରଙ୍ଗ ପ୍ରିୟ ପାର୍ଷଦଗଣ ସବୁବେଳେ ତାଙ୍କର ସବୁକାର୍ଯ୍ୟର ତାତ୍ପର୍ଯ୍ୟ ବୁଝି ପାରୁ ନ ଥିଲେ । ମହାପ୍ରଭୁ ଯେତେବେଳେ ଛୋଟ ହରିଦାସଙ୍କୁ ବର୍ଜ୍ଜନ କରିଥିଲେ ଭକ୍ତଗଣ ହରିଦାସଙ୍କୁ କ୍ଷମାଦେବା ନିମନ୍ତେ ମହାପ୍ରଭୁଙ୍କୁ ଅନେକ ଅନୁରୋଧ କରିଥିଲେ । କିନ୍ତୁ ମହାପ୍ରଭୁ ଅଟଳ, ସେ କାହାର କଥା ଶୁଣି ନ ଥିଲେ । ଶେଷରେ ପୁରୀ ଗୋସ୍ୱାମୀ ଯାଇ ଛୋଟ ହରିଦାସଙ୍କ ନିମିତ୍ତ ଅନୁରୋଧ କରନ୍ତେ ମହାପ୍ରଭୁ କହିଲେ, ମୁଁ ଏଠାରେ ରହିପାରିବି ନାହିଁ, ଶ୍ରୀପୁରୁଷୋତ୍ତମ ଛାଡ଼ି ଆଲାଲନାଥକୁ ଯାଉଅଛି । ଏହା କହି ଗାତ୍ରୋତ୍ଥାନ କରନ୍ତେ ପୁରୀ ଗୋସ୍ୱାମୀ ଅସ୍ତବ୍ୟସ୍ତ ହୋଇ ଉଠି ମହାପ୍ରଭୁଙ୍କୁ ଅଟକାଇଲେ । ସେତେବେଳେ ପୁରୀ ଗୋସ୍ୱାମୀ ମହାପ୍ରଭୁଙ୍କୁ କହିଥିଲେ ।—

ତୋମାର ଯେ ଇଚ୍ଛା କର ସ୍ୱତନ୍ତ୍ର ଈଶ୍ୱର
କେବା କି ବଲିତେ ପାରେ ତୋମାର ଉପର ।
ଲୋକହିତ ଲାଗି ତୋମାର ସବ ବ୍ୟବହାର
ଆମି ସବ ନା ଜାନି ଗମ୍ଭୀର ହୃଦୟ ତୋମାର ।

( ଚୈଃ ଚଃ ଅନ୍ତ୍ୟ ୨ ପରି— )

ମହାପ୍ରଭୁଙ୍କର ଶକ୍ତି ଯେପରି ଅସୀମ, କାର୍ଯ୍ୟ ମଧ୍ୟ ତଦ୍ରୂପ ଲୋକ-ଚିନ୍ତାର ଅଗୋଚର । ତେଣୁ ତାଙ୍କର ଅତି ପ୍ରିୟ ସୁହୃଦ ରାୟ ରାମାନନ୍ଦ କହି ଅଛନ୍ତି ।—

ତ୍ରିଭୁବନ ମଧ୍ୟେ ଐଛେ ଅଛେ କୋନ ଧୀର
ଯେ ତୋମାର ମାୟାନାଟେ ହଇବେକ ସ୍ଥିର

( ଚୈଃ ଚଃ ମଧ୍ୟ ୮ )

କୋଟି କୋଟି ଭୁବନ ଯାହାର ଲୀଳାକ୍ଷେତ୍ର, ବ୍ରହ୍ମାଦି ସୃଷ୍ଟିକର୍ତ୍ତା-ଗଣ ଯାହାଙ୍କର ଅଂଶର ଅଂଶ ଓ ଆଜ୍ଞାକାରୀ ଭୃତ୍ୟ, ତାର ଶକ୍ତି ଓ କାର୍ଯ୍ୟ-କିଏ ବୁଝିବାକୁ ସକ୍ଷମ ହେବ । ମହାପାପୀ ଜଗାଇମାଧାଇଙ୍କ ପ୍ରତି ମହା-ପ୍ରଭୁଙ୍କର ବିଶେଷ କରୁଣା ଦର୍ଶନ କରି ଭକ୍ତ ବୃନ୍ଦ କହିଥିଲେ ।—

ତୋମାର ଅଚିନ୍ତ୍ୟ ଶକ୍ତି କେ ବୁଝିତେ ପାରେ
ଯଖନ ଯେ ରୂପେ କୃପା କରହ ଯାହାରେ

( ଚୈଃ ଭାଃ ମଧ୍ୟ ୧୩ )

ଠାକୁର ଶ୍ରୀହରିଦାସ ମହାପ୍ରଭୁଙ୍କର ଅତିପ୍ରିୟ, ମହାପ୍ରଭୁଙ୍କ ଶକ୍ତି ସେ ଅନେକ ପରିମାଣରେ ଅନୁଭବ କରୁଥିଲେ । ଜଗତରେ ଯେ ହରିନାମ ସଂକୀର୍ତ୍ତନ ପ୍ରବର୍ତ୍ତିତ ହୋଇଅଛି ଏହା ଶୁଣି ସ୍ଥାବର ଜଙ୍ଗମ ପର୍ଯ୍ୟନ୍ତ ମୁକ୍ତି ଲାଭ କରିବେ, ଏହି ବିଷୟ କଥୋପକଥନ ହେବା ସମୟରେ ଠାକୁର ହରିଦାସ ମହାପ୍ରଭୁଙ୍କୁ କହିଥିଲେ—"ପ୍ରଭୋ ! ତୋର ଲୀଳା ଅମୃତର ସିନ୍ଧୁ, ମୁଁ ସେଥିରୁ ବିନ୍ଦୁମାତ୍ର ସ୍ପର୍ଶ କରିନାହିଁ । ଯଥା ।—

ତୋମାର ଯେ ଲୀଳା ମହା ଅମୃତେର ସିନ୍ଧୁ
ମୋର ମନୋଗୋଚର ନହେ ତାର ଏକବିନ୍ଦୁ ।

( ଚୈଃ ଚଃ ଅନ୍ତ୍ୟ ୩ )

ଠାକୁର ଶ୍ରୀ ହରିଦାସ ଯେ ମହଦୈଶ୍ୱର୍ଯ୍ୟର ବିନ୍ଦୁମାତ୍ର ସ୍ପର୍ଶ କରିଅଛନ୍ତି ବୋଲି କହିଅଛନ୍ତି, ମହାପ୍ରଭୁଙ୍କ ସେ ଐଶ୍ୱର୍ଯ୍ୟର ସୀମା ନିରୂପଣ ଆଉ କିଏ କରିପାରିବ । ପ୍ରକୃତରେ ମହାପ୍ରଭୁଙ୍କର ଐଶ୍ୱର୍ଯ୍ୟ ଅସୀମ ଓ ଅନନ୍ତ ।

ମହାପ୍ରଭୁ ସାତପ୍ରହର କାଳ ଶ୍ରୀବାସ ମନ୍ଦିରରେ ନିଜ ଐଶ୍ୱର୍ଯ୍ୟ ପ୍ରକାଶ ପୂର୍ବକ ଯେଉଁ ଏକ ଅପୂର୍ବ ଲୀଳା ପ୍ରକାଶ କରିଥିଲେ ଏବଂ ପ୍ରିୟଭକ୍ତମାନଙ୍କୁ ନିଜ ନିଜ ପୂର୍ବ ଅନୁଭବ ବିଷୟ ସ୍ମରଣ କରାଇ ଦେଇ ଯେ ବର ପ୍ରଦାନ କରିଥିଲେ ତାହା ଅତୀବ ଚମତ୍କାର । କିନ୍ତୁ ଏରୂପ ବହୁସ୍ଥାବହଲୀଲା ମହାପ୍ରଭୁ ପ୍ରକାଶ୍ୟଭାବରେ କରିଥିଲେ ହେଁ ନବଦ୍ୱୀପର ସମସ୍ତ ଲୋକେ ତାହା ବୁଝି ପାରି ନ ଥିଲେ । କାରଣ ମହାପ୍ରଭୁଙ୍କ ଅନୁଗ୍ରହ ବିନା ତାଙ୍କୁ ଜାଣିବ କିଏ ? କିନ୍ତୁ ମହାପ୍ରଭୁ ଯେ ଏହି ମହଦୈଶ୍ୱର୍ଯ୍ୟ କେବଳ ସେହି ପ୍ରକଟ ଲୀଳାରେ ପ୍ରଦର୍ଶନ କରିଥିଲେ ଏମନ୍ତ ନୁହେ, ତାଙ୍କ ଅପ୍ରକଟ ସମୟରେ ମଧ୍ୟ ଯେ ଅଲକ୍ଷିତରେ ରହି ନାନା ଐଶ୍ୱର୍ଯ୍ୟ ପ୍ରକାଶ କରୁଅଛନ୍ତି । ତେବେ ତାହା ସମସ୍ତେ ଦେଖି ପାରୁ ନାହାନ୍ତି । କେବଳ ତାଙ୍କର ଅତି ପ୍ରିୟପାର୍ଷଦ କେହି କେହି ଯେ ଅପୂର୍ବ ଲୀଳା ଅନୁଭବ କରନ୍ତି । ଶ୍ରୀ ବୃନ୍ଦାବନ ଦାସ ସେଥିପାଇଁ କହିଅଛନ୍ତି ।

ଅଦ୍ୟାପିହ ଚୈତନ୍ୟ ଏ ସବଲୀଳାକରେ
ଯଖନେ ଯାହାରେ କରେ ଦୃଷ୍ଟି ଅଧିକାରେ ॥

ଶ୍ରୀଳନରୋତ୍ତମଠାକୁର ଖେତରିରେ ଯେତେବେଳେ ଷଡ଼୍‌ବିଗ୍ରହ ପ୍ରତିଷ୍ଠାକର ମହାମହୋତ୍ସବ କରାଇଥିଲେ, ମହାପ୍ରଭୁ, ନିତ୍ୟାନନ୍ଦ ପ୍ରଭୁ, ଅଦ୍ୱୈତ ପ୍ରଭୁ ଏମାନେ ଅପ୍ରକଟ ହୋଇଥିଲେହେଁ ସେ ମହାସଂକୀର୍ତ୍ତନରେ ଅତି ମଧୁରନୃତ୍ୟ କରିଥିଲେ ଏବଂ ଅନେକ ଉପସ୍ଥିତ ଭକ୍ତ ଏହା ଅନୁଭବ କରିଥିଲେ ! ଅତଏବ ଏହି ଘଟନା ଶ୍ରୀଳ ବୃନ୍ଦାବନଦାସଙ୍କ ଉପରୋକ୍ତ ଉକ୍ତିର ପ୍ରମାଣ ।

ଶ୍ରୀମନ୍ ମହାପ୍ରଭୁ ଯେତେବେଳେ ସଂକୀର୍ତ୍ତନର ବନ୍ୟାରେ ନବଦ୍ୱୀପ ପ୍ଲାବିତ କରି କାଜି ଉଦ୍ଧାର କରିବାକୁ ଯାଇଥିଲେ, ସେ ଘଟନା ମହାପ୍ରଭୁଙ୍କ ପ୍ରକଟ ଲୀଳାର କାର୍ଯ୍ୟ ମଧ୍ୟରେ ଏକ ପ୍ରଧାନ କାର୍ଯ୍ୟ । ସେହି ଘଟନା ବର୍ଣ୍ଣନ କରି ଶ୍ରୀଳ ବୃନ୍ଦାବନ ଦାସ ଶେଷରେ କହି ଅଛନ୍ତି

ଅଦ୍ୟାପିଓ ଚୈତନ୍ୟ ଏ ସବ ଲୀଳା କରେ ।
ଯାର ଭାଗ୍ୟ ଥାକେ ସେ ଦେଖୟେ ନିରନ୍ତରେ ।
( ଚୈଃ ଭାଃ ମଧ୍ୟ ୨୩ ଅ )

ଅତଏବ ମହାପ୍ରଭୁଙ୍କ ଅଚିନ୍ତ୍ୟ ଶକ୍ତିର ଅଦ୍ଭୁତ କାର୍ଯ୍ୟମାନ ଅଦ୍ୟାପି ମଧ୍ୟ ସ୍ଥାନେ ସ୍ଥାନେ ସଂଘଟିତ ହେଉଅଛି । ମହାପ୍ରଭୁ ପ୍ରକାଶ୍ୟଭାବରେ ଦେଖା ନ ଦେଲେ ମଧ୍ୟ ଅଲକ୍ଷିତ ଭାବରେ ଉପସ୍ଥିତ ରହି ସେ ସମସ୍ତ ମହତ୍ କାର୍ଯ୍ୟମାନ ସମାଧାନ କରୁଅଛନ୍ତି ।

ସମାପ୍ତ ।



କଟକ, ପଣ୍ଡାପ୍ରେସରେ ଶ୍ରୀ ହରମୋହନ ପଣ୍ଡାଙ୍କ ଦ୍ୱାରା ମୁଦ୍ରିତ ।

